# ଯାତ୍ରାପଥ ଚକ୍ର
# ଡାଏରି



ଚନ୍ଦ୍ରଶେଖର ରଥ

# ପାଠଚକ୍ର ଡାଏରି

**ଚନ୍ଦ୍ରଶେଖର ରଥ**

*ପ୍ରକାଶକ :*
ଶ୍ରୀ ପ୍ରଣବ କୁମାର ଭଞ୍ଜଦେଓ
ନିଉଲାଇଫ୍ କ୍ରିଏସନ୍ସ
୯୬, ବମିଖାଲ, ଭୁବନେଶ୍ୱର-୧୦
ଫୋନ-୯୩୩୮୩୬୧୧୯୬

*ପ୍ରାପ୍ତିସ୍ଥାନ :*
ଶ୍ରୀଅରବିନ୍ଦ ଭବନ
ଖାରବେଳ ନଗର, ୟୁନିଟ୍-୩
ଭୁବନେଶ୍ୱର

*ଚତୁର୍ଥ ପ୍ରକାଶନ :*
ତା ୨୪-୧୧-୨୦୧୧ ରିଖ

*ପ୍ରଚ୍ଛଦପଟ :*
ବୁଦ୍ଧଦେବ ଭଞ୍ଜ

*ମୁଦ୍ରଣ :*
ଜଗନ୍ନାଥ ଗ୍ରାଫିକ୍ସ
୩୯୩, ସହିଦ ନଗର, ଭୁବନେଶ୍ୱର

ISBN : 81-89033-08-10

# ପାଠଚକ୍ର ଡାଏରି

ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣଯୋଗଦ୍ୱାରା ଅନୁପ୍ରେରିତ ଆଧ୍ୟାତ୍ମ ବିଚାର ଓ ବିଶ୍ଳେଷଣର ସମାହାର "ପାଠଚକ୍ର ଡାଏରି"ର ପ୍ରଥମ ଭାଗ ନବଜ୍ୟୋତି କାର୍ଯ୍ୟାଳୟ ପଣ୍ଡିଚେରି, ଦ୍ୱିତୀୟ ଭାଗ ଓ ତୃତୀୟ ଭାଗ ମାତୃଭବନ କଟକ ଦ୍ୱାରା ପୂର୍ବରୁ ପ୍ରକାଶ ପାଇସାରିଛି। ଚତୁର୍ଥ ଭାଗ ପାଇଁ ଉଦ୍ଦିଷ୍ଟ ଲେଖାଗୁଡ଼ିକ ସହିତ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗକୁ ସନ୍ନିବେଶିତ କରି ଏହି ବର୍ଦ୍ଧିତ ସଂସ୍କରଣ ପାଠକଙ୍କ ପାଖରେ ପହଞ୍ଚାଇବାର ପ୍ରୟାସ କରିଅଛୁ। ଶ୍ରୀମା ଶ୍ରୀଅରବିନ୍ଦଙ୍କର ଚରଣରେ ପ୍ରାର୍ଥନାପୂର୍ବକ ଆଶା କରୁଅଛୁ ଯେ "ପାଠଚକ୍ର ଡାଏରି" ପୂର୍ବବତ୍ ସମସ୍ତଙ୍କ ଦ୍ୱାରା ସମାଦୃତ ହେବ ।

– ପ୍ରକାଶକ

## December 9, 1950

*To Thee who hast been the material envelope of our, Master, to Thee our infinite gratitude, Before Thee who hast done so much for us, who hast worked, struggled, suffered, hoped, endured so much, before thee who hast willed all, attempted all, prepared, achieved all for us, before Thee we bow down and implore that we may never forget, even for a moment, all we owe to Thee.*

**-The Mother**

# ପ୍ରଣାମ

**ଚନ୍ଦ୍ରଶେଖର ରଥ**

ପୂର୍ବ ନିର୍ଦ୍ଧାରିତ ଏକ ଦେବମୁହୂର୍ତ୍ତରେ ଯାହାଙ୍କ ଆବିର୍ଭାବରେ ଏ ପୃଥିବୀ ଧନ୍ୟ ହୁଏ, ପରିପୂର୍ଣ୍ଣ ହୁଏ ତା'ର ନିରବ ପ୍ରାର୍ଥନା, ସାର୍ଥକ ହୁଏ ତା'ର ଅନନ୍ତ ପ୍ରତୀକ୍ଷା, ସମସ୍ତ ଦ୍ୱନ୍ଦ୍ୱ ସଂଶୟ ଅବିଶ୍ୱାସର ଅବସାନ ହୁଏ, ସେହି ଦିବ୍ୟସତ୍ତାର ସୂର୍ଯ୍ୟୋଦୟକୁ ନମସ୍କାର ।

ଅନ୍ଧକାରର ବିରୋଧ ସତ୍ତ୍ୱେ, ନିଦ୍ରିତ ପୃଥିବୀର ଅସ୍ୱୀକାର ସତ୍ତ୍ୱେ, ଜଡ଼ ଜଙ୍ଗମର ଅନାଗ୍ରହ ସତ୍ତ୍ୱେ, ଅଜ୍ଞତାର ସପ୍ତାବରଣ ଅନ୍ତରାଳରେ ଶିହରିତ ଚେତନାର ଆବାହନକୁ ଅଂଗୀକାର କରି, ଯେ ଧରାପୃଷ୍ଠକୁ ଅବତରଣ କରି ଆସନ୍ତି, ତାଙ୍କୁ ନମସ୍କାର ।

ନିଶ୍ଚେତନାର ଅଂଧଗର୍ଭରୁ ଜ୍ୟୋତିର୍ମୟ ପରିପୂର୍ଣ୍ଣତା ପର୍ଯ୍ୟନ୍ତ ଅନନ୍ତ ଯାତ୍ରାପଥରେ ଯେ ପ୍ରତ୍ୟେକ ଗିରିସଂକଟରେ ଆବିର୍ଭୂତ ହୋଇ ଆରୋହଣର ମାର୍ଗ ଓ ସାମର୍ଥ୍ୟ ପ୍ରଦାନ କରନ୍ତି, ପୃଥିବୀକୁ ଜଡ଼ତାରୁ ମୁକ୍ତ କରି ଚୈତନ୍ୟମୟ କରିବାକୁ ସଂକଳ୍ପ କରନ୍ତି । ସ୍ୱୟଂ ସଂଗ୍ରାମ କରି, ସଂଘର୍ଷ କରି କ୍ଷତବିକ୍ଷତ ହୁଅନ୍ତି, ତାଙ୍କୁ ନମସ୍କାର ।

ହେ ଯୁଗପୁରୁଷ, ଯୋଗୀ ପୁରୁଷ, ଯୁଗନ୍ଧର ପୁରୁଷ, ଯୁଗାନ୍ତକାରୀ ପୁରୁଷ, ତୁମକୁ ନମସ୍କାର । ହେ ଚିରଅପରାହତ, ଅନିର୍ବାଣ ଅଗ୍ନି । ଭସ୍ମୀଭୂତ କର ସକଳ ମୋହାବରଣ, ଛଦ୍ମାବରଣ, ସକଳ କ୍ଲେଦ କଳୁଷ; ଦଗ୍ଧୀଭୂତ କର ସମସ୍ତ ମାଳିନ୍ୟ, ଦମ୍ଭ, ଦର୍ପ, ଅଭିମାନ; ସମସ୍ତ ଦୈନ୍ୟ ସଂକୀର୍ଣ୍ଣତା, ଜଡ଼ତା, ଭୀରୁତା; ଛିନ୍ନକର ସମସ୍ତ ଅଜ୍ଞତାର ଗ୍ରନ୍ଥି ସମସ୍ତ ମୋହ, ବ୍ୟାମୋହର ଜାଲ ଦଗ୍ଧକର ପଶୁତ୍ୱ; ଶୁଦ୍ଧକର ପଶୁପ୍ରାଣ; ମୁକ୍ତକର, ପରିଚ୍ଛନ୍ନ ଦେଦୀପ୍ୟମାନ କର ଚେତନା ।

ହେ ସତତ ଉଦ୍ଭାସିତ ଜ୍ୟୋତିଷାଂ ଜ୍ୟୋତିରେକମ୍ । ହେ ସତ୍ୟମୟ, ଜ୍ଞାନମୟ, ଅନନ୍ତ ବ୍ୟାପ୍ତିମୟ ଆଲୋକ । ବିଦୂରିତ କର ଯୁଗାନ୍ତିବ୍ୟାପୀ ଅଂଧକାର; ରାତ୍ରିମୟ, ନିଦ୍ରାମୟ ମୃତ୍ୟୁମୟ ଘନୀଭୂତ ତମିସ୍ରାକୁ ଆଲୋକିତ କର, ଜାଗ୍ରତ କର, ପ୍ରାଣବନ୍ତ କର; ବିଲୀନ କର ଦ୍ୱନ୍ଦ୍ୱ ସଂଶୟ ଅଜ୍ଞାନର କୁହେଳିକା । ହେ ଜ୍ୟୋତିର୍ମୟ ପୁରୁଷ । ଦୃଷ୍ଟିଦାନ କର, ବ୍ୟାପ୍ତିଦାନ କର, ଜ୍ଞାନ ଦାନ କର ।

ହେ ପରମ ପାବନ ଅବାରିତ କରୁଣାର ମନ୍ଦାକିନୀ ! ପ୍ରଶମିତ କର ଯାବତୀୟ ତୃଷା, ଶାନ୍ତ କର, ଶୁଦ୍ଧ କର ସଂଗ୍ରାମରତ ପ୍ରାଣପୁରୁଷକୁ; ସଂଯତ କର, ଶୀତଳ କର ଉତ୍‌କ୍ଷିପ୍ତ, ଉତ୍ତପ୍ତ ବାସନା ପିଣ୍ଡକୁ; ନିରବିତ କର ସମସ୍ତ କୋଳାହଳ; ବିମଳ କର ଧ୍ୟାନସ୍ଥ, ସମାଧିସ୍ଥ କର ଚେତନା; ଲାଳନ କର ଅବୋଧ ଚପଳତା; ପାଳନ କର, ପରିପୁଷ୍ଟ କର ବିଶ୍ୱାସ; ଦୀପ୍ତିମାନ କର ଆସ୍ପୃହା; କ୍ଷମାକର ସମସ୍ତ ଜଟିଳତା, ଅପରିଚ୍ଛନ୍ନତା, ଅଯୋଗ୍ୟତା, ଅପାରଗତା ! ଶୁଦ୍ଧିଦାନ କର, ବୁଦ୍ଧିଦାନ କର, ବିନୟ କୃତଜ୍ଞତା ଦାନ କର, ପ୍ରେମ ଦାନ କର, ହେ ପ୍ରେମମୟ ପାବନ ପ୍ରବାହ !

ଅଗ୍ନିମୟ, ଆଲୋକମୟ କରୁଣାମୟ ହେ ପ୍ରଭୁ । ତୁମର ଜୟ ହେଉ ।



## ୨୧-୭-୮୩

ଏ ଜଗତ୍ ଭଳି ଅନ୍ୟାନ୍ୟ ଜଗତ୍ ମଧ୍ୟ ବିଦ୍ୟମାନ । ବସ୍ତୁ ଜଗତ୍‌କୁ ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟ ମାଧ୍ୟମରେ ଅନୁଭବ କରିହୁଏ । ସେହି ବସ୍ତୁକୁ ବାରଂବାର ଅନୁଭବ କରିପାରୁଥିବାର ପ୍ରତ୍ୟୟ ହେଉଥିଲେ ସୁଦ୍ଧା ତାକୁ ଥରେମାତ୍ର ଦେଶ କାଳର ଏକମାତ୍ର ନିର୍ଦ୍ଦିଷ୍ଟ ବିନ୍ଦୁରେ ସ୍ପର୍ଶ କରିହୁଏ । ତଥାପି ଏଇ ଟେବୁଲ ଆଜି ଏଇଠି ଅଛି, ଗତକାଲି ଥିଲା ଏବଂ ଆସନ୍ତା କାଲି ଏହିପରି ରହିଥିବ - ଏ ପ୍ରକାର ବିଶ୍ୱାସରେ ଆମେ ବସ୍ତୁ ଜଗତ୍‌କୁ ଗ୍ରହଣ କରିଥାଉ । ସ୍ୱେଚ୍ଛାରେ ଏଇ ବସ୍ତୁ ସହିତ ସଂଯୋଗ ସ୍ଥାପନ କରିଥାଉ । କିନ୍ତୁ ଅତିନ୍ଦ୍ରିୟ ଜଗତ୍‌ର ଅନୁଭବ ସେପରି ନୁହେଁ । ସେଇଠି ଅସାଧାରଣ ପରିସ୍ଥିତିରେ ପହଞ୍ଚି ଯିବାକୁ ହୁଏ । ତା'ପରେ ପୁଣି ସେଇଠି ଇଚ୍ଛାକରି ପହଞ୍ଚି ହୁଏ ନାହିଁ । ଏଣୁ ଗୋଟିଏ ସ୍ୱପ୍ନକୁ ଦୁଇଥର ଦେଖିବା ବିରଳ । Occult କିମ୍ବା Supraphysical ଜଗତ୍ ଏ ଜଗତ୍ ଭଳି ବିଦ୍ୟମାନ । ସେଇଠି ବିଚରଣ କରି ତା'ର ପରିଚୟ ଲାଭ କରିବା ପାଇଁ କିଛି ଆକସ୍ମିକତା ଏବଂ କିଛି ସାଧନାସାପେକ୍ଷ୍ୟ ପ୍ରସ୍ତୁତିର ପ୍ରୟୋଜନ ରହିଛି । ସେ ସମସ୍ତ ଇଲାକା ନିଷିଦ୍ଧ ଅଞ୍ଚଳ ନୁହେଁ, ସେଠିକି ସମସ୍ତେ ଯାଇ ପାରିବେ, କିନ୍ତୁ ଯେ ମନ ସେ ଯାଇ ପାରିବେ ନାହିଁ । ଶ୍ରୀମା' ଏକଦା ପ୍ରାଣ ଜଗତ୍ ବିଷୟ ବୁଝାଇବାକୁ ଯାଇ କହିଥିଲେ ଯେ ସେ ଜଗତ୍‌ରେ ଯଦି କେହି କିଛି ଆହାର ଗ୍ରହଣ କରେ ତା'ହେଲେ ସ୍ଥୂଳ ଜଗତ୍‌ରେ ବେଶ୍ କିଛିଦିନ ଯାଏ କ୍ଷୁଧା ନିବୃତ୍ତ ହୋଇଯାଏ । ଅର୍ଥାତ୍ ଏ ଜଗତ୍ ଭଳି ସେଇଠି ରହି ହୁଏ, ଖାଇପିଇ ହୁଏ, ସେ ଜଗତ୍ ହୁଏତ' ଆହୁରି ସାନ୍ଦ୍ର ଆହୁରି ଗଭୀର ଏବଂ ବିସ୍ତୀର୍ଣ୍ଣ, କିନ୍ତୁ ତାହା ନିଶ୍ଚିତ ଆୟତନ ସ୍ୱଭାବ ପ୍ରକୃତି ଏବଂ ପ୍ରାଣମୟତା ନେଇ ବିଦ୍ୟମାନ ଏଥିରେ ସନ୍ଦେହ ନାହିଁ । ସେହିପରି ମାନସ ଭୂମି ଏବଂ ମନୋମୟ ଜଗତ୍, ଚୈତ୍ୟ ଭୂମି ଏବଂ ଚିନ୍ମୟ ଜଗତ୍ ।



## ୨୨-୭-୮୩

Is silence a pleasure ? ଘନୀଭୂତ ସ୍ତବ୍ଧତା କ'ଣ ସୁଖକର ? ତାହା କ'ଣ ସୁଖ ? ସୁଖ କହିଲେ ସାଧାରଣତଃ ରୁଚି ଅନୁକୂଳ ଦେହ, ମନ, ପ୍ରାଣର ସ୍ପନ୍ଦନକୁ ବୁଝାଏ । ଦେଶ କାଳ ବ୍ୟକ୍ତିର ସମନ୍ୱୟରେ ଏହା ସୃଷ୍ଟି ହୁଏ । ଖରାଦିନେ ଶରୀରରେ ଚନ୍ଦନ ଶୀତଳ ଜଳପରି, ଅହଂକାରୀ ମନପାଇଁ ପ୍ରଶଂସା ପରି ଅନୁକୂଳ ସୁଖାନୁଭବ ହୋଇଥାଏ । ତା'ର ବିପରୀତ ଅର୍ଥାତ୍ ପ୍ରତିକୂଳ ସ୍ପନ୍ଦନକୁ ଏବଂ ତଜ୍ଜନିତ ଅନୁଭବକୁ ଦୁଃଖାନୁଭବ କୁହାଯାଇ ପାରେ । ସୁଖ ହିଁ ସର୍ବଦା ପ୍ରେୟ ଏବଂ ଧେୟ । ଜାଣିଶୁଣି କେହି କେବେ ଦୁଃଖ ବରଣ କରେ ନାହିଁ । ଯଦି କରେ ତେବେ କୌଣସି ସୁଖକର ପରିଣାମର ଆଶାରେ କିମ୍ବା ସେଇ ଦୁଃଖରୁ ଏକ ତୀବ୍ର ତୀକ୍ଷ୍ଣ ସୁଖାନୁଭବ ପାଉଥିବାରୁ ସେ ତାହା ଗ୍ରହଣ କରିଥାଏ । ଏଣୁ ଅନୁକୂଳ ଯଦି ପୂର୍ବଦିଗ, ପ୍ରତିକୂଳ ଠିକ୍ ତା'ର ବିପରୀତ ପଶ୍ଚିମ ଦିଗ ପରି । କୌଣସି ନିର୍ଦ୍ଦିଷ୍ଟ ସମୟ ବିନ୍ଦୁରେ ଚେତନା ଉଭୟ ଦିଗରେ ପ୍ରସାରିତ ରହି ପାରିବ ନାହିଁ । ମଧ୍ୟ ଭୂମିରେ କେବଳ ଉଭୟର ଅପମିଶ୍ରଣ ଘଟିଥାଏ କିନ୍ତୁ କାହାରି ପୂର୍ଣ୍ଣ ବିସ୍ତାର ନଥାଏ ।

ବିଭିନ୍ନ ପ୍ରୟୋଜନ, ରୁଚି, ପ୍ରଲୋଭନ ଆଦି ଦ୍ୱାରା ଚାଳିତ ହୋଇ ଚେତନା କେବଳ ଗୋଟିଏ ଦିଗରେ ଉନ୍ମୁଖ ରହିଥାଏ । ସେଇଆଡୁ ଯାହା ଆସିଗଲା ତାହା ସେଇ ଚେତନା ପାଇଁ ସୁଖକର ।

ଘନ ନୀରବତା ବା ନିସ୍ତବ୍ଧତାର ଦିଗ ନାହିଁ । ତାହା ଆକାଶ ପରି ଏକ ଅପରିମେୟ ବିସ୍ତାର । ନିସ୍ତବ୍ଧତାର ଅନୁଭବକୁ ସେହି କାରଣରୁ ସୁଖବୋଲି କହିହେବ ନାହିଁ । ତାହା କୌଣସି ନିର୍ଦ୍ଦିଷ୍ଟ ରୁଚି-ପୂର୍ତ୍ତି ନୁହେଁ । ନୀରବତାର ଅନୁଭବ ମୁକ୍ତିର ଅନୁଭବ; ବାଡ଼ ବନ୍ଧ ନିଶ୍ଚିହ୍ନ ହୋଇ ମହାଶୂନ୍ୟକୁ ଗଳି ପଡ଼ିବାର ଅନୁଭବ । ପୁଣି ସେଇ ମହାଶୂନ୍ୟରେ ପରିବ୍ୟାପ୍ତ ହୋଇଯିବାର ଅନୁଭବ । ଯଦି ଅସ୍ମିତା ସଂକୀର୍ଣ୍ଣ ଅହଂରେ ସୀମିତ ରହିଛି ତେବେ ଏ ବ୍ୟାପ୍ତି ଭୀତି ସଂଚାର କରେ । କେହି କେହି ଗଭୀର ଗଣ୍ଡ ଭିତରକୁ ଚାହିଁଲେ ଅସୁସ୍ଥ ବୋଧ କରନ୍ତି; ତାଙ୍କର ମଜ୍ଜା ବିଚଳିତ ହୋଇଯାଏ । ସେହିପରି ସେମାନେ କିଛିକାଳ ତାରକିତ ଆକାଶକୁ ଚାହିଁଲେ ଡରିଯାନ୍ତି । ସ୍ତବ୍ଧତା ସେହିପରି ଏକ ବିଶାଳତା । Formless, deep, vast and cool. ରୂପହୀନ ଶୀତଳ ଗଭୀର ବ୍ୟାପ୍ତି । ସେଇଠି ବୁଡ଼ି ଜାଣିଲେ ରହିବାକୁ ଇଚ୍ଛାହୁଏ; ବାହାରି ଆସିଲେ ଫେରିଯିବାକୁ ଇଚ୍ଛାହୁଏ । ତାହା ଭୂମାର ଅନୁଭବ । ଭିତରେ ବାହାରେ ନିସ୍ତରଙ୍ଗ ବିଦ୍ୟମାନ ଶୀତଳ ଜଳରାଶିରେ ଅସ୍ମିତା ମିଳେଇ ଯିବାର ଅନୁଭବ, ଶ୍ରୀ ଅରବିନ୍ଦ ବିଲାତରୁ ଫେରିଆସି ଭାରତ ଭୂମିକୁ ସ୍ପର୍ଶକରିବା ମାତ୍ରେ ଏକ ସୁବିଶାଳ ନୀରବତା ତାଙ୍କ ଭିତରକୁ ଅବତରଣ କରିଥିଲା । A vast silence descended into me .... । ଏହାକୁ ସୁଖକର କିମ୍ବା ସୁଖ କହିଲେ ଯଥେଷ୍ଟ ହେବ ନାହିଁ । ସୁଖର ଆଂଶିକତା, ଅଳ୍ପକତା, ଏକଦେଶୀତା ଏଥିରେ ନାହିଁ । ଏଥିରେ ବିସ୍ମୟଭାବ ହୁଏତ ଆସିପାରେ, ଯେମିତି ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନଂ... ।

ଛୋଟିଆ ଫୁଲଟିଏ ବା ଚିତ୍ରଟିଏ ଦେଖି ତାକୁ ଆମେ ସୁନ୍ଦରବୋଲି କହିଦେଇ ପାରୁ । କିନ୍ତୁ ହିମାଳୟ ପାଦଦେଶରେ ଠିଆହୋଇ ପାଞ୍ଚ ହଜାର ଶୃଙ୍ଗ ଭିତରୁ ମାତ୍ର ଗୋଟିକର ଶତାଂଶ ଦେଖି ପାରୁଥିବା ବେଳେ ସେ ସୁବିଶାଳ ପର୍ବତମାଳାକୁ ସୁନ୍ଦର ବା ଅସୁନ୍ଦର କହିବାର ଅବକାଶ, ଅଧିକାର କିମ୍ବା ତାତ୍ପର୍ଯ୍ୟ କିଛି ନାହିଁ । ସେହିପରି ସୁଖ ଅଥବା ଦୁଃଖକୁ ଚିହ୍ନିତ କରିଦେଇ ହେବ, ଘନ ପ୍ରଶାନ୍ତ ନୀରବତାକୁ ନୁହେଁ । ତାହା ଇନ୍ଦ୍ରିୟାନୁଭୂତ ନୁହେଁ । ତାହା ଯେତେ ସାମାନ୍ୟ ହେଲେ ସୁଦ୍ଧା ଆତ୍ମାନୁଭୂତି । ଆଧ୍ୟାତ୍ମିକତ ସାଧନାରେ ସେଥିପାଇଁ ବୋଧହୁଏ ନୀରବ ରହିବାକୁ ଏବଂ ନିର୍ଜନ ନୀରବ ପ୍ରଦେଶରେ ଅବସ୍ଥାନ କରିବାକୁ ଇଚ୍ଛାହୁଏ । 'ବିବିକ୍ତଦେଶ ସେବିତ୍ୱଂ ଅରତିର୍ଜନ ସଂସଦି' । Noise agitates the sense : silence disturbs the soul.

୧. ଯେ କୌଣସି କର୍ମ ପାଇଁ ପାଞ୍ଚଟି ଉପାଦାନର ପ୍ରୟୋଜନ । (କ) ଅଧିଷ୍ଠାନ, ଶରୀର ଇନ୍ଦ୍ରିୟାଦି (ଖ) କର୍ତ୍ତା (ଗ) କରଣ (ଘ) ଚେଷ୍ଟା (ଙ) ଦୈବମ୍ । କୌଣସି ଗୋଟିଏ ଭୂମି; କ୍ଷେତ୍ର ବା ଅଧିଷ୍ଠାନରେ କର୍ମହେବା ଅନିବାର୍ଯ୍ୟ । ସେଥିରେ 'ମୁଁ କରୁଚି' ବୋଲି କହିବାକୁ ଗୋଟିଏ ସଚେତନ ସତ୍ତାର ପ୍ରୟୋଜନ; ସେ କର୍ତ୍ତା । ତା'ର ଚାରିଆଡ଼େ ବେଢ଼ି ରହିଥିବା ଅନ୍ୟାନ୍ୟ ସୂକ୍ଷ୍ମ ଶକ୍ତିଗୁଡ଼ିକର ପ୍ରରୋଚନା, ପ୍ରଭାବ, ମଧ୍ୟ ଅନିବାର୍ଯ୍ୟ । ତାହା କରଣ । କର୍ତ୍ତା ଯଦି ଇଚ୍ଛା ହିଁ ନ କରେ ତେବେ କର୍ମାରମ୍ଭ ହେବ ନାହିଁ । ଏଣୁ ଚେଷ୍ଟା ରହିବ । ଶେଷରେ ଦୈବମ୍ । ଏହା କୌଣସି ଅଂଧ ଭବିତବ୍ୟ ବା ଅଦୃଷ୍ଟ ନୁହେଁ । ସେ ଯାହା ଚାହିଁଲେ ସବୁ ହେବ ଏବଂ ନ ଚାହିଁଲେ ନାହିଁ - ଏମିତି ନୁହେଁ । ଏହା ହେଉଛି ସମଗ୍ର ସୃଷ୍ଟି ପଶ୍ଚାତ୍‌ରେ ରହି ତାକୁ ଚାଳିତ,

ପ୍ରଶାସିତ କରୁଥିବା ମହାଜାଗତିକ ଇଚ୍ଛାଶକ୍ତି । ତା'ର ଆଂଶିକ ସ୍ଫୁରଣ ହିଁ ଏଇ କର୍ତ୍ତା ଏବଂ ତା'ର ଚେଷ୍ଟା; ନଚେତ୍ ସେ ହିଁ ସର୍ବମୟ କର୍ତ୍ତା । ତା'ର ଇଚ୍ଛା ହିଁ ଜଗତ୍‌ର କାରଣ । ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗୀ, ସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ ।



**୨୩-୭-୮୩**

ବିରୋଧୀ ଶକ୍ତିମାନଙ୍କ ସାଙ୍ଗରେ ଏକପ୍ରକାର ବୁଝାମଣା କରିନେବାକୁ ପଡ଼ିବ । ସେମାନେ ଅସଂଖ୍ୟ, ଅପ୍ରତିହତ, ପ୍ରତି ପଦକ୍ଷେପରେ ସେଥିରୁ ଗୋଟିଏ ଆସି ପଥରୋଧ କରି ଠିଆହେବ । ଆହ୍ୱାନ କରିବ ଯୁଦ୍ଧ କରିବାକୁ । ରକ୍ତବୀର୍ଯ୍ୟ ପରି ସେମାନେ ଯେତେ ମରୁଥିବେ ସେତେ ଉପଜାତ ହେଉଥିବେ । ସେମାନଙ୍କୁ ନିଶ୍ଚିହ୍ନ କରିହେବ ନାହିଁ, କିନ୍ତୁ ଯୁଦ୍ଧ କରି କରି ଶେଷକୁ ଲକ୍ଷ୍ୟଭ୍ରଷ୍ଟ ହୋଇଯିବାକୁ ପଡ଼ିପାରେ । ମନେହେବ ସତେ ବା ରାସ୍ତାରୁ ସବୁ ଗୋଡ଼ି ଗୋଟାଇ ଫୋପାଡ଼ିବା ହିଁ ଲକ୍ଷ୍ୟ ଆଗକୁ ଯିବା ନୁହେଁ । କିନ୍ତୁ ବହୁ ଦୂର ପଥ ଯିବାକୁ ହେବ । ଏଣୁ ଛୋଟ ଛୋଟ ଛଳ-ସଂଗ୍ରାମରେ ସମୟ ଅପବ୍ୟୟ ନ କରି ତାକୁ ଏଡ଼ାଇ ଯିବା ଭଲ । ଏହା କାପୁରୁଷତା, ଭୟ କିମ୍ବା ଆତ୍ମସମର୍ପଣ ନୁହେଁ । ଏହା ମୁଖ୍ୟ ଉଦ୍ଦେଶ୍ୟରେ ଶକ୍ତି ସଂଚୟ କରି ଗୌଣକୁ ଉପେକ୍ଷା କରିବାର କୌଶଳ । ଏଥିରେ ଅନେକ ସଂଘର୍ଷ ଏବଂ ତଜ୍ଜନିତ ବିକ୍ଷୋଭ ଓ ଉତ୍ତାପରୁ ମୁକ୍ତି ମିଳିପାରେ । ବେଳେ ବେଳେ କିନ୍ତୁ ଯେ ଆସି ଠିଆହୁଏ, ସେ ଆସିଥାଏ ହତ୍ୟା କରିବାକୁ । ସେ ଯଦି ଆଘାତ କରି, ଚିଢ଼ ନିନ୍ଦା, ଅପମାନ, କୁତ୍ସା କରି ଚାଲିଯାଆନ୍ତା ତେବେ, ତାକୁ ଖାତିର୍ ନ କରି ଆଗେଇ ଯାଇ ହେବ । ସେ କିନ୍ତୁ ଆସିଥାଏ ଚୂଡ଼ାନ୍ତ ସଂଗ୍ରାମ ପାଇଁ । ତା'ପଛରେ ଅକ୍ଷୌହିଣୀ ଥାଟ । ସେଇଠି ଲକ୍ଷ୍ୟକୁ ସ୍ମରଣ କରି ସ୍ଥିର ବୁଦ୍ଧିରେ ତା'ସହିତ ମୁକାବିଲା କରିବାକୁ ହେବ । ଗୁରୁସ୍ମରଣ, ବିଷ୍ଣୁ ସ୍ମରଣ କରି ଯୁଦ୍ଧକଲେ ବିଜୟ ସୁନିଶ୍ଚିତ ।

ଶ୍ରୀମା କହିଛନ୍ତି ଯେ ଯାହା ଭିତରେ ଯେତିକି ଶକ୍ତି ଏବଂ ସମ୍ଭାବନା ଅଛି ସେଇ ପରିମାଣରେ ତାକୁ ବିଘ୍ନମାନେ ବାଧକ ହୁଅନ୍ତି – କ୍ରିୟାର ସମାନୁପାତିକ ପ୍ରତିକ୍ରିୟା ପରି ସାଧନାର ତୀବ୍ରତା ଓ ଶୁଦ୍ଧତା ଅନୁପାତରେ ପ୍ରତିବନ୍ଧକ ସୃଷ୍ଟି ହୁଏ । ଯେ ଯେତେ ଉପରକୁ ଉଠୁଥାଏ ତାକୁ ସେତିକି ପରିମାଣରେ ମାଧ୍ୟାକର୍ଷଣ ଟାଣି ଧରେ । ଯେ କୀଟଭଳି ବା ସାପଟିଏ ଭଳି ଭୂଇଁରେ ଘୁସୁରୁଥାଏ, ତାକୁ ସଂପୂର୍ଣ୍ଣଭାବରେ ସ୍ୱୀକାର କରୁଥାଏ, ତା'ପାଇଁ ସେ ଶକ୍ତି ପ୍ରଯୁଜ୍ୟ ନୁହେଁ, ସେ ଅଧିକୃତ ଇଲାକାର ଅଧିବାସୀ । ଯେ ତାକୁ ଛାଡ଼ି ଯିବାକୁ ଚାହେଁ, ତାକୁ ଅତିକ୍ରମ କରିଯିବାକୁ ଚାହେଁ, ସେ ବିଦ୍ରୋହୀ, ତାକୁ ପ୍ରତିହତ କରିବା ପାଇଁ ଅପଶକ୍ତି ଉଦ୍ୟମ କରେ । ଏଥିରେ ସାଧକର ସାମର୍ଥ୍ୟ ସୂଚିତ ହୁଏ ଏବଂ ବର୍ଦ୍ଧିତ ହୁଏ ।



## ୧୪-୭-୮୩

କେବେ କେବେ ଲାଗୁଛି ଯେ ସବୁ ଠିକ୍ ଚାଲିଛି । ସାଧନା, ଧ୍ୟାନ ଭଲ ହେଉଛି । ଆଉ କେବେ କେବେ ସବୁ ବିପର୍ଯ୍ୟସ୍ତ, ବିଭ୍ରଷ୍ଟ । ଏମିତି କାହିଁକି ହେଉଛି ? ଅବାଧଭାବରେ ଠିକ୍ ଚାଲିଲେ, ଅନେକ କିଛି ହୋଇ ପାରନ୍ତା ।

Don't assess, only observe and pray, ବିଚାର କରନାହିଁ, କେବଳ ଲକ୍ଷ୍ୟ ରଖ ଏବଂ ପ୍ରାର୍ଥନା କର । ବିଚାର କଲେ ବିକ୍ଷୋଭ ଅନିବାର୍ଯ୍ୟ ।



## ୧୫-୭-୮୩

ନିଜକୁ ନିଜେ କିପରି ବିଷୟୀଭୂତ କରିହେବ ? କେମିତି ପ୍ରତ୍ୟକ୍ଷ କରିହେବ ? ଆତ୍ମ ନିରୀକ୍ଷାର ଅର୍ଥ କଣ ? Step back କହିଲାବେଳେ ଶ୍ରୀମାଙ୍କ ଉକ୍ତିର ଅର୍ଥ କଣ ? ଆମେ କ'ଣ ପରସ୍ପରକୁ ଦେଖିଲା ଭଳି ନିଜେ ନିଜକୁ ଦେଖିପାରିବା, ବିଚାର କରି ପାରିବା ? ଦର୍ପଣରେ ବା ଚଳଚ୍ଚିତ୍ରରେ ନିଜର ବିମ୍ବକୁ ଦେଖିବା, ଦେଖିବା ନୁହେଁ, ତେବେ କିଭଳି ଦେଖିପାରିଲେ ଦେଖିଲି ବୋଲି ଅନୁଭବ ହେବ ?

ନିଜକୁ ବିଶ୍ଳେଷଣ କଲାବେଳେ ଆମେ ସାଧାରଣତଃ ସ୍ମୃତିର ଆଶ୍ରୟ ନେଉଥାଉଁ, ଯାହା ଦୂର ବା ଅବ୍ୟବହିତ ଅତୀତରେ ଆମେ କରିଥିଲୁ, ତାକୁ ହୁଏତ ଆମେ ସ୍ମରଣ କରୁ । ତା'ତ ଅନେ ବହୁତେ ସମସ୍ତେ କରିଥାନ୍ତି । ଏଇ ମୁହୂର୍ତ୍ତରେ କର୍ମଟିଏ କଲାବେଳେ ନିଜକୁ ସେଥିରୁ ପୃଥକ କରି ଦେଖି ହେଉନାହିଁ । କେବଳ ପର ମୁହୂର୍ତ୍ତରେ ତାକୁ ସ୍ମରଣ କରିହେଉଛି । ହେଉ, ମୁଁ ଏହା କଲି କହିଲାବେଳକୁ କର୍ମଟି ଠିକ୍ ତା'ପୂର୍ବରୁ ସରିଯାଇଛି । ତେବେ ଯେ କର୍ମକରେ, ସେ ନିଜେ ପୁଣି ତାହା ଦୂରରୁ ରହି ଦେଖିପାରେ ନାହିଁ ।

ଆମ ଭିତରେ ସାକ୍ଷୀ ସତ୍ତାଟିଏ ଅଛିବୋଲି ଆମେ ସେଇଠି ରହି ଅତୀତକୁ ନିରୀକ୍ଷଣ କରୁ । ନିଜର କାର୍ଯ୍ୟକଳାପର ଘଟଣାକୁ ଦୂରରେ ଥାଇ ଦେଖିପାରୁ । ଯେ ଦେଖେ ଏବଂ ଯେ ଦେଖିବାର ବିଷୟଭୂତ ହୁଏ ସେ ଦୁହେଁ ଏକ ହେଲେ ମଧ୍ୟ ଦ୍ୱୈତ ମୂର୍ତ୍ତିରେ ଥାନ୍ତି । କାଳର ବ୍ୟବଧାନକୁ ସ୍ୱୀକାର ନ କଲେ ଅକ୍ଷର ବିନ୍ଦୁର କ୍ଷରପ୍ରବାହକୁ ଦେଖିହେବ ନାହିଁ । ଅତୀତର ସ୍ମରଣରେ ଆମେ ପ୍ରକୃତରେ କ୍ଷରକୁ ଦେଖୁଥାଉ । ନିଜକୁ ସାକ୍ଷୀ କରିପାରିଲେ ବିଷୟ ସଂପୃକ୍ତି ଆୟତ୍ତକୁ ଆସିପାରିବ । ସମତା ସାଧନା କରିହେବ । ଯେଉଁ ପରିମାଣରେ ଅସଂପୃକ୍ତ ରହି ଅନ୍ୟର କାର୍ଯ୍ୟକଳାପକୁ ଲକ୍ଷ୍ୟ କରିହୁଏ, ସେଇ ପରିମାଣରେ ନିଜ ବିଷୟରେ ମଧ୍ୟ ସମ୍ଭବ ହୋଇ ପାରିବ । ଲାଭ କଣ ? ଲାଭ କ୍ଷତିର ବିଚାର ଆଧ୍ୟାତ୍ମିକ ଭୂମିରେ ନାହିଁ । ବରଂ ସେ ସମଭୂମିରେ ନ ପହଞ୍ଚିବା ଏବଂ ଜଗତ୍ ପ୍ରବାହରେ ଜୀବଧର୍ମରେ କେବଳ ବନ୍ଧାହେବାକୁ ହିଁ ଉପନିଷଦ୍ 'ମହତୀ ବିନଷ୍ଟି' ବୋଲି ଆଖ୍ୟାତ କରିଛନ୍ତି । ସାଂସାରିକ ଦୃଷ୍ଟିରୁ ତ ପ୍ରକୃତରେ କିଛି ଲାଭ ନାହିଁ । ଟଙ୍କା, ସୁନା, କୋଠାବାଡ଼ି ଏଥିରେ କିଛି ମିଳିବାର ସମ୍ଭାବନା ନାହିଁ । ବରଂ ସେ ଜାଲରୁ ମୁକ୍ତହେବାକୁ ହିଁ ଏ ଦିଗକୁ ମୁହଁ ଫେରାଇ

ଅଣାହୋଇଛି । ଏଣୁ ଏ କ୍ଷୁରଧାର ଉପରକୁ ପାଦଦେବା ପୂର୍ବରୁ ମନେ ମନେ ସ୍ଥିର ଭାବରେ ସବୁ କିଛି ବୁଝିନେବାକୁ ପଡ଼ିବ । ଯଦି ସଂସାରରେ ରହି କିଛି ଭୌତିକ ପଦାର୍ଥ ଠୁଳ କରିବାର ଇଚ୍ଛା ଅଛି, କିଛି ଧନ, ମାନ, ଖ୍ୟାତି, ଅର୍ଜନ କରିବାର ଅଛି, ଅଭିଳାଷ ଏବଂ ଫଳାଭିସନ୍ଧି ଅଛି ତେବେ ସେସବୁ କାର୍ଯ୍ୟ ବିନା ଦ୍ୱିଧାରେ କରିଯିବା ଉଚିତ୍ । ସେଥିରେ ଭୁଲ୍ ଠିକ୍ କିଛି ନାହିଁ । ତାହା ଅନେକ ଲୋକ କରୁଛନ୍ତି । ଆଉ ଜଣେ କରିବ - ସେଥିରେ ଅସୁବିଧା କ'ଣ ? ସେଥିରୁ ସ୍ୱତଃ ମନ ଓହରି ନ ଯିବା ପର୍ଯ୍ୟନ୍ତ ଭିତରେ ଇଚ୍ଛା ବାହାରେ ଆଚରଣ ଉପରେ ବଳାତ୍କାର କରିବା ହେଉଛି ମିଥ୍ୟାଚାର । ଲାଭ ଆଶା ଥିଲେ ବ୍ୟବସାୟ ବଣିଜ ନ କରି ଆଧ୍ୟାତ୍ମ ମାର୍ଗରେ ଆସିବା ଅନୁଚିତ । ଏଥିରେ ସେମିତି କିଛି ଲାଭ ନାହିଁ ।



## ୨୬-୭-୮୩

ଆଧ୍ୟାତ୍ମିକ କର୍ମଟି କ'ଣ ? କିପରି ତାହା କରାଯାଇପାରେ ? ପ୍ରତି ମୁହୂର୍ତ୍ତରେ ଯେଉଁ କର୍ମଟି ଆମେ କରୁଛୁ, ତାହା ଈଶ୍ୱରାର୍ପିତ କିପରି ହୋଇ ପାରିବ ? - କର୍ମ ବିଷୟରେ ଦୁଇଟି ଦୃଷ୍ଟିଭଙ୍ଗୀ ରହିଛି । ଗୋଟିଏ ହେଲା ଯେ ସଂସାରରେ ରହି ତାହାକୁ ଏକମାତ୍ର ସତ୍ୟଜ୍ଞାନ କରି ନିଜର ସୁଖ ସନ୍ତୋଷ ପାଇଁ କର୍ମ କରିବା । ଅନ୍ୟଟି ହେଲା ଏ ସମସ୍ତକୁ ଅଳୀକ ଜ୍ଞାନକରି ଏ ସମସ୍ତଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ କର୍ମ ପ୍ରତି ଉଦାସୀନ, ବିମୁଖ ହୋଇଯିବା । 'ନେହ ନାନାସ୍ତି କିଞ୍ଚନ' ଜ୍ଞାନ ଏବଂ ଅବବୋଧ ହୋଇଗଲେ ଏକତ୍ୱରେ କର୍ମ ଅର୍ଥହୀନ ହୋଇଯାଏ । ଦେହାତ୍ମ ପ୍ରତ୍ୟୟ ଭିତରେ ଏ ସମସ୍ତ ଜଗତ୍ ମଧ୍ୟ ସେଇ ଦିବ୍ୟଚେତନା ବୋଲି ଜ୍ଞାନ ହେଲେ ଜୀବନ କର୍ମମୟ ହୋଇଯାଏ । ଯେକୌଣସି କର୍ମ ପାଇଁ ଏ ଦୁଇଟି ସମ୍ଭାବନା - ହୁଏତ ପୂର୍ଣ୍ଣ କର୍ମମୟ ସଂସାର କିମ୍ବା ନିଷ୍କ୍ରିୟ ସନ୍ନ୍ୟାସ । ଗୋଟିଏ ଶକ୍ତିଶାଳୀ ବୈଦ୍ୟୁତୀୟ ଚୁମ୍ବକର ଦୁଇଟି ମେରୁ ମଝିରେ ଖଣ୍ଡିଏ ଲୁହା ପାତିଆ ପାରିକରିବା ପ୍ରାୟ ଅସମ୍ଭବ ବ୍ୟାପାର । ହୁଏତ ଗୋଟିଏ ମେରୁରେ ପାତିଆ ଚଟ୍‌କିନା ଲାଖିଯିବ, ସେଇଠୁ ଛଡ଼େଇଲେ ଅନ୍ୟଟିରେ ଲାଗିଯିବ । ଅତି ସୂକ୍ଷ୍ମ ମଧ୍ୟରେଖା କ୍ଷୁରଧାର ପରି । ସେଥିରେ ଲୁହାପାତିଆକୁ ଚଳେଇନେବା ହିଁ ସାଧନା - ସଂସାରରେ ସଚେତନ ହୋଇଗଲେ, ବନ୍ଧନ ହୁଗୁଳିଯାଏ ଏବଂ ବୈରାଗ୍ୟ ଟାଣିନେଇଯାଏ । ଅନ୍ୟପକ୍ଷେ କର୍ମରେ ମମତା, ଆନ୍ତରିକତା ପ୍ରକାଶ କରୁ କରୁ ସଂସାର ମୋହାବିଷ୍ଟ କରେ । ଗୋଟିଏ ଚଳମାନ ଅନ୍ୟଟି ନିଶ୍ଚଳ । ଗୋଟିଏ କ୍ଷର ଅନ୍ୟଟି ଅକ୍ଷର, କିନ୍ତୁ ପ୍ରକୃତ Integrated knowledge ହେଉଛି ଉଭୟକୁ ଧାରଣ କରିବା । ସଂସାରରେ ଆସୀନ ହେବାକୁହେବ, କିନ୍ତୁ ଉଦାସୀନବତ୍ ଆସୀନ ହେବା, କିମ୍ବା ସଂସାରରେ ବୁଡ଼ିଯିବା ଦୁଇଟି ସୀମାନ୍ତ ସମ୍ଭାବନା । କୂଳରେ ଠିଆହେବା ନୁହେଁ କି ସୁଅରେ ବୁଡ଼ିଯିବା ନୁହେଁ । ପହଁରା କୌଶଳରେ ସୁଅ ପାରିହେବା ହେଉଛି ଯୋଗ ବା କର୍ମ ।

ଏଣୁ ଅଭ୍ୟାସ କରିବାକୁ ହେବ, ଚେଷ୍ଟା କରିବାକୁ ହେବ, କିପରି ସଂସାରରେ ରହି ନ ରହିଲା ପରି, ଥାଇ ନଥିଲା ପରି, ଉଦାସୀନବତ୍ 'ଉଦାସୀନ ବଦାସୀନ' କର୍ମ କରାଯାଇପାରେ । ଜୀବନରେ କର୍ମ ପ୍ରବାହ ଭିତରେ ଏଠି ସେଠି ସଚେତନ ଭାବରେ ଉଦାସୀନବତ୍ ହୋଇ ପାରିଲେ ହୁଏତ ସାଧନାର ଗୋଟିଏ

ପର୍ଯ୍ୟାୟରେ ସକଳ କର୍ମ ଏହିଭଳି ହୋଇଯିବ । ସେତିକିବେଳେ ସେ ମୁକ୍ତ ପୁରୁଷ । ସେ ଜ୍ଞାନୀ, ସେ ଭକ୍ତ, ସେ ପୁରୁଷୋତ୍ତମରେ ଥାଇ କର୍ମ କରନ୍ତି ଏବଂ ଯାହା କରନ୍ତି ତାହା ଅତି ସହଜ ସରଳ ଭାବରେ divine.



## ୨୭-୭-୮୩

ଆଳାପ ପାଇଁ ଆଉ ଜଣଙ୍କର ଉପସ୍ଥିତି ଅନିବାର୍ଯ୍ୟ ନୁହେଁ, ନିଜକୁ ନିଜେ ଶ୍ରୋତାକରି ବେଳେ ବେଳେ ସେମିତି କିଛି ଆଳାପ କରାଯାଇପାରେ । ଏଥିରେ ବୈଶିଷ୍ଟ୍ୟ ହେଲା ଯେ ମିଥ୍ୟାଚାରର ଅବକାଶ ନାହିଁ । କାରଣ ଶ୍ରୋତା ବକ୍ତା ଉଭୟ ସମପରିମାଣରେ ଅବହିତ । ଯଦି ଶ୍ରୋତାଠାରୁ ବକ୍ତା ପୃଥକ୍ ତେବେ ତାର ବାକ୍ୟ ଏବଂ ଚିନ୍ତା ଭିତରେ ବ୍ୟବଧାନ ହେବାର ସମ୍ଭାବନା ଅନେକ । ସେ ଯାହା କହେ, ହୁଏ ତା କହିବାର ପ୍ରୟୋଜନ ସେ ଅନୁଭବ କରେ ନାହିଁ । ଏଣୁ ଅନ୍ୟକୁ ଆଖି ମିଟିକା ମାରି ସାଧୁ ବାକ୍ୟର ଅନ୍ତରାଳରେ ଅସାଧୁ କର୍ମର ପ୍ରଲୋଭନ ସେ ଏଡ଼ାଇ ପାରେ ନାହିଁ । କିନ୍ତୁ ନିଜ ପାଖରେ ଲୁଚିବାର ସମ୍ଭାବନା ନାହିଁ । କର୍ମଶୁଦ୍ଧି ପାଇଁ ଏଭଳି ଆତ୍ମାଳାପର ଉପାଦେୟତା ଅନେକ ।



## ୨୮-୭-୮୩

ଧ୍ୟାନ ବିଘ୍ନିତ ହେଲେ ସାରା ସ୍ନାୟୁମଣ୍ଡଳ ଦୋହଲିଯାଏ । ଏଣୁ ନାନା ପ୍ରକାର ମାନସିକ ଏବଂ ଶାରୀରିକ ବିକୃତି ଦେଖାଦେବାର ସମ୍ଭାବନା ରହିଛି । ଶରୀର ଏକ ବ୍ୟୂହ । ଇନ୍ଦ୍ରିୟ ଏବଂ ଇନ୍ଦ୍ରିୟର ବିଭିନ୍ନ ଶକ୍ତି ପ୍ରବାହରେ ଗୋଟିଏ କ୍ଷେତ୍ର ପ୍ରସ୍ତୁତ କରନ୍ତି । ତାକୁ ଧ୍ୟାନାବସ୍ଥାରେ ସଂହତ ଓ ଶିଥିଳ କରିଦେବା ଦ୍ୱାରା ସାମାନ୍ୟ ଧ୍ୱନି କିମ୍ବା ଶବ୍ଦ, କେନ୍ଦ୍ରକୁ ବିଚଳିତ କରି ପକାଏ । ଧ୍ୟାନରେ ବହୁପ୍ରୟାସ ପରେ ଯତ୍‌କିଞ୍ଚିତ୍ ସ୍ଥିରତା ମିଳିଥାଏ, ବିଘ୍ନିତ ଧ୍ୟାନରେ ତାଠାରୁ ଅନେକ ପରିମାଣରେ ଅଧିକ ଆନ୍ଦୋଳନ ହୁଏ ଏବଂ ସ୍ନାୟୁମଣ୍ଡଳ ବିଚଳିତ ହୁଏ । ଏଣୁ ଧ୍ୟାନ ଯଥାସମ୍ଭବ ନିର୍ବିଘ୍ନ ହେବା ଉଚିତ୍ ।



## ୨୯-୭-୮୩

ଜୋକ ଏଭଳି ଗୋଟିଏ ଜୀବ ଯାହାକୁ ଖଣ୍ଡ ଖଣ୍ଡ କରିଦେଲେ ସେ ମରେ ନାହିଁ ବରଂ ସେତିକି ଗୁଣରେ ପୁନର୍ଜୀବିତ ହୁଏ । ସେହିପରି କୌଣସି ପ୍ରବୃତ୍ତିକୁ ଆଜି ସଂହାର କଲିବୋଲି ଭାବୁଥିବା ବ୍ୟକ୍ତି କିଛିକାଳ ପରେ ପୁଣି ତାର ସମ୍ମୁଖୀନ ହେବାକୁ ପଡ଼ିପାରେ ଏବଂ ଏଥର ତା'ର ଶକ୍ତି ବହୁଗୁଣିତ ହୋଇଥାଏ । ଧରାଯାଉ ଲୋଭ, ଆଜି ଶହେ ଟଙ୍କିଆ ନୋଟ୍ ରୂପରେ ଜାଲ ବିସ୍ତାର କରିଛି । ତାକୁ ଜୟ କରିବାକୁ ଇଚ୍ଛା କରୁଥିବା

ବ୍ୟକ୍ତି ଅତି ବୀରତ୍ୱ ଏବଂ ଗର୍ବର ସହିତ ତାକୁ ବାଁ ଗୋଡ଼ରେ ଆଡ଼େଇ ଦେଉଛି, ତାକୁ ହେୟଜ୍ଞାନ କରୁଛି, କିନ୍ତୁ କାଲି ସେ ବଣ୍ଡଲକାର ନୋଟ୍ ରୂପରେ ଆକ୍ରମଣ କରିବ ଏବଂ ସେଥିରେ ସେ ବ୍ୟକ୍ତିଟି ହୁଏତ ପରାସ୍ତ ହୋଇ ତାର ବଶ୍ୟତା ସ୍ୱୀକାର କରିନେବ । ତେବେ କ'ଣ କରାଯିବ ? ଲୋଭକୁ ଜୟ କରାଯିବ ନା ନାହିଁ । ପ୍ରତ୍ୟାଖ୍ୟାନ କରାଯିବ ନା ନାହିଁ ? ନିଶ୍ଚୟ କରାଯିବ କିନ୍ତୁ ସେ ବିଷୟରେ ସାମାନ୍ୟ ଚିନ୍ତା କରି ସାରିଲା ପରେ । ଯେତେବେଳେ ପ୍ରତ୍ୟାଖ୍ୟାନ କରାଯାଏ, କିଛି ପରିମାଣରେ ଅହଂ ମିଶି ରହିଥାଏ । ଏପରିକି ପ୍ରତ୍ୟାଖ୍ୟାନର ସମସ୍ତ ବାହାଦୁରୀ ନେବାକୁ ଏଇ ଛୋଟ ଅହଂଟି ସର୍ବଦା ଲାଳାୟିତ, ଶହେ ଟଙ୍କିଆ ନୋଟ୍କୁ ହେୟଜ୍ଞାନ କରିବା, ତୁଚ୍ଛ, ଘୃଣ୍ୟ ଜ୍ଞାନ କରିବାରେ ମଧ୍ୟ ସେଇ ଅହଂ । ଅହଂ ଶୂନ୍ୟହୋଇ ପ୍ରତ୍ୟାଖ୍ୟାନ କରିପାରିଲେ ତା'ର ମୂଲ୍ୟ ଅଛି କାରଣ ସେ ଅପଶକ୍ତି ଆଉ ଥରେ ସଂଗଠିତ ହୋଇ ଆକ୍ରମଣ କରିବାକୁ ଆସେନାହିଁ । ତେବେ କିପରି ଅହଂଶୂନ୍ୟ ହୋଇ ପ୍ରତ୍ୟାଖ୍ୟାନ କରିହେବ ? ତାହା ସେପରି କିଛି ସହଜ କର୍ମ ନୁହେଁ । ତଥାପି ଚେଷ୍ଟା କରାଯାଇପାରେ । ଯଦି ଶହେ ଟଙ୍କିଆ ନୋଟ୍ଟିଏ ଆଗରେ ଥୁଆ ହେଲା, ସେଥିରେ ସପକ୍ଷ ବିପକ୍ଷ ସୃଷ୍ଟି କରି ବିଚଳିତ ହେବା ବିଧି ନୁହେଁ । ସେ ଖଣ୍ଡେ କାଗଜମାତ୍ର, ସେଥିରେ ମନରେ କୌଣସି ପ୍ରତିକ୍ରିୟା ନାହିଁ । ତଥାପି ଏ ଔଦାସୀନ୍ୟ ମଧ୍ୟ ଅହଂ ଅଧିକାର କରିବାକୁ ଚାହିଁପାରେ । ଅହଂକୁ ସବୁବେଳେ ବୁଝିଯାଇ କହିବାକୁ ହୁଏ 'Not you !' ଅହଂ କହୁଥାଏ – ମୁଁ କଲି, ମୁଁ କହିଲି, ମୁଁ ମାରିଲି, ମୁଁ ତାଡ଼ିଲି । ତାକୁ ସେମିତି କିଛି ରାଗାରାଗି ନ କରି ଖୁବ୍ ସରଳ ଅବିଚଳିତ ଭାବରେ କୁହାଯାଇପାରେ 'Not you ! not you !' ଭଗବାନଙ୍କ ବିଷୟ ସେ କ୍ଷେତ୍ରକୁ ନ ଆଣିବା ଭଲ । କାରଣ ଅହଂ ସେ ସବୁ ଚାହୁଁଥାଏ, ସେଥିପାଇଁ କେବଳ କହିବା କଥା 'Not you !' ମୁଁ ଏତେ ଜ୍ଞାନୀ, ମୁଁ ଏଡ଼େ ସାଧକ... 'Not you ! not you' ମା କହିଛନ୍ତି "When ever you discover, your ego, knock it on the nose !" ସେ ସେଇଭଳି ମାଡ଼ ଖାଇବା ଉଚିତ । କିନ୍ତୁ ମାଡ଼ଖାଇ ସେ କେତେ ସହିପାରୁଛି, କେତେ ତ୍ୟାଗ କରୁଛି ସେ କେତେ ଭଲ, କେତେ ଉଦାର, ତାର ଖରାପ ହୋଇଯିବା ଉପରେ ସମସ୍ତେ ତାକୁ ସହାନୁଭୂତି ଦେଖେଇବା ଉଚିତ୍ – ଇତ୍ୟାଦି ଯୁକ୍ତି ପ୍ରୟୋଗ କରିପାରେ । ଏଣୁ ମାରାମାରି, ରାଗାରାଗି କିଛି ନାହିଁ । ଅତି ନିର୍ବିକାର, ଅବିଚଳିତ ଭାବରେ କହିବାକୁ ହେବ 'Not you ! Not you !'... ଏଥିରେ କିଛି କିଛି ଶତ୍ରୁପକ୍ଷ ସହିତ ଲଢ଼େଇ ନ ହେଲେ ମଧ୍ୟ ଇଲାକା ଜୟ କରାଯାଇ ପାରେ ।



## ୩୦-୬-୮୩

କିଛି ମନେ ନାହିଁ । ବୋଧହୁଏ ସେମିତି କିଛି ଉଲ୍ଲେଖନୀୟ ନାହିଁ । ଯେଉଁ ଚିନ୍ତାଟି ଅଜ୍ଞାତରୁ ଆସି ଏକଭଳି ଅଜ୍ଞାତରେ ଲୀନ ହୋଇଗଲା ତାକୁ ନୀରବ ସମ୍ମାନ ଜଣାଇବା ଛଡ଼ା ଅନ୍ୟ ଉପାୟ ନାହିଁ । ମନେହେଉଛି ଅନ୍ଧାର ରାତିରେ ନିଘଞ୍ଚ ଜଙ୍ଗଲ ଭିତରେ ଯାଉ ଯାଉ କୌଣସି ଏକ ରାତ୍ରିଚର ପକ୍ଷୀର ଡେଣା ସାମାନ୍ୟ ହଲିଗଲା । ଅନ୍ଧାରରୁ ଆସି ପକ୍ଷୀଟି ଅନ୍ଧାରରେ ଲୀନ ହୋଇଗଲା । ବ୍ୟାସ୍, ସରିଗଲା ।



Man is a triple web ମଣିଷ ଯଦି କେଞ୍ଚୁଆ ଭଳି କେବଳ ସ୍ନାୟୁଚାଳିତ ଶରୀରଟିଏ ହୋଇଥାନ୍ତା, ତେବେ ତା'ର କୌଣସି ସମସ୍ୟା ନ ଥାନ୍ତା । ବିକଳ୍ପରେ ଯଦି ସେ କେବଳ ବିଚାରଶୀଳ ମନଟିଏ ମାତ୍ର ହୋଇଥାନ୍ତା, ତେବେ ବି ସବୁ କଥାକୁ ତର୍କକରି ସେଇ ସୀମା ଭିତରେ ବୁଝିଦେଇ ସନ୍ତୁଷ୍ଟ ରହିପାରନ୍ତା ! ପ୍ରାଣିକ ଜନ୍ତୁ ହୋଇଥିଲେ ମଧ୍ୟ ସେଇକଥା । କିନ୍ତୁ ସେ ଏକ ଜଟିଳ ଜୀବ । ତିନୋଟି ପୃଥକ୍ ଭୂମିରେ ତ୍ରିଧା ବିଭକ୍ତ ତାର ଚେତନା-ଶରୀର, ପ୍ରାଣ ଓ ମନ ତିନି ଭୂମିରେ ପ୍ରତ୍ୟେକର ଭିନ୍ନ ପ୍ରକାର । ଏଣୁ ଅଧିକାଂଶ କ୍ଷେତ୍ରରେ ଏମାନଙ୍କର ପରସ୍ପର ବିରୋଧ ହେତୁ ଆମର ଅଧିକାଂଶ ଦୁଃଖ ଜନ୍ମେ । ଶରୀର ଚାହୁଁଛି ମିଠା ଖାଇବାକୁ, ପାଟିର ସ୍ୱାଦ ହିଁ ତା'ର ଏକମାତ୍ର ଧ୍ୟେୟ ଏବଂ କାମ୍ୟ । କିନ୍ତୁ ମନ କହୁଛି 'ତୋର୍, ତୁ ବହୁମୂତ୍ର ରୋଗୀ, ଖାଇଲେ ମରିବୁ !" ଶରୀରର ଯାଚନାଟିକୁ ବିଚାରଶୀଳ ମନ ଭୟ ଦେଖାଇକରି ଦମନ କରିଦେଲା ! ଏମିତି ଏମିତି ପ୍ରାୟ ପ୍ରାଣ ଏବଂ ଶରୀରର ସବୁ ଆସକ୍ତିକୁ ସବୁ କାମନାକୁ ମନ ଦ୍ୱାରା ମନ ମାଧ୍ୟମରେ ଶାସନ କିମ୍ବା ଲାଳନ କରାଯାଇ ଥାଏ । ମନ ହିଁ ସେଥିପାଇଁ ରାଜା, କିନ୍ତୁ ମନଟି ନିଜେ କୌଣସି ଏକକ ପଦାର୍ଥ ନୁହେଁ । ମନ ଏକ ଅତି ବିସ୍ତୀର୍ଣ୍ଣ ଭୂମି, ତାର କେଉଁଠି କେଉଁକଥା । ସେ ନିଜେ ନିଜକୁ ବିରୋଧ କରି ବହୁକାଳଧରି ଲଢ଼େଇ କରୁଥିବାର ଅନୁଭବ ମଧ୍ୟ କମ ଅଧିକେ ସମସ୍ତଙ୍କର ରହିଛି । ତେବେ ମନର ପ୍ରଶ୍ନକୁ କେମିତି ଏବଂ କିଏ ସମାଧାନ କରିବ । ଅଭ୍ୟାସବଶତଃ କେବଳ 'ଚୈତ୍ୟ' ବା ଆତ୍ମା କହିଦେବାର କିଛି ଅର୍ଥ ନାହିଁ । ମନ ପ୍ରାୟ ଯୋଡ଼ିଏ ପକ୍ଷ ସୃଷ୍ଟିକରି ବହୁତର୍କ ଯୁଦ୍ଧ ପରେ ବଳବତ୍ତର ପକ୍ଷର ଜୟଦ୍ୱାରା ସମାଧାନ କରିଥାଏ । ତେବେ ଏଭଳି କେତୋଟି ମୌଳିକ ଏବଂ ସନାତନ ପ୍ରଶ୍ନ ରହିଛି, ଯାହାପାଇଁ ତର୍କ ମାଧ୍ୟମରେ ଉତ୍ତର ନାହିଁ । ଯଥା – ମୁଁ ଏଭଳି ଏ ଜଗତରେ କାହିଁକି ବଞ୍ଚିଛି ବା ବଞ୍ଚିବି । ମୁଁ ଏଠିକି ମୋଟ ଉପରେ କାହିଁକି ଆସିଲି ? ଏମିତି ଏମିତି ଯୋଉ ସୋଉ ସୋଉ ଏଠୁ ଚାଲିଯିବା ଛଡ଼ା ମୋର ଅନ୍ୟ ବିକଳ୍ପ ଅଛି କି ? ଯାର ଉତ୍ତର ମନ ସ୍ତରରେ ଖୋଜିଲେ ମିଳୁନାହିଁ । ଏଣୁ ଗଭୀର କୂଅ ଭିତରକୁ ବରଡ଼ି ଲଗାଇ 'କୁସା ବିଲେଇ'କୁ ଓହ୍ଲେଇ ଦିଆଯାଏ । ଏଥିରେ ପ୍ରତ୍ୟେକ ଜୀବ ଆତ୍ମା ଗୋଟିଏ ଗୋଟିଏ ପ୍ରଶ୍ନଚିହ୍ନ ଧରି ବସେ । ଗଭୀର ଅନ୍ଧାର ଭିତରେ ଏ ଅସମାହିତ ଲୁହାପରି ଅନମନୀୟ ପ୍ରଶ୍ନ ଓହ୍ଲେଇ ଯାଇଥାଏ । କେତେ ତଳକୁ କହିହେବ ନାହିଁ । ସେ ଅନ୍ଧାରରେ ସେ ଘୂରିବୁଲେ । ତା'ପରେ ହଠାତ୍ କ'ଣ ଗୋଟେ ଆଙ୍କୁଡ଼ାରେ ଲାଗିଯାଏ, ସେ ସେଇ ପ୍ରଶ୍ନକୁ କହେ, "ମୁଁ ତୋର ଉତ୍ତର, ମୁଁ ହିଁ ସମାଧାନ, ମୁଁ ସେଇ ଯାହାକୁ ତୁ ଏତେକାଳ ଖୋଜୁଥିଲୁ" । ତାକୁ, ତେଣିକି ଆସ୍ତେ ଅତି ଯତ୍ନରେ ଉତ୍ତୋଳନ କରାଯାଏ । ସେ କିଏ, କ'ଣ ତା'ର ରୂପରେଖ, କିପରି, ଏ ସମସ୍ତ ବିଷୟରେ କୌଣସି ଧାରଣା ନ ଥାଏ । ତାକୁ ଅନୁଭବର ପ୍ରତ୍ୟକ୍ଷ ଆଲୋକକୁ ଆଣିବା ପର୍ଯ୍ୟନ୍ତ ସେ ଏକ ରହସ୍ୟ । ପ୍ରଶ୍ନକୁ ବିଚିତ୍ର ଢଙ୍ଗରେ ସନ୍ତୁଷ୍ଟ, ଆଶ୍ୱସ୍ତ ଏବଂ ନିଯୁକ୍ତ କରି ରଖିଥିବା କ'ଣ ଗୋଟେ ହୁଏତ ।' ଏହିପରି ଭାବରେ ପ୍ରାୟ ମନର ଗୁରୁତମ ପ୍ରଶ୍ନର ସମାଧାନ ଅନ୍ତସ୍ଥଳରୁ ହୁଏ । ସେଥିରେ ମନ୍ତ୍ର ସମାହିତ ହେଲେ ଏ ପ୍ରଶ୍ନକ୍ରିୟା ବା ଯୋଗକ୍ରିୟା ସମ୍ଭବ । କେବେ କେବେ ଭିତରେ ଲୁଚିଥିବା ପଥରଟା ଦେହରେ ମଧ୍ୟ ଆଙ୍କୁଡ଼ା ଲାଗିଯାଇ ପାରେ । ସେ ମଧ୍ୟ ସେହିପରି ଟାଣେ । କିନ୍ତୁ ଭାବିଲେ, ଆବାହନ କଲେ ଆସେ ନାହିଁ କି ଆଙ୍କୁଡ଼ାକୁ ମଧ୍ୟ ଛାଡ଼େ ନାହିଁ । ଟଣା ଓଟରା ପରେ ଆଙ୍କୁଡ଼ାକୁ ହିଁ ହୁଗୁଳା ହୋଇ ଖସିଯିବାକୁ ପଡ଼େ ।

କେତେ ପ୍ରକାରେ କେତେ ଅଚିହ୍ନିତ ମାଧ୍ୟମରେ ସେ ଆମକୁ କ'ଣ ଟିକିଏ ଦେଇ ଦେଇ ଚାଲିଯାଏ । ତାହା ଆମେ ଲକ୍ଷ୍ୟ କରୁନା, ତା'ର ପ୍ରତିଦାନ କଥା ମଧ୍ୟ ଚିନ୍ତାକରୁନା । ଧରାଯାଉ ଜଣେ ଡାକ୍ତର ଆସିଛନ୍ତି । ରୋଗୀଟିର କପାଳରେ ଜର, ତାକୁ ଆଉଁସି ଦେଇ ପରୀକ୍ଷା ପରେ – କିଛି ଔଷଧ ଦେଇ ସେ ଚାଲିଯା'ନ୍ତି । ଆମେ ତା'ର ପ୍ରତିଦାନରେ ଟଙ୍କା କିଛି ଦେଇ ଋଣମୁକ୍ତ ହୋଇଯାଉ । କିନ୍ତୁ ସେ ଯେଉଁ ସେବା, କରୁଣା, ଶ୍ରଦ୍ଧା ଇତ୍ୟାଦି ଦେଲେ ତା'ର ପ୍ରତିଦାନ କ'ଣ କେବଳ ଟଙ୍କା ? ତାକୁ ସୁଝିବାକୁ ହେଲେ ସେଇପରି ଏକ ପରିସ୍ଥିତିରେ ସେଇ ଡାକ୍ତରଙ୍କୁ ସେବା ଓ ଔଷଧ ଦେବାକୁ ପଡ଼ିବ । ତାହା ସମ୍ଭବ ନୁହେଁ । ସେପରି ଆଉ ସମସ୍ତ ଘଟଣା । ଏଠି ବୁଝିବାକୁ ହେବ ଯେ ପ୍ରତି ମୁହୂର୍ତ୍ତରେ ବିଭିନ୍ନ ମାଧ୍ୟମରେ ସେଇ ଜଣେ କେବଳ ଦେଇ ଚାଲିଛି ତାର ଅଜସ୍ର କରୁଣା । ସେଥିପାଇଁ ଏକମାତ୍ର ଦେୟ କୃତଜ୍ଞତା, କିଏ ଯଦି ପଦେ କଥା କହି ମୋର ଭାବାନ୍ତର ସୃଷ୍ଟି କରିଦେଲା, ମୋତେ ପଡ଼ିଗଲା ବେଳେ ଧରିନେଲା, ପଡ଼ିଥିଲେ ଉଠାଇ ଦେଲା – ତା ପାଦତଳେ ଲୋଟିଯିବା କଥା । କେବଳ କୃତଜ୍ଞତା ହିଁ ବିଭୁଦାନର ଏକମାତ୍ର ଉତ୍ତର ।



## ୧-୮-୮୩

(୧) ମା କହିଛନ୍ତି ଯେ Sincerity ଦ୍ୱାରା ସମସ୍ତ ସମ୍ଭବ, ଏପରିକି ଈଶ୍ୱର ପ୍ରାପ୍ତି ପାଇଁ ଏଇ sincerity ହିଁ ପ୍ରଧାନ ଉପାୟ । Sincerity କହିଲେ ଯାହା ବୁଝାଯାଏ ହୁଏତ ତାକୁ ଓଡ଼ିଆ କରିଦେଲେ ଟିକିଏ ଅନ୍ୟ ବୁଝାଯାଏ । ତାର ଓଡ଼ିଆ ପ୍ରତିଶବ୍ଦ ହେଲା ଆନ୍ତରିକତା । ଯେପରି ଦୈହିକତା, ମାନସିକତା, ସେହିପରି ଆନ୍ତରିକତା । ଯେଉଁଠାରେ ଦେହର ସହଯୋଗ ସେଇଠି ଯେପରି ଦୈହିକତା ରହୁଛି, ସେପରି ଅନ୍ତରର ସହଯୋଗ ହେଲେ ହିଁ ଆନ୍ତରିକତା ଆସିବ । ଇଂରାଜୀରେ କହିଲେ ହେବ Involvement of soul, ଯେଉଁଠି ଦେହ ମନ ପ୍ରାଣର ସମସ୍ତ ଶକ୍ତି ଠୁଳ ହୋଇ ସର୍ବତୋଭାବେ ନିୟୋଜିତ ହୁଅନ୍ତି ସେଇଠି ଅନ୍ତରର ସହଯୋଗ ଘଟେ ଏବଂ ତାହା ହିଁ ଆନ୍ତରିକତା । ଏକାଗ୍ର ହୋଇ କୌଣସି କାର୍ଯ୍ୟ କଲାବେଳେ ମନ ନିଯୁକ୍ତ ରହେ, କିନ୍ତୁ ଦେହ ହୁଏତ ବିରୋଧ କରେ । ଏଣୁ ଏକାଗ୍ରତା, ଆନ୍ତରିକତାର ଲକ୍ଷଣ ହୋଇପାରେ, କିନ୍ତୁ ଆନ୍ତରିକତା ନୁହେଁ । ଆନ୍ତରିକତାରେ ଶ୍ରଦ୍ଧା ଅଛି । କାର୍ଯ୍ୟକୁ ଭଲପାଇବାକୁ ହେବ । ଅଭ୍ୟାସ ପାଇଁ ଚିତ୍ରକଳା ଖୁବ୍ ଉପାଦେୟ । ଯେଉଁଠି ସୃଷ୍ଟିଶୀଳତା ଅଛି, ଆନନ୍ଦ ଅଛି, ସେଇଠି ଶ୍ରଦ୍ଧାଜାତ ହେଉଥିବାରୁ ଆନ୍ତରିକତା ଆସେ । ଶ୍ରଦ୍ଧା ନଥିଲେ ପ୍ରାଣିକ ସହଯୋଗ ଆସିବ ନାହିଁ । ଏଣୁ ଯଦି ମାତ୍ର ୨୩୦ ଭୋଲ୍ଟ ବିଦ୍ୟୁତ୍ ଶକ୍ତି ମିଳୁଛି, ତାକୁ ଏଠି ସେଠି ଖୁଚୁରାରେ ବାଣ୍ଟି ନ ଦେଇ ଯଦି ଗୋଟିଏ କାର୍ଯ୍ୟରେ ଲଗାଯାଏ ତେବେ ସେଇଠି ଅବଶ୍ୟ ଫଳ ମିଳିବ । ଅବଶ୍ୟ ୨୩୦ ଭୋଲ୍ଟରେ ଯାହା ସମ୍ଭବ ସେତିକି ମାତ୍ର ହୋଇ ପାରିବ । କିନ୍ତୁ ଅନ୍ତଃପୁରୁଷଙ୍କର ସହଯୋଗ ହେଲେ ଶକ୍ତିର ସୀମା ରହେ ନାହିଁ, କାରଣ ତାହା ମହାଜାଗତିକ ଅଖଣ୍ଡ ଶକ୍ତିର ମୂଳ ଉତ୍ସ ସହିତ ସଂଯୁକ୍ତ ହୋଇଥାଏ । ଏଣୁ ଏହି ଆନ୍ତରିକତା ବଳରେ ଅସାଧ୍ୟ ସାଧନ କରାଯାଇପାରେ ।

(୨) ଆମର ଜ୍ଞାନ କାହିଁକି ଯଥେଷ୍ଟ ନୁହେଁ ? ତା'ର କାରଣ ହେଲା ଯେ ସାଧାରଣତଃ ତାହା ଇନ୍ଦ୍ରିୟଲବ୍ଧ ଏବଂ ଆଂଶିକ । ଗୋଟିଏ ଟେବୁଲ୍ ବିଷୟରେ ଜଣେ ସାଧାରଣ ବ୍ୟକ୍ତିଙ୍କୁ ବିଶେଷ କିଛି ଜଣାଯାଏ ନାହିଁ । ସେ ମୋଟାମୋଟି ଭାବରେ ତା'ର ରଙ୍ଗ, ଆକାର, ଗଠନ, ଓଜନ ଇତ୍ୟାଦି ବିଷୟରେ କଳ୍ପନାକରି ଗୋଟିଏ ନାମ ସହିତ ଏ ରୂପଟିକୁ ସଂଯୁକ୍ତକରି ତାକୁ ବୁଝିଥାଏ । କିନ୍ତୁ ଯେଉଁ କାରିଗର ତାକୁ ତିଆରି କରେ, ସେ ଏ ସମସ୍ତ ବ୍ୟତିରେକ ଆଉ କିଛି ଜାଣେ, ଯଥା ତାହା କେଉଁ ଜାତିର କାଠ, କିପରି କଟାଯାଇଛି, ଯୋଡ଼ାଯାଇଛି, ତା'ର ସୁବିଧା ଅସୁବିଧା କ'ଣ, ତା'ର ଗୁଣ କ'ଣ । ଯଦି ଜଣେ ପଦାର୍ଥବିଦ୍‌କୁ ପଚରାଯାଏ, ସେ ଆହୁରି ଧାପେ ଆଗକୁ ବୁଝିଥିବାର ଜଣାଯାଏ । ସେ କହନ୍ତି ଯେ ଟେବୁଲ୍‌ର ମୌଳିକ ଉପାଦାନ ହେଉଛି 'ଅଣୁ' ଅଣୁର କେନ୍ଦ୍ରରେ ଏମିତି ନ୍ୟୁକ୍ଲିୟସ, ଏମିତି ବିଦ୍ୟୁତାଣୁମାନେ ତା ଚାରିପଟେ ବୁଲନ୍ତି, ଏତେ ଜୋରରେ ବୁଲନ୍ତି ଯେ ଆମକୁ ଗୋଟିଏ ସାନ୍ଦ୍ର କଠିନ ବସ୍ତୁଟିର ଅନୁଭବ ମିଳିଥାଏ । କିନ୍ତୁ ପ୍ରକୃତରେ ଟେବୁଲ୍ ଯାହା ଦିଶୁଛି, ତାହା ନୁହେଁ । ଜଣେ ତ୍ରିକାଳଦ୍ରଷ୍ଟା ସାଧକଙ୍କୁ ପଚାରିଲେ ସେ ସେହି ମୁହୂର୍ତ୍ତରେ ଟେବୁଲ୍‌ର ସମଗ୍ର ଅତୀତ, ଭବିଷ୍ୟତ ଓ ବର୍ତ୍ତମାନକୁ ଦେଖି ଉତ୍ତର ଦେବେ । କେଉଁ ଜଂଗଲରେ କେଉଁ ଗଛର କାଠ, କିପରି ଆସି ଏ ରୂପନେଇଛି ଏବଂ ଭବିଷ୍ୟତରେ ତାହା ପୁଣି କିପରି ମାଟିରେ ପରିଣତ ହେବ ସେ ସମସ୍ତ ସେ ଦେଖିପାରନ୍ତି । ଅତଏବ ଏଭଳି ତାରତମ୍ୟରୁ ସୂଚନା ମିଳୁଛି ଯେ ଆମେ କେବଳ ନ୍ୟୁନତମ ଜ୍ଞାନରେ ହିଁ ସନ୍ତୁଷ୍ଟ ରହିଯାଉ । ସେଗୁଡ଼ିକ ସୁବିଧାପାଇଁ ପୁଟୁଳା କରି ଦିଆଯାଇ ଥାଏ – Packet knowledge ଭଳି ଯେମିତି ଭଣ୍ଡାରରେ ଡାଲି, ସୋରିଷ ପ୍ୟାକେଟ୍‌ରେ ମିଳେ, ପ୍ରାୟ ସେମିତି ଆମକୁ ଯଦି ପଚରାଯିବ 'Integral Yoga' କଣ ? ଆମେ କହିବା ଓ Integral ଯୋଗ – ମାନେ ଯୋଗ ସମନ୍ୱୟ, ବାସ୍, ହୋଇଗଲା ବା ଏହିପରି କିଛି । ପ୍ରକୃତରେ ଜାଣିଥିବା ଲୋକ ଜାଣିଛନ୍ତି ବୋଲି କହନ୍ତି ନାହିଁ । ଯେପରି ସେ ବିଜ୍ଞାନବେତ୍ତାଙ୍କୁ ଯଦି ପଚରାଯାଏ – "ଏ ଟେବୁଲ୍ ବିଷୟରେ କ'ଣ ଆପଣ ଯାହା କହିଲେ ତାହା ଶେଷକଥା ?" ସେ ବିନୟ ଓ ବିଶ୍ୱାସର ସହିତ କହିବେ, "ଆଦୌ ନୁହେଁ, ଆହୁରି ଜାଣିବାକୁ ଚେଷ୍ଟା ଚାଲିଛି ।" ଏଣୁ ଇନ୍ଦ୍ରିୟ ବା ମନ ସ୍ତରରେ କୌଣସି ଜ୍ଞାନ ସଂପୂର୍ଣ୍ଣ ନୁହେଁ ବା ଯଥେଷ୍ଟ ନୁହେଁ ।



**୨-୮-୮୩**

ଏବେ ଟୋକାମାନେ କୌଣସି ମୂଲ୍ୟକୁ ସ୍ୱୀକାର ନ କରି ଅସଦାଚାରୀ ହୋଇଗଲେ । ସଦାଚରଣ ଏକ ଯୁଗାଶ୍ରୟୀ ବ୍ୟଭିଚାରୀ ଗୁଣ । କାରଣ କ'ଣ ସତ୍ ଏବଂ କ'ଣ ଅସତ୍, ତାହା ନିର୍ଦ୍ଦିଷ୍ଟଭାବରେ ଜଣାଯାଇ ନାହିଁ । ଆଉ ମଧ୍ୟ ପ୍ରତି ଯୁଗରେ ପ୍ରତ୍ୟେକ ବ୍ୟକ୍ତିର ଏ ଅନୁଭବ ଆସେ । ସେତେବେଳେକୁ ସେ ଜୀବନର ଅପରାହ୍ନରେ ଥାଇ ଉଠିଆସୁଥିବା ତରୁଣମାନଙ୍କୁ ଦେଖି ଏହିପରି ହତାଶା ପ୍ରକାଶ କରିଥାଏ । ଏପରିକି ପ୍ଲାଟୋ ଭଳି ତରୁଣଙ୍କୁ ଦେଖି ମଧ୍ୟ ସକ୍ରେଟିସ୍ ଅବିକଳ ଆଗଭଳି କ୍ଷୋଭପ୍ରକାଶ କରିଥିଲେ । ତେବେ ମୁଠାଏ ମୁକ୍ତାକୁ ବୁଣିଦେଲେ କିଏ ବାଲିରେ, କିଏ କାଦୁଅରେ କିଏ ବା ଗୋବରରେ ପଡ଼ି ମଳିନ ହୋଇଯିବ । ଆବୃତ ହୋଇ

ଦୂରକୁ ଦିଶିବ ନାହିଁ । କିନ୍ତୁ ଖୁବ୍ ଦୃଢ଼ଭାବେ କର୍ମଟାଏ ହୋଇଗଲେ ସେମାନେ ନିଜର ଶୁଦ୍ଧ ରୂପରେ ପୁଣି ବାରବାର ହୋଇ ଫେରି ଉଠିବେ । ଆସ୍ତୁର କରୁଣ ନାହିଁ । ଆଚରଣର ବାରିଚାର ସ୍ପଷ୍ଟ ନୁହେଁ । ଏଣୁ ଲକ୍ଷ୍ୟଟିକୁ ବୁଝିଗଲେ ପ୍ରୟୋଜନ ହେଲେ ବୁଝାଇବେଇ ହେବ, ଯଦି କିଏ ଶୁଣିଲା ତ ଭଲ, ନ ହେଲେ ନାହିଁ – ଚିନ୍ତନ ମୂଳକୁ ବାରଂବାର ବୋହଲାଉଥିବା, ପ୍ରକାଶ କରୁଥିବା ଆମର କର୍ତ୍ତବ୍ୟ ।



## ସମସ୍ୟା

ଯଦି ଶତ୍ରୁପକ୍ଷ ଆମକୁ ଜାଣିଛନ୍ତି ବୋଲି ବିଶ୍ୱାସ ଏବଂ ଅନୁଭବ ହେଉଛି, ତେବେ ସେମାନଙ୍କ ବୃତ୍ତିଗୁଡ଼ିକର ସନ୍ଧାନ ହେବାକୁ ଆମକୁ ମଧ୍ୟ ଜାଣିବାକୁ ହେବ । ଶତ୍ରୁପକ୍ଷକୁ ଷଠିକ୍ଭାବେ ଚିହ୍ନଟ କରି ପାରିଲେ ହିଁ ଏ ମାର୍ଗରେ ଅନେକ ସୁବିଧା ହୋଇଯାଏ । ସାମାନ୍ୟ ଆଚରଣର ଫଳରେ ଭଳି ସେମାନେ ଅଧିକାଂଶ ସମୟରେ ଆମର ଯୋଜନାକୁ ଭ୍ରଷ୍ଟ କରିଥାନ୍ତି । କିଏ ଧ୍ୟାନ କରିବାକୁ ବସିଲେ ଠିକ୍ ସେତିକି ବେଳେ ପାଞ୍ଚଟା ଭୁଆ ଏକାନ୍ତିକୁ ପଥର ଉପରେ ହେଚିବାର ବୁମ୍ବାଳ ଶବ୍ଦ ପଡ଼ିଶାଘରୁ ଆସି ବାଧାତ ସୃଷ୍ଟିକରେ । ମନ ସାମାନ୍ୟ ଶାନ୍ତକୁ ଆସିଲାବେଳେ ଆଉ କ'ଣଟାଏ ଘଟି ତାକୁ ଚଞ୍ଚଳ କରିଦିଏ । ଏସବୁ ଦୈନନ୍ଦିନ ଅନୁଭବର ବିଷୟ । ତେବେ ଯଦି ଆମେ ବୁଝିପାରୁଥାଉ ଯେ ସେମାନେ ଆମର ଶତ୍ରୁପକ୍ଷ, ବିଘ୍ନ କରିବାକୁ ଏପରି ରୂପ ନେଉଛନ୍ତି, ତେବେ ବିକ୍ଷୋଭ କମିଯାଏ । ଲାଭେ ଯେ ଏମାନେ ଜଣିବା ହେତୁରୁ ଜଣାଯାଉଛି ଆମେ ଠିକ୍ ମାର୍ଗରେ ଚାଲିଛୁ । ନ ହେଲେ କାହିଁକି ସେମାନେ ଭ୍ରୂକ୍ଷେପ କରନ୍ତେ । ତା'ପରେ ଆଉ ଟିକିଏ ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ ଏମାନେ କିଛିବି ନିଜ ଆଡ଼ରେ ନାହାନ୍ତି । ତାଙ୍କୁ ଆଉ କେହି ଏଥିରେ ନିଯୁକ୍ତ କରୁଛି । କିଏ ସେ ? ସେ କ'ଣ ଜଗତ୍ ପ୍ରକୃତି ଯେ ସବୁପ୍ରକାର କର୍ମ ପାଇଁ ଦାୟୀ, ଏପରିକି ଆମର ମନ, ବଂଶ, ଆବେଗ, ପ୍ରତ୍ୟେକ ପଶ୍ଚାତରେ ସେ ହିଁ ବିଦ୍ୟମାନ । ତେବେ ଆଉ ଚିନ୍ତା କଣ ? ଠିକ୍ ଅଛି, ପ୍ରକୃତି ଆମକୁ ଯେମିତି ଚାଳିତ କରୁଛି, ତାଙ୍କୁ ମଧ୍ୟ ସେହିପରି ଚାଳିତ କରୁଛି । ଆହୁରି ଭିତରକୁ ବୁଦ୍ଧି ପ୍ରବେଶ କଲେ ଜଣାଯାଏ ଯେ ପ୍ରକୃତି ପଶ୍ଚାତ୍ରେ ପୁରୁଷ ଆଉ ଜଣଙ୍କର ଇଚ୍ଛା ରହିଛି । ସେଇ ଆଦିପୁରୁଷଙ୍କ ଇଚ୍ଛାରେ ଏ ସମସ୍ତ ଜଗତପ୍ରବାହ ଚାଲିଛି । ତବେ ଅନୁକୂଳ-ପ୍ରତିକୂଳ ସପକ୍ଷ-ବିପକ୍ଷ, ଶତ୍ରୁ-ମିତ୍ର ସବୁ ମାତ୍ର ସେଇ ଏକ ସତ୍ୟ, ଏବଂ ଅଦ୍ୱିତୀୟମ୍ ବା ଏଭଳି ସ୍ଥିତି କେବଳ ବୁଦ୍ଧିର ବୋଧଗମ୍ୟ ହୋଇ ପାରିଲେ ହିଁ ବିରୋଧ ବିଲୁପ୍ତ ହୋଇଯାଏ । ସର୍ବମ୍ ଖଳ୍ୱିଦଂ ବ୍ରହ୍ମ-ଏଥିରେ ବିରୋଧ କାହିଁ ?



କାହାକୁ ଶ୍ରଦ୍ଧା କରିବା, ଭକ୍ତି କରିବା ଏକ ଆଭ୍ୟନ୍ତରୀଣ ବ୍ୟାପାର । କିନ୍ତୁ ସାଧାରଣତଃ ଏ ବ୍ୟକ୍ତିଗତ ଭକ୍ତି ବା ପ୍ରେମ ପ୍ରକଟ ହେଲେ କିଛି କର୍ମ ନିଷ୍ପନ୍ନ ହୁଏ । ଭଲପାଉଥିବା ପୁଅକୁ ଯତ୍ନକରା ଯାଏ, ଜାମା କିଣିଦିଆ ଯାଏ, ମିଠା ଖୁଆଇ ଦିଆଯାଏ । ଯାହା 'ଲୋକେ' ତାହା 'ଦେବେ' । Divine କୁ ଜାଣିବାକୁ, ଶ୍ରଦ୍ଧା କରିବାକୁ ସଂକଳ୍ପବଦ୍ଧ ସାଧକ ଯଦି କେବଳ ଜ୍ଞାନରେ ଏବଂ ଅପ୍ରକଟିତ ଭକ୍ତିରେ ରହିଗଲା, ତେବେ ସେ ଭୂଇଁ ଛାଡ଼ିଗଲା । ତାକୁ ଭୂମି ସ୍ପର୍ଶ କରିବାକୁହେବ, ନ କଲେ ଯୋଗ ଅପୂର୍ଣ୍ଣ, ଜ୍ଞାନ ଭକ୍ତି ମଧ୍ୟ ଅସଂପୂର୍ଣ୍ଣ । ଯେତେବେଳେ ଉପନିଷଦୀୟ ଅବ୍ୟକ୍ତ ପରମପୁରୁଷଙ୍କର ଧ୍ୟାନରେ ସାଧାରଣ ସାଧକ ନିମଗ୍ନ ରହିଲା ସେତେବେଳେ ତାକୁ ଜାଗତିକ ଭୂମିକୁ ଓହ୍ଲାଇ ଆଣିବା ପାଇଁ ପ୍ରତୀକରୂପେ ପ୍ରତିମାଟିଏ ଧରେଇ ଦିଆଗଲା । ଅବ୍ୟକ୍ତଙ୍କର ଜ୍ଞାନଧ୍ୟାନରୁ ବିଚ୍ୟୁତ ହୁଅନାହିଁ, ଅଥଚ ଏ ପ୍ରତୀକ ମାଧ୍ୟମରେ ଭକ୍ତି ପ୍ରେମ ଅଭ୍ୟାସ କର । ଏହାଙ୍କର ସେବା ଅବ୍ୟକ୍ତଙ୍କର ସେବା ବୋଲି ବିଚାର କର । ଫଳହେଲା ଯେ ଏହି ପ୍ରକାର ପ୍ରତିମାକୁ ମୂଳ ସତ୍ୟ ଏବଂ ଚୂଡ଼ାନ୍ତ ଧେୟରୂପେ ଜ୍ଞାନକରି ତାହାରି ସେବାରେ ଅଧିକାଂଶ ରହିଗଲେ । ସେବାରେ ଲୌକିକତା ପ୍ରବେଶ କରିଗଲା । ପ୍ରତିମାର ମାନବୀକରଣ କରିବା ଦ୍ୱାରା ସମସ୍ତ ବିଷୟ ସାଧାରଣ ସ୍ତରରେ ହିଁ ରହିଗଲା । ସେଇଠି ତାମସିକ ଅଜ୍ଞାନ, ମୋହ, ନିଜପର ଜ୍ଞାନ, ଅହଂକାର, ଲୋଭ, ଅସୂୟା ଆଦି ବିକଟ ବିକୃତିମାନ ଦେଖାଦେଲେ । କେବଳ ଜ୍ଞାନରେ ରହିବା ଶୂନ୍ୟଚାରିତା, କେବଳ ସ୍ଥୂଳପିଣ୍ଡରେ ରହିଯିବା ତାମସିକତା । ବିଶୁଦ୍ଧ ଅନାଶ୍ରିତ ଭକ୍ତି ମାନସିକତା, ଜଡ଼ାଶ୍ରୟୀ ଭକ୍ତି ବା ପ୍ରେମ, ମୋହର ଅନ୍ୟରୂପ । ଏଣୁ ଅତି ସତର୍କ ରହି ଏ ମାର୍ଗରେ ଯିବାକୁହେବ । ଧ୍ୟାନ ଧାରଣା ଯଥେଷ୍ଟ ନୁହେଁ, ପଠନ ପାଠନ ଯଥେଷ୍ଟ ନୁହେଁ, ବାଚନିକ ଭକ୍ତି ଯଥେଷ୍ଟ ନୁହେଁ । ଘଣ୍ଟ ଘଣ୍ଟାଦି, ଧୂପଦୀପ ନୈବେଦ୍ୟ ଉପଚାର ମାତ୍ର ଯଥେଷ୍ଟ ନୁହେଁ । ଏ ସମସ୍ତଙ୍କୁ ସମାନୁପାତିକ ଧାରଣ କରିବା ହେଉଛି ଯୋଗ । ଯେଉଁମାନେ ଧ୍ୟାନ କରନ୍ତି ଗ୍ରନ୍ଥ ଚତୁଷ୍ଟୟ (Essays on the Gita, Life Divine, Synthesis of Yoga, Savitri) ପଢ଼ନ୍ତି, ସେମାନେ ଭାବନ୍ତି ଯେ, ଫୁଲ୍... ଆଣି ସମାଧିପୀଠରେ ଚଢ଼େଇବା ବୋଧହୁଏ ନିମ୍ନସ୍ତରର ସ୍ଥୂଳ କର୍ମ, ତା'ର ପ୍ରୟୋଜନ ନାହିଁ । ସେମାନେ ବୁଝି ପାରନ୍ତି ନାହିଁ ଯେ ତାଙ୍କ ଭିତରେ ଲୁଚିଥିବା କାର୍ପଣ୍ୟରୁ ହିଁ ଏଭଳି ଯୁକ୍ତି ବାହାରିଥାଏ । ସେମାନେ ଢଳିଲା ପାଣିକୁଗୋଡ଼ ଦେବେ ନାହିଁ । ହାତ ମୁଠା ଫିଟିବ ନାହିଁ । କେବଳ ବିନା ଶ୍ରମ ଏବଂ ବ୍ୟୟରେ ଯାହା ହୋଇଗଲା । କିଛିହେଲେ ତ୍ୟାଗ ସ୍ୱୀକାର କରିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି, କିଛି କର୍ମ କରିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ପାଇଁ ଧୂପକାଠି ଆଉ କିଏ ରଖିଥିବ । ଫୁଲଟିଏ କିଏ ହାତରେ ଧରେଇଦେବ - ତେବେ ସେମାନେ ତାକୁ ଅର୍ପଣ କରିଦେଇ ପାରନ୍ତି । ଯାହାକୁ ସେ ଏକମାତ୍ର ଧେୟ ରୂପେ ଗ୍ରହଣ କରିଛନ୍ତି, ତାକୁ ଶ୍ରଦ୍ଧା କରନ୍ତି ବୋଲି ଭାବନ୍ତି, ତାଙ୍କ ପାଖରେ ସ୍ୱତଃପ୍ରବୃତ୍ତ ହୋଇ ଧୂପକାଠିଟିଏ ନିଜେ ଆଣି ଅର୍ପଣ କରିବାର ଦାୟିତ୍ୱ ଏବଂ ସେଥିରୁ ମିଳୁଥିବା ଆନନ୍ଦ ଯେ ପାଇନାହାନ୍ତି । ଏଣୁ କିଛି କର୍ମ କରିବାକୁ ହେବ, କିଛି ତ୍ୟାଗ କରିବାକୁ ହେବ । ଅବଶ୍ୟ ଅହଂକାର ଏବଂ ଅନ୍ୟରପ୍ରଶଂସା ଲୋଭରୁ ସଂପୂର୍ଣ୍ଣ ମୁକ୍ତ ରହିବାକୁ ହେବ । ଯେ କେବଳ କାଚ ବା ପଥରକୁ ଘଷୁଥାନ୍ତି ଏବଂ ଚନ୍ଦନରେ ଧୋଉଥାନ୍ତି, ଭାବୁଥାନ୍ତି ଯେ ଆଉ କିଛି ପ୍ରୟୋଜନ ନାହିଁ ସେମାନେ ମଧ୍ୟ ସୂକ୍ଷ୍ମ ତାମସିକତାରେ ରହିଯାନ୍ତି । ସବୁଠାରୁ ଚମତ୍କାର ହେଉଛି, ଧ୍ୟାନ ଅଧ୍ୟୟନ

ଜ୍ଞାନ, ଭକ୍ତି-ପ୍ରେମ-ଶ୍ରଦ୍ଧା, ତ୍ୟାଗ, କର୍ମ ଅଭ୍ୟାସରେ ରହି, ନିଜେ ଶ୍ରଦ୍ଧାରେ ଫୁଲଟିଏ ଅର୍ପଣ କରିବା ଏବଂ ବିସ୍ମୃତ ଶ୍ରଦ୍ଧାରେ ଆଉ ଅନ୍ୟ ଭକ୍ତଙ୍କ ପାଇଁ ଫୁଲଟିଏ ଟେକିଧରିବା । ପାଞ୍ଚଟି ଫୁଲ ଯଦି ମିଳିଛି, ଗୋଟିଏ ନିଜେ ଅର୍ପଣ କରି ଆଉ ଚାରୋଟି ଚାରିଜଣ ଶ୍ରଦ୍ଧାବାନ୍ ଭକ୍ତଙ୍କ ହାତରେ ଅର୍ପିତ ହୋଇଗଲେ ଅତି ଉତ୍ତମ, ପାଞ୍ଚଟି ଫୁଲ ନିଜେ ଅର୍ପଣ କରିବା ଶ୍ରେୟସ୍କର ନୁହେଁ । ଏପରିକି, ପ୍ରୟୋଜନ ହେଲେ ସବୁଯାକ ଫୁଲ ଅନ୍ୟ ବ୍ୟକ୍ତି ଏବଂ ସେମାନଙ୍କ ଚେତନାରେ ଯାଇ ପ୍ରଭୁପଦରେ ନିବେଦିତ ହୋଇଯିବା ଆହୁରି ଚମତ୍କାର । ଏଥିରେ ଲୁଚିରହିଥିବା ଅହଂକାରର ନାଶହୁଏ । ଭକ୍ତି ପନ୍ଥରେ ମଧ୍ୟ ଅହଂ ଥାଏ, ତାକୁ ଏଡ଼େଇବାର ଏହା ଏକ ଉତ୍ତମ ପନ୍ଥା । ଅନ୍ୟକୁ ମୁଁ ଦେଇପାରୁଛି ବୋଲି ଭାବିଦେଲେ କିନ୍ତୁ ସବୁଗଲା । ପୁଣି ଅହଂ ଆସିଗଲା । ଏଥିପାଇଁ ସତର୍କ ରହିବାକୁ ହେବ ।



## ୫-୮-୮୩

ଭଲପାଇବା କହିଲେ କ'ଣ ବୁଝାଏ ? ନିଜର ବୋଲି ଅଧିକାର ସାବ୍ୟସ୍ତ କରିବାର ପ୍ରବୃତ୍ତି, ତାକୁ ନିଜର ବିଭିନ୍ନ ପ୍ରକାର ତୃପ୍ତି ସାଧନ କରିବାକୁ ବ୍ୟବହାର କରିବାର ଅଭିଳାଷକୁ ଆମେ ସାଧାରଣତଃ ଭଲପାଇବା ବୋଲି ବୁଝିଥାଉ । ଜଣେ ସେଥିପାଇଁ ରସଗୋଲା ଭଲପାଏ, ବିଛଣାଚାଦର ଭଲପାଏ ଏବଂ ପ୍ରାୟ ସେହିପରି ଆଉ ଗୋଟିଏ ମଣିଷକୁ ଭଲପାଏ । ସବୁବେଳେ ବିଚାର କରୁଥାଏ ସେ ଭଲପାଉଥିବା ବ୍ୟକ୍ତି ବା ବସ୍ତୁ କି ପ୍ରକାର ସୁଖ କେତେ ପରିମାଣରେ ତାକୁ ଦେବାପାଇଁ ସମର୍ଥ । ସେଇ ଅନୁପାତରେ ପ୍ରୟୋଜନୀୟତା, ଉପାଦେୟତା, ମହାର୍ଘତା, ମୂଲ୍ୟ ନିରୂପଣ ହୁଏ । ଏ ଅର୍ଥରେ ଭଲପାଇବା ଅର୍ଥ ସାଉଁଟି ଆଣିବା, ଶୋଷଣ କରିବା, ସଂପୂର୍ଣ୍ଣ ସ୍ୱାର୍ଥପାଇଁ ଜନ୍ତୁପରି ସମସ୍ତଙ୍କୁ ବ୍ୟବହାର କରିବା । ଭଲପାଇବା କିନ୍ତୁ ଠିକ୍ ଏହାର ବିପରୀତ । ଆମ ଚାରିପଟେ ଯେଉଁ ଅହଂ କେନ୍ଦ୍ରିତ ପାଚେରୀଟି ପଡ଼ିଛି, ଯେଉଁଠି 'ମୁଁ' ଏବଂ 'ମୋର' ପ୍ରଭୃତି ନିଜକୁ ଜାହିର କରନ୍ତି, ତାକୁ ଭାଙ୍ଗିଦେବା, ପ୍ରସାରିତ କରିଦେବା, ଉଲ୍ଲଙ୍ଘନ କରିଯିବା । ଭଲପାଇବାରେ ମୂଳ ବିଚାର ହେଉଛି ମୁଁ କେତେ ପାଇବି ନୁହେଁ, ମୁଁ କେତେ ଦେଇପାରିବି । କୌଣସି ପ୍ରତିଦାନର ଆଶା ନ ରଖି ସଂପୂର୍ଣ୍ଣ ନିଷ୍କାମ ରହି ଯେଉଁ ତ୍ୟାଗ ସ୍ୱୀକାର କରାଯାଏ, ଯେଉଁ ଉଦାରପଣ ଯେଉଁ ବ୍ୟାପ୍ତି ଅର୍ଜନ କରାଯାଏ, - ତାହାର ନାମ ଭଲପାଇବା । ତାର ନିକଟତମ ଦୃଷ୍ଟାନ୍ତ ହେଉଛି ବାତ୍ସଲ୍ୟ । ହୋଇପାରେ ତାହା ପ୍ରକୃତିଦତ୍ତ ଏକ ମୌଳିକ ପ୍ରବୃତ୍ତି । ଏପରିକି ଇତର ଜନ୍ତୁ ସ୍ତରରେ ମଧ୍ୟ ତାହା ବିଦ୍ୟମାନ । କିନ୍ତୁ ସେଥିରୁ ସୁଦ୍ଧା ସୂଚନା ମିଳେ ଯେ କେବଳ ସ୍ୱାର୍ଥପାଇଁ ବଞ୍ଚିବା ଏବଂ ଜଗତକୁ ବ୍ୟବହାର କରିନେବା କୌଣସି ଦୁର୍ଲଙ୍ଘ୍ୟ ନିୟମ ନୁହେଁ । ଅନେକ ମାତ୍ରାରେ ସ୍ୱାର୍ଥକୁ ଅତିକ୍ରମ କରାଯାଇ ପାରେ, ତେବେ ଏପରି ଏକ ପଦାର୍ଥ ଯଦି ଥାଏ ଯାହାକୁ ଭଲପାଇଲେ ଆଉ କାହାକୁ ଭଲପାଇବାକୁ ପଡ଼ିବ ନାହିଁ, ଯାହାକୁ ଜାଣିଗଲେ ଆଉ କିଛି ଜାଣିବାର ପ୍ରୟୋଜନ ନାହିଁ, ତେବେ ସେଇଠାରେ ହିଁ ଭଲପାଇବାର ଚୂଡ଼ାନ୍ତ ପରୀକ୍ଷା ଏବଂ ପରିଣତି । ଯଦି ଅହଂର ବାଡ଼ ଘୁଞ୍ଚିଯାଇ ପରିଶେଷରେ (ସର୍ବତ୍ରଂ ଇହ ବିଦ୍ୟତେ) ଏ ସମସ୍ତଙ୍କୁ ଏକ ସତ୍ତାରୂପେ ଗ୍ରହଣ କରିନେଲା,

ତେବେ ଆଉ ବାଛବିଚାର ନାହିଁ । ପରିବ୍ୟାପ୍ତ ଶୁଦ୍ଧ ଏବଂ ପବିତ୍ର ହୋଇଯିବା – ଭଲପାଇବା । ସେଥିରେ ସ୍ୱାର୍ଥର ଆମିଷଗନ୍ଧ ଆଉ ରହିବ ନାହିଁ । ତେବେ ସେଇଠି ପହଞ୍ଚିବାକୁ ହେଲେ ଅଭ୍ୟାସର ପ୍ରୟୋଜନ । ମା'ଙ୍କ ଉପଦେଶ ହେଲା, Love, ove Love as much as you can, ଯେତେ ପାରୁଛ ସେତେ ଭଲପାଅ । ଅର୍ଥାତ୍ ଯେତେ ପାରୁଛ ସେତେ ବିସ୍ତୃତ ହୋଇଯାଅ । ତାହାହେଲେ ହିଁ ଜ୍ଞାନ ସମ୍ଭବ, ଭଲ ନ ପାଇଲେ କାହା ବିଷୟରେ ଜାଣିବା ସମ୍ଭବ ନୁହେଁ, ଭଲ ନ ପାଇ କର୍ମ ମଧ୍ୟ କରିହେବ ନାହିଁ । ଯଦି କରାଯାଏ, ସେଥିରେ ଆନ୍ତରିକତା ରହିବ ନାହିଁ । ଭଲପାଇବା ଏକ ସାଧନା, ଏହାର ଶୁଦ୍ଧ ରୂପ, ଜ୍ଞାନନିଷ୍ଠିତ ରୂପ ହେଉଛି ଯୋଗ – ଭକ୍ତିଯୋଗ ।



୭-୮-୮୩

ଯେତେବେଳେ ସୁଯୋଗ ମିଳୁଛି, ଇଚ୍ଛା ହେଉଛି, ସେତେବେଳେ ଧ୍ୟାନସ୍ଥ ହୋଇଯିବା ଭଲ । ଗଭୀର ସ୍ନିଗ୍ଧ ଶୀତଳ ନୀରବତାରେ ଅଳ୍ପ ସମୟ ପାଇଁ ହେଲେ ସୁଧା ସ୍ନାନକରି ଆସିଲେ ସଂସାରର ସଂଘର୍ଷରେ ଅଧିକ ଯୋଗ୍ୟତାର ସହିତ ଯୋଗଦେଇ ହେବ । ଏହାର ଅର୍ଥ ନୁହେଁ ଯେ ରାସ୍ତାଘାଟରେ ସବୁକାମ ବନ୍ଦକରି କେବଳ ଆଖିବୁଜି ଜଣେ ଧ୍ୟାନକରି ଚାଲିଥିବ । ତା'ହେଲେ ସେଇଟା ହେବ ତାମସିକ ଏବଂ ନିରର୍ଥକ । ତା' ବାହାରେ ଧ୍ୟାନପାଇଁ ଆଖିବୁଜି ନିଶ୍ଚଳ ବସିବା ମଧ୍ଯ ଅପରିହାର୍ଯ୍ୟ ନୁହେଁ । ଭିତରେ ପ୍ରଶାନ୍ତ ନୀରବତାକୁ ଧାରଣ କରି ସୁଦ୍ଧା ଘୋର କର୍ମରେ ପ୍ରବୃତ୍ତହେବାର ସମ୍ଭାବନା ଅଛି । ପ୍ରକୃତରେ ତାହା ହିଁ ସାଧନାର ଉଦ୍ଦେଶ୍ୟ ।



୭-୮-୮୩

ରବର୍ଟ ବ୍ରୁସ୍ ବୋଲି ଜଣେ ରାଜା ଥିଲେ । ସେ ବାରମ୍ବାର ବିଫଳ ହୋଇ ହତାଶ ହୋଇଯାଉଥିଲେ । ଦିନେ ସେ ଦେଖିଲେ ଯେ ଗୋଟିଏ ଗେଣ୍ଡା କାନ୍ଥରେ ଚଢ଼ି ଚାଲିଛି । ଅସଂଖ୍ୟ ଥର ଖସିବା ପରେ ମଧ ସେ ଚଢ଼ିବାରୁ ନିବୃତ୍ତ ହେଉନାହିଁ । ପରିଶେଷରେ ସେ କାନ୍ଥର ଶୀର୍ଷଦେଶରେ ପହଞ୍ଚିଯାଇଛି । ସେଥିରୁ ସେ ପ୍ରୋତ୍ସାହିତ ହୋଇ ସଫଳତା ଅର୍ଜନ କରିଥିଲେ । ଆମର ସାମର୍ଥ୍ୟ କେତେ ଯେ ଆଗରୁ ଆଗକୁ ବଢ଼ି ଚାଲିଥିବ ଏବଂ କୌଣସି ବିପର୍ଯ୍ୟୟ ହେବ ନାହିଁ ? ପାଦେ ଆଗେଇଲେ ଦୁଇପାଦ ଘୁଞ୍ଚି ଆସିବାର ସମ୍ଭାବନା ମଧ୍ୟ ଅଛି । ଯେଉଁମାନେ ଆଗକୁ ଛକି ବସିଛନ୍ତି ସେମାନେ ଦୁଷ୍ଟ ଶକ୍ତି, ଏପରିକି ଦେବତାମାନେ ମଧ୍ୟ ଆମର ବିରୋଧାଚରଣ କରିଥାନ୍ତି । ସେଥିପାଇଁ ଅଗ୍ରଗାମୀ ଋଷିକୁ ଯୋଗଭ୍ରଷ୍ଟ କରିବାର ଭୂୟସୀ ଉଦାମ ପୁରାଣରେ

ଲିପିବଦ୍ଧ ରହିଛି । ଉର୍ବଶୀ ମେନକା ରୂପରେ ପ୍ରଲୁବ୍ଧ କରି ସ୍ଖଳନ କରାଇବାର ଯୋଜନା ସେମାନଙ୍କର ଜାରି ରହିଥାଏ । Monkey on the greased pole ଭଳି ବ୍ୟାପାର । ମାଙ୍କଡ଼ଟି ଚିକ୍କଣ ଖମ୍ବରେ ତିନିଫୁଟ ଚଢ଼ିଗଲେ ଦୁଇଫୁଟ ଖସି ଆସେ । ଅନ୍ତତଃ ପ୍ରତି ପ୍ରୟାସରେ ଦୁଇଫୁଟ ହରାଇଲେ ସୁଦ୍ଧା ଫୁଟେ ଉପରକୁ ତ ଯାଉଥାଏ । ସେପରି ସାଧନାରେ ସ୍ୱଳ୍ପ ଅଗ୍ରଗତି ହେଲେ ମଧ୍ୟ ତାହା ଅନନ୍ତ କଲ୍ୟାଣକାରକ ହୋଇଥାଏ । ଏବଂ କଦାପି ତାହା ଆରମ୍ଭ ବିନ୍ଦୁରୁ ତଳକୁ ଖସିଯିବାକୁ ଦିଏ ନାହିଁ । ପ୍ରୟାସ ମଧ୍ୟ କଦାପି ବୃଥାଯାଏ ନାହିଁ । ନହି କଲ୍ୟାଣ କୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି – ଏ ଜନ୍ମରେ କୌଣସି ଲକ୍ଷ୍ୟରେ ପହଞ୍ଚି ନ ପାରିଲେ ସୁଦ୍ଧା ଅନନ୍ତ ଯାତ୍ରାର କିଛି ବାଟ ତ' ପାରିହୋଇ ଯାଏ । ସେଇ ଅନୁସାରେ ଶୁଚିନାଂ ଶ୍ରୀମତାଂ ଗେହେ ଯୋଗୋ ଭ୍ରଷ୍ଟୋଽଭିଜାୟତେ । ସେ ଉପଯୁକ୍ତ ଭୂମିରେ ରୂପ ପରିଗ୍ରହ କରେ । ଆହୁରି ଆଗକୁ ଯିବାର ସୁବିଧା ସୁଯୋଗ ପାଇଥାଏ । ତଥାପି ଆଗଭଳି ସାଧନା କରୁଥିବା ବ୍ୟକ୍ତିଙ୍କ ପାଇଁ ଉଦାହରଣ ହେଲା Monkey on the greased pole ମାଙ୍କଡ଼ଟିଏ ବିଚାରା କିନ୍ତୁ ଦିନେ ସେ ଉପରେ ପହଞ୍ଚିବ – ଏ ଲକ୍ଷଣ ଦିଶୁଥିବା ପର୍ଯ୍ୟନ୍ତ ନିରାଶ ହେବାର କାରଣ ନାହିଁ ।



## ୮-୮-୮୩

ଭୟ କଣ ? ଭୟ ହେଉଛି ଅଜ୍ଞାନ । ଦେହାତ୍ମ ପ୍ରତ୍ୟୟରୁ ହିଁ ଭୟର ସଂଚାର ହୁଏ । ମୃତ୍ୟୁ ଏହାର ଆଦି ବିନ୍ଦୁ । ରୋଗ, ଶୋକ, ଜରା, ଶତ୍ରୁ, ମିତ୍ର, ନିନ୍ଦା, ଅପମାନ, ଦସ୍ୟୁ, ବ୍ୟାଘ୍ର, ସର୍ପ ଆଦି ସମସ୍ତ କିଛି ଭୟ ପଶ୍ଚାତ୍‌ରେ ଏଇ ମୃତ୍ୟୁ ଭୟ ପ୍ରଚ୍ଛନ୍ନ ରହିଥାଏ । ମୃତ୍ୟୁକୁ ଜ୍ଞାତ ବା ଅଜ୍ଞାତସାରରେ ଆମେ ଭୟକରୁ । ମୃତ୍ୟୁ ଧ୍ରୁବ କିନ୍ତୁ ଅପରିମେୟ । ସେ ଆସିବ, କିନ୍ତୁ କେବେ ଆସିବ କହିହେବ ନାହିଁ । ଏତିକି ମାତ୍ର ଅନିଶ୍ଚିତତା ପାଇଁ ପ୍ରତ୍ୟେକ ଲୋକ ଜୀବନ ଥିବା କାଳରେ ଭାବିଥାଏ ଯେ ସେ ମରିବ ନାହିଁ । ଯାର ପଛରେ ଦୁଇଟି କଥା ଅଛି । ଗୋଟିଏ ହେଲା ଯେ ମୃତ୍ୟୁ ଅତି ପ୍ରାଞ୍ଜଳ ଏବଂ ନିର୍ଦ୍ଦିଷ୍ଟ ହୋଇଗଲେ ସଂସାରର ରୂପ ସଂପୂର୍ଣ୍ଣ ବଦଳିଯିବ । ଶରୀରର ପତନ ନ ଘଟିଲେ ସଂସାରର ଚକ୍ର ସମ୍ଭବ ନୁହେଁ । ମୃତ୍ୟୁ ଜୀବନର ଉପାଦାନ । କିନ୍ତୁ ତାର ବିପରୀତ ଧର୍ମ । ମୃତ୍ୟୁକୁ ଘୋଡ଼େଇ ରଖିବାର ଅର୍ଥ ଜୀବନକୁ ଅଧିକ ଜୀବନଧର୍ମୀ କରିବା । ଦ୍ୱିତୀୟ କଥା ହେଲା ଯେ ମରିବା କେବଳ ଜଡ଼ଧର୍ମ । ଶରୀର ହିଁ ମରେ । ମଣିଷ ଭିତରେ ଯେ ମରିବ ନାହିଁ ବୋଲି କହୁଥାଏ ସେ ପ୍ରକୃତରେ ମରେ ନାହିଁ । ଆତ୍ମାର ଅନୁଭବକୁ ଶରୀରରେ ଯୋଡ଼ିବାରୁ ଯେତେପ୍ରକାର ଭୟ । ଭୟ ଏକ ପ୍ରକାର ଶାସକ । ଯେ ସମ୍ଭ୍ରମବୋଧ ଦିଏ, ବିନୟୀ କରେ । କିନ୍ତୁ ତାକୁ ସୁଦ୍ଧା ଅତିକ୍ରମ କରିଯିବାକୁ ହେବ । ଏକଦା ଜଣେ ଚୀନା ସିଦ୍ଧପୁରୁଷଙ୍କ ପାଖକୁ ଆଉ ଜଣେ ସିଦ୍ଧ ଆସିଥିଲେ । ଆଳାପ ଆଲୋଚନା ବେଳେ ଅତି ନିକଟରୁ ଦୀର୍ଘ ଗର୍ଜନ ଶୁଣାଗଲା । ନବାଗତ ଜଣକ ଚମକିପଡ଼ିଲେ । ଆଉ ଜଣକ ଅଳ୍ପ ହସି କହିଲେ – 'ତୁମର ଏତକ ବି ଯାଇନାହିଁ' । ତା' ଆରଦିନ ସେ ଗାଧୋଇସାରି ଫେରିବାବେଳେ ଦୁଆର ପାଖରେ ପାଦଧୂଳି ପୋଛି ପଶିଲାବେଳକୁ ଚମକି ପଡ଼ିଲେ । ଯେଉଁଠି ସେ ପାଦ

ପୋଛନ୍ତି ଠିକ୍ ସେଇଠି ତାଙ୍କ ଗୁରୁଙ୍କ ନାମ ଲେଖାଥିଲା । ଆଗନ୍ତୁକ ସିଦ୍ଧ ପାଖରେ ଥିଲେ । ସେ ହିଁ ସେ ନାଁ'ଟିକୁ ସେଇଠି ଲେଖିଥିଲେ । ସେ ମଧ୍ୟ ଅଟ୍ଟହସି କହିଲେ 'ତୁମର ଏତକ ଯାଇନାହିଁ' । ତାତ୍ପର୍ଯ୍ୟହେଲା ଯେ ଭୟକୁ ଅତିକ୍ରମ କରିବାକୁ ହେବ । ମା'ଙ୍କୁ ଡରିବା ଅପେକ୍ଷା ପ୍ରେମକରିବା, ଭଲପାଇବା ଶ୍ରଦ୍ଧା କରିବା ହେଉଛି ଶ୍ରେୟସ୍କର । ସେଥିରେ ଭୟ ଏବଂ ଆତ୍ମସଂକୋଚରୁ ରକ୍ଷାମିଳି ପାରିବ ।



## ୯-୮-୮୩

ବ୍ୟସ୍ତହେଲେ କୌଣସି କାର୍ଯ୍ୟ ହୁଏନାହିଁ । ସମୟର ଅଭାବ ଏକ ଆପେକ୍ଷିକ ଧାରଣା । ଗତିର ବେଗ ବଢ଼ିଗଲେ ସମୟ ସେହି ଅନୁପାତରେ ଚାଲିଯାଉଛି ଭଳି ଲାଗେ । ତେବେ ଅନ୍ୟ ବିଷୟରେ ବ୍ୟସ୍ତରହି ଯେ କୌଣସି କାର୍ଯ୍ୟକଲେ ତାହା ଅଧିକ ସମୟ ନେବ ଏବଂ ଅସଂପୂର୍ଣ୍ଣ ରହିବ । ଘଣ୍ଟା ଦେଖି ବ୍ୟସ୍ତହୋଇ ପଡୁଥିବା ବ୍ୟକ୍ତି ଯୋତା ଖୋଜି ଛତାର ଚିନ୍ତା କରୁଥାଏ । ଫଳରେ ଯୋତା ପାଏନାହିଁ, ଫିତା ବାନ୍ଧିପାରେ ନାହିଁ । ଛତା ଖୋଜି ଆହୁରି ବ୍ୟସ୍ତହୁଏ, ଫଳରେ ଯେଉଁ ଛୋଟ ଛୋଟ କାର୍ଯ୍ୟଗୁଡ଼ିକୁ ସେ ଅତି କମ୍ ସମୟରେ ଚମତ୍କାର ଭାବେ ସୁଚାରୁରୂପେ କରିପାରିଥାନ୍ତା, ସେଥିରେ ତା'ର ଅସଂଖ୍ୟ ତ୍ରୁଟି ହୁଏ ଏବଂ କାର୍ଯ୍ୟ ସଂପୂର୍ଣ୍ଣ ହୁଏନାହିଁ । ସମୟ ମଧ୍ୟ ଅଧିକ ଲାଗେ । ଏପରି ପରିସ୍ଥିତିରେ ମା' କହୁଛନ୍ତି ଯେ ଯେଉଁ କାମଟି କରୁଛ ତାକୁ ସଂପୂର୍ଣ୍ଣ ମନେଦେଇ କର, ଅନ୍ୟ କଥା ଆଦୌ ଚିନ୍ତାକର ନାହିଁ । ଏଥିରେ ତ' କାମଟି ସୁନ୍ଦରରୂପେ ହେବ । ସମୟ ମଧ୍ୟ ନଷ୍ଟ ହେବ ନାହିଁ । ବ୍ୟସ୍ତତା ବିକ୍ଷିପ୍ତ କରେ, ସମୟର ଅପଚୟ କରେ । ମନ ଏବଂ ଶରୀରର ସହଯୋଗକୁ ବ୍ୟାହତ କରେ । ଏଣୁ ସାଧନା ପାଇଁ ବ୍ୟସ୍ତତା ଏକ ବାଧକ ।



## ୧୦-୮-୮୩

ଜୀବନ ସ୍ୱାଭାବିକ ହେଲେ ସରଳ ହୋଇଯାଏ । ଭୋକକଲେ ଖାଇବା, ନିଦମାଡ଼ିଲେ ଶୋଇବା । ଏକ ଅତି ସ୍ୱାଭାବିକ କ୍ରିୟା । ଆମେ କିନ୍ତୁ ଏସବୁ ଘଣ୍ଟା ଦେଖି କରୁ । ହେଇ ଦଶଟା ବାଜିଗଲା – ଖାଇବାକୁହେବ । କିମ୍ବା ରାତ୍ର ମାତ୍ର ନ'ଟା ହୋଇଛି, ଏତେବେଳକୁ କ'ଣ ଶୋଇବ ମ ? ଫଳରେ ଭୋକ ନ ଥାଇ ଖିଆଯାଏ ଏବଂ ନିଦମାଡୁଥିଲେ ମଧ୍ୟ ବଳପ୍ରୟୋଗ କରି ଜାଗି ରହିବାକୁ ହୁଏ । ଏଥିରେ ଯେଉଁ ବିରୋଧ ହୁଏ, ଏବଂ ସଂଘର୍ଷ ହୁଏ, ତାର କୁଫଳ ସୁଦୂରପ୍ରସାରୀ । ତେବେ କ'ଣ ଯେତେବେଳେ ଯାହା ମନହେଲା ତା' କରିବ ? ନା, ସେଥିରେ ଅନ୍ୟପ୍ରକାର ଅନେକ ବିପଦ ରହିଛି । ଧରାଯାଉ – ଖାଇବା, ଆମେ ସାଧାରଣତଃ ଜିହ୍ୱାର ଲାଳସା ମେଣ୍ଟାଇବା ପାଇଁ ଖାଇଥାଉ । ଶରୀରର ପ୍ରୟୋଜନ ଉପରେ କୌଣସି ଦୃଷ୍ଟି ନ ଦେଇ ଯାହା ଭଲ

ଦିଶୁଛି, ଭଲ ବାସୁଛି ଏବଂ ଜିଭକୁ ସ୍ୱାଦିଷ୍ଟ ଲାଗୁଛି - ସେଥିରୁ ଗୁଡ଼ାଏ ଭକ୍ଷିଯାଉ । ଏ ପ୍ରକାର ଲୋଭର ଫଳ ସମସ୍ତଙ୍କୁ ଜଣା । ଜଣେ ସାଧୁ ଥିଲେ ହରିଶଙ୍କରରେ । ସେ କେବେହେଲେ ଗଛ ତଳେ ରହନ୍ତି ନାହିଁ । ଏଣୁ ସେଇଠି ହରିଶଙ୍କର ପ୍ରପାତ ପାଖରେ ଗୋଟିଏ ପଥର ଉପରେ ସେ ବସି ରହିଥାନ୍ତି । ଭୋକକଲେ - ଦିନେ ଦୁଇ ଦିନରେ ଥରେ ହାତବଢ଼େଇ ଯେ କୌଣସି ଗଛର କଅଁଳ ପତ୍ର ଗଣ୍ଡେ ଚୋବେଇ ଦିଅନ୍ତି ଏବଂ ତଳେ ଝରଣା ପାଣି ପିଇଦିଅନ୍ତି । ସେତିକିରେ ତାଙ୍କର କ୍ଷୁଧା ମେଣ୍ଟିଯାଏ ଏବଂ ସେ ବେଶ୍ ସୁସ୍ଥ ଥାଆନ୍ତି । ତାଙ୍କର ପ୍ରଶାନ୍ତ ମୁହଁ ଦର୍ପଣ ପରି ଝଟକୁଥାଏ । ଶରୀର ଭଳି ବାଧ୍ୟ ସରା ଆଉ ନାହିଁ । ଯାହା ଦେଲେ ସେ ତା' ଗ୍ରହଣ କରିନିଏ । ଜଠର ଭିତରେ ସବୁ ଖାଦ୍ୟ ସମାନ । ସେଇଠି କଷା - ପିତା ବାଛବିଚାର ନାହିଁ । ତାହା କେବଳ ଜିହ୍ୱାଗ୍ରର କଥା । ତା ବାହାରେ food is not the only source of energy ବୋଲି ମା' ସର୍ବଦା କହିଛନ୍ତି । ଉପାୟ ଜାଣିଗଲେ ସୂର୍ଯ୍ୟଲୋକରୁ ଅଖଣ୍ଡ ଶକ୍ତି ଆହରଣ କରାଯାଇପାରେ । ମଣିଷର ଖାଇବା କଥା ଭାବି ମା'ଙ୍କୁ ହସ ମାଡୁଥିଲା । "How silly to put matter into matter" - ଜଡ଼ବସ୍ତୁ ଭିତରେ ଆଉ ଗୋଟାଏ ଜଡ଼ପିଣ୍ଡ ଭର୍ତ୍ତିକରିବା କ୍ରିୟାଟି ହେଉଛି ଖାଇବା - ଖାଇବାରେ ସଚେତନତା ପ୍ରୟୋଜନ । ଅତିଗୁଡ଼ାଏ ତୀକ୍ଷ୍ଣ, ରୂକ୍ଷ, ବିଦାହୀନ କଟୁ ଅନ୍ନ, ଲବଣଯୁକ୍ତ ଖାଦ୍ୟ ସବୁ ରାଜସିକ ତା'ର ଫଳ 'ଦୁଃଖ ଶୋକାମୟପ୍ରଦା' ବାସି, ପୋଚା, ଉଚ୍ଛିଷ୍ଟ, ଅମେଧ୍ୟ ଇତ୍ୟାଦି ତାମସିକର ଆହାର । ଫଳ-ଆଳସ୍ୟ, ନିଦ୍ରା, ଜଡ଼ତା, - କିନ୍ତୁ ଆୟୁ, ଶକ୍ତି, ବଳ ଆରୋଗ୍ୟ ସୁଖ, ପ୍ରୀତି ବିବର୍ଦ୍ଧନକାରୀ ଖାଦ୍ୟ ହେଉଛି - ସାତ୍ତ୍ୱିକ । ତାର ଲକ୍ଷଣ ହେଲା, ରସଯୁକ୍ତ ଚିକ୍କଣ, ଶରୀର ମନକୁ ସୁସ୍ଥିର କରିପାରୁଥିବା ଏବଂ ଖୁବ୍ ହୃଦ୍ୟ ହୋଇଥିବା ଆହାର । ମନେହେଉଛି, 'ରସଗୋଲା' ହିଁ କହିବାର ତାତ୍ପର୍ଯ୍ୟ । ତେବେ ସେହିଭଳି ବିଭିନ୍ନ ରସଯୁକ୍ତ (କେବଳ ମଧୁର ନୁହେଁ) ଆହାର ଅଳ୍ପ ଉଷ୍ମଥିବା ଅବସ୍ଥାରେ ଭୋଜନ କରାଯାଇପାରେ । କେତେ ଉଷ୍ମମଥିବ ଆୟୁର୍ବେଦ ଶାସ୍ତ୍ର କହୁଛି ଯେ ଶୀତଦିନେ ଆବୃତ ଶରୀରର ଯେତିକି ଉଷ୍ମମ ସେତିକି ହେବା ଉଚିତ୍ ।



## ୧୧-୮-୮୩

ଆମକୁ ପଚରାଯାଉଛି - Are you willing ? କାହିଁକି ପଚରାଯାଉଛି ? ତାର କାରଣ, ହେଲା ଯେ ଆମର ସ୍ୱୀକୃତି ସ୍ପଷ୍ଟ ନୁହେଁ । କିନ୍ତୁ ବସ୍ତୁଟିଏ ଅତି ସ୍ପଷ୍ଟଭାବରେ ତା'ର ସ୍ୱୀକୃତି ଦେଇଦିଏ, ପ୍ରତିବାଦ କରେ ନାହିଁ । ମଣିଷର ଗୋଟାଏ ଭାଗ ପ୍ରସ୍ତୁତ ଏବଂ ଇଚ୍ଛା କରୁଥିବା ସ୍ଥଳେ ଆଉଗୋଟିଏ ଭାଗ unwilling ବା ଅନିଚ୍ଛୁକ, ଦୋଦୋପାଞ୍ଚ ଇତସ୍ତତଃ ହେଉଥାଏ । ଏଣୁ ମଣିଷର ସବୁ ଅଂଶକୁ ପରୀକ୍ଷାକଲା ପରେ ଯଦି ଏକତ୍ରିତ, ଏବଂ ଏକାଗ୍ର ଇଚ୍ଛାଟିଏ ବାରିହେଉଥାଏ, ତେବେ କହିବାକୁ ହୁଏ ଯେ ହଁ ମୁଁ ରାଜି । - ବଳାତ୍କାର କଲେ ବେଳେ ବେଳେ ବସ୍ତୁ ମଧ୍ୟ ପ୍ରତିବାଦ କରେ । ବେଶୀ ଜଣାପଡ଼େ, ଗ୍ରନ୍ଥଟିଏ ପଢ଼ିଲାବେଳେ, ଯଦି ଚେତନା ପ୍ରସ୍ତୁତ ନୁହେଁ ତେବେ ଗ୍ରନ୍ଥଟିକୁ ଆୟତ୍ତ କରିବାକୁ ଚେଷ୍ଟାକଲେ ବିଫଳ ହେବାକୁ ହୁଏ । ଏଣୁ ଗ୍ରନ୍ଥମାନଙ୍କର କୃପାକୁ ଅପେକ୍ଷା କରିବାକୁ ହୁଏ । ସେମାନେ ରାଜି ନ ହେବା ଯାଏଁ, ଧୈର୍ଯ୍ୟ ରଖିବାକୁ

ପଡ଼େ । ଧରାଯାଉ ଜଣେ ଅତି ବିଦ୍ୱାନ ବରିଷ୍ଠ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିବାକୁ ଆମେ ଯାଉଛୁ । ସେ ଯଦି କିଛି ନ କହି ନୀରବ ବସି ରହିଲେ ଆମେ ତାଙ୍କ ତେଣାଧରି ଓଟାରିବା ସମ୍ଭବ କିମ୍ବା ସମୀଚୀନ କି ? ସେଇଠି କର୍ତ୍ତବ୍ୟ ହେଲା, ସମ୍ମାନ ଏବଂ ସମ୍ଭ୍ରମ ସହିତ ଅପେକ୍ଷା କରିବା । ସେ ଯେତେବେଳେ ଉଠିବେ ତାଙ୍କୁ ସାଥିରେ ନେଇ ଆସିବା । ସେହିପରି ଗ୍ରନ୍ଥ । ସେ କୃପା କରିବାକୁ ଚାହାନ୍ତି, ଆସିବାକୁ ଚାହାନ୍ତି । ତାଙ୍କୁ ମଧ୍ୟ ବହୁକାଳ ଅପେକ୍ଷା କରିବାକୁ ହୋଇଥାଏ । ସେ ଦୟାପୂର୍ବକ ନିଜେ ଧରାଦିଅନ୍ତି। ଉଦାହରଣ ସ୍ୱରୂପ ଛୋଟ ମଣିଷଟିଏ ବିଶାଳ ଗଛକୁ ହାତ ବଢ଼େଇଲେ କେତେବାଟ ଯିବ । ଅନେକ ଉଚ୍ଚ ଡାଳରେ ଫଳ ପାଚିଛି, ସେ ଛୁଇଁପାରୁ ନାହିଁ । କିନ୍ତୁ ଇଚ୍ଛା ଖାଇବାକୁ । ତାପରେ ସେ ଆଙ୍କୁଡ଼ି ଆଣି ବଢ଼େଇଛି, ତା'ମଧ୍ୟ ନିଅଣ୍ଟ । ସେ ହତାଶ ହୋଇ ସେଇ ଗଛମୂଳେ ବସିଯାଇଛି । ତା'ର ନିଜ ଆୟତ୍ତରେ ଆଉ କିଛି ନାହିଁ । ସେ ଏଇଠି ହୁଏତ ଭାବିପାରେ, ନ ହେଲା ନାହିଁ, ଏ ଫଳ ନ ଖାଇଲେ କ'ଣ ଚଳିବ ନାହିଁ । ଏପରି କହି ସେ ସେଇଠୁ ଚାଲିଯାଇ ପାରେ। କିନ୍ତୁ ଇଚ୍ଛା ଐକାନ୍ତିକ ହେଲେ ସେ କେବଳ ଛଟପଟ ହୁଏ । ଗଛ ଚଢ଼ିବା ବିଦ୍ୟା ଜଣା ନଥିବାରୁ ଗଛମୂଳେ ବସି ହତାଶ ହୋଇପଡ଼େ । ଏତିକିବେଳେ ସର୍ବୋଚ୍ଚ ଡାଳରୁ ପାଚିଲା ଫଳଟିଏ ଆସି ତା କୋଳରେ ପଡିଯାଏ । ଗଛ କହେ, ଆଚ୍ଛା, ଆଚ୍ଛା, ତୁ ପହଞ୍ଚି ପାରିଲୁ ନାହିଁ, ମୁଁ ପହଞ୍ଚିବି, ନେ, ଏହିଫଳ । ଏହିପରି କୃପା । ଐକାନ୍ତିକ ଇଚ୍ଛା, 'ଅଭୀପ୍ସା'ର ଉତ୍ତରସ୍ୱରୂପ ସେ ଅବତରଣ କରେ – ବିଭୁକୃପା, ଗୁରୁକୃପା ଏବଂ ଗ୍ରନ୍ଥକୃପା । ଗ୍ରନ୍ଥ ଯେ କୌଣସି ଛାପାଅକ୍ଷରର ବହି ନୁହେଁ । Life Divine, ଗୋଟିଏ ଇଂରାଜୀ ଭାଷାର ବହି ନୁହେଁ, ଯାହାକୁ ଏ ମୁଣ୍ଡରୁ ଧରି ସେମୁଣ୍ଡଯାଏ ଅଭିଧାନ ଦ୍ୱାରା ଗଡ଼େଇ ନିଆଯିବ । ଅପେକ୍ଷା କରିବାକୁହେବ । ସେ ଚାହିଁଲେ, ଆସିବାକୁ ରାଜିହେଲେ, ସମ୍ଭ୍ରମର ସହିତ ତାଙ୍କ ଆଙ୍ଗୁଠି ଧରି ଆଗେଇବାକୁ ହୁଏ । ସ୍ପର୍ଦ୍ଧାକଲେ ପ୍ରତିହତ ହେବାକୁ ପଡ଼େ । ଶ୍ରଦ୍ଧା କଲେ ସେ ଅବତରଣ କରି ଆସନ୍ତି ।



## ୧୨-୮-୮୩

ସମସ୍ତେ କ'ଣ ସବୁକଥା ଜାଣିପାରିବେ ? କାହିଁକି ବା ଜାଣିପାରିବେ ? ତେବେ କେତେଗୁଡ଼ିଏ ସାର୍ବଜନୀନ ସତ୍ୟ ଅଛି ଯାହାକୁ ସମସ୍ତେ ଜାଣିଛନ୍ତି, ଯଥା – ସୂର୍ଯ୍ୟ ପୂର୍ବଦିଗରୁ ଉଦୟ ହୁଏ ପାଣି ଉଚ୍ଚ ଭୂମିରୁ ନିଚ ଭୂମିକୁ ବହିଯାଏ, ମାଛ ପାଣିରେ ବଞ୍ଚେ, ଆକାଶରେ ତାରା ଦେଖାଯା'ନ୍ତି ଇତ୍ୟାଦି । ଏଥିରେ ବ୍ୟତିକ୍ରମ ନାହିଁ, ବିକଳ୍ପ ମଧ୍ୟ ନାହିଁ, ଶହ ଶହ ବର୍ଷ ଧରି କୋଟିକୋଟି ମଣିଷଙ୍କର ଏହି ଜ୍ଞାନ ଅବିଚଳିତ ରହିଛି । କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ନିଜର ବ୍ୟକ୍ତି ସ୍ୱାତନ୍ତ୍ର୍ୟରେ ଯାହା ଜାଣେ ତାହା ଆଉ ଜଣେ ଜାଣିବା ସମ୍ଭବ ନୁହେଁ । ଏହି ହେତୁରୁ ବିଭେଦ ଅପରିହାର୍ଯ୍ୟ । ତେବେ ନିଜକୁ ଅନ୍ୟ ସହିତ ମିଶାଇ ନ ପାରି ଗ୍ଲାନିଗ୍ରସ୍ତ ହେବାର ଅର୍ଥ କିଛି ନାହିଁ । ଗୋଟିଏ ସମୟରେ ଗୋଟିଏ ଦେଶରେ ବାସକରି ସୁଦ୍ଧା ଦୁଇଜଣ ବ୍ୟକ୍ତିଙ୍କର ଜ୍ଞାନ ଏବଂ ଅନୁଭବ ସମାନ ନୁହେଁ । ସମସ୍ତେ ସମପରିମାଣରେ ପଦାର୍ଥବିଜ୍ଞାନ ପଢ଼ିଲେ କିନ୍ତୁ ନାର୍ଲେକରଙ୍କୁ କାହିଁକି ଅଧିକ କିଛି ଦିଶିଲା, ସେ କାହିଁକି ଏ ସ୍ୱାତନ୍ତ୍ର୍ୟର ଅଧିକାରୀ ହେଲେ ? କାହିଁକି ଗୋଟିଏ ଘରେ ଦୁଇଭାଇ ଜନ୍ମ ହେଲେ

ସୁଦ୍ଧା ସେମାନଙ୍କ ଭିତରେ ଜଣେ ପଣ୍ଡିତ ଏବଂ ଆଉ ଜଣେ ତଥାକଥିତ ମୂର୍ଖ ? ଏହାର ଉତ୍ତର ଦେବା ସହଜ ନୁହେଁ । ତଥାପି ଅନେକେ ଚେଷ୍ଟା କରିଛନ୍ତି । କେହି କେହି କହନ୍ତି ଯେ ସଂସ୍କାର ପାଇଁ ବିଭେଦ ହୁଏ । ଆଉ କେହି କହନ୍ତି ଯେ ଜନ୍ମ ମୁହୂର୍ତ୍ତରେ ଗ୍ରହସ୍ଥିତି ଅନୁସାରେ ଶରୀର ମନର ଉତ୍କର୍ଷ ଆସେ ବା ଆସେନାହିଁ । ଏହିପରି ଅନେକ କଥା କୁହାଯାଏ । କିନ୍ତୁ କୌଣସିଟା ସନ୍ତୋଷଜନକ ନୁହେଁ । ଏଥିରେ କିନ୍ତୁ ବିଚଳିତ ହେବାର କିଛି ନାହିଁ, କାରଣ କୌଣସି ବ୍ୟକ୍ତି ଜୀବନରେ ଗୋଟିଏ ହେଲେ ମୁହୂର୍ତ୍ତ ଶୂନ୍ୟ ନୁହେଁ । କେହି ନ୍ୟୂନ ନୁହେଁ । କେବଳ ଗୋଟିଏ ଘଟରେ କ୍ଷୀର ରହିଛି ବୋଲି ଅନ୍ୟ ଘଟରେ ପାଣିଥିବାରୁ ସେ ନିଜକୁ ହେୟ ମନେ କରିବାର ଅର୍ଥ ନାହିଁ । ଉଭୟଙ୍କର ଉପାଦେୟତା ଅଛି । ଏ ବିଚିତ୍ର ସଂସାରରେ ଦେଶକାଳପାତ୍ର ଜନିତ ବିଭେଦ ଅନନ୍ତ । ତାହା ହିଁ ଏ ଅନନ୍ତ ବୈଚିତ୍ର୍ୟ ତତ୍ତ୍ୱତଃ ଅବଶ୍ୟ ଏ ବିଭେଦଗୁଡ଼ିକ ଅତି ନଗଣ୍ୟ, ଏଠି ଭୂପୃଷ୍ଠରେ ଥାଇ ଆମକୁ ଦିଶେ ଯେ ଏ ଗୁଳ୍ମଟି ସେ ଗୁଳ୍ମଠାରୁ ସାନ । କିନ୍ତୁ ପାହାଡ଼ଶୀର୍ଷରୁ ତାହା ପ୍ରାୟ ଦିଶିବ ନାହିଁ ଏବଂ ଉପଗ୍ରହରୁ ଦେଖିଲେ ସମଗ୍ର ପୃଥିବୀ ବର୍ତ୍ତୁଳପିଣ୍ଡ ପରି ଦେଖାଯିବ, ଏବଂ କୌଣସି ଗୁଳ୍ମଥିଲେ ନଥିଲା ପରି ଦେଖାଯିବ । ସମୁଦ୍ର ବେଳାରେ ଦୁଇଟି ବାଲୁକାରେଣୁ ଯଦି ପ୍ରତିସ୍ପର୍ଦ୍ଧାରେ କିଏ ବଡ଼ କିଏ ସାନ ବିଷୟ ନେଇ ବିତଣ୍ଡା କରନ୍ତି ତାହା ଆମକୁ ଯେପରି ହାସ୍ୟାସ୍ପଦ ବା ଅଳିକ ବୋଧହେବ, ସେହିପରି ମଣିଷମାନଙ୍କ ବିତଣ୍ଡା ଅସନ୍ତୋଷ ଓ ଆତ୍ମଗ୍ଲାନି । ଉଭୟଙ୍କ ପାଇଁ ଆକାଶ ସମପରିମାଣରେ ପ୍ରାପ୍ୟ । କେବଳ ପରସ୍ପର ଉପରୁ ଦୃଷ୍ଟି ଫେରେଇ ଆଣି ଏ ପରିବ୍ୟାପ୍ତ ସତ୍ୟକୁ ଚାହିଁ ପାରିଲେ ହେଲା । ସେଥିପାଇଁ ପାଣ୍ଡିତ୍ୟ ସାହାଯ୍ୟ କରେ ନାହିଁ କି ମୂର୍ଖତା ବାଧାଦିଏ ନାହିଁ । ଆଉ ଗୋଟାଏ କଥା ମଧ୍ୟ ଏଥିରେ ଅଛି । କଥା ହେଲା କିଏ ତୁଳନା କରେ ? ତୁଳନା କରେ ଆମର ଅହଂଭାବ । ସେ ଚାହେଁ ଗୋଟିଏ ଦିଗରେ ଅନ୍ୟକୁ ପରାସ୍ତ କରି ନିଜକୁ ଜାହିର୍ କରିବାକୁ । ଆତ୍ମାଭିମାନ ଗର୍ବ, ଅହଂକାର ତା'ର ପରିଣତି । ଅନ୍ୟ ଦିଗରେ ସେ ଯେଉଁଠି ପାଏ, ନିଜକୁ ଅତି ନ୍ୟୂନ ଦୀନହୀନଭାବି, ମ୍ରିୟମାଣ ହୋଇଯାଏ । ତାହା ଗ୍ଲାନିବୋଧ । ଏକ ପକ୍ଷରେ ଆତ୍ମମ୍ଭରିତା, ଦର୍ପ, ଗର୍ବ, ଅନ୍ୟପକ୍ଷରେ ଗ୍ଲାନି, ହତାଶା, ମୁମୁର୍ଷୁଭାବ ... । ଉଭୟ ଅହଂର କାର୍ଯ୍ୟ । ଉଭୟରୁ ମୁକୁଳିବାକୁ ହେବ, କାରଣ ଉଭୟେ ଆଧ୍ୟାତ୍ମିକ ସାଧନାର ଅନ୍ତରାୟ ।



## ୧୩-୮-୮୩

ଏକୁଟିଆ ସାଧନା କରିବାକୁ ଭଲଲାଗେ ନା ଏକାଠି କରିବାକୁ ଭଲଲାଗେ ? ବେଳେ ବେଳେ ଏକୁଟିଆ ଆଉ ବେଳେ ବେଳେ ଏକାଠି ଭଲଲାଗେ । ତତ୍ତ୍ୱତଃ ସାଧନା ନିଜ ଭିତରେ କରିବାକୁ ହୁଏ କିନ୍ତୁ ଅନ୍ୟକୁ ଛାଡ଼ି ହୁଏନାହିଁ । ସଂସାରରେ ସଂପୂର୍ଣ୍ଣ ଏକାକୀ ରହିବା ମଧ୍ୟ ସମ୍ଭବ ନୁହେଁ । ସର୍ବ ସନ୍ନ୍ୟାସୀ ମଧ୍ୟ ଦୂରରେ ଥାଇ ଅନ୍ୟକୁ ସ୍ୱୀକାର କରନ୍ତି । କିନ୍ତୁ ଏକାଠି କାର୍ଯ୍ୟ କଲେ କେତେ ଗୁଡ଼ିଏ ମୌଳିକ ଅସୁବିଧା ଅଛି । ପ୍ରତ୍ୟେକ ବ୍ୟକ୍ତି ସ୍ୱତନ୍ତ୍ର ଏବଂ ପୃଥକ ହୋଇଥିବାରୁ ଏବଂ ସମସ୍ତେ ନିଜ ନିଜର ଅହଂ ଦ୍ୱାରା ଚାଳିତ ହେଉଥିବାରୁ ବିଭେଦ ହେବା ସ୍ୱାଭାବିକ ଏବଂ ଅନିବାର୍ଯ୍ୟ । ଅହଂର ସଂଘର୍ଷ କେତେ ବିଭିନ୍ନ ପ୍ରକାର

ହୋଇପାରେ । ଯଦି ଅହରହ ଏହି ସଂଘର୍ଷରେ ରହିବାକୁହେଲା ତେବେ ଆଉ କ'ଣ ସାଧନା ସମ୍ଭବ ? ଏଣୁ କଣ କରିବାକୁ ହେବ ? ଜଣେ ଜଣଙ୍କୁ ସହି ଯିବାକୁହେବ, ମାନିଯିବାକୁ ହେବ । ତେବେ କିଏ କାହାକୁ ମାନି ନେବ ? ଆମେ ସବୁ ବେଳେ ଆଶା କରୁ ଯେ ଅପର ଜଣକ ଆମକୁ ମାନି ଯାଉ, ଆମକୁ ଡିକେ ହେଲେ ଘୁଞ୍ଚିବାକୁ ନ ପଡୁ, ସେ କିନ୍ତୁ ସେହିପରି ଭାବୁଥିବାରୁ ମେଳ ହୁଏ ନାହିଁ । ବିରକ୍ତି, କ୍ରୋଧ, ବିକ୍ଷୋଭ ହୁଏ "ସେ ଏତିକି ଟିକିଏ ବୁଝିପାରିଲା ନାହିଁ ? ମୁଁ ଧ୍ୟାନ କଲା ବେଳେ ତାର ଗୋଟାଏ ଢ଼ୋ ଢ଼ୋ ପିଟା ଶବ୍ଦ ଆରମ୍ଭ କରିଦେଲା ? ଧେତ୍ ତେରି, ତାକୁ କହିବାକୁହେବ, ବ୍ୟବହାର ଶିଖାଇବାକୁହେବ", ଅନ୍ୟ ପକ୍ଷରେ ସ୍ୱର ହେଲା, "ଆରେ ଯା'ମ ଆଖି ବୁଜି ବସିଗଲେ ଖାଲି ଧ୍ୟାନ ହୋଇ ଯାଉଛି ? ମୋର କାମ ହେଲା ଅବଶ୍ୟ ଏଇଆ । ମୁଁ ନିରୋଳାରେ ଟିକିଏ କରି ପାରିଲିନି । ଏଥିରୁ ଗୋଟାଏ ଆସି ଆଖି ବୁଜି ବସି ଯାଉଛି, ତାକୁ ଅନ୍ୟ ସମୟରେ ଆସିବାକୁ କହିବା ।" ଉଭୟଙ୍କର ନିଜ ନିଜ ବିଷୟରେ ଏବଂ ଅପର ବିଷୟରେ ଏପରି ଧାରଣା ଅହଂରୁ ଜାତ ହୁଏ । ଅହଂ କହେ ସେହିଁ ଠିକ୍ ଅଛି, ଜଗତ୍ୟାକ ଭୁଲ । ଏବଂ ଯଦି ନଇଁବାକୁ ହୁଏ ତେବେ ଜଗତ୍ ସାରା ନଇଁବା ଉଚିତ୍, କାରଣ ମୁଁ ପରା ଠିକ୍ । ଏ ପରିସ୍ଥିତିରେ କେତେଗୁଡ଼ାଏ କଥା ଅନିବାର୍ଯ୍ୟ । ପ୍ରଥମ ହେଲା ଏହି ମାର୍ଗରେ ଯିବାକୁ ହିଁ ହେବ । ଯଦି ନ ଗଲେ ମଧ୍ୟ ଚଳିବ କିମ୍ବା ଯେଉଁଆଡ଼େ ଗଲେ ମଧ୍ୟ କିଛି ଯାଏ ଆସେ ନାହିଁ, ତେବେ ତ' ସମସ୍ୟା ନାହିଁ । ଦ୍ୱିତୀୟ ଏ ମାର୍ଗରେ କିଛି ପରିପନ୍ଥୀ, କିଛି ଅନୁପନ୍ଥୀ ନିଶ୍ଚୟ ମିଳିବେ । ତୃତୀୟ, ବାଟ ମୁହଁରେ ଯୁଦ୍ଧକରି ସେଇଠି କାଳପାତ, ପ୍ରାଣପାତ କରିବାର ଅର୍ଥ ନାହିଁ । ତେବେ ସହାବସ୍ଥାନରେ ଉଦାରତା ପରିମିତସହିଷ୍ଣୁତା ଏକ ଉଚିତ ବୁଝାମଣାରେ ସଂଘର୍ଷ ଏଡ଼େଇ ଦେଇହେବ । ଗୋଟିଏ ଖେଳ ଅଛି, ତା ନାଁ ହେଲା ତିନି ଗୋଡ଼ିଆ ଦୌଡ଼ । ଦୁଇଜଣଙ୍କୁ ସେଥିରେ ଏକାଠି ଦୌଡ଼ିବାର ବିଧାନ ଅଛି । ପ୍ରଥମେ ଉଭୟେ ଦୌଡ଼ିବାକୁଗୋଟିଏ ଆଡ଼େ ମୁହଁ କରି ଠିଆ ହେବେ । ପରସ୍ପରକୁ ଗ୍ରହଣ କରିବେ । ଜଣଙ୍କର ଡାହାଣ ଗୋଡ଼ ସାଙ୍ଗରେ ଅନ୍ୟର ବାଁ ଗୋଡ଼କୁ ବାନ୍ଧି ଦେବାକୁ ହେବ । ଗୋଟିଏ ସାଧାରଣ ପାଦ ସାଙ୍ଗକୁ ସେମାନେ ନିଜ ନିଜର ସ୍ୱତନ୍ତ୍ର ପାଦ ପକାଇ ଆଗକୁ ଯିବା କଥା । ଏଥିରେ ଟିକିଏ ବୁଝାମଣା ନ ରହିଲେ ଉଭୟେ ଧରାଶାୟୀ ହେବେ । ତେବେ ଧାଇଁଲାବେଳେ ଜଣେ ଅନୁଭବ କରେ ଯେ ଅପରଜଣକ ପାଦ ମିଳେଇ ପାରୁନାହିଁ । ହୁଏତ ଧିମାଟିଏ, କେତେ ତାକୁ ଘୋସାରିବ ? ସେ ବିରକ୍ତ ହୁଏ, ରାଗିଯାଏ ଏବଂ ବଳାତ୍କାର କରି ଉଭୟେ ପଡ଼ିଯା'ନ୍ତି । ସେ ଆଶାକରୁଥାଏ ଯେ ଅପର ଜଣକର ଦାୟିତ୍ୱ ତା' ସହିତ ନିଜକୁ ମେଳ ଖୁଆଇବା । ନିଜର କିଛି ଦାୟିତ୍ୱ ନାହିଁ । ସେଇଠି ଉଚିତ୍ କଥା ହେଲା, ଆଗ ନିଜେ, ଅପର ସହିତ ମେଳ ଖାଇବାକୁ ଯତ୍ନ କରିବା । ତେବେ କଥା ସହଜ ହୋଇଯିବ । ବିକ୍ଷୋଭ ଅପରିଯିବ । ତେବେ ବହୁ ଯତ୍ନ ପରେ ଦେଖାଗଲା ଯେ ଅପରଜଣକ ଠିଆହେବାକୁ ଚାହେଁ । ଏଣେ କିନ୍ତୁ ଯାର ସମୟ ନାହିଁ, ଆଗକୁ ଯିବାକୁ ହିଁ ହେବ - ତେବେ ଆସ୍ତେ ବନ୍ଧନଟିକୁ କାଟି ଦେବାକୁ ହେବ । କୌଣସି ବିରୋଧ ନାହିଁ, କ୍ରୋଧ ନାହିଁ, ଘୃଣା ନାହିଁ, ତାଚ୍ଛଲ୍ୟ ନାହିଁ, ଦୋଷାରୋପ ନାହିଁ । ଆସ୍ତେ ସେଇଠୁ ନିଜକୁ ଖସେଇ ନେବା କଥା - ଏହିପରି ଭାବରେ ଅପର ସହିତ ବା ଅପର ବ୍ୟତିରେକ ସାଧନା କରିବାକୁ ପଡ଼ିପାରେ । ନିଜ ଆଡୁ ନମନୀୟତା ବୁଝାମଣା, ମେଳ ଖୁଆଇବାର ଉଦାରତା ଥିଲେ ଯାତ୍ରା ଅନେକ ସହଜ ହୋଇଥାଏ । ଏ ମାର୍ଗ ଏକୁଟିଆ ଯିବାପାଇଁ ନୁହେଁ, ଅନ୍ୟର ସହିତ ଯିବାପାଇଁ । ସହିତ ଯିବା ବଡ଼ ଦାୟିତ୍ୱ ଏବଂ କୌଶଳ ।

## ୧୪-୮-୮୩

କୌଣସି ଶ୍ରଦ୍ଧାସ୍ପଦ ବନ୍ଧୁଙ୍କୁ ଉପହାରଟିଏ ଦେବାପାଇଁ ଇଚ୍ଛାହେଲେ ନିଜେ ହିଁ ସ୍ୱହସ୍ତରେ ତାହା ଦେଇଆସିବା ବିଧି । ସେ ଉପହାରଟି ସେତେବେଳେ ନିଜର ସ୍ନେହ, ଶ୍ରଦ୍ଧା, ଭକ୍ତି, ସମର୍ପଣ, ଆସ୍ପୃହା ଇତ୍ୟାଦି ଦ୍ୱାରା ସଂଜୀବିତ ହୋଇଥାଏ । ଯଦି ଦୈବାତ୍ ଆଉ କେହି ସେହିବନ୍ଧୁଙ୍କ ପାଖକୁ ସେତେବେଳେ ଯାଉଥାନ୍ତି ଏବଂ ଉପହାରଟିଦେଖି ନେଇ ଦେବାପାଇଁ ଆଗ୍ରହ ପ୍ରକାଶ କରନ୍ତି ତେବେ ତାଙ୍କ ହାତରେ ତାକୁ ଅର୍ପଣ କରିଦେଲେ ଲାଭ କ'ଣ, କ୍ଷତି କ'ଣ ? ଅଗଷ୍ଟ ପନ୍ଦରଦିନ ଘରୁ ଗୋଲାପଟିଏ ଧରି ଜଣେ ଆସୁଛନ୍ତି ଜନ୍ମତିଥିରେ ପ୍ରଭୁଚରଣରେଅର୍ପଣ କରିବେ । ବାଟରେ ଜଣେ ଚାହିଁଲେ ତାକୁ ଦେଇଦେବାପାଇଁ, ତାକୁ ଦେଇଦେଲେ ଦୁଇଟି ବ୍ୟକ୍ତିଙ୍କର ପୃଥକ୍ ପୃଥକ୍ ଆବେଗ ବିଚାର ସେଥିରେ ପରସ୍ପର ବିରୋଧ କରିପାରନ୍ତି । ବିରୋଧ ନ କଲେ ସୁଦ୍ଧା କଦାପି ଏକା ନୁହଁନ୍ତି । କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ଉଭୟଙ୍କର ସ୍ୱତନ୍ତ୍ର ଭାବନା ସେ ଫୁଲଟି ମାଧ୍ୟମରେ ସ୍ୱତନ୍ତ୍ରଭାବରେ ଅର୍ପିତ ହୋଇଯାଏ । ବରଂ ମୁଁ ନିଜେନେଇ ଫୁଲଟିକୁଚଢ଼ାଇବି ବୋଲି ଯେଉଁ ମୋହ ଥାଏ ତା'ର ବିଲୋପ ଘଟିବାରୁ ଭାବନା ଶୁଦ୍ଧ ହୋଇଯାଏ । ଉପହାରଟି ପହଞ୍ଚିଲେ ଯଥେଷ୍ଟ । ମୁଁ ଦିଏ ବା ଆଉ କିଏ ଦେଉ ସେଥିରେ କିଛି ଯାଏ ଆସେ ନାହିଁ ।



## ୧୫-୮-୮୩

ବିଶିଷ୍ଟ ଶୁଭଦିନମାନଙ୍କରେ ଅପଶକ୍ତିମାନେ ଅସାଧାରଣଭାବରେ ସକ୍ରିୟ ହୋଇଉଠନ୍ତି । ଶତ୍ରୁପକ୍ଷ ଅକଳନୀୟ ଏବଂ ସେମାନେ ଏକେ ଏକେ କାମରୂପୀ । କେତେ ରୂପରେ ସେ ଆସି ବିରୋଧ କରିବେ, ଧ୍ୟାନଭଙ୍ଗ କରିବେ, ବିକ୍ଷୁବ୍ଧ କରିବେ, ତାର ଇୟତ୍ତା ନାହିଁ । ଏହା ଏକ ଆଦିମ ନିୟମ । ଯେତେବେଳେ ସୂର୍ଯ୍ୟ ଉଦିତ ହେବାର ଆୟୋଜନ ହୁଏ ସେତେବେଳେ ଅଂଧକାର ସର୍ବାପେକ୍ଷା ଅଧିକ ଘନୀଭୂତ ହୁଏ । Night is the darkest before dawn, ଏଣୁ ସାବଧାନ ରହିବାକୁ ହେବ ।



## ୧୬-୮-୮୩

ଆମେ କ'ଣ ଦେଇ ପାରିବା ? ପଣସ ଗଛଟିରେ ନୂଆପତ୍ର ପଡ଼ିଛି । ପତ୍ରରେ ଶିଶିର ବିନ୍ଦୁ ଲାଗିଛି । ସୂର୍ଯ୍ୟ ଉଦୟ ହେଲେ ସେଇ ବିନ୍ଦୁଟି ଭାସ୍ୱର ହୋଇଉଠେ ଏବଂ ଗଛ ତାକୁ ହିଁ ଅର୍ପଣ କରେ ସବିତା ଉଦ୍ଦେଶ୍ୟରେ । ପ୍ରତ୍ୟେକ ଗଛ ତପସ୍ୱୀ । ତାର ସମସ୍ତ ତପସ୍ୱୀ ଲକ୍ଷଣ ରହିଛି । ତାକୁ କୁହାଯାଇଛି ଦୃ ଏଇଠି

ସ୍ଥାବର ହେଲୁ । ଏଠୁ ଘୁଞ୍ଚି ପାରିବୁ ନାହିଁ । ତୋର ଯାହା ଅଭିବୃଦ୍ଧି ତାହା ଆକାଶଦିଗରେ । ସେଥିରେ କୌଣସି ସୀମା ନାହିଁ, କିନ୍ତୁ ଏଠୁ ଘୁଞ୍ଚିବା ମନା । ସେ ସେଇଭଳି ବଢ଼େ ଏବଂ ସେଇ ସବିତାଙ୍କ କୃପାରୁ ବୃଷ୍ଟି ହୁଏ ବାତାବରଣରେ ଶିଶିରବିନ୍ଦୁ ସୃଷ୍ଟିହୁଏ ଏବଂ ତାକୁ ହିଁ ସେ ଅର୍ପଣ କରେ । ସେ ବିନ୍ଦୁଟି ତା'ର ନୁହେଁ । ସେ ତାକୁ ଯେଉଁଠାରୁ ପାଇଥାଏ ତାକୁଦେଇଦିଏ । ଗଂଗାଧରଙ୍କ ଉକ୍ତି ପରି । "କି ଦେଇ ପୂଜିବି / ଯାହା ମୁଁ ଦେଖୁଛି / ସବୁ ତୁମରି ପ୍ରସାଦ / ଯାହା ପରସାଦ / ତାକୁ ଅରପିଲେ / ହେବସିନା ଅପରାଧ । ମୁଁ କାର ମାତର ମୋର ନୁହେଁ ବୋଲି / ବୋଲିବାକୁ ନାହିଁ ବାଟ / ଦୂରୁ ଶ୍ରୀଚରଣେ / ଅର୍ପଣ କରୁଛି / ଘେନ ତା ବିଶ୍ୱସମ୍ରାଟ ॥ - ସେତିକି ମାତ୍ର ଦିଆଯାଇ ପାରେ ।

(୨) ଯେତେ ଛୋଟ ହେଲେ ବୁଦ୍ଧା କୌଣସି ସଂଯମ ହାସଲକରିବା ଭାରି କଠିନ ବ୍ୟାପାର । ଉପରକୁ ଚଢ଼ିଲାବେଳେ ପାଦେ ଆଗେଇ ପାରିଲେ ମଧ୍ୟ ଯଥେଷ୍ଟ । ଧରାଯାଉ ମନରେ ଅହଂକାର ଅଛି ଯେ ମୁଁ ଯାହାକୁ ଆକ୍ରମଣ କରିବି ସେ ସମ୍ଭାଳି ପାରିବ ନାହିଁ । ଅତଏବ କେହି ପାଞ୍ଚକଥା କହିଲେ ମୁଁ ତାକୁ ପଚାଶ କଥା କହି ଧରାଶାୟୀ କରି ପକାଏ । ଏ ପ୍ରକାର ବିଜୟର ମୋହ ଛାଡ଼ିବା ସହଜ ନୁହେଁ । ପ୍ରଥମେ ତାକୁ ମଣ କରିବାକୁ ଚାହିଁଲେ କଡ଼ା ଶାସନ ଉଚିତ୍ ନୁହେଁ । ଅବଶ୍ୟ ସେଥିପାଇଁ କୌଣସି ନିୟମ ନାହିଁ । ସ୍ଥଳବିଶେଷରେ ହୁଏତ ତା'ର ପ୍ରୟୋଜନ ହୋଇପାରେ । କିନ୍ତୁ ସାଧାରଣତଃ ତାକୁ ସାଉଁଳାସାଉଁଳି କରି କହିବାକୁ ହୁଏ, ତୋ ଭଳି ଦନ୍ତାହାତୀ କ'ଣ କାହାକୁ ଛାଡ଼ିବ ? ହେଲେ ଢ଼େର ଯୁଦ୍ଧ କରି ହାଲିଆ ହେଲୁଣି । ଏଣିକି ଲଢ଼େଇ ନ କଲେ କ'ଣ କିଏ ତୋତେ ଚିହ୍ନିବେ ନାହିଁ, ତୁନି ପଡ଼ିଯା' । କିଏ ଆଘାତ କଲେ ତାକୁ ନ୍ୟୂନ ଭାବି ହସି ଦେ ।" ହୁଏତ ଏ ପ୍ରରୋଚନାରେ ସେ ରାଜି ହୋଇଯାଇପାରେ । ସାମାନ୍ୟ ବାଟକୁ ଆସିଲେ ତା'କାନଧରି କହିବାକୁ ହୁଏ "ଉଲୁ, କାହିଁକା, ପାଞ୍ଚଶହ କୋଟି ମଣିଷଙ୍କ ଭିତରେ ତୁ ନଗଣ୍ୟ ମାତ୍ର ଜଣେ । କିବା ତୋର ସାମର୍ଥ୍ୟ, କିବା ଗୁରୁତ୍ୱ, କ'ଣ ନା ତୁ ମେରୁଟାଳି ପକେଇବୁ ? ଉଲୁ ।" ସେ ମଣ ହୋଇଯିବ ।

ଯେ କୌଣସି ଆବେଗ, କ୍ରୋଧ, ଈର୍ଷା, ଦ୍ୱେଷଆଦି ଆସିଲେ ଚୁପ୍ ରହିଯିବା ସବୁଠୁ ଉତ୍ତମ ପନ୍ଥା । କ୍ରୋଧ ଫାଟି ପଡ଼ିଲାବେଳେ ନୀରବ ରହି ପାରିଲେ ତେଣିକି ତା'ଉପରେ କାଳଇହଡ଼ି ମଡ଼େଇ ହୋଇଯାଏ, କ୍ରୋଧାଗ୍ନି ଲିଭିଯାଏ । ନିର୍ଦ୍ଦିଷ୍ଟ ଦେଶକାଳପାତ୍ରର ସଂଯୋଗରେ କ୍ରୋଧଜାତ ହୁଏ । ତାକୁ ନୀରବତାରେ ହିଁ ଅସ୍ୱୀକାର କରାଯାଇ ପାରେ । ଏବଂ ସମର୍ପିତ ସାଧନା ପାଇଁ ଏ ପନ୍ଥାରେ ପ୍ରଥମେ ସେପରି କିଛି ନ ମିଳିଲା ପରି ଦିଶୁଥିଲେ ବୁଦ୍ଧା ପରିଶେଷରେ ବିଜୟ ଅନିବାର୍ଯ୍ୟ ।



**୧୭-୮-୮୩**

ମନକୁ ସବୁବେଳେ ବାୟୁ ସହିତ ତୁଳନା କରାଯାଇଛି, କାରଣ ତାହା ସବୁବେଳେ ଚଞ୍ଚଳ, ଗତିଶୀଳ, ଅପ୍ରତିହତ ଏବଂ ଦୁଃସାଧ୍ୟ । ସେଇ ଧାରାରେ ଶରୀର ସ୍ଥୂଳ (solid), ପ୍ରାଣ ତରଳ (liquid), ମନ ବାୟବ୍ୟ (gaseous) ଏବଂ ଚୈତ୍ୟ ଆଲୋକ (light) ମନକୁ - ଏକାଗ୍ର କରିବା ଏକ କଠିନ ସାଧନା । ଧ୍ୟାନସ୍ଥ

ହେବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବସ୍ତୁର ବିଶେଷତ୍ୱ ସେପରି କିଛି ନାହିଁ । କେବଳ ଏକାଗ୍ରତା ହେଲେ ମନ ସ୍ଥିର ହୋଇଯିବ ଏବଂ ଯେ ସକଳ ଘଟରେ ପରିପୂର୍ଣ୍ଣ ହୋଇ ରହିଛନ୍ତି ସେ ଉଦ୍ଭାସିତ ହେବେ । ଏଇ ସ୍ତମ୍ଭରେ ଦେଲେ ମନ, ଏ ସ୍ତମ୍ଭେ ଛନ୍ତି ଭଗବାନ - ମନକୁ ଦେଇ ଜାଣିଲେ ହେଲା । ସେ ସେଥିପାଇଁ ବଚନ ଦେଇଛନ୍ତି, "ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।" ସାଧାରଣ ବସ୍ତୁଟିଏ Divine କୁ ବିକୀରଣ କରେ, ଯେତେବେଳେ ସାଧକ ସେଥିରେ ଏକାଗ୍ର ହୁଏ । ଆମେ ଗୋଟିଏ ମୁହୂର୍ତ୍ତ ମଧ୍ୟ ମନକୁ କୌଣସି ବିଷୟରେ ସ୍ଥିର ରଖିପାରୁ ନାହୁଁ, ଏପରିକି ପ୍ରେୟ ଇନ୍ଦ୍ରିୟସୁଖରେ ମଧ୍ୟ ନୁହେଁ । ଖାଇବସିଲା ବେଳେ ଗୁରୁବାକ୍ୟ ସ୍ମରଣକରି, ଆଖିବୁଜି ନାମ ସ୍ମରଣ କରାଯାଏ । ମନକୁ ମନ କୁହାଯାଏ ଯେ ଏ ଅନ୍ନ ତାଙ୍କର, ଆଜି ମୋ ପାଇଁ ଏହା ଭଗବତଦତ୍ତ । ତା'ପରେ ବାସ୍ନାରେ ବିଭୋର ହୋଇ ଜିହ୍ୱାଲାଳସାରେ ପ୍ରକୃତ ଖାଇବା କ୍ରିୟାରେ ଆଉ କାହା କଥା ସ୍ମରଣ ରହେ ନାହିଁ । 'ତେବେ "ସତତୋଣ୍ଡିନ୍ତୟତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ କିପରି ହୋଇପାରିବ ?



## ୧୮-୮-୮୩

ସୁବିଧା ଅସୁବିଧା ବ୍ୟକ୍ତିଗତ । କାହାପାଇଁ କ'ଣ ସୁବିଧା ବା କ'ଣ ଅସୁବିଧା ହୋଇପାରେ ଆଉ କେହି କହି ପାରିବେ ନାହିଁ । ସଂକଳ୍ପରେ ଅସୁବିଧାକୁ ଅସ୍ୱୀକାର କରି ତାକୁ ସୁବିଧାରେ ପରିଣତ କରାଯାଇ ପାରେ । ପ୍ରକୃତରେ ପରିସ୍ଥିତିଗୁଡ଼ିକ ବ୍ୟକ୍ତି-ସ୍ୱତନ୍ତ୍ର । ସେମାନେ ସେମିତି ଥାଆନ୍ତି । ତାଙ୍କ ପାଇଁ ନିଜ ସଂପର୍କ ଏବଂ ଦୃଷ୍ଟିଭଙ୍ଗୀ, ନିଜର ଲକ୍ଷ୍ୟ ଗତିପଥ ଇତ୍ୟାଦି ଉପରେ ନିର୍ଭର କରୁଛି, ସୁବିଧା ହେବା କିମ୍ବା ଅସୁବିଧା ହେବା । ଜଣେ ଗୋଟିଏ ପରିସ୍ଥିତିରେ ଖୁବ୍ ସୁବିଧାରେ ପାରି ହୋଇଗଲେ ଅଥଚ ସେଇ ପରିସ୍ଥିତିରେ ସେତିକିବେଳେ ଆଉ ଦଶଜଣ ପାରିହୋଇ ପାରିଲେ ନାହିଁ । ଏଥିରେ ପ୍ରଥମ ଜଣକର ବାହାଦୁରି ନାହିଁ କିମ୍ବା ଅନ୍ୟ ଜଣଙ୍କର ଅପାରଗତା ନାହିଁ । ଏଇଟା କେବଳ ଆପେକ୍ଷିକ ସଂପର୍କ ଏବଂ ମୂଲ୍ୟ ।



## ୧୯-୮-୮୩

ଆଧ୍ୟାତ୍ମିକ ମାର୍ଗରେ ଯିବାକୁହେଲେ କୁହାଯାଇଛି ସର୍ବପ୍ରଥମେ ସମତ୍ୱ ଅର୍ଜନ କରିବାକୁ ହେବ । ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ । ଏଥିପାଇଁ ଅପାର ସାଧନା ଓ ପ୍ରୟାସ ପ୍ରୟୋଜନ । ଝିଅଟିକୁ ସଜବାଜ କରି ଗାଡ଼ିରେବସେଇଦେଲେ ତେଣିକି ଶାଶୁଘରଯିବା, ନୂତନ ଜୀବନ ଆରମ୍ଭ କରିବା ଆଦି କାର୍ଯ୍ୟ ହୋଇଯିବ । କିନ୍ତୁ କି କଷ୍ଟକର ବ୍ୟାପାର ସେଇ ଗାଡ଼ିରେନେଇ ବସାଇବା ଟିକକ । ସେହିପରି

ଉଡ଼ାଜାହାଜ ଭୂଇଁଛାଡ଼ି ଆକାଶରେ ପହଞ୍ଚିଗଲେ ସବୁ ସରଳ ଏବଂ ସହଜ ହୋଇଯାଏ । ଅଥଚ Take off କ୍ରିୟାଟି ପାଇଁ ସବୁଠାରୁ ଅଧିକ ଶକ୍ତି ଏବଂ ପ୍ରୟାସର ପ୍ରୟୋଜନ ହୁଏ । ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱକୁ ଯାଇ ସେହି ସ୍ଥିରସ୍ଥିତିରୁ ଦେଖିଲେ ହୁଏତ ପ୍ରକୃତି ହିଁ କର୍ମ କରିଚାଲିଛି ଏବଂ ଆତ୍ମା ନିଷ୍କ୍ରିୟ, ଏହି ଉପଲବ୍ଧି ହୋଇପାରେ । ତେଣିକି ଏ କ୍ଷର, ଅକ୍ଷର ଊର୍ଦ୍ଧ୍ୱକୁ ପୁରୁଷୋତ୍ତମ ଚେତନାରେ ରହି କର୍ମ ଏବଂ ନିଷ୍କ୍ରିୟତାକୁ ଏକାଠି ଧାରଣ କରିବା ସମ୍ଭବ ହୋଇପାରେ । କିନ୍ତୁ ମୂଳତଃ ଏ ସମତ୍ୱ ଆସିବ କେମିତି ? ଆମର ସବୁ ଠିକ୍ ଚାଲିଛି । ଖାଇବା, ପିଇବା, ପିନ୍ଧିବା, ପିଲାଙ୍କ ଦେହପା' ଠିକ୍ ଅଛି – ଏସବୁ ହେଲେ ଆଗଭର ହୋଇ ଆସୁଛୁ, ଚାଲ କିଛି ଯୋଗ କରିବା । Idiot, ଟିକିଏ ପୁଅଦେହ ଖରାପ ହୋଇଗଲେ ରାତିସାରା ନିଦ ନାହିଁ । ଖାଇବାଗୋଟିଏ ଓଳି ନ ହେଲେ ମନ ପ୍ରାଣ ଅସ୍ଥିର । ଏଥିରେ କ'ଣ ନା ଯୋଗ । କି ଯୋଗ ? ଅର୍ଜୁନର ପରିସ୍ଥିତି ବୁଝିବାକୁ ହେଲେ କଳ୍ପନା କରିବାକୁହେବ ଯେକୌଣସି ଦୁର୍ଘଟଣାରେ ନିଜ ପୁଅ ଖଣ୍ଡ ଖଣ୍ଡ ହୋଇ ରକ୍ତ ସ୍ରୋତରେ ପଡ଼ିଛି, ଧାଡ଼ ତିରିଶ ଚାଳିଶ ମଧ୍ୟ ପଡ଼ିଛନ୍ତି । ଏଇଟା ଦେଖି ସ୍ଥିର ରହିବାକୁ କୁହାଯାଉଛି । କେବଳ ସେତିକି ନୁହଁ, ଯଦି ସର୍ବୋଚ୍ଚ କର୍ତ୍ତା ସ୍ଥିର କରିଛନ୍ତି ଏପରି ହଣାକଟା ହେବ, ସେଥିରେ ନିର୍ଲିପ୍ତ ରହି ପୁଅମୁଣ୍ଡ କାଟିବାକୁ ମଧ୍ୟ କୁହାଯାଇଛି – କିପରି ହେବ ଏ ଅସମ୍ଭବ ବ୍ୟାପାର । ଏହା ନ ହେଲେ ସମତ୍ୱ ନାହିଁ । ସମତ୍ୱ ନ ହେଲେ ଯୋଗ ନାହିଁ । ତେଣିକି, ତେଣିକି ଆଉକିଛି ନାହିଁ । ଏଥିରେ କି ଯୋଗ କରିବ, କେମିତି କରିବି । ପରମ ସୌଭାଗ୍ୟ ଆମର ଯେ, ଶ୍ରୀମା ଶ୍ରୀଅରବିନ୍ଦ ଆମର ଅସାମର୍ଥ୍ୟକୁ ଆମ ଅପେକ୍ଷା ଆହୁରି ଅଧିକ ବୁଝିଛନ୍ତି ଏବଂ କହିଛନ୍ତି – 'ତୁ କେବଳ ରାଜିହୋଇ ଯା' ବାକି ମୁଁ କରିବି' । ସେ ହିଁ ଆମ ଭିତରେ ସାଧନା କରିବେ । ଅହୋ ଭାଗ୍ୟ !



## ୨୦-୮-୮୩

ମନରେ ବୁଝିବା ଗୋଟିଏ କଥା, କିନ୍ତୁ ଅନୁଭବ କରିବା ଆଉ ଗୋଟିଏ କଥା । କାଳ ବିତିଯାଉଛି ବୋଲି ଅସଂଖ୍ୟ ଥର କୁହାଗଲେ ସୁଦ୍ଧା ହେଇ ଏଇ ମୁହୂର୍ତ୍ତଟା ବିଲୀନ ହୋଇଯାଉଛି ବୋଲି ଅନୁଭବକୁ ଆସିଲେ ତାହା ଏକ ସତ୍ୟ ଉପଲବ୍ଧି । ପିଲାଙ୍କୁ କୁହାଗଲା ଯେ ତୁମକୁ ଯାହା କୁହାଯାଉଛି ତାହା କର । ସେମାନେ ତାହା ନ ବୁଝି ନ ଶୁଝି କରିଯା'ନ୍ତି । ସେଥିରେ ଲାଭ ଯେତିକି କ୍ଷତି ତା'ଠାରୁ ଅଧିକ । ଲାଭ ହେଲା ଯେ କୌଣସି ଚଲା ରାସ୍ତାରେ ନିର୍ବିରୋଧ ସାଧାରଣ ଲୋକଟିଏ ପରି ଚାଲିଯିବାର ସୁଯୋଗ ମିଳିଗଲା । କ୍ଷତିହେଲା ଯେ ନିଜେ ଆଉ ପ୍ରୟାସ କରି କିଛି ଅନୁଭବ କରିବାର ପ୍ରବୃତ୍ତି ମରିଗଲା । ଗୁରୁବାକ୍ୟକୁ, ଶାସ୍ତ୍ରକୁ ଅସ୍ୱୀକାର କରିବାର ଉଦ୍ଦେଶ୍ୟରେ ଏହା କୁହାଯାଉ ନାହିଁ । କେବଳ ଏତିକି ଯେ, ହଁ ସେ ଜଣେ ସିଦ୍ଧପୁରୁଷ ଏହା କହିଛନ୍ତି । ଦେଖାଯାଉ ମୋର ସେଥିରେକେତେ ଅନୁଭବ ହେଉଛି । ଏହାକୁ ଇଂରାଜୀରେ Open mind କୁହନ୍ତି ।



## ୨୧-୮-୮୩

ଯେ କୌଣସି ମୁହୂର୍ତ୍ତର ବା ପରିସ୍ଥିତିର କ'ଣ ସତେ ଗୋଟିଏ ବିକଳ୍ପ ଥାଇପାରେ ? ପରମବିଶ୍ୱର ମହାଛନ୍ଦରେ କୋଟି କୋଟି ଗ୍ରହନକ୍ଷତ୍ରଙ୍କର ନିର୍ଦ୍ଦିଷ୍ଟ ଆପେକ୍ଷିକ ସ୍ଥିତିରେ ଏ ମୁହୂର୍ତ୍ତଟି ଗୁନ୍ଥିହୋଇ ରହିଛି । ଏହା ନ ହୋଇ ଆଉ ଭଲା କ'ଣ ହୋଇଥାନ୍ତା । ଆଉ କୌଣସି ବିକଳ୍ପ ଚିନ୍ତାକରି ହେଉଛି କି ? ଏବଂ ବିଚିତ୍ର କଥା ଯେ ପ୍ରତିଟି ମୁହୂର୍ତ୍ତ ଅନନ୍ୟ ଏବଂ ଅନନ୍ୟର ବିକଳ୍ପ ନାହିଁ । ତେବେ କୌଣସି ପରିସ୍ଥିତିରେ ବିଚଳିତ ହେବାର କ'ଣ ଅଛି । କେବଳ 'ମୟା ତତମ୍ ଇଦମ୍ ସର୍ବମ୍' ବୋଲି ଯେ କହୁଛି ତାକୁ ଅନୁଭବ କରି ପାରିଲେ ଆଉ ଏପରି ବିକ୍ଷୁବ୍ଧ ହେବାର କାରଣ ନାହିଁ । କିନ୍ତୁ ସବୁଠାରୁ କୌତୂହଳପୂର୍ଣ୍ଣ ବିଷୟଟି ହେଲା ଯେ ଆମକୁ ପ୍ରତି ମୁହୂର୍ତ୍ତରେ ସ୍ୱାଧୀନତାର ଆପାତସ୍ଥିତିରେ ରଖା ହୋଇଛି । ମୁଁ କହି ପାରୁଛି ଯେ ଏ ମୁହୂର୍ତ୍ତରେ ମୁଁ ଲେଖୁଛି, କିଛି ନ ଲେଖି ମଧ୍ୟ ପାରନ୍ତି । କହୁଛି, ନ କହି ପାରନ୍ତି । ତା'ମାନେ ମୋର ସେ ସ୍ୱାଧୀନତା ରହିଛି, ମୋର free will ଅଛି । ମୁଁ ଚାହିଁଲେ ଏ ମାର୍ଗ ନ ହେଲେ ସେ ମାର୍ଗ ନେଇପାରେ । ପୁଣି ବୁଝି ବସିଲେ କଥା ଅନ୍ୟ ପ୍ରକାର । ମୋର ପ୍ରତ୍ୟେକ ରକ୍ତକଣାରେ, ପ୍ରତ୍ୟେକ ତନ୍ତୁରେ, ମସ୍ତିଷ୍କର ପ୍ରତ୍ୟେକ ସ୍ପନ୍ଦନରେ ଗୋଟିଏ ଅନିବାର୍ଯ୍ୟତା ରହିଛି । ସେଇ ମୁହୂର୍ତ୍ତରେ ତାହା ନ ହୋଇ ଆଉ କିଛି ହୋଇ ନଥାନ୍ତା, ମୁଁ free will କଥା ଚିନ୍ତା କରିବା ମଧ୍ୟ ମୋର ମାନସିକ ଏବଂ ଅନ୍ୟାନ୍ୟ ପରିସ୍ଥିତିର ଏକ ପରିଣାମ । ଯାହା ନିର୍ଦ୍ଦିଷ୍ଟ ଏବଂ ଏପରି ନିୟନ୍ତ୍ରିତ, ଯାହା ବିକଳ୍ପ ରହିତ ତାହା କେତେ ପରିମାଣରେ free will ? ଏ କ୍ଷେତ୍ରରେ 'ଅହଂ ସର୍ବସ୍ୟ ଜଗତଃ ପ୍ରଭବଃ ପ୍ରଳୟ ସ୍ତଥା' ରୂପକ ମାଲିକଟିକୁ ମାନିନେଲେ କଥା ସମାଧାନ ହୋଇଯାଏ । ଠିକ୍ ଅଛି, ମାଲିକ ଚାହିଁଲେ ହେଲା ନ ହେଲେ ନାହିଁ ।



## ୨୨-୮-୮୩

ଗୋଟାଏ ପ୍ରକାର ପୁରୁଣା ଗହୀର ପଙ୍କ ଅଛି । ତାକୁ ଉପରୁ ଦେଖିଲେ ଘାସ ପଡ଼ିଆ ପରି ଦେଖାଯାଏ । କେହି ଯଦି ସେଥିରେ ପଡ଼ିଯାଏ, ତେବେ ଉଠି ଆସିବା ସମ୍ଭବ ନୁହେଁ । କାରଣ ଉଠିବା ପାଇଁ ଚେଷ୍ଟାକଲେ ହିଁ ଆହୁରି ଭିତରକୁ ସେ ଟାଣିନିଏ । ସଂପୂର୍ଣ୍ଣ ବୁଡ଼ିଗଲା ପରେ, ପଙ୍କ ଘୋଡ଼େଇ ହୋଇଯାଏ, ଘାସ ଉଠିଯାଏ । ଆଉ କୌଣସି ଚିହ୍ନ ରହେ ନାହିଁ, ଜୀବନର, ସଂଗ୍ରାମର, ମୃତ୍ୟୁର । ସେଇଠୁ ଉଠିବାର ଏକମାତ୍ର ଉପାୟ ହେଉଛି ଚିତ୍କାର କରି ଡାକିଲେ ଯଦି କେହି ଜଣେ ଶୁଣେ ଏବଂ ଦଉଡ଼ି ଲଗେଇ ଟାଣିନିଏ ତେବେ ତାହା ସମ୍ଭବ । ଯଦି ଶୁଣିଲା ତ ଭଲ । ନାହିଁ, ଯଦି ନ ଶୁଣିଲା ତେବେ ଆଉ ଉପାୟ କ'ଣ ? ସଂସାରରେ ଲକ୍ଷ କୋଟି ଜୀବ ସଂକଟରେ ପଡ଼ି ଡାକିଛନ୍ତି । ତାଙ୍କର ଡାକ ତ୍ରାଣକର୍ତ୍ତାଙ୍କ ପାଖରେ ପହଞ୍ଚେ ନାହିଁ । ସେ ଏକଦା ମାତ୍ର ଗୋଟିଏ ହାତୀକୁ ଉଦ୍ଧାର କରିଥିଲେ, ଗୋଟିଏ ମୃଗୁଣୀକୁ ତ୍ରାଣ କରିଥିଲେ । କିନ୍ତୁ ତା'ପରେ କେତେ ସହସ୍ର ହାତୀ ମଲେଣି, ମୃଗୀ ମଲେଣି ଅଗଣିତ, ତାକୁ କିଏ ଗଣି ରଖୁଛି ? ସେମାନେ କ'ଣ ଡାକି

ନାହାନ୍ତି । ବିପଦରେ ପଡ଼ିଲେ କେହି କେବେ ଶଠତା ଆଚରଣ କରେ ନାହିଁ । ଯଥାସମ୍ଭବ ପ୍ରାଣଦେଇ ତାକେ ରକ୍ଷା କରିବା ପାଇଁ । କିନ୍ତୁ କିଛି ହୁଏ ନାହିଁ । କ'ଣ ନା' ଆମେ ଡାକି ଜାଣିନାହୁଁ, ଆଉ କେମିତି ଡାକିବା ? ମାଲିକଙ୍କ ବରାଦ ଅନୁସାରେ ଡାକିବା କ'ଣ ସମସ୍ତଙ୍କ ପକ୍ଷେ ସମ୍ଭବ ? ସେ କ'ଣ ଏମିତି କାବୁଲି ହୋଇଛନ୍ତି ନା ବେପାରୀ ହୋଇଛନ୍ତି ଯେ ଲିଡାଏ ଉଣାହେଲେ ଶୁଣିବେ ନାହିଁ । ମୋର ସବୁ ଅପୂର୍ଣ୍ଣତାକୁ ପୂର୍ଣ୍ଣ କରିବାକୁ, ମୋର ସବୁ ଅପରାଧକୁ କ୍ଷମା କରିବାକୁ, ମୋର ଅକ୍ଷମତାକୁ ଦୋଷ ବୋଲି ନ ଧରିବାକୁ ପରା ମାଲିକଙ୍କର କୀର୍ତ୍ତି ରଚିଛି । ତେବେ ଏ କ'ଣ ହେଉଛି ? ସେସବୁ କିଛି ନୁହେଁ । ଏ ମହାଶୂନ୍ୟରେ ଧୂଳିକଣାଟିଏ ଏ ପୃଥିବୀ, ସେଥିରେ କୋଟି କୋଟି ଜନ୍ତୁ ମରୁଛନ୍ତି । ଆଉ ଗୋଟାଏ ମରିଗଲେ କାହାର କ'ଣ ଯାଉଛି ? ଆର୍ତ୍ତଟିଏ ବିଚାରା, ସେ ତ'ଜ୍ଞାନୀ ନୁହେଁ । ସେ କେବଳ ତା'ର ବିପୁଳ ବିପରି ନିଶାରେ ଆଛନ୍ନ ରହିଛି । ଡାକୁଛି, ହେଜୁଛି ପୁଣି ଡାକୁଛି । ପାଣିରେ ବୁଡ଼ିବା ପୂର୍ବରୁ ମଣିଷର କାତର ଚିତ୍କାର । କିନ୍ତୁ କିଏ କାହିଁକି ଶୁଣନ୍ତା ? ସବୁ ନିର୍ମମ ନିରାସକ୍ତ । ସେ ଦୃଷ୍ଟିରୁ ଦେଖିଲେ ଏଠି ଯାହା କର, ଯେମିତି କର, ବଞ୍ଚ ଅଥବା ମର, କିଛି ଯାଏ ଆସେ ନାହିଁ । ରାତି ଅଧରେ ଯେତେ ଡାକିଲେ ଅଂଧାର ଘୁଞ୍ଚେ ନାହିଁ । ମନ ଆକାଶରେ ଏଥି କି ସଂଶୟ ଆସେ ଏବଂ ରହେ କିଛି କାଳ । ମୁଣ୍ଡ ପାତି ସହିଗଲେ ପୁଣି ହୁଏତ ସୂର୍ଯ୍ୟୋଦୟ ହୁଏ, ନ ହେଲେ ଘୋର ନୈରାଶ୍ୟ, ଅଥଳ ସମୁଦ୍ରରେ ଦିଗହରା ଅଂଧାର ଘୋଟିଯାଏ ଚାରିଆଡୁ ।



## ୨୩-୮-୮୩

ପରମ ତୀର୍ଥ ପୂଣ୍ୟଭୂମି ଭାରତବର୍ଷ, ଏଠି ଜନ୍ମିବା ଏକ ସୌଭାଗ୍ୟ । ବେଳେ ବେଳେ ଇଚ୍ଛାହୁଏ, ଏ ତୀର୍ଥ ଭୂମିକୁ ମରିବା ପୂର୍ବରୁ ଥରେ ଦେଖିନେବାକୁ । ନ ହେଲା ବା ଏ ବିପୁଳା ପୃଥ୍ୱୀକୁ ଦେଖିବାର ସୁଯୋଗ ନ ମିଳିଲା, ଅନ୍ତତଃ, ଭାରତକୁ ଥରେ ଦେଖନ୍ତି । ଏହା ଏକ ସ୍ୱଭାବିକ ଇଚ୍ଛା । ଆମର ପୁରୁଣା ପ୍ରଥାନୁସାରେ ସଂସାର ଯେତେବେଳେ ସ୍ୱୟଂସଂପୂର୍ଣ୍ଣ ହୋଇ ଚାରିଆଡୁ ହୁଗୁଳିଯାଏ, ପୁଅ, ଝିଅ, ନାତି, ନାତୁଣୀ, ସ୍ୱତନ୍ତ୍ରଭାବରେ ଠିଆହୋଇ ଯା'ନ୍ତି, ବୁଢ଼ାବୁଢ଼ୀମାନେ ତୀର୍ଥ କରିବାକୁ ଯାତ୍ରାରମ୍ଭ କରନ୍ତି, ଯଥାଶକ୍ତି ସଂସାର ଜଞ୍ଜାଳ ତୁଲେଇସାରି ଖୁବ୍ ସରଳ ସହଜ ମନଟିଏ ନେଇ ସେମାନେ ହିମାଳୟରୁ କୁମାରୀକାଯାଏଁ ଏ ବିଶାଳ ପୂଣ୍ୟ ଭୂମିକୁ ଦର୍ଶନ କରନ୍ତି, ହିମାଳୟର ଉଚ୍ଚତା, ବ୍ୟାପ୍ତି, ପ୍ରଶାନ୍ତି, ଗମ୍ଭୀରତା, ଶୁଭ୍ରତା, ଶୁଦ୍ଧତା ଆଖିରେଦେଖି ଅଙ୍ଗେ ନିଭାଇ ଆସନ୍ତି । ତା'ପରେ ପ୍ରସ୍ତୁତ ହୋଇଯା'ନ୍ତି ଆରପାରି ଯିବାକୁ । ଅତି ସୁନ୍ଦର, ଶୋଭନ ଏବଂ ସ୍ୱାଭାବିକ ପନ୍ଥା ।



## ୨୪-୮-୮୩

ସୁଖଦୁଃଖ ପ୍ରତି ସମଦୃଷ୍ଟି ସମ୍ପନ୍ନ ହେବା ସେପରି କହିଦେବା କଥାନୁହେଁ । ମା' ମୃତ୍ୟୁଶଯ୍ୟାରେ ପଡ଼ିଥିବେ, ପୁଅ କେମିତି ଏ ଜ୍ଞାନକୁ ଜୀବନରେ ପ୍ରୟୋଗ କରିବ ? ମା'ର ଯନ୍ତ୍ରଣା ଦେଖିଦେଲେ ତ ପ୍ରାଣକେନ୍ଦ୍ର ମଥିତ ହେବ । ମନରେ ଅଶାନ୍ତି ଆନ୍ଦୋଳନ ହେବ । ସେ ଭଳି ପରିସ୍ଥିତିରେ ସ୍ଥିର ରହିବାକୁ ସମସ୍ତେ ଉପଦେଶ ଦିଅନ୍ତି । କିନ୍ତୁ ନିଜ ଜୀବନରେ ସେ ମୁହୂର୍ତ୍ତ ଆସିଲେ କ୍ୱଚିତ୍ ମଣିଷ ସ୍ଥିର ରହିଛନ୍ତି । ଯେଉଁ ମୁମୂର୍ଷୁ ବୃଦ୍ଧାଟିକୁ ମା'ବୋଲି ସ୍ୱୀକାର କରାଯାଏ, ତା'ର ସମଗ୍ର ମୂଲ୍ୟ ସ୍ମୃତି ପ୍ରଧାନ । ଅତୀତରେ ଚାଳିଶ ପଚାଶ ବର୍ଷର ସ୍ମୃତି ତା'ସହିତ ଜଡ଼ିତ । ସେଇ ମୁହୂର୍ତ୍ତରେ ସେ ସେଇ ମୃତ୍ୟୁଶଯ୍ୟାରେ ସୀମିତ ନ ହୋଇ ବିସ୍ତୃତ ହୋଇଯାଏ ଏବଂ ସେ ସମସ୍ତ ଅନୁଭୂତିର ମୂଲ୍ୟ ତା'ସହିତ ସଂଶ୍ଳିଷ୍ଟ ହେଉଥିବାରୁ ମମତା ମାଧ୍ୟମରେ କଷ୍ଟ ସଂଚାରିତ ହୁଏ । ଏହାକୁ ସମସ୍ତେ ପାରିହୋଇଛନ୍ତି, ହେବେ ମଧ୍ୟ । କିଛି କାଳ ପରେ ମା'ର ସ୍ମୃତି ଲିଭି ଲିଭି ଆସିବ । ଏଣୁ ଅନ୍ତତଃ, ଅବଶ୍ୟମ୍ଭାବୀ ଏବଂ ସାମୟିକ ବୋଲି ବିଚାର କଲେ କଷ୍ଟ ଲାଘବ ହୋଇପାରେ । ମାତୃବିୟୋଗ ଅପେକ୍ଷା ପୁତ୍ର ବିୟୋଗ ଆହୁରି ମର୍ମନ୍ତୁଦ । କିନ୍ତୁ ଏଇ ମା'ତ ପୁଣି ପୁଅକୁ ହରାଇ କିଛିଦିନ ପରେ ଅନ୍ୟମାନଙ୍କ ମୁହଁକୁ ଚାହିଁ ବଞ୍ଚୁଛି । ତେବେ ହରେଇବା ଏବଂ ସ୍ୱାଭାବିକ ଭାବରେ ଘା'ଶୁଖିଗଲା ପରେ ତାକୁ ଭୁଲି ବଞ୍ଚିବା ଯଦି ଏପରି ସାଧାରଣ ଏବଂ ସାର୍ବଜନୀନ, ତେବେ ସେଥିରେ ଦୁଃଖ କାହିଁକି ? "ତସ୍ମାତ୍ ଅପରିହାର୍ଯେଽର୍ଥେ ନତ୍ୱଂ ଶୋଚିତୁମର୍ହସି" - ଏ ସମସ୍ତଙ୍କୁ ମିଥ୍ୟା ମାୟା କହି ଉଡ଼େଇଦେବା ହେଉଛି ଦୂରରେ ରହି ତାକୁ ଅନୁଭବରେ ନ ବୁଝିବା ମୃତ୍ୟୁ, ଯନ୍ତ୍ରଣା, ଦୁଃଖ, ଶୋକ ଅତି ବାସ୍ତବ ମୋହଜନିତ ହୋଇଥାଉ ବା ଅଜ୍ଞାନଜନିତ ହୋଇଥାଉ । ତେବେ ତାକୁ ସ୍ୱୀକାର କଲା ପରେ ଯଦି ସାମାନ୍ୟ ବିତସ୍ପୃହତା, ସତ୍ତାର କୌଣସି କେନ୍ଦ୍ରରେ [illegible] କରାଯାଇ ପାରେ, ଯଦି ସାକ୍ଷୀତ୍ୱ ସାମାନ୍ୟଭାବରେ ଅଣାଯାଇ ପାରେ ଦୃଷ୍ଟିରେ ତେବେ ଦୁଃଖ ପାଇମଧ୍ୟ ନ ପାଇଲା ପରି, ଶୋକ କରି ନ କଲାପରି - ଏ ପରିସ୍ଥିତିରେ ପାରିହେବା ସହଜ ହୋଇପାରେ, ଯୋଗସାଧନାର ଏସବୁ ଅତି କଠିନ ପରୀକ୍ଷାର ମୁହୂର୍ତ୍ତ । ବାକି ଶାସ୍ତ୍ରପୁରାଣ ମୁଖସ୍ଥ କରି ଭାଷଣ, ଯୁକ୍ତିକଲା ଭଳି ଏହା ଆଦୌ ନୁହେଁ - ଏଠି ଆଉ ଏତେ ଟିକେ ଏପାଖ ସେପାଖ କଥା ନାହିଁ.... । ଚିତାକୁ ଦେଖି ବୃହଦାରଣ୍ୟକ କହୁଛନ୍ତି - "ଏଇ ଅଗ୍ନି ହେଉଛି ସେଇ ଅଗ୍ନି, ଏଇ ଅଂଗାର ହେଉଛି ସେଇ ଅଂଗାର, ଏଇ ଧୂମ ସେଇ ଧୂମ" - ଯୋଗକୁ ଜୀବନରେ ପ୍ରୟୋଗ କରିପାରିଲେ ତାହା ପରୀକ୍ଷିତ ହୁଏ, ପ୍ରତିଷ୍ଠିତ ହୁଏ ।



## ୨୫-୮-୮୩

ସହଯାତ୍ରୀ ଦିନେ ଚାଲିଯିବ, ଏ ପ୍ରତ୍ୟୟ ମୂଳରୁ ଥିଲେ ବିଚ୍ଛେଦର ମୁହୂର୍ତ୍ତରୁ କିଛି ତୀବ୍ରତା ଉପଶମ ହୁଏ । କିନ୍ତୁ ଏକାଠି ରହି ଜୀବନଯାତ୍ରା କରୁଥିଲାବେଳେ ସେଭଳି ପ୍ରତ୍ୟୟକୁ ପୋଷଣ କରିବା ସମ୍ଭବ କିମ୍ବା ସ୍ୱାଭାବିକ ନୁହେଁ । ସହଯାତ୍ରୀଟି ଥାଏ ଥାଏ, ହଠାତ୍ ଓହ୍ଲେଇଯାଏ ଅଂଧାରକୁ । ସେଠୁ ତାକୁ ଟୋଳିଆଣିବାର

ସାମର୍ଥ୍ୟ ଏଯାଏ କାହାରି ନାହିଁ । ସୁଖଦୁଃଖ, ଯାତନା, ସଂକଟରେ ସମଭାଗୀଟିଏ ନ ଥିଲେ ଜୀବନ ମଧ୍ୟ ଖୁବ୍ ଦୁର୍ବହ ହୋଇଯାନ୍ତା, କିନ୍ତୁ ତାକୁ ପାଇ, ତାପାଇଁ ମମତାଚ୍ଛନ୍ନ ହୋଇ, ସେ ଚାଲିଗଲେ ହାହାକାର କରିବାକୁ ଦୁର୍ଭାଗ୍ୟ ମଧ୍ୟ ନଥାନ୍ତା । ଏକାକୀ ହେବା କୌଣସି ଅଭିନବ ଅନୁଭବ ନୁହେଁ । ତାହା ଏକ ଚିରନ୍ତନ ସତ୍ୟ, କିନ୍ତୁ ମୋହନିମୁଗ୍ଧ ଅବସ୍ଥାରେତାହା ଜଣାପଡ଼େ ନାହିଁ, ଇଚ୍ଛା ବି ହୁଏନାହିଁ ଜାଣିବାକୁ । ଗହଳି ଭିତରେ ଥାଇମଧ୍ୟ ବ୍ୟକ୍ତି ଯେ ଏକୁଟିଆ, ତାହା ଏକ ଗଭୀର ଏବଂ ଉପାଦେୟ ଅନୁଭବ ।



## ୨୬-୮-୮୩

"ସଂସାରୋୟମ୍ ଅତୀବ ବିଚିତ୍ରଃ" ବିଚିତ୍ର କହିବାର ଅର୍ଥହେଲା ଘୋର ବିସ୍ମୟକର । ପ୍ରତି ମୁହୂର୍ତ୍ତରେ ଚିତ୍ର ସ୍ୱୟଂସଂପୂର୍ଣ୍ଣ । ଜଣାପଡ଼େ ଯେ କୌଣସି ଏକ ଧାରା ଗଡ଼ିଚାଲିଛି ଏବଂ ଏ ଧାରାର ଏହା ଏକ ଅବିଚ୍ଛେଦ୍ୟ ଅଂଶ, କିନ୍ତୁ ଚଳଚ୍ଚିତ୍ର ପରି ଏହା ପ୍ରତ୍ୟେକ ବିନ୍ଦୁରେ ସ୍ୱତନ୍ତ୍ର । ଏଇ ଯେଉଁ ମୁହୂର୍ତ୍ତ ଅଛି ତାହା ଏକ ଚିତ୍ର ଏବଂ ତାହା ହେଇ ପାରିହୋଇଗଲା । ଏହା ଦେଖିପାରିଲେ ହିଁ ସଂସାର ବିଚିତ୍ର ବୋଲି କହିହେବ । ଆମେ ସାଧାରଣତଃ ସ୍ମୃତିଚିତ୍ରଗୁଡ଼ିକୁ ଏକାଠି କରି ତା' ସହିତ ନିଜକୁ ଯୋଡ଼ିଦେଉ, କିନ୍ତୁ ଅମୁକ ସାଲରେ ଏଇଠି ଜନ୍ମିଲି, ସେଇଠି ପଢ଼ିଲି, ଏପରି କଲି, ସେପରି କଲି, ଅମୁକ କି ସମୁକ ସହିତ ସଂପର୍କିତ ହେଲି - ଏ ସମସ୍ତ ମୁଁ । ଏ ସ୍ମୃତିରୂପଟି ଏକ ଯୁକ୍ତି, କେବଳ ବିଲୁପ୍ତକୁ ଧରିରଖିବାର ନିଷ୍ଫଳ ପ୍ରୟାସ । ଏଣୁ ଏହା ଭ୍ରମ । Here and now ଅର୍ଥାତ୍ ଏଇଠି ଏବଂ ଏବେ ଯାହା ଅଛି ତାହା ମୁଁ - ତା'ବି ଠିକ୍ ନୁହେଁ । କାରଣ କ'ଣ ଏବେ ଅଛି ତାହା ଜାଣିହେବ ନାହିଁ । ଜାଣୁ ଜାଣୁ ସେ ପାରିହୋଇଯିବ । ତା'ପରେ ସଂପୂର୍ଣ୍ଣ ଏକ ଅଜ୍ଞାତ ଏବଂ ଅପରିମେୟ ଭବିଷ୍ୟତକୁ କଳ୍ପିତ ରୂପଟିଏ ଦେଇ ତାକୁ ନିଜ ସହିତ ଏକତ୍ର କରିବା ମଧ୍ୟ ଏକ ବିଡ଼ମ୍ବନା । ଆସନ୍ତା ମୁହୂର୍ତ୍ତରେ କଣ ହେବ ଯାହାକୁ ଜଣାନାହିଁ, ସେ ସମଗ୍ର ଭବିଷ୍ୟତକୁ କେବଳ ଅନୁମାନ କରି ତା'ଉପରେ ନିଜକୁ ପ୍ରତିଷ୍ଠିତ କରି ଦେଖିବା ଏକ ପରୋକ୍ଷ ବାସନା ତୃପ୍ତି ଏବଂ ମିଥ୍ୟା । ସଂସାର ବଡ଼ ବିଚିତ୍ର । ସବୁକଥା ପାଇଁ ଗୋଟିଏ ସୂତ୍ର ରହିଛି, 'ଯେନ ଯଦା ଚ ଯତ୍ର' ଅର୍ଥାତ୍ ଯାହାଦ୍ୱାରା ଯେଉଁଠି ଏବଂ ଯେବେ, ଅର୍ଥାତ୍ । Time, space, Causation । ଏହାଦ୍ୱାରା ସବୁ ସଂଘଟିତ ହେଉଛି । ତେବେ କାର୍ଯ୍ୟ କାରଣ ସଂପର୍କ ଥିବାରୁ ମୁହୂର୍ତ୍ତଗୁଡ଼ିକ ସ୍ୱତନ୍ତ୍ର ନୁହଁନ୍ତି । ବୁଝିବାକୁ ଗଲେ ଖୁବ୍ ସୂକ୍ଷ୍ମ ଭୂମିରେ ସେ ଗୁନ୍ଥି ହେବାକୁ ବାଧ୍ୟ । ଏହା ହିଁ ବିଚିତ୍ର ।



## ୨୭-୮-୮୩

ପୁରାଣରେ ଅସୁରମାନଙ୍କ ଯୁଦ୍ଧର ବର୍ଣ୍ଣନା ଅଛି । ସେମାନେ କାମରୂପୀ, ଯେତବେଳେ ଯେମିତି ଇଚ୍ଛା, ରୂପ ପରିଗ୍ରହ କରି ପାରନ୍ତି, ବିଭିନ୍ନ ପ୍ରକାର ଅସ୍ତ୍ର ବିଭିନ୍ନ ଭୂମିରେ ଥାଇ ପ୍ରୟୋଗ କରି ପାରନ୍ତି । ସେମାନଙ୍କର ମୁଣ୍ଡ ହାଣିଦେଲେ ପୁଣି ଲାଗିଯାଏ, ରକ୍ତ ପଡ଼ିଲେ ପ୍ରତିବିନ୍ଦୁରୁ ସେମାନେ ପୁନର୍ଜୀବିତ ହୋଇ ଯୁଦ୍ଧ କରନ୍ତି, ଇତ୍ୟାଦି । ଏହା କେବଳ କବିର କଳ୍ପନା ନୁହେଁ, ଏହା ଆଉ ଏକ ପର୍ଯ୍ୟାୟର ବାସ୍ତବତା । ଧ୍ୟାନାବସ୍ଥାରେ କେତେପ୍ରକାର ରୂପ ଦିଶେ, କେତେ ପ୍ରକାର ବିଘ୍ନ ଆସେ । ଧ୍ରୁବକୁ ଘେରି କେତେ ବାଘ, ସିଂହ, ସାପ ତାଙ୍କ ଧ୍ୟାନଭଙ୍ଗ କରିବାକୁ ଚେଷ୍ଟା କରିଥିଲେ । ଧ୍ୟାନ ଭାଙ୍ଗିଦେଲେ ତାଙ୍କ କାମ ସରିଗଲା । ସେମାନେ ତେଣିକି ଅନ୍ତର୍ହିତ ହୋଇଯା'ନ୍ତି । ଧରାଯାଉ ଠିକ୍ ଧ୍ୟାନବେଳେ ନାନାପ୍ରକାର ବିକଟାଳ ଶବ୍ଦ, ବିଘ୍ନ ଉତ୍ପାଦକ ଶବ୍ଦ । ଜଣାଯାଏ ସତେ ବା କୌଣସି ଅସୁର କୁହାଟ ଛାଡ଼ୁଛି । କିନ୍ତୁ ଏହା କେବଳ Mystic ଅନୁଭବ । Rational ଦୃଷ୍ଟିରେ ଯାଇ ଦେଖିଲେ ହୁଏତ କେହି ଜଣେ କାଠ ଚିରୁଛି, ବାଲ୍‌ତିରେ ପାଣି କାଢୁଛି । ପ୍ରାୟ ଏହିପରି ଧୂଆଁର ଗୋଟାଏ ବିକଟାଳ ରୂପ ଦିଶୁଛି, କେବଳ ସେତିକିରେ ତାକୁ ବାସ୍ତବ ବୋଲି ଭାବିନେଲେ (ତାହା ବାସ୍ତବ ମଧ୍ୟ) Mystic ଅନୁଭବ । କିନ୍ତୁ ତା ପାଖକୁ ଯାଇ ଦେଖିଲେ ତାହା ଅତି ସାଧାରଣ ବସ୍ତୁ- ଧୂପକାଠିଟାଏ କୁହୁଳୁଛି । ବାଆସ୍, ଏଇଭଳି ଅତି ସାଧାରଣ ବସ୍ତୁ ବା ପରିସ୍ଥିତିକୁ ଅବଲମ୍ବନ କରି, ଅପଶକ୍ତି ବିଭିନ୍ନ ରୂପ ପରିଗ୍ରହ କରି ସାଧକକୁ ମାର୍ଗରୁ ବିଚ୍ୟୁତ କରିବାକୁ ଚେଷ୍ଟା କରନ୍ତି । ଜାଣିଗଲେ ଏବଂସେମାନଙ୍କୁ ଦେଖି ଜାଣିଲେ ତାହା ଖୁବ୍ ଆମୋଦକର । ଆଉ ବିଚିତ୍ର କଥା ହେଲା, ମାର୍ଗରୁ ସାମାନ୍ୟ ବିଚ୍ୟୁତ ହୋଇଗଲେ ସେମାନେ ଯେ ଯୁଆଡ଼େ ଚାଲିଯା'ନ୍ତି । ଆଉ ତାଙ୍କର ଦେଖା ମିଳେନାହିଁ, ପୁଣି ଥରେ ମନପ୍ରାଣକୁ ସଂହତକରି ଊର୍ଦ୍ଧ୍ୱକୁ ନ ନେବା ପର୍ଯ୍ୟନ୍ତ । ଏଥିରେ ଆଶାପ୍ରଦ କଥାଟି ହେଲା ଯେ, ବାରିରେ ପିଜୁଳି ପାଚିବା କଥା ଆମକୁ ଜଣାଯାଉ ନଥିଲେ ସୁଦ୍ଧା ରାତିରେ ବାଦୁଡ଼ି ଫଡ଼୍‌ଫଡ଼୍ ହେଲେ ତା'ର ସୂଚନା ମିଳେ । ଏଣୁ ଅପଶକ୍ତି ସକ୍ରିୟ ହେଲେ ଅନୁମାନ କରିହୁଏ ଯେ ବାରି ଗଛରେ ପିଜୁଳି ପାଚିଲାଣି । ଅବଶ୍ୟ ଏହା ଭାବୁ ଭାବୁ ଶତ୍ରୁପକ୍ଷ ବୁଲିଆସି ଅହଂକାର ବାଟେ ରାଜ୍ୟ ଅଧିକାର କରିନିଏ । ଏଣୁ ଉଭୟ ଦିଗରୁ ଯଥେଷ୍ଟ ସାବଧାନ ନ ହେଲେ ଏ ମାର୍ଗରେ ଯିବା କଠିନ ।



## ୨୮-୮-୯୦

ବିରୋଧ କରିବା ଶତ୍ରୁତା ନ ହୋଇପାରେ । ଶତ୍ରୁତାରେ ଅମିତ୍ର ଭାବ, ଦ୍ୱେଷ, ଘୃଣା, ଅସୂୟା ଥାଏ । ଶତ୍ରୁର ଉଦ୍ଦେଶ୍ୟ ବିରୋଧ କରିବା ନୁହେଁ, ବଧ କରିବା । କୌଣସି ଭୁଲ୍ କାମ କଲାବେଳେ ବନ୍ଧୁ ବିରୋଧ କରିପାରେ । ଉପଯୁକ୍ତ ବଂଧୁ ବିରୋଧ କରିବା ଉଚିତ୍ ଏବଂ ସ୍ୱାଭାବିକ । ଅତଏବ ଯେଉଁ ବିରୋଧୀ ଶକ୍ତିଗୁଡ଼ିକ ସାଧନାକୁ ତୀବ୍ରତର କରିବାରେ ପରୋକ୍ଷରେ ସାହାଯ୍ୟ କରନ୍ତି ତାଙ୍କୁ ଶତ୍ରୁ ପରିବର୍ତ୍ତେ ଛଦ୍ମବେଶୀ

ବନ୍ଧୁବୋଲି ବୁଝିବା ଉଚିତ୍ ହେବ । ତତ୍କାଳୀନ ବ୍ରିଟିଶ୍ ସରକାର ଶ୍ରୀ ଅରବିନ୍ଦଙ୍କୁ କାରାବଦ୍ଧ କଲେ । ଆପାତଦୃଷ୍ଟିରୁ ତାଙ୍କର ଶତ୍ରୁତା କଲେ । କିନ୍ତୁ ଶ୍ରୀ ଅରବିନ୍ଦ ସେମାନଙ୍କୁ ନିଜର ଉପକାରୀ ବନ୍ଧୁବୋଲି ସ୍ୱୀକାର କରିଛନ୍ତି, କାରଣ କରାଗାର ଭିତରେ ନୀରବ ନିର୍ଜନତାରେ ତାଙ୍କର ଯେଉଁ ଆତ୍ମିକ ଅନୁଭବ ହେଲା ତାହା ହୁଏତ ଅନ୍ୟତ୍ର ଭିନ୍ନ ପରିସ୍ଥିତିରେ ହୋଇପାରିନଥାନ୍ତା । ସେ ନିଜେ ସ୍ୱୀକାର କରିଛନ୍ତି ଯେ ତାଙ୍କର କେହି ଶତ୍ରୁ ନାହିଁ, ଶତ୍ରୁ ହେବା ସମ୍ଭବ ନୁହେଁ । ତାଙ୍କ ଦୃଷ୍ଟିରେ ଶତ୍ରୁମିତ୍ର ସମାନ । କିନ୍ତୁ ସେ ବିରୋଧକୁ ମଧ୍ୟ ସ୍ୱୀକୃତି ଦେଇଛନ୍ତି ଏବଂ ତାହା ସହାୟକ ବୋଲି କହିଛନ୍ତି । ତେବେ ସାଧାରଣ ମଣିଷ ପାଇଁ ଏହା କେତେଦୂର ସମ୍ଭବ ? ଶତ୍ରୁତା କରୁଥିବା ଲୋକଙ୍କ ସଂଖ୍ୟା ଅଗଣିତ, ତାକୁ କ'ଣ ଅସ୍ୱୀକାର କଲେ ଚଳିବ ? ମୋଟ ଉପରେ 'ସେ ଶତ୍ରୁ ନୁହେଁ' ଏତିକି ନିଜକୁ ନିଜେ କୁହାଯାଇ ପାରେ । ବେଳେ ବେଳେ ପ୍ରକୃତ ଶତ୍ରୁ ହୁଏତ' ମିତ୍ର ବେଶରେ ଆସି ଅନିଷ୍ଟ ସାଧନ କରିପାରେ। ଏଣୁ କେବଳ ବାହ୍ୟରୂପରୁ ହଠାତ୍ କିଛି ଭାବିଯିବା ଉଚିତ ନୁହେଁ ।



**୨୯-୮-୯୦**

ପ୍ରଭୁଙ୍କୁ ପତ୍ରଟିଏ ଦେଲେ ତା'ର ଅର୍ଥ କ'ଣ ? ସାଧାରଣତଃ ଆମେ ଫୁଲ ହିଁ ଅର୍ପଣ କରିଥାଉ । ପତ୍ର ଏବଂ ଫୁଲ ଭିତରେ ଗୋଟିଏ ପାର୍ଥକ୍ୟ ଅଛି । ନବୋଦ୍ଭଳ ପତ୍ରଟିଏ ଶୁଦ୍ଧ ଅଭିପ୍ସାର ରୂପ, ଆହୁରି କ'ଣ ହେବି, ଉପରକୁ ଉପରକୁ ଯିବି । ଏଇ ଶୁଦ୍ଧଭାବର ପ୍ରତୀକ । ଫୁଲଟି କିନ୍ତୁ ଚୂଡ଼ାନ୍ତ ସିଦ୍ଧିର ଅବସ୍ଥା ଯା । ପରେ ଆଉ କିଛି ହେବାର ନାହିଁ । ମୋ ସାମର୍ଥ୍ୟରେ ମାତ୍ର ଏତିକି ହେବାର ଥିଲା, ହେଇଗଲି, ଏଣିକି ମୋ ଭିତରେ ଆଲୋକ ପ୍ରବେଶ କରୁ ନ କରୁ ତାହା ମୋର ଦାୟିତ୍ୱ ନୁହେଁ । ଏହି ଦୃଷ୍ଟିରୁ ଦେଖିଲେ ଆମ ଚେତନାରେ ନିକଟତର ପ୍ରତୀକ ହେଉଛି କଅଁଳିଆ ପତ୍ର । ଫୁଲ ଅବସ୍ଥାକୁ ଆସି ପାରିଲେ ତ'ନିଶ୍ଚୟ ଭଲ । ସେଠି ପହଞ୍ଚିବା ପାଇଁ ସମସ୍ତଙ୍କର ଇଚ୍ଛା, କିନ୍ତୁ ହେଇପାରୁଛି କି ? ବରଂ ପତ୍ରଟିଏ ଅର୍ପଣ କରାଯାଉ । ପତ୍ରଂ, ପୁଷ୍ପଂ, ଫଳଂ, ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି । ତଦହଂ ଭକ୍ତ୍ୟୁପହୃତଂ ଅଶ୍ନାମି ପ୍ରଯତାତ୍ମନଃ ।

(୨) ମହାକାଳୀଙ୍କୁ ସବୁର କରିବାକୁ ହେଲେ ମା' ବାରମ୍ବାର ବାଟଜଗି ଠିଆ ହୋଇଛନ୍ତି । କାରଣ ମହାକାଳୀ ନିର୍ବିଚାର ସଂହାର କରନ୍ତି । ଦୃଷ୍ଟାନ୍ତ ହେଲା ଯେ ଶିଳ୍ପୀ ମାଟିରେ ପ୍ରତିମା ଗଢୁଥିଲାବେଳେ ପ୍ରଚୁର ଆନନ୍ଦ ପାଉଥାଏ, ସୁନ୍ଦର ସୁଠାମ କରି ଭାବମୂର୍ତ୍ତିକୁ ପ୍ରକାଶ କରୁଥାଏ । ହଠାତ୍ ଦେଖିଲା ବେଳକୁ ସବୁ ବଙ୍କା ଧରିଗଲାଣି । ସେ ବିନା ଦ୍ୱିଧାରେ ମୁଦ୍‌ଗର ପ୍ରହାର କରି ପୁଣି ମାଟିମେଞ୍ଚା କରିଦିଏ, ହୁଏତ' ଆଉଥରେ ଗଢ଼ିବା ପାଇଁ । ସେତେବେଳେ ସେ କୌଣସି ଅଂଗ ସୁନ୍ଦର ହୋଇଥିଲେ ତାକୁ ରଖି ବାକି ଭାଙ୍ଗିବାକୁ ଚାହେଁ ନାହିଁ । ପାଳନକର୍ତ୍ତା ହେଲେ 'ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍' କହିପାରନ୍ତି । ମା' ହେଲେ ଭଲ ଅସାର ସମସ୍ତଙ୍କ ପାଇଁ ମମତା ଥାଏ । ଏଣୁ ମା' ମହାକାଳୀଙ୍କୁ ବାଟ ଛାଡ଼ିଦେଉ ନ ଥିଲେ କାରଣ ମହାକାଳୀ ସମୂଳେ ସମସ୍ତଙ୍କୁ ଧ୍ୱଂସ କରିଦେବେ ।

(୩) ଏକଦା ସେ ଆଦି ଦେବତାମାନଙ୍କୁ ନାନା ରୂପରେ ଶାସନ କରିଥିଲେ । ଦେବତାମାନେ ଅତି ଦାମ୍ଭିକ, ନିଜ ବଳରେ ଅହଂକାରୀ ହେବାରୁ 'ବଳଂ ବଳବତାଂ ଚାହଂ' ବୁଝାଇବାକୁ ସେ ସେପରି କରିଥିଲେ । ଅନ୍ତରୀକ୍ଷରେ ଉମା ଆବିର୍ଭୂତ ହୋଇ ଇନ୍ଦ୍ରଙ୍କୁ ସେ ଅନାମଧେୟ ପକ୍ଷଙ୍କ ପରିଚୟ ଦେବା ପରେ, ଦେବତାମାନଙ୍କର ଅନ୍ୱେଷଣ ଆରମ୍ଭ ହେଲା । ଅଗ୍ନି ସର୍ବଦା ଊର୍ଦ୍ଧ୍ୱଭୂମିକୁ ଶିଖା ବିସ୍ତାର କରି ଖୋଜିଲେ । ବରୁଣ ଖୋଜିଲେ ନିମ୍ନ ଭୂମି । ବାୟୁ ଖୋଜିଲେ ଦଶଦିଗ ଏବଂ ଆକାଶ ବିସ୍ତୃତ ନିଶ୍ଚୟ ଧ୍ୟାନସ୍ଥ ହୋଇ ତାଙ୍କୁ ଖୋଜିଲେ, ପାଇଲେ ନାହିଁ, ଏ ପର୍ଯ୍ୟନ୍ତ ଖୋଜା ଚାଲିଛି, ଖୋଜା ଚାଲିଛି ।



## ୩୦-୮-୮୩

ନିଦ୍ରା ଏକ ପ୍ରକାର ମୃତ୍ୟୁ, କିନ୍ତୁ ଶରୀରଧର୍ମରେ ତାହା ଅପରିହାର୍ଯ୍ୟ । ଜୀବିତ ଥିବା ପର୍ଯ୍ୟନ୍ତ ଅହରହ ସ୍ନାୟୁ ଉପରେ ଯେଉଁ ଆଘାତ ହେଉଥାଏ, ବିଶେଷକରି ଜାଗ୍ରତ ଅବସ୍ଥାରେ ସେ ସମସ୍ତ କ୍ଷୟକ୍ଷତିକୁ ପୂରଣ କରିବାପାଇଁ ପ୍ରକୃତିର ଏ ବ୍ୟବସ୍ଥା । ନିଶ୍ଚେତକ ପ୍ରୟୋଗକରି ରୋଗୀଟିକୁ ଯେପରି ଶଲ୍ୟଚିକିତ୍ସା କରାଯାଏ, ସେହିପରି ନିଦ୍ରାବସ୍ଥାରେ ଭିତର ବାହାରର ସବୁ କ୍ଷତାଘାତକୁ ସଜାଡ଼ି ଦେଇ ପୁଣି ସଂଗ୍ରାମ ଭୂମିକୁ ପ୍ରକୃତି ଆମକୁ ପଠାଇଦିଏ । ଏଣୁ ନିଦ୍ରା ନଥିଲେ ଶରୀର ଭାଙ୍ଗି ପଡ଼ିବ, ସ୍ନାୟୁ ତୋରଣ ବିପର୍ଯ୍ୟସ୍ତ ହୋଇପଡ଼ିବ । କିନ୍ତୁ ଏ ନିଦ୍ରାର ବିଭିନ୍ନ ସୂକ୍ଷ୍ମରୂପ ରହିଛି । ମନ ଏବଂ ପ୍ରାଣଭୂମିକୁ ସେ ଅନୁପ୍ରବେଶ କରିଯାଏ । ଫଳରେ ମନରୁ ଆଗ୍ରହ ଅନ୍ତର୍ହିତ ହୋଇ ଦ୍ୱିଧା ଆଳସ୍ୟ ତାକୁ ଗ୍ରାସକରେ । ଆବେଗଭୂମି ମଧ୍ୟ ସ୍ତିମିତ ହୋଇଯାଏ । ଆଳସ୍ୟ Inertia ଜାଡ୍ୟ ହେଲା ନିଦ୍ରାର ଲକ୍ଷଣ । ଏହା ଅବିଦ୍ୟା ଏବଂ ଅଜ୍ଞାନର ମଧ୍ୟ ଲକ୍ଷଣ । ଏଣୁ ନିଦ୍ରାକୁ ତାମସ ଅଜ୍ଞାନର ସମପର୍ଯ୍ୟାୟବାଚୀ କରାଯାଇ ଥାଏ । ସାଧକ ମୁକ୍ତପୁରୁଷ ହେବାକୁ ଚେଷ୍ଟାକରେ, ମୁକ୍ତ ପୁରୁଷ ହେଉଛି ଜାଗ୍ରତପୁରୁଷ । ଏଣୁ ଚିର ଜାଗ୍ରତ ରହିବା ଏକ ଅନନ୍ୟ ସିଦ୍ଧି । ଏଠାରେ ଉଲ୍ଲେଖନୀୟ ଯେ ଉଭୟ ଶ୍ରୀମା ଏବଂ ଶ୍ରୀ ଅରବିନ୍ଦ ନିଦ୍ରାକୁ ଅତିକ୍ରମ କରି ଯାଇଥିଲେ । ଆମେ ନିଜ ଆୟୁଷର ପ୍ରାୟ ଏକ ତୃତୀୟାଂଶ ଏହି ଜଡ଼ତା ନିଶ୍ଚେତନାରୂପକ ନିଦ୍ରାରେ ଅତିବାହିତ କରିଥାଉ । ତେଣୁ ତଥାକଥିତ ଜାଗ୍ରତାବସ୍ଥାରେ କିପରି ଚେତନାର ଭୂମିକୁ ଜଡ଼ତା ବା ନିଦ୍ରାରୁ ମୁକ୍ତ ରଖାଯିବ ଏବଂ କ୍ରମଶଃ କିପରି ନିଦ୍ରାର ଘନାନ୍ଧକାର ଭିତରେ ଜାଗ୍ରତ ଚେତନାକୁ ଅନୁପ୍ରବେଶ କରାଯାଇ ପାରିବ ? ସାଧକର ନିଦ୍ରା ପ୍ରାୟ ଜାଗ୍ରତାବସ୍ଥା ପରି ସଚେତନ । ନିଦ୍ରାକୁ ଜୟ ନ କରିବାଯାଏଁ ଚେତନା ଦିବ୍ୟାଭିମୁଖୀ ହୋଇପାରିବ ନାହିଁ ।



## ୩୧-୮-୮୩

ଅନ୍ୟକୁ ଉପଦେଶ ଦେଇ ସଂଶୋଧନ କରିବାର ପ୍ରବୃତ୍ତି ପ୍ରାୟ ସାର୍ବଜନୀନ । ଏହା ଏକ ନିର୍ଦ୍ଦିଷ୍ଟ ମନସ୍ତାତ୍ତ୍ୱିକ କ୍ରିୟା । ବ୍ୟକ୍ତି ପ୍ରଥମେ ଭାବିନିଏ ଯେ ସେ କେବଳ ଠିକ୍ ଏବଂ ଅନ୍ୟ ସମସ୍ତେ ଭୁଲ୍ । ଏ ଦୁଇଟିଯାକ ଭାବନା ଅହଂପ୍ରସୂତ ଅଜ୍ଞାନ । ଗୁରୁ ନାନକ ଏକଦା ମକ୍କା ଯାତ୍ରାରେ ଯାଇଥିଲେ । କଥିତ ଅଛି ଯେ, ସେ ସେଠାରେ ମସ୍‌ଜିଦ୍ ଆଡ଼କୁ ଗୋଡ଼କରି ଶୋଇଯାଇଥିଲେ । ଇସ୍‌ଲାମ୍ ପୁରୋହିତମାନେ ଆସି ତାଙ୍କୁ ଉଠାଇ ସଂଶୋଧନ କରିବାକୁ କହିଲେ । "ଆଲ୍ଲାଙ୍କ ପୁଣ୍ୟନିବାସ ଆଡ଼େ ଗୋଡ଼ ଲମ୍ବେଇ ଶୋଇବା ଭୁଲ୍" ନାନକ ତାଙ୍କୁ ଯୋଡ଼ିଏ ପ୍ରଶ୍ନ କରିଥିଲେ । ପ୍ରଥମଟି ହେଲା "ମୋର ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ଭଳି ଗୋଡ଼ ଯୋଡ଼ିକ ମଧ୍ୟ ଆଲ୍ଲାଙ୍କ ତିଆରି, ତାହା କାହିଁକି ଓ କିପରି ମୁଣ୍ଡ ଅପେକ୍ଷା ଅଧିକ ଅପବିତ୍ର ?" ଅନ୍ୟଟି ହେଲା "ଯଦି ତାହା ହୋଇଥାଏ, ମୁଁ ଆପଣଙ୍କ ପ୍ରସ୍ତାବରେ ରାଜି, ମୋତେ ଆପଣ ଦେଖେଇ ଦିଅନ୍ତୁ କେଉଁ ଦିଗରେ ଆଲ୍ଲାନାହାନ୍ତି ମୁଁ ସେଇଆଡ଼େ ଗୋଡ଼କରି ଶୋଇବି ।" ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଚି ଯେ ପୁରୋହିତମାନେ ନିଜର ଜ୍ଞାନକୁ ଏକମାତ୍ର ଜ୍ଞାନ ଭାବି ତା'ର ବ୍ୟତିକ୍ରମ ଦେଖିଲେ ତତ୍‌କ୍ଷଣାତ୍ ସଂଶୋଧନ କରିବାର ଚେଷ୍ଟା କରିଥାନ୍ତି । ଏହା ହିଁ ଆମେ ଅହରହ କରିଥାଉଁ । ଆଉ ଜଣେ ଯଦି ଆମଠାରୁ ଭିନ୍ନ ଆଚରଣ କଲା, ଆମେ ତତ୍‌କ୍ଷଣାତ୍ ଭାବିନେଉ ଯେ ସେ ଭୁଲ୍ କରୁଛି ଏବଂ ତାକୁ ସଂଶୋଧନ କରିବା ଆମର କର୍ତ୍ତବ୍ୟ । ଏହା ସାଧାରଣତଃ ଅନ୍ୟଠୁଁ ଶିଖିଥିବା, ପୋଥିରୁ ପଢ଼ିଥିବା ଚିରାଚରିତ ଜ୍ଞାନରେ ହିଁ ହୋଇଥାଏ । ଯେ ନିଜେ କିଛି ଅନୁଭବ କରିଛନ୍ତି ସେ କାହାକୁ ସଂଶୋଧନ କରନ୍ତି ନାହିଁ । ତାଙ୍କର ଆଚରଣ ହିଁ ନୂତନମାର୍ଗ ପ୍ରଦର୍ଶନ କରି ଅନ୍ୟମାନଙ୍କୁ ସଂଶୋଧିତ କରିଥାଏ । ଆମଭିତରେ ଶିଶୁଟାଏ ଚିରକାଳ ଥାଏ – ଯେ ସର୍ବଦା ଭୁଲ କରେ ଏବଂ ଜଣେ ବେତ୍ରାଧାରୀ ବାପ ମଧ୍ୟ ଥାଏ ଯେ ସଂଶୋଧନ କରିବାକୁ ସଦାବେଳେ ତତ୍ପର ରହିଥାଏ । କିନ୍ତୁ ଏ ବାପଟି ଅନ୍ୟକୁ ସଂଶୋଧନ କରେ, ନିଜକୁ ନୁହେଁ । ସାଧାରଣ ଜୀବନରେ ନିଜର ସନ୍ତାନ, ଶିଷ୍ୟ, ପ୍ରିୟ ପରିଜନ କେବଳ ନୁହେଁ କାହାକୁ ମଧ ହଠାତ୍ ସଂଶୋଧନ କରିଦେବା ଅହଂକାର । ସେପରି ଆଚରଣ ଅଶାଳୀନ, ଅସାଧୁ ଏବଂ ରୁକ୍ଷ । ତାହା ଏଇ କାରଣରୁ ବର୍ଜନୀୟ । ପ୍ରୟୋଜନ ହେଲେ ବା ଭୁଲ୍ ଥିବା ବ୍ୟକ୍ତି ନିଜେ ଆସି ପଚାରିଲେ ବିନୟର ସହିତ ନିଜେ ଜାଣିଥିବା ବିକଳ୍ପଟିକୁ ତାଙ୍କ ବିଚାରପାଇଁ ଦିଆଯାଇପାରେ । ଏ ବିପୁଳ ସଂସାରରେ କିଏ କେତେ ପ୍ରକାରେ ବୁଝିଛନ୍ତି । ଏଠି କିଏ ଠିକ୍ କିଏ ଭୁଲ୍ ?



## ୧-୯-୮୩

ସଂସାରରେ ଥିଲେ ସଂଘାତ ହେବ ନାହିଁ, ଏକଥା କିଏ କହିବ ? କିନ୍ତୁ ବିଭିନ୍ନ ବିଷମ ପରିସ୍ଥିତିରେ ସମତା ରକ୍ଷା କରିବା ହିଁ ସାଧନା । ଭିତରେ ସଯତ୍ନରେ ଏକ ଅବିଚଳିତ ବିନ୍ଦୁକୁ ଆବିଷ୍କାର କରି ତାକୁ ପାଳନ କରିବାକୁହୁଏ । ବାହାରେ ଯେତେ ବିକ୍ଷୁବ୍ଧ କରିବାର ଉପାଦାନ ଥିଲେ ସୁଦ୍ଧା ଭିତରେ ଅବିଚଳିତ ରହିପାରିଲେ,

କୌଣସି ପ୍ରଭାବ ପଡ଼େ ନାହିଁ । କାମ ଏଷ କ୍ରୋଧ ଏଷ ରଜୋଗୁଣ ସମୁଦ୍‌ଭବଃ ମହାଶନୋ ମହାପାପ୍‌ମା ବିଧ୍ୟେନା ମିହ ବୈରିଣଂ । କାମ ଲୋଭ ରୂପରେ, କ୍ରୋଧ, ବିରକ୍ତି, ଘୃଣା, ଈର୍ଷା, ଅସୂୟା ରୂପରେ ମଧ୍ୟ ପ୍ରକଟିତ ହୋଇଥାଏ । ବିକ୍ଷୁବ୍ଧ ହେବାର ଲାକ୍ଷଣିକ ବିକାର ହେଲା କ୍ରୋଧ ଏବଂ କାମ । ସର୍ବ ପ୍ରକାର ପରିସ୍ଥିତିରେ ସମତା ରକ୍ଷା କରିପାରୁଥିବା ବ୍ୟକ୍ତି କ୍ରୋଧ କରନ୍ତି ନାହିଁ କୌଣସି କାମନାର ସଞ୍ଚାର ହେଲେ ତାକୁ ବୁଝିଯାଇ ବର୍ଜନ କରନ୍ତି । କ୍ରୋଧ ନ କରିବା ହୁଏତ ଦୁର୍ବଳତା, ଭୀରୁତା, ପ୍ରଶାସନିକ ଅପାରଗତା ବୋଲି ବିଚାର କରାଯାଇ ପାରେ, କିନ୍ତୁ ତାହା ଭୁଲ୍ । ଆଧ୍ୟାତ୍ମିକ ଭିତ୍ତିରୁ ଦୃଢ଼ତା ପ୍ରକାଶ କରାଯାଇ ପାରେ । ସେଥିରେ ସବୁ ଚାଳିତ ଏବଂ ଶାସିତ ହୋଇପାରେ । ଏଣୁ ମୂଳ କଥାହେଲା ବିଚଳିତ ନ ହେବା ।



## ୨-୯-୮୩

ସାତ୍ତ୍ୱିକ ଅଥବା ତାମସିକ ହେଉ, ପ୍ରତ୍ୟେକ ପ୍ରବୃତ୍ତି ପ୍ରକାଶିତ ହେବାପାଇଁ ଚାପସୃଷ୍ଟି କରେ । ପ୍ରକାଶିତ ହୋଇଗଲେ ପ୍ରବୃତ୍ତିର ବିନାଶ ହୁଏନାହିଁ, ବରଂ ପ୍ରମାଣ ଏବଂ ପ୍ରତିଷ୍ଠା ପ୍ରାପ୍ତ ହୁଏ । ତା'ପରେ ଆହୁରି ଅଧିକ ପ୍ରକାଶିତ ହୋଇ ଜୀବନର ଅଧିକରୁ ଅଧିକତର ଅଂଶକୁ ଅଧିକାର କରିବା ପାଇଁ ପ୍ରୟାସ ହୁଏ । ଆବେଗ ପାଇଁ ପରିସ୍ଥିତି ଦାୟୀ, କାରଣ ପରିସ୍ଥିତିର ସଂଘାତରେ ଯେଉଁ ପ୍ରତିକ୍ରିୟା ହୁଏ ତାହା ହିଁ ଆବେଗ । ପରିସ୍ଥିତି ବଦଳିଗଲେ, ତଦନୁଯାୟୀ ପ୍ରତିକ୍ରିୟା ମଧ୍ୟ ବଦଳିଯିବା କଥା । ଧରାଯାଉ କ୍ରୋଧ । ଯେଉଁ ପରିସ୍ଥିତିରେ ଯାହା ଉପରେ କ୍ରୋଧ ହେଉଥାଏ ତା'ର ବିନାଶ ଘଟିଲେ ଅଗ୍ନୀନ୍ଧନ ପରି କ୍ରୋଧର ମଧ୍ୟ ବିନାଶ ହୋଇଯିବା କଥା । ଉପଜୀବ୍ୟ ବା ଆଲମ୍ବନ ନଥାଇ କିପରି ତାହା ରହିବା ସମ୍ଭବ ? କିନ୍ତୁ ଇନ୍ଧନର ସମାପ୍ତିରେ ଅଗ୍ନି ନିର୍ବାପିତ ନ ହୋଇ ନୂତନ ଇନ୍ଧନ ପାଇଁ ଅପେକ୍ଷା କରେ । ଏଣୁ ଜୀବନରେ ଥରେ କ୍ରୋଧ ପ୍ରକାଶିତ ହେବା ସମସ୍ୟା ନୁହେଁ । ତା'ର ଏକ ନିଭୃତ କେନ୍ଦ୍ର ଅଛି । ସେ ସେଠାରେ ଥାଏ ଏବଂ ଅନୁକୂଳ ଅବସ୍ଥାହେଲେ ଫୁଟି ବାହାରି ଆସେ । ଏଣୁ ଦମନ କରିବାକୁହେଲେ କେନ୍ଦ୍ରରୁଆୟତ୍ତ କରିବାକୁହେବ, ପ୍ରକାଶିତ ହୋଇଗଲେ ନୁହେଁ । ଯୌନ ପ୍ରବୃତ୍ତିକୁ ନିରୋଧକରି ତାକୁ ଶାସନ କରାଯାଏ ନାହିଁ, ବରଂ ତାକୁ ସଂପୂର୍ଣ୍ଣ ଲଗାମ ଛାଡ଼ିଦେଲେ ସେ ବଳେ କ୍ଳାନ୍ତହୋଇ ନିର୍ବାପିତ ହୋଇଯାଏ ବୋଲି ଭଗବାନ୍ ରଜନୀଶଙ୍କ ଦୃଢ଼ମତ । କିନ୍ତୁ ଏହା ଆର୍ଯ୍ୟ ସ୍ୱୀକୃତ କିମ୍ବା ବିଚାରବୁଦ୍ଧି ସମର୍ଥିତ ମତ ନୁହେଁ । ସାମାନ୍ୟ ବିଚାରକଲେ ଜଣାଯାଉଛି ଯେ ପ୍ରବୃତ୍ତିମାର୍ଗରେ ଶାନ୍ତି ସମ୍ଭବ ନୁହେଁ । ଏଥିପାଇଁ ଯଯାତିଙ୍କ ଅନୁଶାସନ ମହାଭାରତରେ ଲିପିବଦ୍ଧ ରହିଛି । ଦଶହଜାର ବର୍ଷ ଯୌବନ ଭୋଗ କଲାପରେ ଯଯାତି ସ୍ୱାନୁଭବରୁ ଘୋଷଣା କରୁଛନ୍ତି ଯେ, "ହେ ଅଳ୍ପାୟୁ ମାନବ, ତୁମ ଜୀବଦ୍ଦଶାରେ ପ୍ରବୃତ୍ତିମାର୍ଗରେ ଶାନ୍ତିନାହିଁ । କାରଣ ସେଇ ମାର୍ଗରେ ଦଶହଜାର ବର୍ଷ ଗତିକରି ମୁଁ ଶାନ୍ତି ପାଇ ନାହିଁ ।" ଏହା ହିଁ ବୁଦ୍ଧିସମ୍ମତ ବୁଝାମଣା । ଏଣୁ ଏ ବିଷୟରେ ସତର୍କ ରହିବା ବିଧେୟ ।



ଛୋଟ ଛୋଟ ବିରୋଧ ହେଉ ନ ଥିଲେ ଅଗ୍ରଗତିରେ ଶକ୍ତି ପ୍ରୟୋଗ ହୋଇପାରିବ ନାହିଁ । ନିର୍ବିରୋଧ ନିରବଚ୍ଛିନ୍ନ ବ୍ୟାପ୍ତି ଭିତରେ ଗଭୀରତା ପାଇବା କଷ୍ଟସାଧ୍ୟ । କିନ୍ତୁ ସାଧାରଣ ସଂସାରର ଶବ୍ଦ-ସଂଘାତ ଭିତରେ ଧ୍ୟାନକଲେ, ବିକ୍ଷୋଭକୁ ସ୍ୱୀକାର କରି ତାକୁ ଅତିକ୍ରମ କରିବାର ସୁଯୋଗ ମିଳେ । ଛୋଟ ଛୋଟ ପିଲାମାନେ ଜଙ୍ଗଲକୁ କଣ୍ଢେଇକୋଳି ଖାଇବାକୁ ଯାଆନ୍ତି, ଜଙ୍ଗଲରେ ମାର୍ଗ ନାହିଁ କି ଦିଗ ନାହିଁ । ସେମାନେ ଇତସ୍ତତଃ ନିର୍ବିରୋଧ ବୁଲୁଥିବା ବେଳେ ଗୋଟିଏ ଦିଗରୁ ଯଦି ବାଘ ଗର୍ଜନ ଶୁଭେ, ତା'ର ବିପରୀତ ଦିଗରେ ସେମାନେ ଦୌଡ଼ନ୍ତି । ବାଘ ଜଙ୍ଗଲରେ ଥାଇ ଗର୍ଜନ କରେ । ଏଣୁ ସ୍ୱତଃ ସେମାନେ ଜଙ୍ଗଲ ବାହାରକୁ ଦୌଡ଼ି ପଳାନ୍ତି । ସେହିପରି ବିରୋଧ ।

ଔଷଧ ପ୍ରକୃତରେ ରୋଗର ଉପଶମ କରେ ନାହିଁ । ସ୍ୱାସ୍ଥ୍ୟର ସମତା ରକ୍ଷା କରିବା ଏକ ପ୍ରାକୃତିକ କ୍ରିୟା । ଜଣେ ତଳେ ପଡ଼ିଗଲେ ନିଜେ ନିଜେ ସେ ନିଶ୍ଚୟ ଉଠି ଠିଆହେବ । କିନ୍ତୁ ଜଣେ ହାତ ବଢ଼େଇ ଦେଲେ, ଟିକେ ସହଜରେ ଉଠିପାରିବ । ଉଠିବ ସେ ନିଜେ, କିନ୍ତୁ ତା'ର ଉଠିବା ଶକ୍ତିକୁ ହାତ ବଢ଼େଇ ଥିବା ବ୍ୟକ୍ତିଟି ବଳବତ୍ତର କରିଦେବ । ସେହିପରି ଔଷଧ । ଡାକ୍ତରୀ ଚିକିତ୍ସାରେ ସେମାନେ ଲାକ୍ଷଣିକ ରୋଗକୁ ଚିକିତ୍ସା କରିଥାନ୍ତି । ଫଳରେ ତା'ର ପରିଣାମର ଅନ୍ୟାନ୍ୟ ଦିଗପ୍ରତି ସଚେତନ ହୋଇପାରନ୍ତି ନାହିଁ, ମୁହଁ ଉପରେ ମଶା କାମୁଡ଼ିବା ବେଳେ ଯଦି ଗୋଟିଏ ବଡ଼ ଲୁହାର ମୁଦ୍‌ଗର ପିଟାଯାଏ, ଫଳରେ ମଶା ମରେ ବା ଉଡ଼ିଯାଏ କିନ୍ତୁ ମୁହଁର ଅବସ୍ଥା ସମ୍ଭାଳିବାକୁ ଜୀବଦ୍ଦଶା ବିତିଯାଇ ପାରେ । ତଣ୍ଟିକାଟୁଛି ଯଦି, ଏପରି ଔଷଧ ଦିଆଯିବ ଯେ ଲକ୍ଷଣ ତ' ନିଶ୍ଚୟ ଚାଲିଯିବ, ହେଲେ ତା ସାଙ୍ଗେ ସାଙ୍ଗେ ଭିତରେ ଅନେକ କ୍ଷୟକ୍ଷତି ହୋଇଯିବ । ଗୋଟାଏ ଦୃଷ୍ଟିରୁ ଶଲ୍ୟ ଚିକିତ୍ସା ଶରୀରବିଜ୍ଞାନ ବିଷୟରେ ଡାକ୍ତରୀ ଚିକିତ୍ସାର ତୁଳନା ନ ଥିଲେ ସୁଦ୍ଧା ଔଷଧଦୃଷ୍ଟିରୁ ତାହା ଖୁବ୍ ସ୍ଥୂଳ ଏବଂ ଅପରିଣତ ।

ତା' ତୁଳନାରେ ହୋମିଓପାଥି ଅନେକ ଉନ୍ନତ । ତା'ର ନୀତି ହେଲା 'ସମେ ସମେ' ସେଥିରେ ରୋଗୀକୁ ଚିକିତ୍ସା କରାଯାଏ ରୋଗକୁ ନୁହେଁ । ଔଷଧ ଏପରି ଏକ ପଦାର୍ଥ ଯାହା ସୁସ୍ଥଲୋକ ବ୍ୟବହାର କଲେ ରୋଗର ଲକ୍ଷଣ ପ୍ରକାଶ ପାଇବ । କିନ୍ତୁ ସେଇ ଲକ୍ଷଣ ଶରୀରରେ ଥିଲେ ଅଳ୍ପମାତ୍ରାରେ ସେଇ ଔଷଧ ସେବନ କରି ସ୍ୱାସ୍ଥ୍ୟ ଲାଭ କରାଯାଇ ପାରିବ । ଏଣୁ ଗୋଟିଏ ଶାରୀରିକ ଲକ୍ଷଣ ନୁହେଁ, ବରଂ ରୋଗୀର ସମସ୍ତ ମାନସିକ ପ୍ରାଣିକ, ପାରିବାରିକ ବିଷୟକୁ ବିଚାରକୁ ନେଇ ଔଷଧ ସେବନ କରାଯାଇଥାଏ । ଏହାର ଅନ୍ୟ ଆକର୍ଷଣୀୟ ଦିଗଟି ହେଲା ଯେ ରୋଗ ଭଲ କରି ନ ପାରିଲେ ବି ଅନ୍ତତଃ ଅନ୍ୟ କିଛି କ୍ଷତି କରେ ନାହିଁ । ରୋଗ ତ ନିଶ୍ଚୟ ଭଲ ହୁଏ, ତା' ବାହାରେ ଏହା ଏକ ଅତି ନିରାପଦ ଔଷଧବିଧି । ବିଶେଷତଃ କବିରାଜିର ଆଉ ଏକ ଗୁଣ ଅଛି । ତା'ର ପ୍ରତ୍ୟେକ ଔଷଧ ରୋଗର ନିରାକରଣ କରେ ଏବଂ ରୋଗଜନିତ କ୍ଷୟକ୍ଷତିକୁ ମଧ୍ୟ ପୂରଣ କରେ । ସେଥିରେ ଅବଶ୍ୟ ଦ୍ରବ୍ୟଗୁଣ, ଉପାଦାନ, ଅନୁପାତ ଆଦିକୁ ଜାଣିବା ଲୋକ ବୁଝି ଔଷଧ ପ୍ରସ୍ତୁତ ଏବଂ ପ୍ରୟୋଗ କରିବା ବିଧେୟ ।



## ୪-୯-୮୩

ସମଂ ବ୍ରହ୍ମ । ଗୋଟିଏ ଦୃଷ୍ଟିରୁ ଦେଖିଲେ ଏ ଅକଳନୀୟ ବିଶ୍ୱବ୍ରହ୍ମାଣ୍ଡରେ ମଣିଷ ଏକ ଅକିଞ୍ଚିତ୍କର ଧୂଳିକଣିକାବତ୍ ତୁଚ୍ଛ, ମୂଲ୍ୟହୀନ । ଅତିବୃହତ୍ ସୌରମଣ୍ଡଳ ନୀହାରିକାମଣ୍ଡଳକୁ ପରିଚାଳିତ କରୁଥିବା ଶକ୍ତି ତା' ପ୍ରତି ଦୃଷ୍ଟି ଦେବାର କିଛି ପ୍ରୟୋଜନ ନାହିଁ । ଏହା ଏକ ଅଜ୍ଞାନ । ଏହା କେବଳ ସ୍ଥୂଳ ଆକାରଗତ ପାର୍ଥକ୍ୟ ଦ୍ୱାରା ପ୍ରଭାବିତ । ଯାହା ଯେତେ ବଡ଼ ତାହା ସେତେ ବେଶୀ ଗୁରୁତ୍ୱପୂର୍ଣ୍ଣ ବୋଲି ଭାବିବା ଠିକ୍ ନୁହେଁ । ଅନ୍ୟ ଦୃଷ୍ଟିରୁ ଦେଖିଲେ, ଗୋଟିଏ ଅଣୁକୁ ଗଠନ କରିବାରେ ଯେତିକି ଶ୍ରମ ବା ମନଯୋଗର ପ୍ରୟୋଜନ, ତାହା ଗୋଟିଏ ସୂର୍ଯ୍ୟ ପିଣ୍ଡ ଗଢ଼ିବାରେ ପ୍ରୟୋଜନ ନ ହୋଇପାରେ । ସୂକ୍ଷ୍ମାତ୍ ସୂକ୍ଷ୍ମ ଜଗତ ଗୁଣାତ୍ମକ ବିଚାରରେ ବେଶୀ ମହୀୟାନ୍ । ଏହାମଧ୍ୟ ସମପରିମାଣରେ ଅଜ୍ଞାନ । ପ୍ରକୃତରେ ଗୋଟିଏ ମାତ୍ର ଅକଳନୀୟ ଶକ୍ତି ସମାନ ମାତ୍ରାରେ ଅଣୋରଣୀୟାନ ଠାରୁ ମହତୋମହୀୟାନ ପର୍ଯ୍ୟନ୍ତ ସବୁଠାରେ କାର୍ଯ୍ୟରତ । ବାହ୍ୟତ, ଦେଶକାଳର ପ୍ରବାହରେ କୋଟି କୋଟି ତରଙ୍ଗରେ ଅସଂଖ୍ୟରୂପ ଉଦ୍ଭବ ହୋଇ ବିଲୀନ ହୋଇଯାଉଛନ୍ତି । କିନ୍ତୁ ଏ ମହାପ୍ରକ୍ରିୟାର ପଶ୍ଚାତ୍‌ରେ ଏକ ସ୍ଥିର ଅବିଚଳିତ ସତ୍ତା ବିଦ୍ୟମାନ । ତାକୁ ଅନୁଭବକୁ ଆଣିପାରିଲେ ସଂସାରବିମୁଖ ହେବା ସେପରି କିଛି ଅନିବାର୍ଯ୍ୟ ନୁହେଁ, 'ମମାତ୍ମା ସର୍ବଭୂତାତ୍ମା' ଏକ ଅଦ୍ଭୁତ ଆଧ୍ୟାତ୍ମିକ ଅନୁଭବ ।



## ୫-୯-୮୩

ଅଜ୍ଞାତସାରରେ ଆଉ ଜଣେ କେହି ଆମକୁ ଚାହିଁ ରହିଛି । ଆମର ଛୋଟ ଛୋଟ ଅସୁବିଧା ଦୂର କରିଦେଉଛି, ବିପଦକୁ ବାରଣ କରୁଛି, ଏ ଅନୁଭବ ମୁହୂର୍ତ୍ତକ ପାଇଁ ଆସିଚାଲିଯାଏ । ପୁଣି ତର୍କ ବୁଦ୍ଧିବଳରେ ସେ ସମସ୍ତକୁ ଭିତ୍ତିହୀନ କଳ୍ପନା ବୋଲି ଭାବି ଆମେ ଗୁରୁତ୍ୱ ଦେଉନା । ଅତିବେଶି ହେଲେ ସେସବୁ ଆକସ୍ମିକ ବୋଲି ହସି ଉଡ଼େଇ ଦେଉ । ତା'ର କାରଣ ହେଲା ଯେ ଆମର ସୂକ୍ଷ୍ମ ଭୂମିରେ ଘଟୁଥିବା ଏ ପାରମାଣବିକ କ୍ରିୟାକୁ ଦେଖି ବୁଝିବାକୁ ସୂକ୍ଷ୍ମ ଦୃଷ୍ଟି କିମ୍ବା ଅବବୋଧ ନାହିଁ । ବୁଝିପାରିଲେ କୃତଜ୍ଞତା ହିଁ ଏକମାତ୍ର ନିବେଦନ ।



## ୬-୯-୮୩

ଦିନେ ସକାଳୁ ଜଣେ ପ୍ରଖ୍ୟାତ ଡାକ୍ତରଙ୍କ ଘରକୁ ତାଙ୍କ ପାଖ ପଡ଼ିଶାରେ ରହୁଥିବା ଜଣେ ବୟସ୍କ ଭଦ୍ରଲୋକ ଆସି ପହଞ୍ଚିଲେ । ଡାକ୍ତର ତାଙ୍କୁ ଦୂରରୁ ଦେଖି ଚା ଜଳଖିଆ ଚଞ୍ଚଳ ସାରି ଷ୍ଟେଥୋସ୍କୋପ୍ ଧରି ଖୁବ୍ ବ୍ୟସ୍ତତା, ଆଗ୍ରହ ଏବଂ ଆତ୍ମୀୟତାର ସହିତ ଆସି ତାଙ୍କ ସାମ୍ନାରେ ବସିଲେ । ପଚାରିଲେ – "ଆଜ୍ଞା, ଆପଣଙ୍କର କ'ଣ ହୋଇଛି ?" ସେ ଭଦ୍ରଲୋକ କିଛି ନ କହି ଅତି ଅମାୟିକ ଢ଼ଙ୍ଗରେ ଅଳ୍ପହସି ଡାକ୍ତରଙ୍କୁ କହିଲେ "କାହିଁ କିଛି ନାହିଁ ତ ।"... ତା'ପରେ ଡାକ୍ତର ସାମାନ୍ୟ ଅପ୍ରସ୍ତୁତ ହେଲାପରି କହିଲେ "ତେବେ

ଏତେ ସକାଳୁ ଆସିଲ ଯେ ?" – "ଓ" ଭଦ୍ରଲୋକ ଉତ୍ତର ଦେଲେ, "ମୁଁ ଏମିତି ଖାଲି ଆପଣଙ୍କୁ ଦେଖିବାକୁ ଚାଲି ଆସିଲି, just a good will visit ।" ଡାକ୍ତର ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ, ତା'ପରେ ଉଲ୍ଲସିତ ହୋଇ ନୌକରଙ୍କୁ ଡାକ ପକେଇଲେ – ଆରେ ସନ୍ଦେଶ ଅଧକିଲୋ ଆଣ – ଆଜି ଉତ୍ସବ ମନେଇବା ବୁଝିଲେ ମହାଶୟ । ମୋର ଦୀର୍ଘ ତିରିଶ ବର୍ଷର ଡାକ୍ତରୀ ଜୀବନରେ କେହି କେବେହେଲେ ବିନାକାମରେ ମୋ ପାଖକୁ ଆସିନାହିଁ । ଆଜି ଆପଣ ହିଁ ପ୍ରଥମ ଅତିଥି, ମୋର ପରମ ଭାଗ୍ୟ ।"

ସେଇଭଳି ଆମେ Divine ପାଖରେ ସବୁବେଳେ କିଛି ନା କିଛି ଆପତ୍ତି ଅଭିଯୋଗ ନେଇ ପହଞ୍ଚୁଥାଉ । ସବୁବେଳେ କେବଳ ଅଣ୍ଡିପାତି ମାଗିଲାଗିଛୁ । ସେ ମଧ୍ୟ ନ ଦେଉଛନ୍ତି ନୁହେଁ । ଦଉଛନ୍ତି । କିନ୍ତୁ ଆମର ଅସରନ୍ତି ଅଭାବବୋଧ । କେବେ ଥରେହେଲେ କେବଳ ପ୍ରେମରେ ମା'ଙ୍କୁ ଦେଖିଲେ ଭଲଲାଗେ ବୋଲି ତାଙ୍କ ପାଖରେ ଆସିପାରି ନାହୁଁ, କହିପାରି ନାହୁଁ । "ମୋର କିଛି ପ୍ରୟୋଜନ ନାହିଁ ମା, ମୁଁ କେବଳ ତୁମକୁ ଦେଖିବାକୁ ଚାଲିଆସିଛି, ମୋର ଯାହା ଅଛି – ଅଛି, ଯାହା ନାହିଁ – ନାହିଁ, ସେଥିରେ କ'ଣ ଯାଏ ଆସେ ? ମୁଁ ଖୁସିରେ ତୁମକୁ ଦେଖିବାକୁ ଆସିଛି ।" ଏ ନିରୁତା ପ୍ରେମର ପ୍ରତିଦାନରେ ସେ ଦିବ୍ୟପ୍ରେମ ଦାନ କରିବେ । ସେଥିରେ ଜୀବନରେ କୌଣସି ସମସ୍ୟା ନ ରହିବା କଥା, ରହୁ ନ ରହୁ, ଅଭିସନ୍ଧିମୁକ୍ତ ହୋଇ ଈଶ୍ୱରଙ୍କୁ କେବଳ ପ୍ରେମରେ ଭଲପାଇବା ଶିଖାଯାଉ । ଆପତ୍ତି ଅଭିଯୋଗ, ମଗାଯଚା ବନ୍ଦ ହେଉ, ଢ଼େର ହେଲାଣି ।



## ୭-୯-୮୩

ଦିବ୍ୟଚେତନା, ଦିବ୍ୟଭୂମି, ଈଶ୍ୱର ଇତ୍ୟାଦି କଥା ଉଠିଲେ ଆମେ ସାଧାରଣତଃ ଉପରକୁ ହାତ ଦେଖେଇ ଦେଉ । Divine ପାଇଁ ସତେ ବା ନିର୍ଦ୍ଦିଷ୍ଟ ଦିଗ ଏବଂ ଅଂଚଳ ଆମେ ନିର୍ଦ୍ଧାରିତ କରି ରଖି ସାରିଛୁ । ଭଗବାନ କହିଲେ ଉପରବାଲେ, ନୀଲେଛତ୍‌ବାଲେ । ସେ କେବେ ବାଁ ଡାହାଣରେ ନ ଥା'ନ୍ତି । ତଳେ ତ' କଦାପି ନୁହେଁ । ଏଭଳି ଜ୍ୟାମିତିକ ଭ୍ରମର କ'ଣ କାରଣ ଥାଇପାରେ ? ସର୍ବପ୍ରଥମେ ଯେତେବେଳେ ତୀର୍ଯ୍ୟକ୍ ପ୍ରାଣୀଟିଏ ସିଧାସଳଖ ଦଣ୍ଡାୟମାନ ହେଲା ତା'ର ପଶ୍ଚାତ୍‌ରେ ଉପରକୁ ସ୍ୱାଭାବିକଭାବରେ ଚାହିଁବାର ପ୍ରବୃତ୍ତି କାମ କରୁଥିଲା । ସେହି କାରଣରୁ ହୁଏତ ସେ ସଳଖ ଠିଆହୋଇ ପାରିଥିଲା । ସେଥିପାଇଁ ଯାହା ଉନ୍ନତ, ସମୃଦ୍ଧ, ଶୁଦ୍ଧ, ତାକୁ ସେ ସବୁବେଳ ଉପରେ କଳ୍ପନା କରି ଆସିଛି । ଏଣୁ ତା'ର ଚିନ୍ତା ଏବଂ ଚେତନାକୁ ଚୂଡ଼ାନ୍ତ ଉପଲବ୍ଧି, ଭଗବାନଙ୍କୁ ମଧ୍ୟ ସେ ଉପରେ ଥିବା ହିଁ ବିଶ୍ୱାସ କରିଛି । ଅବଶ୍ୟ ତତ୍ତ୍ୱତଃ Divine ପାଇଁ କୌଣସି ଦିଗ ନାହିଁ । ସର୍ବତ୍ରଗମ ଚିନ୍ତ୍ୟଂ ଅଚଳଂ ଧ୍ରୁବଂ – ଏଣୁ 'ଭୂମା ସେ ରହିଛି ପୁରି ରେଣୁ ରେଣୁ ଭେଦି' ! ଏହାର ଅନୁଭବ ପ୍ରକୃତରେ ଆଧ୍ୟାତ୍ମିକ ଅନୁଭବ । ଉପରକୁ ତଳକୁ ନିଜର ଐନ୍ଦ୍ରିକ ଅନୁଭୂତି ମାଧ୍ୟମରେ ଦିବ୍ୟ ଅଦିବ୍ୟ ବୋଲି ନାମିତ କରିବା ଭ୍ରମାତ୍ମକ ।



## ୮-୯-୮୩

ଗ୍ରୀଷ୍ମପ୍ରଧାନ ଦେଶରେ ଖରାବେଳେ ଥଣ୍ଡାପାଣି ଟିକିଏ ପାଇଲେ ଖୁସି ଲାଗେ । ବରଫ ତ' ଆତ୍ମାକୁ ଶୀତଳ କଲାପରି ଲାଗେ । କିନ୍ତୁ ସେହି ସମୟରେ ହିମାଳୟ ଉପରେ କୁଢ଼କୁଢ଼ ବରଫ ସର୍ବଦା ଥାଏ । ସେଇଠି ତାକୁ ଲାଭ କଲାପରେ କିଛି ବରଫ ଗୋଟେଇ ଯଦି ସେ ନିମ୍ନଭୂମିକୁ ଅବତରଣ କରେ ତେବେ ତାହା ବାଟରେହିଁ ତରଳି ବୋହିଯିବ । କେବଳ ସ୍ମୃତି ଟିକିଏ ରହିପାରେ । କିନ୍ତୁ ବରଫ ଆଉ ଅବିକୃତ ବରଫ ହୋଇ ରହି ପାରିବ ନାହିଁ । ସେହିପରି ଧ୍ୟାନାବସ୍ଥାରେ ଶାନ୍ତଶୀତଳ ଗଭୀର ଅବିଚଳିତ ଅନୁଭବକୁ କିପରି ଜୀବନର ସାଧାରଣ ଅବସ୍ଥାରେ ଧାରଣ କରାଯାଇପାରେ । କିଛି ଧ୍ୟାନ ଗୋଟେଇ ଆଣିବି ଭାବିଲେ ତ' ହେବନି, ସେ ସେଇ ବରଫପରି ତରଳିଯିବ । କିନ୍ତୁ ବରଫର ସ୍ମୃତି ଯେପରି ରହିଯାଏ, ବରଫ ତରଳିଗଲେ ସୁଦ୍ଧା ସେହିପରି ଯଦି ଧ୍ୟାନ ଗଭୀର ଏବଂ ସ୍ଥିର ହୋଇଥାଏ ତେବେ ତାହା ଚେତନାକୁ ସାଧାରଣ ସଂସାର ଜଞ୍ଜାଳ ଭିତରେ ମଧ୍ୟ ଛାୟା ଶୀତଳ କରି ରଖିପାରେ । ଏଣୁ ପ୍ରତିଦିନ ଅଭ୍ୟାସ କରି ଯଦି ଏ ଶୀତଳ ସ୍ନାନ କରାଯାଏ, ଗୋଟିଏ ସ୍ଥାୟୀ ଶୀତଳଭାବ ଜୀବନରେ ଆସିବା ସ୍ୱାଭାବିକ ଏବଂ ନିଶ୍ଚିତ ।



## ୯-୯-୮୩

ଆମେ ପ୍ରାୟ ସବୁପ୍ରକାର ସଂପର୍କରେ ଦିଆନିଆ ଉପରେ ବିଶ୍ୱାସ କରୁ । ଫଳରେ ଜୀବନଟି ଗୋଟିଏ ଅତି ନିମ୍ନସ୍ତରର ବ୍ୟବସାୟରେ ପରିଣତ ହୋଇଯାଏ । ସେଥିରେ ଲକ୍ଷ୍ୟଥାଏ କିପରି ଅଧିକ ଲାଭ ହେବ । କମ୍ ଦେଇ ବେଶୀ ପାଇବାର ଅର୍ଥ ହିଁ ଲାଭ । ଆମର ସବୁବେଳେ ସେଇ ମନୋବୃତ୍ତି କାର୍ଯ୍ୟ କରିଥାଏ । ପରିବାରରେ ବନ୍ଧୁ କୁଟୁମ୍ବୀ ଏବଂ ସମାଜ ଭିତରେ ସମସ୍ତଙ୍କ ସହିତ ଏଇ ଗୋଟିଏ କାରବାର । ମୁଁ ଏତେଦେଲେ ସେ ଏତେ ଦେବ । ତା'ର ଦେବା ନ ଦେବା ଉପରେ ସଂପର୍କ ପ୍ରଗାଢ଼ ଏବଂ ଶୀଥିଳ ହୋଇପାରେ । ଏହାକୁ ଅନ୍ୟଭାଷାରେ ଫଳାଭିସନ୍ଧି କହନ୍ତି । କେହି କେବେ ନିଃସ୍ୱାର୍ଥଭାବରେ ଉପକାର କରିପାରେ ନାହିଁ । ଯଦି କରେ ତାକୁ ପ୍ରଚାର କରି, ସମାଜସ୍ୱୀକୃତିରୂପକ ଲାଭ ପାଇଁ ପୁଣି ବ୍ୟବସାୟରେ ପରିଣତ କରିଦିଏ । କାହାକୁ ଦେଖି ମନେ ମନେ ସଂକଳ୍ପ କରାଯାଇପାରେ ନାହିଁ ଯେ 'ମୁଁ ତୁମର ଯଥାସାଧ୍ୟ ସାହାଯ୍ୟ କରିବି, କିନ୍ତୁ ତୁମର ସାହାଯ୍ୟ ମୋ ପାଇଁ ଲୋଡ଼ା ନାହିଁ । I am prepared to help you and equally prepared not to expect any help from you, ଏହାଦ୍ୱାରା ସ୍ୱାର୍ଥ କେନ୍ଦ୍ରରୁ କର୍ମମୁକ୍ତ ହୋଇପାରିବ, ନ ହେଲେ ମୁଁ ହିଁ ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି, ମୋତେ ସମସ୍ତେ ସେବା କରନ୍ତୁ, ପତ୍ନୀ, ପରିବାର ସମାଜ ଏବଂ ପରିଶେଷରେ ଭଗବାନ୍ । ଏଭଳି ଦେବାନେବାର ମନୋବୃତ୍ତି ନେଇ ପରିଶେଷରେ ଆମେ ଈଶ୍ୱରଙ୍କ ପାଖେ ପହଞ୍ଚି ଏଭଳି କହିପାରୁ । "ମୁଁ ଏତେ ପ୍ରକାର ଧୂପକାଠି ଜାଳିଛି, ପୂଜାପାଠ, ଧ୍ୟାନଧାରଣା କରିଛି, ଏଣିକି ତୁମପାଳି ତୁମେ ମୋର ଯାବତୀୟ ସମସ୍ୟା ସମାଧାନ କର ।" ଓଃ ପ୍ରଭୁ ଅଜ୍ଞ ମଣିଷକୁ କ୍ଷମାକର ।

## ୧୦-୯-୮୩

ପରିଶ୍ରମ କଲେ ଶରୀରରେ କ୍ଳାନ୍ତି ଆସେ । ସେହିପରି ମାନସିକ ପରିଶ୍ରମ ପରେ ମନରେ ମଧ୍ୟ କ୍ଳାନ୍ତି ଆସେ । କିନ୍ତୁ ବେଳେ ବେଳେ କୌଣସି ଦୃଶ୍ୟମାନ କାରଣ ନ ଥାଇ ମନରେ ବିଷାଦ ଦେଖାଦିଏ । ଏଥିରେ କାର୍ଯ୍ୟକରିବାର ସବୁପ୍ରକାର ପ୍ରବଣତା ଏବଂ ଆଗ୍ରହ ଲୋପପାଏ । ସେଭଳି ମାନସିକ ଅବସାଦ ପାଇଁ କୌଣସି କାରଣ ନ ଥାଇପାରେ । ଶରୀର ସୁସ୍ଥ, ବନ୍ଧୁପରିବାର ସୁସ୍ଥ ଏବଂ ସବୁ ଠିକ୍ । ଅଥଚ ସମାଜ ପରିସ୍ଥିତି ଅନୁକୂଳ ନୁହେଁ, ଘରେ ବାହାରେ ସମସ୍ୟା, ତେବେ ବି ଖୁସି କୂଳ ଭାଙ୍ଗୁଥାଏ - ଏ ଉଭୟ ସ୍ୱତଃସ୍ଫୂର୍ତ୍ତ । ଆକାଶରେ ମେଘ ଏବଂ ସୂର୍ଯ୍ୟଲୋକର ଖେଳପରି ଏହା ମର୍ତ୍ତ୍ୟବାସୀର ଆୟତ୍ତରେ ନାହିଁ । ସାଧାରଣ ଚେତନାର ଭୂମିରୁ ତାକୁ ନିୟନ୍ତ୍ରିତ କରିହେବ ନାହିଁ, ତାହା ଖୁବ୍ ସୂକ୍ଷ୍ମ ପର୍ଯ୍ୟାୟର ଅନୁଭବ । ଉଭୟକୁ ସମଭାବରେ କେବଳ ଲକ୍ଷ୍ୟ କରାଯାଇପାରେ ଏବଂ ଉଭୟର ଆବିର୍ଭାବରେ ସ୍ଥିର ରହିବାକୁ ଚେଷ୍ଟାକରାଯାଇ ପାରେ ।



## ୧୧-୯-୮୩

ନିର୍ଦ୍ଦିଷ୍ଟ ସୀମା ଭିତରେ ମନ ଚିନ୍ତାକରେ । ଚିନ୍ତାରୁ ଚିନ୍ତାକୁ ତା'ର ଗତି । ଏଣୁ ମନର ଅତୀତ କୌଣସି ସତ୍ୟକୁ ସେ ପହଞ୍ଚିପାରେ ନାହିଁ । ତେବେ ସେଥିପାଇଁ ସେ ପ୍ରସ୍ତୁତ ରହିପାରେ । ସାଧାରଣତଃ ଚିନ୍ତାସ୍ରୋତକୁ ଆମେ ମନବୋଲି ଭାବିଥାଉ । ତାହା ଏକ ଭ୍ରମ । ପ୍ରକୃତ ମନ ଏକ ନିସ୍ତରଙ୍ଗ ସ୍ଥିର ଆଧାର, ଆକାଶ ପରି । ସେଥିରେ ପକ୍ଷୀଭଳି ଚିନ୍ତାମାନେ ଉଦୟ ଏବଂ ଅସ୍ତ ହୁଅନ୍ତି । ଏହି ମନ ଚିନ୍ତାମାନଙ୍କୁ ଧାରଣ କରିଥାଏ । ନାମରୂପ ଜଗତ ହିଁ ଚିନ୍ତାର ସାମଗ୍ରୀ । ଦେଶକାଳରେ ଜଗତ୍ ପ୍ରବହମାନ । ଏହାର ଊର୍ଦ୍ଧ୍ୱ ଭୂମିକୁ ପହଞ୍ଚିବାର ସାମର୍ଥ୍ୟ ମନରେ ନାହିଁ । ମନରେ ସ୍ୱାଭାବିକ ଯାନ୍ତ୍ରିକ କ୍ରିୟାକୁ ସ୍ଥଗିତ ରଖିପାରିଲେ ଅମନୀଭାବ ଆସେ । ସେ ଅବସ୍ଥାରେ ଚିନ୍ତା ନାହିଁ । ଚିନ୍ତାଶୂନ୍ୟ ମନ ଏକ ବ୍ୟାପ୍ତି । ଆମ ଚାରିପଟେ ଘେରିଥିବା ଅନନ୍ତ ବ୍ୟାପ୍ତିର ଅନୁଭବ ସେଥିରେ ସାହାଯ୍ୟକରେ । ଯଦି ମନ ନିହାତି ଚିନ୍ତାକରିବ ତେବେ ଏହି ଅପରିମେୟ ମହାକାଶକୁ ଚିନ୍ତାକରୁ । ତା'ପରେ ଚିନ୍ତାରେ ରୂପବର୍ଣ୍ଣ ରହେ । ନିହାତି ଯଦି ମନକୁ ବର୍ଣ୍ଣଦେଖିବାକୁପଡ଼େ, ତେବେ ତାକୁ ଏକ ସ୍ନିଗ୍ଧ ଔଜ୍ଜ୍ୱଲ୍ୟ ହିଁ ଦିଆଯାଉ । ଅନନ୍ତ ମହାକାଶରେ ସ୍ଥିର ଦେଦୀପ୍ୟମାନ ଔଜ୍ଜ୍ୱଲ୍ୟ ତା'ର ମନକୁ ଅଧିକାର କରୁ । ଏହା ହିଁ ମାନସିକ ପ୍ରସ୍ତୁତି ଉଚ୍ଚତର ଚେତନାର ଅବତରଣ ପାଇଁ । ମନକୁ ଶୋଧନ କରି, ସଂଯତ, ପ୍ରସ୍ତୁତ, ଉନ୍ମୁଖକରି ଏହିପରି ଖୋଲିଧରିଲେ ମହତ୍ତର ଆଧ୍ୟାତ୍ମିକ ଅନୁଭବର ସମ୍ଭାବନା ଅଛି । ଏହା ଅଭ୍ୟାସଗତ ଧ୍ୟାନ ପାଇଁ ଉପଯୋଗୀ ବୋଲି ଶ୍ରୀ ଅରବିନ୍ଦ ନିର୍ଦ୍ଦେଶ ଦେଇଛନ୍ତି । Light on vastness ନୀରବ (ଶବ୍ଦହୀନ) ଚିନ୍ତାହୀନ ମନରେ ଏହି ଔଜ୍ଜ୍ୱଲ୍ୟ ଏବଂ ବ୍ୟାପ୍ତି ସ୍ଥିରଭାବରେ ଧାରଣ କରି ମନ ଧ୍ୟାନସ୍ଥ ଏବଂ ଯୋଗସ୍ଥ ହୁଏ ।



## ୧୨-୯-୮୩

ମୁକ୍ତ କିଏ ବୋଲି ପ୍ରଶ୍ନ ହେଲେ ସାଧାରଣତଃ ଆକାଶରେ ଉଡୁଥିବା ପକ୍ଷୀ ହିଁ ଦୃଷ୍ଟାନ୍ତରୂପେ ମନକୁ ଆସିଥାଏ । କିନ୍ତୁ ପକ୍ଷୀ କ'ଣ ମୁକ୍ତ କି ? ସେ ବାନ୍ଧି ହୋଇ ରହିଛି ନୀଡ଼ରେ ଏବଂ ବନାନୀରେ । ଯେ ଦ୍ୱନ୍ଦରୁ ମୁକ୍ତ ସେ ହିଁ ପ୍ରକୃତରେ ମୁକ୍ତ । ମୁକ୍ତି ଏକ ବିପୁଳତା । ସବୁ ଧାରଣ କରିପାରୁଥିବା ଅଥଚ ଇଚ୍ଛାଧୀନ ରହିପାରୁଥିବା ସାମର୍ଥ୍ୟ । ମୁକ୍ତପୁରୁଷଙ୍କୁ ହାତରେ ପାଦରେ ବେଡି ପକାଇ କାରବାରରେ ନିକ୍ଷେପ କଲେ ସୁଦ୍ଧା ସେ ମୁକ୍ତ । ମୁକ୍ତି ସହିତ ଶରୀର ସଂପର୍କ ଅତି ସୀମିତ । ପ୍ରକୃତିରୁ ମୁକ୍ତି ଏକ ଚେତନାର ବ୍ୟାପାର, ଆଭ୍ୟନ୍ତରୀଣ ଆଧାତ୍ମିକ ବ୍ୟାପର, ବାହାରେ ଯେତେ ସ୍ୱଚ୍ଛନ୍ଦରେ ଚାଲିବୁଲି ପାରୁଥିଲେ ସୁଦ୍ଧା ଯେ ଚେତନାରେ ମୁକ୍ତ ହୋଇ ପାରିନାହିଁ ସେ ମୁକ୍ତ ନୁହେଁ ।



## ୧୩-୯-୮୩

ସମୟ ସ୍ଥିର ନା ଚଳମାନ ? ଆମର ସାଧାରଣ ଧାରଣା ଯେ କାଳ ଏକ ସ୍ରୋତ । ସେ ଅପ୍ରତିହତ ବହିଯାଏ । ତାକୁ ରୋଧିବାକୁ କାହାରି ଶକ୍ତି ନାହିଁ । ଆମେ ଅତୀତକୁ ସ୍ମରଣ କରୁ, ଭବିଷ୍ୟତକୁ ଅନୁମାନ କରୁ କିନ୍ତୁ ବର୍ତ୍ତମାନ ମୁହୂର୍ତ୍ତଟିକୁ ପ୍ରତ୍ୟକ୍ଷ କରିଥାଉ । କିନ୍ତୁ ତାହା ମଧ୍ୟ ଧରୁ ଧରୁ ଅପସରି ଯାଏ । ଧରାଯାଉ ଏବେ ସକାଳ ସାତଟା ଦଶ ବାଜି କୋଡ଼ିଏ ସେକେଣ୍ଡ । କହୁ କହୁ ଏକୋଇଶ୍ ସେକେଣ୍ଡ ହୋଇଗଲା । କୁଆଡ଼େ ଗଲା ସେ ୨୦ ନମ୍ବରର ସେକେଣ୍ଡଟି ? ସେ ଗଲା ଯେ ଚିରକାଳକୁ ଗଲା । ତାକୁ ଆଉ ସେଥିରୁ ଉଦ୍ଧାର କରି ଆଣିବା ସମ୍ଭବ ନୁହେଁ । ତା'ପରେ ଯାକୁ ଆଉ ଗୋଟିଏ ଦିଗରୁ ମଧ୍ୟ ବିଚାର କରାଯାଇପାରେ । ଏହି ମୁହୂର୍ତ୍ତରେ ଏଠି ଆମେ ବସି କଥାବାର୍ତ୍ତା କରୁ ଏଠି ସକାଳ ହୋଇଛି । କିନ୍ତୁ ପୃଥିବୀର ଆଉ କେଉଁଠି ରାତିଅଧ ହୋଇଛି ଏବଂ ସମସ୍ତେ ଶୋଇଛନ୍ତି । କେଉଁଠି ସଂଧ୍ୟା ହୋଇଛି ଏବଂ ପକ୍ଷୀମାନେ ବସାକୁ ଫେରୁଛନ୍ତି । ଘଣ୍ଟାର ବାରଟି ଘର, ଘଣ୍ଟା ମିନିଟ୍ ସେକେଣ୍ଡର ସବୁ ଫାଙ୍କରେ ସମୟର ଚିହ୍ନଟ ସବୁ ଏଇ ଗୋଟିଏ ମୁହୂର୍ତ୍ତରେ ଅବସ୍ଥିତ । ପୃଥିବୀର ବର୍ତ୍ତମାନ ସମୟ କ'ଣ ବୋଲି ପଚାରିଲେ ଯାହା କହିଲେ ମଧ୍ୟ ଠିକ୍ ହେବ । କାରଣ ସମୟର ସବୁ ଅବସ୍ଥା ଏକାସାଙ୍ଗରେ ବିଭିନ୍ନ ଦେଶରେ ସଂଘଟିତ ହେଉଛି । ଏଣୁ ସମୟଟି ସ୍ଥିର ତା'ଉପରେ ପୃଥିବୀ ଗଡ଼ିଯାଉଛି କେବଳ କିମ୍ବା ବିସ୍ତୃତ ଏକ କଳାପଟାରେ ଅତି ସୂକ୍ଷ୍ମରେଖା ଦ୍ୱାରା ସ୍କେଲଟିଏ ଅଙ୍କନ କରାଯାଉଛି । ଅନ୍ଧାର ରାତିରେ ଜୁଳୁଥିବା ମୁନପଚି ମୁନେ ଆଲୁଅ ଏଇ ସ୍କେଲର ଗୋଟିଏ ବିନ୍ଦୁରୁ ଅନ୍ୟ ବିନ୍ଦୁକୁ ଘୁଞ୍ଚି ଯାଉଛି । ସ୍କେଲର ରେଖା ଯେଉଁଠି ଥିଲା ସେଇଠି । ସେହିପରି ଯେଉଁ ସମୟ ଚାଲିଗଲା ବୋଲି ଆମେ ଭାବିଥାଉ ତାହା ପ୍ରକୃତରେ ମହାକାଳରେ ସ୍ଥିର ହୋଇ ରହିଛି, ରହିଥିଲା ଏବଂ ରହିଥିବ । ତେବେ ଘୁଞ୍ଚେ କିଏ ? ଏଇ ଆଲୋକ ବିନ୍ଦୁ ? ସେଇଟା କ'ଣ ଆମର ଗତିଦୃଷ୍ଟି ଏବଂ ଗତିବୁଦ୍ଧି । ଏଇଠୁ ସମ୍ବଲପୁର ଯାଉଥିବା ଯାତ୍ରୀ କହେ, ହେଇ ଢେଙ୍କାନାଳ ଗଲା, ଅନୁଗୁଳ ଗଲା, କୁଆଡ଼େ

ଗଲା ? ପ୍ରକୃତରେ ଗଲା କି ? ନା, ଦେଶକାଳ ଏବଂ ଅନୁଭୂତ ଯେଉଁଠି ଥିଲେ ସେଇଠି ଅଛନ୍ତି । ଯାତ୍ରୀଙ୍କୁ ସେପରି ବୋଧ ହେଉଛି କେବଳ । ଏ'ତ ଗୋଟିଏ ମୁହୂର୍ତ୍ତର ସ୍ୱରୂପ । ତେବେ ମହାକାଳ ଏବଂ ମହାକାଶ କ'ଣ ଏବଂ ତା' ଊର୍ଦ୍ଧ୍ୱରେ ଅନ୍ୟାନ୍ୟ ଦେଶକାଳାତୀତ ସତ୍ୟ କ'ଣ – ତାକୁ ଅବଧାରଣ କରିବା ନିଶ୍ଚୟ କଠିନ ବ୍ୟାପାର ।



## ୧୪-୯-୮୩

ଥରେ ଜଣେ ମାନନୀୟ ବିଶିଷ୍ଟ ସାଧକଙ୍କୁ ପଚରାଯାଇଥିଲା – "କେମିତି ଜାଣିବା, ଯେ ସାଧାରଣ ଜୀବନରେ divine କାର୍ଯ୍ୟ କରୁଛନ୍ତି । ସେଇଭଳି କୃପାର ଲକ୍ଷଣ କ'ଣ ?" ସେ ଗୋଟିଏ ଶବ୍ଦରେ ଉତ୍ତର ଦେଲେ, ସେ ଶବ୍ଦଟି ହେଲା 'ଆକସ୍ମିକତା' । ସେ ଖୁବ୍ ଅପ୍ରତ୍ୟାଶିତ ଭାବରେ ଦେଖାଦିଏ, ସେ ଏକ ବିସ୍ମୟ । 'ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନମ୍' । ସକାଳୁ ଉଠିଲାବେଳକୁ ଛୋଟ ପିଲାଟାଏ ମୁହଁକୁ ଚାହିଁ ହସୁଛି ଏବଂ ଫୁଟିଲା ଫୁଲଟିଏ ବଢ଼େଇ ଦେଇ ଚାଲିଯାଉଛି । ଭୁଲ ରାସ୍ତାରେ ପଶିଗଲାବେଳେ ଅପରିଚିତ ଜଣେ କେହି ଅନ୍ୟ କାମରେ ବାଆଁରେଇ ନେଇଆସୁଛି ଏବଂ ଠିକ୍ ରାସ୍ତା ମୁଣ୍ଡରେ ଛାଡ଼ି ଦେଇ ଚାଲିଯାଉଛି । ଏମିତି ଏମିତି ସେ ଛୁଇଁଦେଇ ଅଦୃଶ୍ୟ ରହିଥିବାର ଅନୁଭବ ଅସଂଖ୍ୟ । ସେଥିପାଇଁ କେବଳ ଚକ୍ଷୁକର୍ଣ୍ଣକୁ ଅତି ଜାଗ୍ରତ, ସତର୍କ ଏବଂ ଉନ୍ମୁଖ ରଖିବାକୁ ହେବ । ନହେଲେ ସେ ସାଧାରଣ ଘଟଣାଗହଳି ଭିତରେ ଆଉ ଗୋଟିଏ ସାଧାରଣ ଘଟଣା ରୂପେ ଆତ୍ମଗୋପନ କରିବାର ସମ୍ଭାବନା ଅଛି । ଏପରି ଜଗିଲେ ଗୋଟିଏ ଅବସ୍ଥାରେ ଅନୁଭବ ଆସିପାରେ ଯେ ଯାହା ଘଟୁଛି ସେ ସବୁ ଅପ୍ରତ୍ୟାଶିତ । ..... ଏବଂ ଜଣେ ତାହା କରୁଛି । ଭଲ ମନ୍ଦ, ଅନୁକୂଳ ପ୍ରତିକୂଳ ସବୁ ଘଟଣା ଈଶ୍ୱରେଚ୍ଛା ତେବେ ଆରମ୍ଭରୁ ଏଇ ସୁରଭିତ ଅସାମାନ୍ୟ ମୁହୂର୍ତ୍ତଗୁଡ଼ିକୁ ଚିହ୍ନିବା ପ୍ରୟୋଜନ ଅଛି ।



## ୧୫-୯-୮୩

ଗଛମାନେ ସ୍ୱତନ୍ତ୍ରଭାବରେ ବଢ଼ନ୍ତି ଏବଂ ବଞ୍ଚନ୍ତି । ଗୋଟିଏ ଗଛକୁ ଅନ୍ୟ ଗଛ କୌଣସି ପ୍ରକାରେ ସାହାଯ୍ୟ କରେ ନାହିଁ । ବରଂ ମାଟି ଭିତରେ ଅଂଧାରରେ ଉଭୟ ଗଛର ଚେର ପ୍ରତିଦ୍ୱନ୍ଦିତା କରନ୍ତି ମାଟିରୁ ରସ ଶୋଷିବାବେଳେ । ମଣିଷମାନେ ମଧ୍ୟ ଅନେକାଂଶରେ ସେହିପରି କିନ୍ତୁ ଉଭୟ ଉଦ୍ଭିଦ ଏବଂ ମଣିଷଙ୍କର ଦେହାତୀତ ସ୍ପନ୍ଦନମାନ ପରସ୍ପରକୁ ସ୍ପର୍ଶ କରିବା ଦ୍ୱାରା ଅନୁକୂଳ ଅଥବା ପ୍ରତିକୂଳ ଫଳ ମିଳିଥାଏ । କୌଣସି ବ୍ୟକ୍ତିକୁ ଦେଖିବାପରେ ଯଦି ମନରେ ମିତ୍ରଭାବ ଜାଗ୍ରତ କରାଯାଏ ପ୍ରେମ ଜାଗ୍ରତ କରାଯାଏ, ଶ୍ରଦ୍ଧାନ୍ୱିତ

ହୋଇ ତାକୁ ଗ୍ରହଣ କରାଯାଏ, ତା'ର ଫଳସ୍ୱରୂପ ସେ ବ୍ୟକ୍ତି ସେହି ପରିମାଣରେ ଅନୁକୂଳ ପ୍ରଭାବରେ କିଛି କିଛି ଶ୍ରଦ୍ଧା ଏବଂ ମିତ୍ରଭାବ ପ୍ରକାଶ କରିବ । ଅଶ୍ରଦ୍ଧା ଏବଂ ଅମିତ୍ରପଣ ମାଧ୍ୟମରେ କାହାକୁ ସୁଦ୍ଧା ଗ୍ରହଣ ବା ଧାରଣ କରିହୁଏ ନାହିଁ । ତେବେ ସଂବେଦନ ସହାନୁଭୂତି ଦୟା ଇତ୍ୟାଦି ପାଇଁ ଆମେ ସାଧାରଣତଃ ପରସ୍ପରକୁ ସାହାଯ୍ୟ କରିଥାଉ । ଅନ୍ୟର ଦୁଃଖକୁ ନିଜେ ନିଜ ଉପରେ ଆରୋପ କରି ତାଦୃଶ ଆବେଗରେ ତାକୁ ସାହାଯ୍ୟ କରିଥାଉ । ସେଥିରେ ସଦ୍‌ଭାବ, ସୌହାର୍ଦ୍ର ଆଦି ଜନହିତକର ସଂପର୍କ ସୃଷ୍ଟି ହୁଏ । ଧ୍ୟାନ କରିବା ଏକ ଅତି ବ୍ୟକ୍ତିଗତ ଆଭ୍ୟନ୍ତରୀଣ ବ୍ୟାପାର । ସେଥିରେ କେହି କାହାପାଇଁ କିଛି କରିବାର ନାହିଁ ବୋଲି ଜଣାପଡ଼େ । କିନ୍ତୁ ସମବେତ ଧ୍ୟାନବେଳେ ସମସ୍ତଙ୍କ ପ୍ରଚେଷ୍ଟାରେ ଏକ ବିଶାଳ ଶାନ୍ତି ଅବତରଣ କରିପାରେ । କୁଟାଟିଏ ସ୍ୱତନ୍ତ୍ରଭାବରେ ଜଳିଲେ କୌଣସି ଆଲୋକ କିମ୍ବା ଉତ୍ତାପ ଦେବାରେ ବୈଶିଷ୍ଟ୍ୟ ନଥାଏ । କିନ୍ତୁ ଏକ ଲକ୍ଷ କୁଟା ଏକାଠି ଜଳିଲେ ତାହା କେବଳ ସବୁ କୁଟାର ଆଲୋକ ବା ଉତ୍ତାପର ସମାହାର ନ ହୋଇ ତା'ଠାରୁ ଅନେକ ଅଧିକ ମାତ୍ରାରେ ପ୍ରକାଶିତ ହୋଇଥାଏ । ସେହିପରି ଧ୍ୟାନବେଳେ ସାମୂହିକ ପ୍ରଚେଷ୍ଟାରେ ମହତ୍ତର ଫଳ ଲାଭର ସମ୍ଭାବନା ଅଛି ଯାହା ବ୍ୟକ୍ତିଗତ ଏକାକୀ ସାଧନାରେ ହୁଏତ ସହଜ ନୁହେଁ ।



## ୧୭-୯-୮୩

କୌଣସି ବ୍ୟକ୍ତି, ଅନୁଷ୍ଠାନ, ପରିସ୍ଥିତି ଅନୁକୂଳ କି ପ୍ରତିକୂଳ ଜାଣିବାକୁ ଏକ ସହଜ ଉପାୟ ଅଛି, ତାହା ହେଲା ସମୟର ଆପେକ୍ଷିକ ଗତି । କୌଣସି ଅପ୍ରିୟ ଲୋକ ପାଖରେ ଦୁଇ ମିନିଟ୍ ବସିଲେ ସୁଦ୍ଧା ଲାଗେ ଯେ ମୁଁ ଅନେକ ସମୟ ନଷ୍ଟକରି ପକାଇଲାଣି । କିନ୍ତୁ ପ୍ରିୟଜନ ପାଖରେ ବସିଲେ ପାଞ୍ଚଘଣ୍ଟା ମଧ୍ୟ ପାଞ୍ଚମିନିଟ୍ ପରି ଜଣାଯାଏ । ଯଦି ମା'ଙ୍କ ଅପାର କରୁଣାରୁ କୌଣସି ଆଧାତ୍ମିକ ସୌଭାଗ୍ୟ ସେପରି ମିଳିଥାଏ ତାହା ପୁଷ୍ପଭାର ପରି ଜଣାପଡ଼େ ନାହିଁ, ଅଥଚ ଜୀବନକୁ ସୁରଭିତ କରିଦିଏ । ପାଞ୍ଚମାସ ନିରବଚ୍ଛିନ୍ନ ଏବଂ ନିୟମିତ କୌଣସି ସାଧାରଣ କର୍ମ କଲେ ଯେଉଁ କ୍ଲାନ୍ତି ଆସନ୍ତା ବା ଢେରଦିନ କଟିଲାଣିବୋଲି ଅନୁଭବ ଆସନ୍ତା ତାହା ଏହି ଶୁଦ୍ଧ ସାତ୍ତ୍ୱିକ କର୍ମରେ ପାଞ୍ଚଦିନ ଭଳି ଲାଗିବ - ଅବଶ୍ୟ 'ଶ୍ରେୟାଂସି ବହୁବିଘ୍ନାନି ।' ଅପଶକ୍ତିମାନଙ୍କର ପ୍ରାଦୁର୍ଭାବ ରହିଛି, ସେମାନେ ସାଧାରଣତଃ ଦୁଇଟି ସ୍ତରରେ ଆକ୍ରମଣ କରିଥାନ୍ତି । ଗୋଟିଏ ହେଲା ଆଳସ୍ୟ, ନିଦ୍ରା, ସଂପୂର୍ଣ୍ଣ ଅମଙ୍ଗଭାବ-ଶରୀରରେ ମନରେ ପ୍ରାଣରେ - ଏହା ତାମସିକ । ଅନ୍ୟଟି ଜ୍ୱାଳା-କ୍ରୋଧ, ଅପମାନ, ହିଂସା, ଇର୍ଷାଦି-ଏହା ରାଜସିକ । ଏଥିରେ ମନ ସ୍ଥିର ରହେ ନାହିଁ । ଶରୀର ବ୍ୟସ୍ତ ବିକଳହୁଏ । ଧ୍ୟାନ ହୁଏ ନାହିଁ । ଯାହା ଅଧ୍ୟୟନ କଲେ ମନଲାଗେ ନାହିଁ, ଅସୁସ୍ଥ ଅସ୍ଥିର ଲାଗେ । ଏପରି ଅବସ୍ଥାରେ କ'ଣ କରଣୀୟ ? ପ୍ରଥମରେ ଅପଶକ୍ତିର କ୍ରିୟାକୁ ସିଧାସଳଖ ପ୍ରତିରୋଧ ନ କରି (ତାହା ଯୋଦ୍ଧାମାନଙ୍କର ଏବଂ ସମର୍ଥ ପୁରୁଷମାନଙ୍କର ଆଚରଣ, ସେମାନେ ତାକୁ ଦ୍ୱନ୍ଦ୍ୱ ଯୁଦ୍ଧରେ ପରାସ୍ତ କରନ୍ତି । ତାହା ଅନେକ ଶକ୍ତି ସାପେକ୍ଷ୍ୟ) - ତାକୁ କିଛି ବାଟ ଛାଡ଼ି ଦେବାକୁ ହେବ । ଧ୍ୟାନ କରେଇ ଦେଉନାହିଁ, ଚୁପ୍‌ଚାପ୍ ଧ୍ୟାନ ନ କରି

ସମାଧି ପାଖରେ ବା ମା'ଙ୍କ ପ୍ରତିକୃତି ପାଖରେ ବସିଗଲେ ଅନେକ ବିକ୍ଷୋଭ କମିଯାଇପାରେ । ଅବଶ୍ୟ ସେହି ପରିସ୍ଥିତିରୁ ସାମାନ୍ୟ ବାହାରିଯାଇ ଅନ୍ୟ ବିଷୟ ଚିନ୍ତା କଲାମାତ୍ରେ ତତ୍‌କ୍ଷଣାତ୍ ସେମାନେ ଅନ୍ଧାର ଏବଂ କର୍ଦ୍ଦମ ଭିତରକୁ ଭିଡ଼ିନେଇଯା'ନ୍ତି । କେବଳ ସ୍ଥିର ରହିପାରିଲେ ଆକ୍ରମଣର ତୀବ୍ରତା କମିଯାଏ । ସେତେବେଳେ ଗୁରୁସ୍ମରଣ କଲେ ମଧ୍ୟ ନିସ୍ତାର ନାହିଁ । ସେଠି ଅଶୁଦ୍ଧ ଚିନ୍ତାର କ୍ଲେଦକର୍ଦ୍ଦମ ନେଇ ଫିଙ୍ଗିବାର ଅପଚେଷ୍ଟା ମଧ୍ୟ ଅପଶକ୍ତିମାନେ କରିଥାନ୍ତି । ମନ୍ତ୍ର ଜପ ଅନେକ ସାହାଯ୍ୟ କରିଥାଏ । ଅବଶ୍ୟ ଏଭଳି ସଂଘର୍ଷ ସବୁ ସାଧକ ଜୀବନରେ ସାଧାରଣ ଅନୁଭବ, କିଏ କିପରି ତା'ର ସମ୍ମୁଖୀନ ହୁଅନ୍ତି । ସମସ୍ତଙ୍କ ସକାଶେ ସମାନ ଭାବରେ ପ୍ରଯୁଜ୍ୟ କୌଣସି ଗୋଟିଏ ନିୟମ ନାହିଁ । ତେବେ ସେଭଳି ଆକ୍ରମଣରେ ବିବ୍ରତ କିମ୍ବା ବିଚଳିତ ନହେବା ହିଁ ଲକ୍ଷ୍ୟ । ଯେ ଯେଉଁ ଭଳି ସେ ଲକ୍ଷ୍ୟ ସାଧନ କରିପାରନ୍ତି – ସେଥିରେ କିଛି ଯାଏ ଆସେ ନାହିଁ ।



**୧୯-୯-୮୩**

ଗୋଟିଏ ପ୍ରକାର ସାଧନାରେ ନିର୍ଦ୍ଦେଶ ଅଛି, ନିଜେ ଶାୟିତ ଥିବା ଅବସ୍ଥାରେ ନିଜ ପାଦପାଖରେ ଦଣ୍ଡାୟମାନ ହୋଇ ନିଜର ଶାୟିତ ଶରୀରକୁ ଦେଖୁଥିବାର କଳ୍ପନା କରିବା । ଏତଦ୍ୱାରା ଦେହାତ୍ମ ପ୍ରତ୍ୟୟରୁ ମୁକ୍ତିମିଳେ ବୋଲି କଥିତ ଅଛି । ସେ ବିଷୟ ପ୍ରାୟ ନିଜେ ନିଜର ଛାଇକୁ ଦେଖିଲାଭଳି ଅନୁଭବ । ନିଜ ଭିତରେ ଏହି ଛାୟାଭାଗଟି ସବୁବେଳେ ଅପରପକ୍ଷ । ସେ ଜୈବିକ ସ୍ଥିତିରେ ବାନ୍ଧିରଖେ । ତାକୁ ସାକ୍ଷୀରୂପେ ଚାହିଁରହେ ଏକ ଶୁଭ୍ରଭାଗ, ମଧ୍ୟବର୍ତ୍ତୀ ଅଞ୍ଚଳରେ ଧଳାକଳାର ଅସଂଖ୍ୟ ମିଶ୍ରଣଭୂମି । ତେବେ ନିଜକୁ ନିଜେ ନିର୍ମମଭାବେ ଶାସନ ନକଲେ, ଜଗି ନ ରହିଲେ ସାଧନା କଷ୍ଟକର । ମୋଟ ଉପରେ ନିଜକୁ ନିରୀକ୍ଷଣ କରିବା ହିଁ, ଶରୀର ମନ ପ୍ରାଣକୁ ପାଦେ ଘୁଞ୍ଚି ଚାହିଁ ପାରିବା ହିଁ ସାଧନାର ଅଂଶବିଶେଷ ।



**୨୦-୯-୮୩**

ପାଇ ହରାଇବା ଏବଂ ଚାହିଁ ନ ପାଇବା ଉଭୟ ଦୁଃଖର କାରଣ । ଗୋଟିଏ ହାରିବାର ଅନ୍ୟଟି ହତାଶାର । ସାଧାରଣ ନିୟମ ଅନୁସାରେ ଯାହା ଆସିଛି ତାହା ଯେତେ ପ୍ରିୟ ହେଉ ପଛକେ ଦିନେ ଅବଶ୍ୟ ଯିବ । 'ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ' । ଏ ଦୁଃଖ ସମସ୍ତଙ୍କର ଦେହସୁହା । କିନ୍ତୁ ଅନ୍ୟଟି ତୃଷ୍ଣାଜନିତ । ଚିରଦିନ ତାକୁ ପାଇବାକୁ ଆଶା କରି କରି ନିରାଶ ହେଉଥିବାର ଦୁଃଖ । ଉଭୟ ଜ୍ୱାଳା, ଉଭୟ ଯନ୍ତ୍ରଣା, ତେବେ ଉଭୟରୁ ରକ୍ଷା କରିବାକୁ ସେ ପ୍ରତିଶ୍ରୁତି ଦେଇଛନ୍ତି ଗୀତାରେ, 'ଯୋଗକ୍ଷେମଂ ବହାମ୍ୟହମ୍' ଯାହା ପାଇଛୁ ତାକୁ ରକ୍ଷାକରିବାର ନାମ ହେଲା ଯୋଗ, ଯାହା ପାଇନାହୁଁ ତାହା ଆଣିଦେବାର ନାମ ହେଲା

କ୍ଷେମ । ଏ ଉଭୟ ଦାୟିତ୍ୱ ସେ ଗ୍ରହଣ କରିବେ ବୋଲି ଘୋଷଣା କରୁଛନ୍ତି । ତାହେଲେ ତ'ମଣିଷର ଯାବତୀୟ ଆଶାପୂରଣ ହୋଇଯାଇ ପାରିବ ଏବଂ ଯାବତୀୟ ଅଧିକାର ଚିରସ୍ଥାୟୀ ହୋଇପାରିବ । କିନ୍ତୁ କଥା ଏତେ ସହଜ ନୁହେଁ । ସେଥିରେ ଗୋଟିଏ ସର୍ତ୍ତ ଅଛି । ସେ ସମସ୍ତଙ୍କର ଯୋଗକ୍ଷେମ ବହନ କରିବେ ନାହିଁ । ତେବେ କାହାର କରିବେ ? "ତେଷାଂ ନିତ୍ୟାଭିଯୁକ୍ତାନାଂ (ସତତ ଯୁକ୍ତାନାଂ)" - ଯେଉଁମାନେ ନିରବଚ୍ଛିନ୍ନ ଭାବରେ ତାଙ୍କ ଠାରେ ସମର୍ପିତ ଏବଂ ଯୁକ୍ତ ହୋଇ ରହିଛନ୍ତି କେବଳ ସେହିମାନଙ୍କର ସେ ଯୋଗକ୍ଷେମ ହେବେ । ସେଭଳି ବ୍ୟକ୍ତି ପାଇଁ ପ୍ରାପ୍ତ ଅପ୍ରାପ୍ତ ପ୍ରାପ୍ୟ କେବଳ ଗୋଟିଏ ବସ୍ତୁ ତାହା ଦିବ୍ୟାନୁଭବ । ସେଥିପାଇଁ ସେମାନଙ୍କର ଦୁଃଖ ନାହିଁ । ଭଗବାନ୍ ବୁଦ୍ଧ କାମନାର ବିନାଶରେ ଦୁଃଖର ବିନାଶ ବୋଲି କହିଛନ୍ତି । କାମନା ଦେହ ମନ ପ୍ରାଣକୁ ଆଶ୍ରୟ କରି ଅକଳ୍ପନୀୟ ରୂପରେ ପ୍ରକାଶିତ ହୁଏ । ତାକୁ ପୂରଣ କରିବାର ସାଧନା ଏକ ଅନ୍ତହୀନ ଏବଂ ନିଷ୍ଫଳ ପ୍ରୟାସ । ଚିରକାଳ କାମନା ସହିତ ଯୁଦ୍ଧ କରିବା ମଧ୍ୟ ଏକ ଅସାଧାରଣ ଦୁଃଖପୂର୍ଣ୍ଣ କୃଚ୍ଛ୍ରସାଧନା ଭଳି । ତାହା ନାସ୍ତିବାଦୀ ପାଇଁ ଅତି ଜଟିଳ ଏବଂ ବିଡ଼ମ୍ବିତ ପନ୍ଥା । ଅନ୍ୟପକ୍ଷେ ଯଦି କାମନା କେନ୍ଦ୍ରକୁ ଦିବ୍ୟ ସତ୍ତାରେ ଆବୃତ ଏବଂ ଅଧିକୃତ କରାଯାଏ ତେବେ କାମାନାଙ୍କ (ସାଧାରଣ ଜୀବାର୍ଥରେ) ଶାନ୍ତ ହୋଇଯିବ । କାମନାର ପ୍ରକୃତ ବିନାଶ ଘଟିବା ଅଧିକ ବ୍ୟାପକ । କାମନାର ବିନାଶରେ ଦୁଃଖର ବିନାଶ । ଅବଶ୍ୟ ବୌଦ୍ଧମାର୍ଗ ଏକ ବହୁଜନ ଗୃହୀତ ମାର୍ଗ । ଏହି ବୁଦ୍ଧଦେବଙ୍କର କରୁଣାର ବାଣୀ ମାନବଜାତି ପ୍ରତି ଚିରନ୍ତନ ଆଶୀର୍ବାଦ ।



## ୨୧-୯-୮୩

ଦେହ ମନ ପ୍ରାଣ ପରସ୍ପର ସହିତ ସଂଶ୍ଳିଷ୍ଟ ଏବଂ ପରସ୍ପର ଦ୍ୱାରା ପ୍ରଭାବିତ । କିନ୍ତୁ ମନ ହିଁ ମୁଖ୍ୟତଃ ଶରୀର ଏବଂ ପ୍ରାଣକୁ ଶାସନ କରେ । ଶରୀରର ସାଧାରଣ ପ୍ରତିକ୍ରିୟାକୁ ମନ ତା' ନିଜ ଶକ୍ତି ପ୍ରଭାବରେ ପରିବର୍ତ୍ତିତ କରିଦେଇପାରେ । ଉଦାହରଣ ସ୍ୱରୂପ ଖୁବ୍ ଗରମବୋଧ ହେବା ଗୋଟିଏ Physical Sensation ତାହା ଯେତିକି ସ୍ୱାଭାବିକ ସେତିକି ଅନିର୍ବାର୍ଯ୍ୟ । କିନ୍ତୁ ମନ ସେଥିରେ ସହଯୋଗ କରିପାରେ ନ କରିପାରେ । ସହଯୋଗ କଲେ, ଶରୀରର ଉତ୍ତାପ ଅନୁଭବ ମନକୁ ସଂଚାରିତ ହୋଇ ତାକୁ ବିଚଳିତ, ଉଦ୍‌ବ୍ୟସ୍ତ, ଉତ୍ତେଜିତ କରେ । ସହଯୋଗ ନ କରି ଯଦି ମନ ପ୍ରଶାନ୍ତ ନୀରବ ଏବଂ ସ୍ଥିର ରହିଯାଏ, ତେବେ ଆଶ୍ଚର୍ଯ୍ୟଭାବେ ଏହି ସ୍ଥିରତା ଶରୀରକୁ ସଂଚାରିତ ହୋଇ ଉତ୍ତାପ ଅନୁଭବ ହୁଏନାହିଁ । ଶୀତୋଷ୍ଣ ସୁଖଦୁଃଖଦା ଶରୀରକୁ ଅନାନ୍ଦୋଳିତ ସମ୍‌ଧାରିତ କରି ରଖାଯାଇପାରେ । ଅଧିକାଂଶ ସୁଖଦୁଃଖ, ଉତ୍ତେଜନାର ଭୂମି ହେଉଛି ମନ, ତାକୁ ନିୟନ୍ତ୍ରଣ କରିବା, ନିଗ୍ରହ କରିବା, ସାଧନାର ବିଶେଷ ଅଂଶ ।



ପୃଥକ୍ କରୁଥିବା ଅହଂକାରର ବିନାଶ ନ ଘଟିଲେ କୌଣସି ଦିବ୍ୟ ଅନୁଭବ ସମ୍ଭବ ନୁହେଁ । ଏ ଅହଂକାରଟି ହେଉଛି 'ମୁଁ' ଭାବ 'I' sense ଏହାଦ୍ୱାରା ମଣିଷଟିଏ ନିଜକୁ ସ୍ୱତନ୍ତ୍ର ଏବଂ ନିରାପଦ ମନେକରେ । ତେଣିକି ବଞ୍ଚିବା ଅର୍ଥପୂର୍ଣ୍ଣ, ପୃଥିବୀ ଅର୍ଥପୂର୍ଣ୍ଣ ମନେହୁଏ । ତା'ମନଟି ମଧ୍ୟ ଏହି 'ମୁଁ' ଭାବକୁ ଭିତ୍ତିକରି ସମସ୍ତ ବସ୍ତୁଜଗତ୍‌କୁ କଳ୍ପନା କରେ । ଅଲଗା ନ କଲେ ମଣିଷମନ ବୁଝିପାରେ ନାହିଁ । ସେଇଟା ତା'ବୁଝିବାର ଢ଼ଙ୍ଗ । ଯେମିତି ଧରାଯାଉ ଜଣେ ଅଂଧ । ସେ କୌଣସି ବସ୍ତୁ ଜାଣିବା ପୂର୍ବରୁ ତାକୁ ଛୁଇଁପକାଏ, ତାର ଆୟତନ, ଓଜନ ଆଦି ପରୀକ୍ଷା କରିପକାଏ ଏବଂ କହେ ଯେ ସେ ସେହି ବସ୍ତୁଟିକୁ ଜାଣିଗଲା । ତାକୁ ଯଦି କୁହାଯାଏ, "ତୁ ନ ଛୁଇଁଲେ କ'ଣ ଚଳିବ ନାହିଁ ।" ସେ ବିସ୍ମିତ ହୋଇ କହିବ, "ତା' କିପରି ସମ୍ଭବ ?" ସେହିପରି ବସ୍ତୁକୁ ବସ୍ତୁରୁ ପୃଥକ୍ ନ କରି ମଣିଷମନ ତା'କୁ ଜାଣିପାରିବ ନାହିଁ । ପୃଥକ୍ କରିଦେଲେ ସେ ବସ୍ତୁଟି ତାକୁ ପୂର୍ଣ୍ଣରୂପେ ପ୍ରତିଭାତ ହୁଏ । କିନ୍ତୁ ସେଇ ମୁହୂର୍ତ୍ତରେ ପୁଣି ଭାଗଭାଗ ହେବାକୁ ଆରମ୍ଭ କରେ । ଚୌକିଟିକୁ ଅନ୍ୟାନ୍ୟ ଅନେକ ବସ୍ତୁ ଏବଂ ପରିବେଶରୁ ପୃଥକ କରି ଜାଣିବାକୁ ଗଲାମାତ୍ରେ ସେ ତା'ର ଚାରିଗୋଡ଼ ପିଠି, ବସିବା ପଟା ତଳ ଉପର ଇତ୍ୟାଦି ଅଂଗମାନଙ୍କରେ ବିଭାଜିତ ହୋଇ ଦେଖାଦିଏ । ସେଥିରୁ ଯେକୌଣସି ଅଙ୍ଗକୁ ପୁଣି ପୂର୍ଣ୍ଣବୋଲି ଭାବି ଜାଣିବାକୁ ଗଲେ ତାହା ମଧ୍ୟ ସେହିପରି ବିଭକ୍ତ ହୋଇଯାଏ । ଏଣୁ କୌଣସି ବସ୍ତୁଜ୍ଞାନ Pergenus et diffentium ଦ୍ୱାରା ସମ୍ଭବ ହୁଏନାହିଁ । ଏହା ହିଁ ସଂସାରର ଅଜ୍ଞାନ ବିପଦ, ତେବେ ଏହାର ବିପରୀତ ମାର୍ଗରେ କ'ଣ ଜ୍ଞାନ ଅଛି ? ଶାସ୍ତ୍ର କହୁଛନ୍ତି ଯେ ଏ ସମସ୍ତ ବିଶ୍ୱକୁ ଦେଖି 'ନେହନାନାସ୍ତି କିଞ୍ଚନ' ଅର୍ଥାତ୍ ଏଠି ନାନାତ୍ୱ ନାହିଁ, ଏଠି କେବଳ ଏକତ୍ୱ ଅଛି ଏଇ ଭାବହିଁ ଦିବ୍ୟଜ୍ଞାନ । କିଭଳି ଏ ବିପୁଳ ନାନାତ୍ୱଭିତରେ ବସ୍ତୁଗୁଡ଼ିକ ଏତେ ପ୍ରାଞ୍ଜଳ ଏବଂ ପୃଥକ ଅନୁଭବ ହେଉଥିବା ଅବସ୍ଥାରେ, ମାଟି ଗୋଡ଼ି, ଗୋରୁ-ମଣିଷ-ଗଛକୁ ଏକବୋଲି ଭାବିହେବ ? ଭାବିଦେଲେ କ'ଣ ସେ ଏକ ହୋଇ ଯିବେ କି ? - ସେ ସବୁ ଖୁବ୍ ଗଭୀର ଦାର୍ଶନିକ ଆଲୋଚନାର ବିଷୟ । ତେବେ କିଭଳି ଜଣେ ଏହି ପୃଥକ କରୁଥିବା ଅହଂକାରକୁ ଅତିକ୍ରମ କରିପାରିବ ? ଅନ୍ୟକୁ କିପରି ନିଜେ ବୋଲି ଭାବିପାରିବ ? ନିଜେ ବୋଲି ଭାବିବା ଅର୍ଥ ସେଇ ଅନ୍ୟ ହୋଇଯିବା । ଏହା ଏକ ସଂପର୍କ ଏବଂକୌଣସି ନିର୍ଦ୍ଦିଷ୍ଟ ସାଧନାର କ୍ରମ ପରିଣତି... । ସେ ସାଧନାଟି ହେଉଛି ଭଲପାଇବା । ଭଲପାଇଲେ ବ୍ୟବଧାନ ହ୍ରାସହୁଏ ଏବଂ ଭଲପାଇବା ପରିଣାମ ଉପରେ ନିକଟତା ବୃଦ୍ଧିପାଏ । ଏଣୁ ଏହା ଯୁକ୍ତିସଂଗତ ଯେ ସେଇ ଭଲପାଇବାର ଚୂଡ଼ାନ୍ତ ପରିଣାମ ରୂପେ ଅନ୍ୟ ସହିତ ଜଣେ ଅଭିନ୍ନ ଏକତ୍ୱ ଲାଭ କରିପାରେ । ସେଥିପାଇଁ ବୋଧେ ଶ୍ରୀମା କହିଛନ୍ତି 'Love, Love, Love as much as you can" ଏଥିରେ ଅହଂକାର ବିଲୀନହୋଇ ଦିବ୍ୟଜ୍ଞାନ ଲାଭ ହେବାର ସମ୍ଭାବନା ଅଛି । ଯଦି ତାହା ହିଁ ଜୀବନର ଲକ୍ଷ୍ୟ, ତେବେ ଶ୍ରୀମାଙ୍କ ନିର୍ଦ୍ଦେଶିତ ପନ୍ଥା ହିଁ ଏକମାତ୍ର ପନ୍ଥା ।



## ୨୩-୯-୮୩

ନଈରେ ପହଁରି ପାରିହେଲାବେଳେ ଲକ୍ଷ୍ୟବିନ୍ଦୁର ଅନେକ ଉପରକୁ ଯିବାପାଇଁ ଚେଷ୍ଟାକରାଯାଏ । ତା'ହେଲେ ସ୍ରୋତର ପ୍ରବାହ ସତ୍ତ୍ୱେ ଲକ୍ଷ୍ୟସ୍ଥଳରେ ପହଞ୍ଚିହୁଏ । ସଂସାରର ବିକ୍ଷେପ ଓ ବିକ୍ଷୋଭ ଭିତରେ ସେହିଭଳି ଏକ ପ୍ରଖର ସ୍ରୋତକୁ ବିଚାରକୁ ନେଇ କର୍ମ ଯୋଜନା ପ୍ରସ୍ତୁତ କରିବାକୁ ହୁଏ । ଜହ୍ନକୁ ଲାଖକରି ଟେକା ପକାଇଲେ ଅନ୍ତତଃ ବେଲଟାଏ ଖସିପାରେ। ଆଧ୍ୟାତ୍ମିକ ଲକ୍ଷ୍ୟ ଦୂରୁହ ଏବଂ ସେ ପନ୍ଥା ମଧ୍ୟ ବିପଦସଙ୍କୁଳ । ତାହା ଚେତନାର ଊର୍ଦ୍ଧ୍ୱଗତି ହୋଇଥିବାରୁ ସାଧାରଣ ଭୌତିକ ଉଲ୍ଲଙ୍ଘନ ପରି ତା'ର ବିରୋଧ କରିବାକୁ ସମଗ୍ର ପୃଥିବୀ ତା'ର ମାଧ୍ୟାକର୍ଷଣ ପ୍ରୟୋଗ କରେ । ଏହି କାରଣରୁ ଅଧଘଣ୍ଟାଏ ଧ୍ୟାନ କରିବାକୁ ଚେଷ୍ଟାକଲେ ପ୍ରତିକୂଳ ସ୍ରୋତ ପାଇଁ ମାତ୍ର ଦୁଇମିନିଟ୍ ସ୍ଥିରତା ଆସିପାରେ । ରୂପାନ୍ତରକୁ ଲକ୍ଷ୍ୟରଖି ସାଧନାକଲେ ଅନ୍ତତଃ କାୟମନୋବାକ୍ୟରେ କିଛି ଶୁଦ୍ଧି ଆସିପାରେ, କିଛି ପଶୁଚେତନାକୁ ଜୟ କରାଯାଇ ପାରେ । ବିସ୍ତୃତ ଯୋଜନାର ଅଧିକାଂଶ ଶତ୍ରୁପକ୍ଷ ଭଣ୍ଡୁର କରିଦେବେ, ଏଥିରେ ସନ୍ଦେହ ନାହିଁ । ତଥାପି ଯୁଦ୍ଧ ଜାରି ରହିବ । ଏଠି ସେଠି କିଛି କିଛି ଲଢ଼େଇରେ ହାରିବା ଗୁରୁତ୍ୱପୂର୍ଣ୍ଣ ନୁହେଁ ଯଦି ଯୁଦ୍ଧ ଶେଷରେ ବିଜୟ ସୁନିଶ୍ଚିତ (Many a battle may be lost, but the war is won) । ଉର୍ଦ୍ଦୁରେ ଏକ ପ୍ରସିଦ୍ଧ ସାୟରିର ଅର୍ଥ ହେଲା, ଚାଲ ଗୋଟିକ ପରେ ଗୋଟିଏ ନୀଡ଼ ରଚନା କରିବା, ଚଡ଼କ ମାରି ମାରି ନିଜେ ଖର୍ଚ୍ଚ ହୋଇଯିବା ।



## ୨୪-୯-୮୩

ଛୋଟପିଲା ବାପା, ମା'ଙ୍କ ସାଥିରେ ଯାତ୍ରା ଦେଖିଗଲାବେଳେ ଖୁବ୍ ଅସ୍ଥିର ହେଉଥାଏ । ବାପା ମା'ଙ୍କ ହେପାଜତ ତାକୁ ଅସୁଖ ଲାଗେ । କୌଣସି ପ୍ରକାରେ ମୁକୁଳିଯାଇ ଯାତ୍ରାବଜାରରେ ଅବାଧ ବୁଲି, ବିଭିନ୍ନ ଜିନିଷ କିଣି ନିଜର ବୋଲି କହିବାକୁ ସେ ଉତ୍କଣ୍ଠିତ ହେଉଥାଏ । ସେଭଳି କରେ ମଧ୍ୟ । ବାପା ମା' କିନ୍ତୁ ତା' ଉପରେ ସବୁବେଳେ ଦୃଷ୍ଟି ରଖିଥାନ୍ତି । ତାକୁ ସେମାନେ ଗହଳିରେ ହଜିଯିବାକୁ ଦିଅନ୍ତି ନାହିଁ । ପ୍ରୟୋଜନ ବେଳେ ତା'ପାଖରେ ଠିଆହୋଇ ତା'ର ଅସୁବିଧା ଦୂର କରନ୍ତି । ସେ ଅସୁବିଧା ପାରିହୋଇଗଲେ, ଅଳି କରୁଥିବା ଜିନିଷଟି ପାଇଗଲା ପରେ ଅନାଏ ଯେ ବାପା ମା' ଠିଆହୋଇଛନ୍ତି । ସେ ସେଉଠୁ ପୁଣି ପଳାଏ । ସବୁବେଳେ ତାଙ୍କର ଉପସ୍ଥିତି ସେ ସହିପାରେ ନାହିଁ । ଗୋଟାଏ ସମୟରେ ବାପା ତା'ପିଠିରେ ହାତରଖି କହନ୍ତି, ଚଞ୍ଚଳ ଯାତ୍ରାଦେଖା ସାରିଦେ, ଏଥର ଫେରିଯିବା ।' କାହିଁକି ? ବୋଲି ସେ ବିଦ୍ରୋହ କରେ । ଏ ଯାତ୍ରାଦେଖା କ'ଣ ସବୁବେଳେ ଚାଲି ପାରିବ ନାହିଁ । ଉତ୍ତର ଆସେ-ନା, ଯେ ଯାତ୍ରାକୁ ଆସିଛି, ସେ ଫେରିଯିବାକୁ ବାଧ୍ୟ । ଅଂଧାର ଆସୁଛି ପରା । ସେ ବିମୂଢ଼ ହୋଇ ଚାରିଆଡ଼କୁ ଅନାଏ । କୌଣସିଠାରେ ଅଂଧାରକୁ ଅନୁଭବ କରିପାରେ ନାହିଁ । ପୁଣି କିଛି କାଳ ମାତି ରହେ । ସତକୁ ସତ ଅଂଧାର ଘେରି ଆସେ । ସେ ଭୟରେ ଚାହିଁଦେଲା ବେଳକୁ ସେମାନେ ଅସୀମ ଧୈର୍ଯ୍ୟ ଏବଂ ଭଲପାଇବା ନେଇ ଅପେକ୍ଷା କରିଥିବାର

ଦେଖେ । ସେ ବାପାଙ୍କ ହାତକୁ ଧରେ । ଅଂଧାର ଘନୀଭୂତ ହୁଏ, ସେ ଭୁଲିଯାଏ ତା'ର ଯାତ୍ରାଦେଖା, ତା'ର ଅବାଧ୍ୟତା । ସେ ଏଣିକି ତାଙ୍କ ହାତ ଛାଡ଼ିବାକୁ ଭୟକରେ । ଅନ୍ଧାରରେ ସେ ଦିଶନ୍ତି ନାହିଁ । କିନ୍ତୁ ତାଙ୍କ ହାତକୁ ସେ ମୁଠେଇ ଧରିଥାଏ । ସେ ଅନୁଭବ ତା'ର ଏକମାତ୍ର ଭରସା ଘନଅନ୍ଧକାର ଭିତରେ । ସେହିପରି ଯଦି ଯାତ୍ରା ଭିତରେ ତା' ପୂର୍ବରୁ ଏବଂ ପରେ ସେଇ ସ୍ନେହଶୀଳ ସ୍ଥିର ଉପସ୍ଥିତି ଜଣେ ଅନୁଭବ କରିପାରେ, ସେ ଏକୁଟିଆ ନୁହେଁ, ଅସହାୟ ନୁହେଁ, ତା'କୁ ତ ନିଜେ ଘରକୁ ଫେରେଇ ନେଇଯିବା ପାଇଁ ଜାଗ୍ରତ ପ୍ରହରୀରୂପେ ସେ ଚିରକାଳ ଅପେକ୍ଷାକରି ରହିଛି । ସେ ଆଖିତୋଳି ଚାହିଁଲେ ହିଁ ତାଙ୍କୁ ଦେଖି ପାରିବ ।



## ୨୫-୯-୮୩

ଚୁମ୍ବକର ସଂସ୍ପର୍ଶରେ ରହିଗଲେ ସାଧାରଣ ଲୌହଶକ୍ତି ଚୁମ୍ବକଶକ୍ତିରେ ପରିବର୍ତ୍ତିତ ହୁଏ । କିନ୍ତୁ ବେଶୀ ସମୟ ସେ ଶକ୍ତିକୁ ଧାରଣ କରିପାରେ ନାହିଁ । ପୁନର୍ବାର ସାଧାରଣ ଲୌହ ଖଣ୍ଡଟିଏ ହୋଇ ପଡ଼ିରହେ । ସେହିପରି ଜଡ଼ଭିତରେ ଚେତନା ସଂଚାର ହେଲା ପରେ କିଛି ସମୟ ତା'ର ଆଚରଣ ବଦଳିଯାଏ । ସେ ଚେତନାର ଲକ୍ଷଣ ବହନ କରେ । କିନ୍ତୁ ପୁଣି ଜଡ଼ ଧର୍ମରେ ପଡ଼ିରହେ । ଚେତନା ସ୍ଥାନାନ୍ତରିତ ହୋଇଯାଏ । ଶରୀରରେ ଇନ୍ଦ୍ରିୟମାନେ କାର୍ଯ୍ୟ କରନ୍ତି । ଶ୍ୱାସପ୍ରଶ୍ୱାସ ଚାଲେ - ତେଣୁ ତାକୁ ଜୀବନ୍ତ ବା ଚେତନ ବୋଲି କୁହାଯାଏ । ଏ ସମସ୍ତ କିନ୍ତୁ ଜୀବନର ଲକ୍ଷଣ, ଜୀବନ ନୁହେଁ । ଜୀବନର ମୂଳଶକ୍ତି ସତ୍ୟ - ଚେତନା ବିଭିନ୍ନ ଆଧାରରେ ଭିନ୍ନ ରୂପରେ ପ୍ରକାଶିତ ହୋଇଥାଏ । ଏଣୁ ମଣିଷ, ଇତର ପ୍ରାଣୀ, ଉଦ୍ଭିଦ ଇତ୍ୟାଦିରେ କ୍ରମାନୁପାତିକ ପ୍ରକାଶ ଜୀବନକୁ ପ୍ରମାଣ କରେ । କିନ୍ତୁ ଜଡ଼ବସ୍ତୁ ? - ସେଥିରେ ତ ଚେତନା ପ୍ରଚ୍ଛନ୍ନ ରହିଛି । ଅଣୁ ପରମାଣୁ ଚାଳିତ କରୁଛି । ଯେଉଁଭଳି ବସ୍ତୁର ଚେତନା, ସେଭଳି ଚେତନାରେ ମାନସ ମଧ୍ୟ ଅନ୍ତର୍ନିହିତ ଅଛି ଏବଂ ସୃଷ୍ଟିର ପ୍ରାରମ୍ଭରୁ ଏ ସମସ୍ତ ଭିତରେ ଅତିମାନସ ଶକ୍ତି ଗୋପନ ରହି ନିଜକୁ ପ୍ରକଟିତ ଏବଂ ବିକଶିତ କରିପାରେ । ଏ ସମସ୍ତ matter, life-mind super mind ଆଦି କ୍ରମାନ୍ୱୟରେ ଦେଖାଦେଇଛନ୍ତି । ବୟସ ବଢ଼ିଗଲେ ଶରୀର ଏ ଶକ୍ତିକୁ ଧାରଣ କରିବାକୁ ଅକ୍ଷମ ହୋଇଯାଏ । ଏଣୁ ଜୀର୍ଣ୍ଣବସ୍ତ୍ର ଭଳି ଅପରିଧେୟ ହୋଇଯାଏ । ଏଣୁ ଶରୀରରେ ଏହି ସମୟରେ ବିଭିନ୍ନ ରୋଗ ଦେଖାଦେଲେ ସେଥିରେ ବିସ୍ମିତ ବା ବିବ୍ରତ ହେବାର କିଛି ନାହିଁ । ସେଥିରେ ଲାଗିରହି କେବଳ ଶରୀରଟିକୁ ପୁଣି ସୁସ୍ଥ କରିବା ଚେଷ୍ଟା ବୃଥା । ପୁରୁଣା ଲୁଗାପରି ତାକୁ ଗୋଟିଏ ଜାଗାରେ ମରାମତି କଲେ ଆଉ ଚାରି ଜାଗାରେ ସେ ଫାଟିଯାଏ । ଏଣୁ ସେଥିରେ ଲାଗିଗଲେ ଲକ୍ଷ୍ୟରୁ ବିଚ୍ୟୁତ ହେବାକୁ ପଡ଼େ । ମଣିଷ ଜନ୍ମ ଦୁର୍ଲ୍ଲଭ, କାରଣ ଏହାର ସମ୍ଭାବନା ଦିବ୍ୟ ଚେତନା - କିନ୍ତୁ ତାକୁ ପଦେ ପଦେ ବିଭିନ୍ନ ବିଘ୍ନ, ପ୍ରତି ଆକର୍ଷଣକୁ ଅତିକ୍ରମ କରିବାକୁ ହୋଇଥାଏ । ତାକୁ ବିଭ୍ରାନ୍ତ କରିବା ପାଇଁ ଜୀବନର ବିଭିନ୍ନ ଅବସ୍ଥାରେ ନାନାପ୍ରକାର ଶକ୍ତି ଏବଂ ବିକ୍ଷେପ କାର୍ଯ୍ୟ କରିଥାଏ । "ବାଲୋସ୍ତାବତ୍ କ୍ରୀଡ଼ାସକ୍ତଃ ତରୁଣସ୍ତାବତ୍ ତରୁଣୀରକ୍ତଃ ବୃଦ୍ଧସ୍ତାବତ୍ ଚିନ୍ତାମଗ୍ନଃ ପରମବ୍ରହ୍ମଣି କୋଽପିନଲଗ୍ନଃ ।" ଶରୀର ସୁସ୍ଥ ଥିଲେ ଯୌବନାବସ୍ଥାରେ ସେଥିରେ ସୁଖ ସଂଯୁକ୍ତ କରିଦେଇ

ତାହା ହିଁ ଏକମାତ୍ର ଧେୟ ଏବଂ ପ୍ରାପ୍ୟରୂପେ ବିଶ୍ୱାସ କରାଇଦିଏ । ଏଣୁ ସେ ସମୟ ମୋହାବିଷ୍ଟ ହୋଇ ବିତିଯାଏ । ତା'ପରେ ପୁଣି ସେଇ ଶରୀରରେ ପୀଡ଼ା ଯନ୍ତ୍ରଣା ସଂଯୁକ୍ତ କରି, କେବଳ ସେଇ ଚିନ୍ତାରେ ଲାଗି ରହିବାକୁ ଏବଂ ପୁନଶ୍ଚ ସ୍ୱାସ୍ଥ୍ୟ ଯୌବନ ଫେରିପାଇବାର ପଛରେ ଗୋଡ଼ାଇବାକୁ ପ୍ରବୃତ୍ତ କରାଏ । ଏଣୁ ସେ ଶେଷ ସମୟଟିକକ ମଧ୍ୟ ଅଜ୍ଞାନ ଅଂଧାର ଭିତରେ ବିତିଯାଏ । ଏହାକୁ ଜାଣିଗଲେ ଅନିବାର୍ଯ୍ୟରୂପେ ତାକୁ ବିଶେଷ ଧ୍ୟାନ ନ ଦେଇ ସ୍ୱାଭାବିକ ସାଧନା କରିବା ବିଧି । ଜୀବନୀଶକ୍ତିର କ୍ରମଶଃ କ୍ଷୟ ହେତୁରୁ ରୋଗ ବାର୍ଦ୍ଧକ୍ୟରେ ଦେଖାଦେଇଥାଏ । ରୋଗ ହିଁ କ୍ଷୟ, ଏଣୁ ଜୀବନର ପରିପନ୍ଥୀ । ସମଗ୍ର ଜୀବନ ପ୍ରବାହର: ମୂଳଉସ ସବିତା ସେଇଠାରୁ ସମସ୍ତ ପ୍ରାଣୀ ତାଙ୍କର ଜୀବନ ଆହରଣ ସଂରକ୍ଷଣ କରିଥାନ୍ତି । ଏଣୁ ବୋଧହୁଏ ରାତ୍ରକାଳରେ ଯେ କୌଣସି ରୋଗ ବଢ଼ିଯିବା କଥା ବୈଦ୍ୟଶାସ୍ତ୍ରରେ କଥିତ ଅଛି । ଅବଶ୍ୟ ଅନ୍ୟ କାରଣ ମନସ୍ତାତ୍ତ୍ୱିକ ହୋଇପାରେ । ଦିନବେଳେ ଜାଗ୍ରତ ରହି ବିଭିନ୍ନ ବିଷୟରେ ମନନିଯୋଗ କରୁଥିବାରୁ ରୋଗ ଉପରେ ସେତେ ଗୁରୁତ୍ୱ ଦିଆଯାଇ ପାରେ ନାହିଁ । କିନ୍ତୁ ରାତ୍ରରେ ତାହା ହିଁ ଏକମାତ୍ର ଧେୟ ହୋଇଯିବାରୁ ଗୁରୁତ୍ୱ ଏବଂ ପ୍ରଭାବ ବଢ଼ିଯାଏ, ଅନ୍ତତଃ ସେହିପରି ଲାଗିଥାଏ ।



## ୨୬-୯-୮୩

ଅପରକୁ ବୁଝିବା ପାଇଁ ଆମେ ସାଧାରଣତଃ ତା'ର ଭାଷା ଉପରେ ନିର୍ଭର କରିଥାଉ । ଭାଷାର ସାମର୍ଥ୍ୟ ଏବଂ ଉପଯୋଗିତା ଅନେକ । କିନ୍ତୁ ଗୋଟାଏ ସୀମା ପାରିହୋଇଗଲେ, ଭାଷା ଆଉ ଯଥେଷ୍ଟ ନୁହେଁ । ସାଧାରଣ ଜୀବନରେ ଅନେକ ଅସାଧାରଣ ଆବେଗ ଆସେ ଯାହାପାଇଁ ଭାଷା ଅକୁଳାନ ହୁଏ । ତା'ବାହାରେ ପୃଥିବୀରେ ମଣିଷର କେତେ ସହସ୍ର ଭାଷା, ଭାଷାତିରକ୍ତ ଆଉ କେତେ ସହସ୍ର ଠାର, ଯାହାଦ୍ୱାରା ଭାବ ବ୍ୟକ୍ତ କରାଯାଏ । ଏସବୁ ମଧ୍ୟ ଗୋଟିଏ ଅଂଶମାତ୍ର । ଅପରିସୀମ ସ୍ପନ୍ଦନ ଅକଳନୀୟ ଭୂମିରୁ ଆସୁଥାଏ । କିଏ କାକ ଭାଷା ବୁଝେ, କିଏ ଅରଣ୍ୟର ବୃକ୍ଷମାନଙ୍କ ଭାଷା, ଜଡ଼ଜଗତ ପରିବ୍ୟାପ୍ତ ବିଶ୍ୱ ବ୍ରହ୍ମାଣ୍ଡର ଭାଷା ମଧ୍ୟ ବୁଝିବା ଦୁରୂହ । ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଯେ ଗ୍ରହପିଣ୍ଡ ମହାକାଶରେ ଘୁରିବୁଲୁଥିବା ବେଳେ ଏକ ମୂର୍ଚ୍ଛନା ସୃଷ୍ଟିହୁଏ । ଆମେ ଏଥିରେ ସମ୍ପୃକ୍ତ ଥିବାରୁ ଅନୁଭବ କରିପାରୁ ନାହୁଁ । ତାକୁ ସେମାନେ Symphony of spheres ବୋଲି ଆଖ୍ୟାତ କରୁଥିଲେ । ଏତ' ଗଲା ଦୃଶ୍ୟମାନ ଜଗତର କଥା । ଅନେକ ଅଦୃଶ୍ୟଜଗତରୁ ଅଦୃଶ୍ୟ ଚେତନାରୁ ସ୍ପନ୍ଦନ ଆମକୁ ସ୍ପର୍ଶ କରୁଥାଏ । ଆମେ ତାକୁ ବି ଅବଧାରଣ କରିପାରୁନା । ଜଣକର ପଦଟିଏ ଶୁଣି ତାକୁ କିମ୍ବା ସେ କହୁଥିବା ବିଷୟଟି ବୁଝିଗଲୁ ବୋଲି ଭାବିବା ଅନୁଚିତ । ଏତିକି ଅନ୍ତତଃ ବୁଝିଗଲେ ଯଥେଷ୍ଟ ହେବ ଯେ ଭାଷା ଏକ ଅତି ସୀମିତ ପରିସରର ମୂଳମାଧ୍ୟମ । ସେଥିରେ ଯାହା ବୁଝାଯାଏ ତାହା କେବଳ ଅତି ସ୍ଥୂଳଭାବରେ ମୋଟାମୋଟି ବୁଝାଯାଏ । ପ୍ରକୃତ ଜ୍ଞାନ ଚେତନାର ବିଷୟ । ଭାଷା ଓ ବଚନ ସେଥିପାଇଁ ଯଥେଷ୍ଟ ନୁହେଁ । ତେବେ ଶବ୍ଦ ବ୍ରହ୍ମ ରୂପରେ ଶ୍ରୁତି ତ'ମାନବୀ ଭାଷାର ଆଶ୍ରିତ । ସେଥିରେ କ'ଣ ଜ୍ଞାନ ନାହିଁ । ଅଛି, କିନ୍ତୁ ସେ ଜ୍ଞାନ, ଭାଷା ନୁହେଁ, ଜ୍ଞାନ ତା'ର

ଅତିରିକ୍ତ । ତାକୁ ଅତିକ୍ରମ କରିଥିବା, ତଦ୍ୱାରା ସୂଚିତ ହେଉଥିବା ଏକ ଅନୁଭବ୍ୟ ଭୂମି ।

(ଖ) ଦାମ୍ପତ୍ୟକଳହ ଅତି ପ୍ରାଚୀନ ଏବଂ ସ୍ୱାଭାବିକ୍ । ଏହା ମୁଖ୍ୟତଃ ବୁଝାମଣାର ଅଭାବରୁ ହିଁ ହୋଇଥାଏ । ଏଥିରେ ପୁରୁଷପକ୍ଷ ସବୁବେଳେ ଶାସକ ଏବଂ କର୍ତ୍ତାର ଅହମିକାରୁ କାର୍ଯ୍ୟ କରୁଥିଲେ ଏ କଳହ ପ୍ରାୟତଃ ହୋଇଥାଏ । ପୁରୁଷ ଭାବୁଥାଏ ଯେ ସେ ହିଁ ଘରର ସର୍ବେସର୍ବା । ସେ ଯାହା କହିବ ତାକୁ ଭୃତ୍ୟପରି ସ୍ତ୍ରୀ ପାଳନ କରିବା ଉଚିତ୍ । ଯଦି ସେଥିରେ ବ୍ୟତିକ୍ରମ ହେଲା ତା'ହେଲେ ସେ ଆହତ ବୋଧକରେ ଏବଂ କଳହ ହୁଏ, ଦୁର୍ବ୍ୟବହାର ହୁଏ । ଏହା Male chauvinism ର ତିକ୍ତ ପରିଣାମ । ଅନ୍ୟପକ୍ଷେ ସେ ଯଦି ସାମାନ୍ୟ ସ୍ଥିରତାର ସହିତ ଭାବେ ଯେ ତା'ର ପ୍ରିୟ ବାପଘର ଛାଡ଼ି ଆସିଲାଦିନୁ ସେ ନାରୀଟି ସ୍ୱାମୀ ଏବଂ ତା' ପରିବାରର ମଙ୍ଗଳକୁ ନିଜର ମଙ୍ଗଳ ଭାବି ଆତ୍ମୋତ୍ସର୍ଗରେ ଦିନରାତି ଜାଗ୍ରତ ସ୍ୱପ୍ନରେ ଲାଗିରହିଛି, ନିଜର କଷ୍ଟକୁ, ଅସୁବିଧାକୁ ଗୌଣ ମନେକରି ସେବାକରି ଚାଲିଛି, ତେବେ ତାକୁ ହାତଧରି କ୍ଷମା ମାଗିନେବା ସର୍ବାଦୌ ବାଞ୍ଛନୀୟ । ପୁରୁଷ କେବେ ନାରୀକୁ କ୍ଷମା ମାଗି ଶିଖିନାହିଁ । ତା ନ କରିବା ଯାଏ ସଂପର୍କ ତେଢ଼ା ଧରିଥିବ । ଆଉ ଗୋଟିଏ କଥା ହେଲା ଯେ ପ୍ରତିକ୍ରିୟା ଘରେ ଶୂନ୍ୟପକେଇଦେଲେ କଳହ ସମ୍ଭବ ନୁହେଁ । ପତ୍ନୀ ଯଦି କୌଣସି କାରଣରୁ ଉତ୍କ୍ଷିପ୍ତ ହୋଇ କଟୁକଥା କହୁଛନ୍ତି ତାକୁ ଅଳ୍ପହସି କୌଣସି ପ୍ରତିକ୍ରିୟା ନ କରି କହିବା ଉଚିତ୍ - କିଓ, କାହିଁକି ଏମିତି ରାଗୁଛ ?' ସେଥିରେ ଚମତ୍କାର ଫଳ ହୋଇପାରେ । ପୁରୁଷ ପକ୍ଷ ସାକ୍ଷୀପକ୍ଷ, ନାରୀପକ୍ଷ ଶକ୍ତିପକ୍ଷ, ଏତିକି ବୁଝିଲେ ତା ସହିତ କଳହ କରିବାର ପ୍ରଶ୍ନ କାହିଁ ? ନାରୀ ପାଖରେ ନଇଁଗଲେ କୁଆଡ଼େ ଅଣପୁରୁଷିଆ ବୋଲି ଅପଖ୍ୟାତି ହେବ । ସେଥିରେ କ'ଣ ଥାଏ ? ଜଣେ ଆଧ୍ୟାତ୍ମିକ-ସାଧକ ପାଇଁ ଜନରବ, ଖ୍ୟାତି ଅପଖ୍ୟାତିର କୌଣସି ଅର୍ଥ ନ ଥାଏ । ତା'ର ତ commitment ଯାଇ ଆଉ କୋଉଠି । ଏଭଳି ସମତା ରକ୍ଷା କରିବା, କୌଣସି ପରିସ୍ଥିତିରେ ବିଚଳିତ ନ ହେବା । ଅହଂକାରକୁ ସଂଯତକରି ପତ୍ନୀ ହେଉ, ବନ୍ଧୁ ହେଉ ଏପରିକି ଶତ୍ରୁ ହେଉ ବିନୟ ପ୍ରକାଶ କରିବା ସାଧନାର ଅଂଶ । ଜୀବନରେ ପ୍ରୟୋଗ ନ କଲେ ତତ୍ତ୍ୱ ଯୋଗରେ ପରିଣତ ହୁଏ ନାହିଁ ଜୀବନରେ ଯୁକ୍ତ ହେଲେ ହିଁ ତାହା ଯୋଗହୁଏ, ଅନୁଭବ ହୁଏ ଏବଂ ଶେଷରେ ସେ ପରମେଶ୍ୱରଙ୍କ ସହିତ ଯୁକ୍ତ କରାଇବାରେ ସାହାଯ୍ୟ କରିଥାଏ । କହିବାର ତାତ୍ପର୍ଯ୍ୟ ହେଲା ଯେ କେବେ ଜୀବନରେ କଳହ ସ୍ୱାଭାବିକ ଥିଲା । ବର୍ତ୍ତମାନ ଶ୍ରୀ ଅରବିନ୍ଦଙ୍କୁ ଗ୍ରହଣକରି ସେଭଳି ପିଲାଳିଆ କଥାଟିଏ କରିବା ଅବାନ୍ତର । ଏଣିକି ଦାମ୍ପତ୍ୟକଳହ ପରିବର୍ତ୍ତେ ଦାମ୍ପତ୍ୟ ପ୍ରେମ ହିଁ ଅଭ୍ୟାସସାପେକ୍ଷ୍ୟ, ସାଧନାସାପେକ୍ଷ୍ୟ । ଆଉ କଳି ନାହିଁ । କଳିଲାଗି ପାଞ୍ଚମିନିଟ୍ କ୍ରୋଧର କମ୍ପନ ହେଲେ ସେଥିରେ ପାଞ୍ଚ ମାସର ସାଧନା ସଂଚୟ ଭସ୍ମୀଭୂତ ହୋଇଥାଏ । ଏଣୁ ସାଧୁ ସାବଧାନ ।



୨୭-୯-୮୩

ଯେଉଁମାନେ ଶ୍ରୀ ଅରବିନ୍ଦଙ୍କ ଶରଣାପନ୍ନ ଏବଂ ଅନୁଗତ, ସେମାନେ ଅନ୍ୟକୌଣସି ଦେବାଦେବୀଙ୍କୁ ସ୍ୱୀକାର କରିବା ଉଚିତ୍ ନୁହେଁ । ମୋଟାମୋଟି ଭାବରେ ଏଭଳି ଗୋଟିଏ ଧାରଣା କେତେକଙ୍କ ମନରେ

କାର୍ଯ୍ୟ କରୁଛି । ଏହାକୁ ଅତି ସ୍ଥୂଳଭାବରେ ବୁଝିଗଲେ ତାର ମୂଳ ଉଦ୍ଦେଶ୍ୟ ବ୍ୟାହତ ହୋଇପାରେ । ଏ ସଂକ୍ରାନ୍ତରେ ଦୁଇଟି କଥା ସ୍ମରଣ କରାଯାଇ ପାରେ । ଶ୍ରୀମଦ୍ ଭାଗବତ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି - "ମନ୍ମନା ଭବ ମଦ୍‌ଭକ୍ତୋ ମଦ୍ୟାଜି ମାଂ ନମସ୍କୁରୁ" କିମ୍ବା "ମତଃ ପରତରଂ ନାସ୍ତି" ଇତ୍ୟାଦି । ଏଥିରୁ ଜଣାଯାଉଛି ଯେ ଭକ୍ତ ଅନନ୍ୟଚେତା ହେବା ଆବଶ୍ୟକ । ତାଙ୍କ ବ୍ୟତିରେକ ଆଉ କେହି ନାହାନ୍ତି, ନିଜ ଦେବତା ଶ୍ରେଷ୍ଠଦେବତା, ନିଜ ଧର୍ମ ଶ୍ରେଷ୍ଠ ଧର୍ମ - ଏପରି ଅଜ୍ଞାନପରବଶ ହୋଇ ଅତୀତରେ ଅନେକ ଯୁଦ୍ଧବିଗ୍ରହ ହୋଇଯାଇଛି । ସାମୟିକ ଭାବରେ ବିରାଡ଼ିଦେବତାଙ୍କ ଉପରେ ବୃଷ ଦେବତାଙ୍କ ବିଜୟଲାଭ ହୋଇଛି । କିନ୍ତୁ ପରେ ତାହା ବିପରୀତ ଫଳ ମଧ୍ୟ ପ୍ରଦାନ କରିଛି - ସେଇ ମନୋବୃତ୍ତିରେ ଗୀତାଶାସ୍ତ୍ର ବୁଝିଯିବାର ଆଶଙ୍କାଥିବାରୁ ସେଥିରେ ଶ୍ରୀକୃଷ୍ଣ କହିଛନ୍ତି "ଯେ ଯଥାମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।" ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚିତୁମିଛତି । ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହଂ । ଯେ କୌଣସି ଅବଲମ୍ବ ସ୍ୱୀକାର କରି ତାଙ୍କୁ ଲାଭ କରାଯାଇ ପାରେ ଏବଂ ଅନ୍ୟରୂପକୁ ଉପାସନା କଲାବେଳେ ଯେଉଁ ଶ୍ରଦ୍ଧାର ପ୍ରୟୋଜନ ହୁଏ ସେ ସେଇ ଶ୍ରଦ୍ଧା ପ୍ରଦାନ କରି ସେହି ପ୍ରକାର ଉପାସନାକୁ ପ୍ରୋତ୍ସାହିତ କରନ୍ତି । ଦ୍ୱିତୀୟ ଦୃଷ୍ଟାନ୍ତଟି ପଣ୍ଡିଚେରୀରୁ ନିଆଯାଉ । କେତେକ ଭକ୍ତ ସାଧକ ଆଶ୍ରମକୁ ଏକାଗ୍ରଚିତ୍ତ ହୋଇ ଆସିବାବେଳେ ବାଟରେ ଗଣପତି ମନ୍ଦିରକୁ ଅବଜ୍ଞା ଏବଂ ଅବହେଳାରେ ଦୃଷ୍ଟିପାତ ସୁଦ୍ଧା ନ କରି ଚାଲିଆସୁଥିଲେ । ଦିନେ ଶ୍ରୀମା' ସେମାନଙ୍କ ଉଦ୍ଦେଶ୍ୟରେ ଗଣପତିଙ୍କ ଖେଦ ବିଷୟ ଉଲ୍ଲେଖ କରିଥିଲେ ଏବଂ ସେମାନଙ୍କୁ ଆହୁରି ଉଦାର ବୁଝାମଣାସମ୍ପନ୍ନ ଏବଂ ପରିଣତ-ମନସ୍କ ହେବାକୁ ଉପଦେଶ ଦେଇଥିଲେ, ଅତଏବ କଥାହେଲା ଯେ ପରମତ-ସହିଷ୍ଣୁତା ଏକ ଆଧ୍ୟାତ୍ମିକ ଲକ୍ଷଣ, ବିଦ୍ୱେଷ, ବିରୋଧ ସଂପୂର୍ଣ୍ଣ ଅନାଧ୍ୟାତ୍ମିକ । ଆମେ ରାମଭକ୍ତ ତେଣୁ କୃଷ୍ଣ ଆମର ଶତ୍ରୁ ଏଭଳି କହୁଥିବା ଲୋକେ ରାମଙ୍କୁ ସୁଦ୍ଧା ଜାଣନ୍ତି ନାହିଁ । ଶ୍ରୀଅରବିନ୍ଦଙ୍କୁ ଗୁରୁ ଏବଂ ପରମାଶରଣ ଭାବରେ ଗ୍ରହଣକଲେ ମନରୁ ବିରୋଧ ଲୋପପାଇଯିବା କଥା । ସମସ୍ତଙ୍କୁ ଭଲପାଇ କେବଳ ଜଣଙ୍କୁ ପ୍ରେମକଲାଭଳି, ବିଭିନ୍ନ ତୀର୍ଥ, ବିଭିନ୍ନ ଦେବଦେବୀଙ୍କୁ ଯଥାମାନ୍ୟ ଦେବାରେ କୌଣସି ବାଧକ ନ ରହିବା କଥା । ତେବେ ମନର ଶକ୍ତି ଏବଂ ପରିସର କେତେ ବା ? ତାକୁ ଅସଂଖ୍ୟ ଜାଗାରେ ବାଣ୍ଟିଦେଲେ ଏକାଗ୍ର ସାଧନାର ଫଳ ମିଳିବ ନାହିଁ, ସେଥିପାଇଁ କେବଳ ସତର୍କ କରିଦିଆଯାଇଛି । ନଚେତ୍ ଅନ୍ୟ ମାର୍ଗୀ ବା ପନ୍ଥୀଙ୍କ ପରି ବିରୋଧ, ଅଶ୍ରଦ୍ଧା, ଅବଜ୍ଞା କରି ନିଜର ସାଧନାକୁ ଅଶୁଦ୍ଧ ଏବଂ ବ୍ୟାହତ କରିବା ଏହାର ଉଦ୍ଦେଶ୍ୟ ନୁହେଁ । ଶ୍ରୀ ଅରବିନ୍ଦ ସମଗ୍ର ପୃଥ୍ୱୀଚେତନାକୁ ସ୍ୱୀକାର କଲାବେଳେ କେଉଁ ଧର୍ମଧାରଣା, କେଉଁ ଦେବଦେବୀ କିମ୍ବା ଚେତନାର କେଉଁ ନିମ୍ନତମ ସ୍ତରକୁ ଭଲା ଅସ୍ୱୀକାର କରୁଛନ୍ତି ? ତେବେ ଆମପାଇଁ ସାଧନାର ଅନୁକୂଳ ଆଚରଣ କଥା କୁହାଯାଇଛି । ଟିକିଏ ନିସ୍ପୃହ ରହିପାରିଲେ ଅନ୍ୟ ପ୍ରଭାବରୁ ମୁକ୍ତହୋଇ ଏକାଗ୍ର ସାଧନା କରିହେବ । ମନରେ ଗୋଟିଏ କଥା ସ୍ଥିର କରିନେବାକୁହେବ ଯେ, ଏକଦା ରୂପବର୍ଣ୍ଣହୀନ ନାସ୍ତି ଭିତରୁ ସ୍ଥୂଳବସ୍ତୁର ଉଦ୍ଭବ ହେଲା, ତା'ପରେ ସେଥିରେ ପ୍ରାଣସଂଚାର ହେଲା ଏବଂ କାଳକ୍ରମେ ପ୍ରାଣୀ ମନସ୍କମାନବ ହେଲା । ଅନିବାର୍ଯ୍ୟଭାବରେ ସେ ଅତିମାନସକୁ ଉଦ୍‌ବର୍ତ୍ତିତ ହୋଇଯିବା ତାହା ମୋର ଏବଂ ଅନ୍ୟ ସମସ୍ତଙ୍କର ଅନିବାର୍ଯ୍ୟ ଭବିତବ୍ୟ । Mater, life, mind, Super mind ମାର୍ଗରେ ଦ୍ରଷ୍ଟା, ସ୍ରଷ୍ଟା ଏବଂ ଉପଦେଷ୍ଟା ହେଉଛନ୍ତି ମହାଯୋଗୀ ଶ୍ରୀ ଅରବିନ୍ଦ । ସେଥିରେ କୌଣସି ଦ୍ୱିଧା ନ ରହିବା କଥା, ତେଣିକି ଅନ୍ୟ ଦେବଦେବୀଙ୍କ ପ୍ରତି ବରଂ ସୁରୁଚି, ଶିଷ୍ଟାଚାର ଏବଂ ସୌଜନ୍ୟସଂପନ୍ନ ଆଚରଣ ନିର୍ଦ୍ଧାରିତ ହୋଇଯିବ ।

୨୮-୯-୮୩

ହାଟରେ ଗହଳି ଭିତରେ ଗୋଟିଏ ଗୁମାଲ ଯଦି ହଜିଯାଏ ତେବେ ତା'ପାଇଁ ସାମାନ୍ୟ ଚେଷ୍ଟାକରି ଜଣେ ଓହରି ଯାଇପାରେ । କିନ୍ତୁ ଛତାଟିଏ ହଜିଗଲେ ନିଶ୍ଚୟ ପଚରାପଚରି କରି ନିଷ୍ଠାର ସହିତ ଖୋଜାଯାଏ । ଯଦି ସୁନାହାର ହଜିଗଲା, ତେବେ ପୋଲିସ୍ କଟୁଆଳ ଡକାହକା ହୋଇ ତନାଘନା ଅନୁସନ୍ଧାନ ହୁଏ । କିନ୍ତୁ ଯଦି ଦେଢ଼ବର୍ଷର ପୁଅ ହଜିଯାଇଛି, ବାପକୁ ଦଶଦିଗ ଅନ୍ଧାର ଦିଶିଯିବ । ସେ ଆର୍ତ୍ତବିହ୍ୱଳ ହୋଇ କେବଳ ସେଇ କଥାରେ ସମଗ୍ରଚେତନା ବୁଡ଼ାଇଦେବ । ସଂସାର ଗହଳି ଭିତରେ ସବୁଠାରୁ ମୂଲ୍ୟବାନ୍ ଆତ୍ମଜ୍ଞାନଟିକୁ ହଜାଇଦେଇ ଆମେ ସେ ବିଷୟରେ ଆକୁଳ ହେବାର କୌଣସି ଲକ୍ଷଣ ନାହିଁ । ଭଗବାନଙ୍କୁ ହଜାଇ ଦେଇଥିବାର ପ୍ରବଳ ଦୁଃଖ ଏବଂ ତାକୁ ଖୋଜି ପାଇବାର ତଦ୍‌ପେକ୍ଷା ପ୍ରବଳ, ଆତୁରତା ଆମର ନାହିଁ । ସଂସାରରେ ଯାବତୀୟ ଅସ୍ଥିର ମୂଲ୍ୟକୁ ବଜାୟ ରଖି କୌଣସି ପ୍ରକାର କଷ୍ଟସ୍ୱୀକାର ନ କରି ସୁବିଧାରେ ପ୍ରଭୁ ଯଦି ମିଳିଗଲେ ଭଲ, ନ ମିଳିଲେ ମଧ୍ୟ କିଛି ଯାଏ ଆସେ ନାହିଁ । ଏହା ଘୋର ଉଦାସୀନତା, ଦୈନ୍ୟ ଏବଂ ଅଯୋଗ୍ୟତା ବୋଲି ଆମର ବିଶ୍ୱାସ ହୁଏନାହିଁ । ଆମେ ଅହରହ ଭଗବାନଙ୍କୁ ହିଁ ଦୋଷ ଦେଇଥାଉ । ଆଶାକରୁଥାଉ ତାଙ୍କର ଅବାଧ କୃପା, ଅପରିମେୟ ସାଂସାରିକ ସୁଖ, ଐଶ୍ୱର୍ଯ୍ୟ । କିନ୍ତୁ ଦେଉ କ'ଣ ? – କିଛି ନାହିଁ । ନିଜ ପାଇଁ, ପତ୍ନୀପୁତ୍ର ପାଇଁ, ଅତି ମୂଲ୍ୟବାନ୍ ପାଚିଲା ଦେଶୀ କଦଳୀ କିଣାଯାଏ, କିନ୍ତୁ ଖଜୁରି ପରି ଦିଶୁଥିବା ଟଙ୍କାରେ ଚାଳିଶଟା ବିକ୍ରୀ ହେଉଥିବା ନାମମାତ୍ର କଦଳୀ, ଠାକୁରଙ୍କ ପୂଜାପାଇଁ କିଣାଯାଏ । ଶାଢ଼ୀ ଯୋଡ଼ରେ ପାଞ୍ଚଶହ ଟଙ୍କା ଖର୍ଚ୍ଚ କରାଯାଏ, ଅଥଚ ଖଣ୍ଡେ ବଳକା ସାଲୁକନା, କିଛି ଜାମାରୁ ଉଦ୍‌ବୃତ୍ତ ଛିଟରେ ଖଟୁଲି ସଜାଯାଏ । ଶସ୍ତା ଧୂପ କିଣାଯାଏ । ଚଳେ ପାଣି, ଟୋପାଏ ଚନ୍ଦନ, ମୁଠାଏ ଖଇ ବା ସୁକୁଟା କଦଳୀ ଦେଇ ଦି'ଥର ଅନ୍ୟମନସ୍କ ଡ଼ାକିଦେଲା ପରେ ତେଣିକି ସେ ଶୁଣିଲେ ନାହିଁ ବୋଲି ଅକଥ୍ୟ ଗାଳି ବର୍ଷଣ ହୁଏ । ଧନ୍ୟ ମଣିଷର କୃପଣତା, ଧନ୍ୟ ତା'ର ଆଚରଣ । ଠାକୁରେ ଯଦି ସେ ଖଇ ସତକୁ ସତ ଖାଉଥାନ୍ତେ, ତେବେ ସେତକ ମଧ୍ୟ ସେ ଦିଅନ୍ତା ନାହିଁ । ସେ କିନ୍ତୁ ପତ୍ରଂ ପୁଷ୍ପଂ ଫଳଂ ତୋୟଂ ପ୍ରକୃତରେ ଚାହାନ୍ତି ନାହିଁ । ପ୍ରତ୍ୟଗାତ୍ମା ପରମେଶ୍ୱରଙ୍କୁ କ'ଣ୍ ବସ୍ତୁ ସମର୍ପଣ କରାଯାଏ ? ସେ କେବଳ ଭକ୍ତି ଚାହାନ୍ତି, ସମର୍ପଣ ଭାବଟି ଚାହାନ୍ତି, 'ଯୋ ମେ ଭକ୍ତ୍ୟା ପ୍ରଚ୍ଛତି' – କିନ୍ତୁ ମନଦେଲେ, ତାକୁ ପାଇବା ପାଇଁ ଆତୁର ହେଲେ ସେ ଆବିର୍ଭୂତ ହୋଇଯାଆନ୍ତି – ଏ ବିଷୟରେ ଆଦୌ ସନ୍ଦେହ ନାହିଁ ।



୨୯-୯-୮୩

ସୁନାହାରଟିରେ ପଥରଟିଏ ଖଞ୍ଜିବା ପାଇଁ କୁହାଗଲେ କାରିଗର ଉଭୟକୁ ନେଇ ଗୋଟିଏ ସୁଦୃଶ୍ୟ ଛନ୍ଦ ସୃଷ୍ଟିକରେ । ଧାତୁ ଏବଂ ପଥରର କୌଣସି ସାମ୍ୟ ନଥିବା ସତ୍ତ୍ୱେ ସେମାନଙ୍କର ସ୍ୱାଭାବିକ ବୈଷମ୍ୟ ବିରୋଧ ଟାଳିଯାଇ ସେମାନେ ପରସ୍ପରକୁ ଗ୍ରହଣ କରିବାର ପରିବେଶ ସୃଷ୍ଟି ହୁଏ । ପ୍ରତି ମୁହୂର୍ତ୍ତରେ ଅଜ୍ଞାତଭୂମିରୁ

ଘଟଣା, ବ୍ୟକ୍ତି, ଆବେଗ, ପରିସ୍ଥିତି ଆସି ଉପସ୍ଥିତ ହୋଇଯାନ୍ତି । ସେମାନଙ୍କୁ ଗ୍ରହଣ କରି ନ ଜାଣିଲେ ସେମାନେ ବିରୋଧ, ବିକ୍ଷୋଭ ଆଦି ଜାଗ୍ରତ କରିପାରନ୍ତି । ବିରୋଧଶୂନ୍ୟ ଭାବେ ଯାହା ଆସୁଛି ତାକୁ ସ୍ୱୀକାର କରିନେବା, ନିଜ ସ୍ରୋତରେ ଧାରଣ କରିନେବା ହେଉଛି ଜୀବନରେ ଛନ୍ଦ ସୃଷ୍ଟି କରିବା । ଚିନ୍ତାରେ ମଧ୍ୟ ସବୁବେଳେ ନୂତନର ସଂଘାତ ଘଟୁଥାଏ ଏବଂ ସ୍ରୋତକୁ ଭିନ୍ନାଭିମୁଖୀ କରୁଥାଏ । ସ୍ଥିରତା ସହିତ ଚିନ୍ତାଗୁଡ଼ିକୁ ସୁସଂବଦ୍ଧ କରି ଯଥାସ୍ଥାନରେ ରଖିପାରିଲେ ସୁନାହାରରେ ପଥର ଖଞ୍ଜିଲାପରି ସେ ଗୋଟିଏ ସମନ୍ୱିତ ସୁନ୍ଦର ସାର୍ଥକ ଅଳଂକାର ହୋଇପାରିବ । କିନ୍ତୁ ଆମେ ସବୁବେଳେ ଅସ୍ଥିର । ଭବନରୁ ରସୁଲଗଡ଼ ବାଟରେ ହଠାତ୍ କ'ଣ ମନେପଡ଼ିବାର ରେଲଷ୍ଟେସନ୍ ଏବଂ ସେଇଠୁ କିଛି ନ ପାଇ ପୁଣି ରାଜମହଲ ଏମିତି ଏମିତି ଝଡ଼ରେ ଶୁଖିଲା ପତ୍ରପରି ଉଡ଼ିବୁଲୁ । ଆମକୁ ବିଭିନ୍ନ କାମନା ତାଡ଼ିତ କରୁଥାଏ । 'ବାୟୁର୍ନାବ ମିବାମ୍ଭସି' । We keep jumping like monkeys । ଏହାକୁ ଆୟତ୍ତ କରିବା ପ୍ରୟୋଜନ ।



**୩୦-୯-୮୩**

ଧଳା କହିଲେ ଆମେ ଆମ ଅନୁଭବରୁ ଚୂନ, କାଗଜ, ଜହ୍ନ, ସୂର୍ଯ୍ୟ ଇତ୍ୟାଦି କଥା ଭାବିଥାଉ । କିନ୍ତୁ ତା'ଠାରୁ ଲକ୍ଷ୍ୟଗୁଣ ଆହୁରି ଧଳା, ଲକ୍ଷେଗୁଣ ଆହୁରି ତେଜିୟାନ୍ କିଛି କଳ୍ପନା କରିପାରୁନା । ସେଇଠି ମନ ପରାସ୍ତ ହୋଇଯାଏ । ହଠାତ୍, କୁହେ ଯେ ମୁଁ ଏ ପର୍ଯ୍ୟନ୍ତ ଆସିପାରେ, ଯା'ପରେ କ'ଣ ଅଛି କି ନାହିଁ ମୁଁ ଜାଣେନା । ସେ ନାହିଁ ବୋଲି ମଧ୍ୟ କହୁନାହିଁ । ସେ ମୋର ଅତିକ୍ରାନ୍ତ ରହସ୍ୟ । ମନ ତା ନିଜ ସୀମା ବିଷୟରେ ସଚେତନ ହେଲେ ତା'ର କେତୋଟି ଲକ୍ଷଣ ଦେଖାଦିଏ । ଗୋଟିଏ ହେଲା ବିସ୍ମୟ ଏବଂ ଅନ୍ୟଟି ବିନୟ । The call of the beyond, ପରପାରିର ଆହ୍ୱାନ, ସବୁଠି ସବୁବେଳେ ମଣିଷ ମନକୁ ଉଚ୍ଚାଟିତ କରି ଆସିଛି । ସେ ଚାହେଁ ନିଜକୁ ନିଜେ ଅତିକ୍ରମ କରିଯିବା ପାଇଁ । ଏହା ହିଁ ମଣିଷର କାମନା, ଏହା ହିଁ ଅଭିପ୍ସା । ଖରାଦିନେ ମେଘମୁକ୍ତ ଆକାଶକୁ ଚାହିଁଲେ ଅକଳନୀୟ ତାରକାମାନେ ଆମର ବିସ୍ମୟ ସଂଚାର କରନ୍ତି । କାହିଁ କେଉଁଠି ଏ ଅନନ୍ତ ବ୍ୟାପ୍ତିର ପରିସମାପ୍ତି 'ଯତୋ ବାଚୋ ନିବର୍ତନ୍ତେ ଅପ୍ରାପ୍ୟମନସା ସହ ।' ନିଜ ଉପରେ, ନିଜ ସମସ୍ୟା ଉପରେ ଏକ ଗୁରୁତ୍ୱ ଦେଉଥିବା ମଣିଷ ଅନୁଭବ କରେ ଯେ ସେ କେଡ଼େ ନଗଣ୍ୟ । ଏଇ ମୁହୂର୍ତ୍ତରେଏଇ ପୃଥିବୀପୃଷ୍ଠରେ କୋଟି କୋଟି ମଣିଷ ନିଶ୍ୱାସ ମାରୁଛନ୍ତି, ସେମାନଙ୍କ ଭିତରୁ ପ୍ରତ୍ୟେକଙ୍କର ସମସ୍ୟା ଅଛି, ପ୍ରତ୍ୟେକେ ନିଜକୁ ହିଁ ସବୁଠାରୁ ଅଧିକ ଗୁରୁତ୍ୱ ଦେଉଛନ୍ତି । ସେମାନେ ସମସ୍ତେ ପୁଣି ଈଶ୍ୱରଙ୍କୁ ଭାବି ଲାଗିଛନ୍ତି । ସୂର୍ଯ୍ୟର ରଶ୍ମି ପରି ସେମାନଙ୍କର ସମସ୍ତ ଆୟତନକୁ ଆବୃତ କରି ଈଶ୍ୱରଙ୍କ ମହିମା ମହାକାଶରେ ବିକୀର୍ଣ୍ଣ ହୋଇ ରହିଛି । ଯଦି ଦୈବାତ୍ ସୂର୍ଯ୍ୟଙ୍କର ସମସ୍ତ ତେଜ ଏକତ୍ର କେବଳ ପୃଥିବୀ ଦାବିକରି ବସେ ସେ ମୁହୂର୍ତ୍ତକରେ ଜଳି ପାଉଁଶ ହୋଇଯିବ । ଏଣୁ କୋଟି କୋଟି ମଣିଷଙ୍କ ଭିତରେ ମୁଁ ଜଣେ, ମୋ ଉପରେ ଆଲୋକ ଯଥା ପରିମାଣରେ ପଡୁଛି । ମୁଁ ସେତିକି ଗ୍ରହଣ କରିପାରିଲେ ଯଥେଷ୍ଟ । ଆଲୋକ ସଂଘାତରେ ମୁଁ ବିନୟ, ବିସ୍ମୟ ବ୍ୟତିରେକ ଆଉ ଗୋଟିଏ କଥା ଅବଶ୍ୟ ଶିଖିବି, ଯେ ଏ ବିପୁଳ

ବିଶ୍ୱରେ ପରମ ସ୍ରଷ୍ଟାଙ୍କର କୃପା ଯଥାଧିକାର ଗ୍ରହଣ କରିବି । ତାକୁ ବଳାତ୍କାର ଆକର୍ଷଣ କରିବି ନାହିଁ । ସେଥିପାଇଁ ମା'କହିଛନ୍ତି Don't pull.



## ୧-୧୦-୮୩

ଅଣୁ ଭିତରେ ଏପରି ଏକ ପ୍ରଚ୍ଛନ୍ନ ଅବଚେତନା ଇଚ୍ଛା କାର୍ଯ୍ୟକରୁଛି ଯେ ତାଦ୍ୱାରା ଅଣୁ ନିଜକୁ ସ୍ୱତନ୍ତ୍ର ସତ୍ତାରୂପେ ରକ୍ଷା କରିପାରୁଛି । ଏଇ ଇଚ୍ଛା ହିଁ ମନସ୍କ ପ୍ରାଣୀ ମଣିଷଠାରେ ବଞ୍ଚିବାର ଇଚ୍ଛାରେ ପରିଣତ ହୋଇଛି । The will to live" ଏଥିରେ ସେ କେବଳ ସ୍ୱତନ୍ତ୍ର ଏକ ସତ୍ତା । ସେ ବଞ୍ଚିବା ପାଇଁ Life thrives on life ବା ଜୀବ ଜୀବସ୍ୟ ଭୋଜନଂ ନୀତିରେ ଅନ୍ୟକୁ ସଂହାର କରିଥାଏ । କିନ୍ତୁ କ୍ରମଶଃ ସେ ଅନୁଭବ କରିଛି ଯେ ଅନ୍ୟକୁ ସ୍ୱୀକାର କରି ତା'ଉପରେ ନିର୍ଭର କରିପାରିଲେ ଆହୁରି ଭଲଭାବରେ ବଞ୍ଚି ହେଉଛି । ଏଣୁ ଯୌଥଜୀବନ ଆରମ୍ଭ ହୋଇଛି, ଯାହାର ମୌଳିକ ନିୟମ ହେଲା – ଭଲପାଇବା । ଭଲପାଇବାରେ ଦେବା କ୍ରିୟା ନେବା କ୍ରିୟାଠାରୁ ବେଶୀ । ସେଥିରେ ସଂପୂର୍ଣ୍ଣ ଆତ୍ମାହୁତି ପର୍ଯ୍ୟନ୍ତ ସମ୍ଭାବନା ରହିଛି ଯେପରି ଜୀବଧର୍ମରେ ଅନ୍ୟକୁ ହତ୍ୟାକରିବା ମଧ୍ୟ ସ୍ୱାଭାବିକ । କିନ୍ତୁ ନିଜର ସ୍ୱାତନ୍ତ୍ର୍ୟ ରକ୍ଷାକରି ଅନ୍ୟମାନଙ୍କୁ ଅଧିକରୁ ଅଧିକ ଭଲପାଇବାରେ ଉତ୍ତରଣ ସମ୍ଭବ । କାମନା ଏକପ୍ରକାର ଉତ୍ତାପ । ଶରୀର ଏବଂ ପ୍ରାଣରେ ଆଲୋଡ଼ନ ହେଲେ ଏ ଉତ୍ତାପ ବୃଦ୍ଧିପାଏ । ତାକୁ ମନ ହିଁ ବୁଝିପାରେ ଏବଂ ସେଇ ଅନୁପାତରେ ସକ୍ରିୟ ହୁଏ । ଶରୀର କ୍ଷୁଧାକୁ ବୁଝି ତା'ପାଇଁ ଉପଯୁକ୍ତ ଖାଦ୍ୟର ବ୍ୟବସ୍ଥା କରିବା ମନର କାର୍ଯ୍ୟ । ମନ କିନ୍ତୁ ନିଜେ ବିକ୍ଷୁବ୍ଧ ହୁଏ ବିଭିନ୍ନ କାରଣରୁ । ଜ୍ଞାତ ଅଜ୍ଞାତ ଭୂମିର ସ୍ପନ୍ଦନମାନଙ୍କର ସଂଘାତରେ ସେ ବିଚଳିତ ହୁଏ । କାରଣ ଜାଣିପାରୁ ନଥିବାରୁ ସେ ବିଚଳିତ ହୁଏ । ଅନୁକୂଳ ପ୍ରତିକୂଳ ସ୍ପନ୍ଦନ, ବ୍ୟକ୍ତି, ବସ୍ତୁ ଏବଂ ଅଜ୍ଞାତରୁ ଆସିଥାଏ । ସବୁ ପରିସ୍ଥିତିରେ ସ୍ଥିର ରହିପାରିବା ହିଁ ସାଧନା । ତାହା ହିଁ ଯୋଗ । ସମତ୍ୱଂ ଯୋଗ ଉଚ୍ୟତେ ।



## ୪-୧୦-୮୩

ରେଳଯାତ୍ରା କଲାବେଳେ ଆମେ ସହଯାତ୍ରୀଙ୍କ ସହିତ କଥାବାର୍ତ୍ତାକରୁ, ପରସ୍ପର ସୁଖ ଦୁଃଖ, ସମସ୍ୟାର ଅବତାରଣା ହୁଏ ଏବଂ ସେଇ ଡବାଟି ଭିତରେ ଛୋଟ ବଡ଼ ଘଟଣା ଘଟୁଥାଏ । କିଏ ଟିକିଏ ଘୁଞ୍ଚିଗଲା, କିଏ ଖାଇଲା, କାହାର ଦେହ ଖସିପଡ଼ିଲା – ଏ ସମସ୍ତ କେତୋଟି କ୍ଷୁଦ୍ର ଶକ୍ତିର କାର୍ଯ୍ୟ । ଏହାକୁ ଏକମାତ୍ର ସତ୍ୟଭାବି ଏଥିରେ ସଂପୂର୍ଣ୍ଣ ନିମଗ୍ନ ରହି ଆମେ ସମୟ ବିତେଇ ଦେଉ । ବେଳେ ବେଳେ ଯାତ୍ରାର ଉଭୟ ପଟେ ଦୁଇଟି ସହରର ଚିତ୍ର ସ୍ମୃତିରେ ଜାଗ୍ରତ ହେଉଥାଏ । କିନ୍ତୁ କ୍ୱଚିତ୍ ଆମେ ଅନୁଭବ କରୁ ଯେ ଗୋଟିଏ

ଅତି ପ୍ରବଳ ଶକ୍ତି ଆମ ସମସ୍ତଙ୍କୁ ଘଣ୍ଟାରେ ୬୦ ମାଇଲ୍ ବେଗରେ ବୋହିନେଇ ଚାଲିଯାଉଛି । ପ୍ରତି କିଲୋମିଟର ଅଂଚଳ ଜୀବନରେ ସୁଖ ଦୁଃଖରେ ସମସ୍ୟା ସଂକଟରେ ଭରପୁର, ପ୍ରତି ଇଞ୍ଚ ଭୂମିରେ ଅସଂଖ୍ୟ ଜୀବନର ସ୍ପନ୍ଦନ । ଏସବୁ ପ୍ରତି ଆମର ଆଦୌ ସଚେତନତା ରହେ ନାହିଁ । ତା'ଠାରୁ ଅଧିକ ସ୍ୱାଭାବିକ ଯେତେବେଳେ ପୃଥିବୀ ଉପରେ ବସି ଘଣ୍ଟାରେ ହଜାର ମାଇଲ୍ ବେଗରେ ଆମେ ମହାଶୂନ୍ୟରେ ପରିକ୍ରମା କରୁଥିବା କଥା ମନେପକାଇ ପାରୁନା । ଏ ସମସ୍ତ ଜାଗତିକ ସ୍ପନ୍ଦନକୁ ଏକ ଅପରିମେୟ ବିଶ୍ୱଶକ୍ତି ଧାରଣ କରିରଖିଛି ଏବଂ ତା'ର ଅପରିବର୍ତ୍ତନୀୟ ଲକ୍ଷ୍ୟଦିଗରେ ଚାଳିତ କରିନେଉଛି । 'ଧାରୟାମ୍ୟହମୋଽଜସା' ।



## ୬-୧୦-୮୩

ଘର ଭିତରେ ବସିଥିବାବେଳେ ଦାଣ୍ଡଦୁଆରେ ଥାଇ କେହି ଜଣେ ଯଦି ଡାକେ, ତା'ହେଲେ ତା'ସ୍ୱରରୁ ତାକୁ ଚିହ୍ନିହୁଏ । ପରିଚିତ ଅପରିଚିତ ବାରି ହୋଇଯାଏ । ଶତ୍ରୁମିତ୍ର ବାରିହୋଇଯାଏ । ଦେଖି ଚିହ୍ନିବା ଅପେକ୍ଷା ଶୁଣି ଚିହ୍ନିବା ଏକ ସୂକ୍ଷ୍ମକ୍ରିୟା । ବେଳେ ବେଳେ ଏପରିକି ପାଦଶବ୍ଦ ମଧ୍ୟ ଶୁଣିଲେ ଚିହ୍ନିହୁଏ । ପରିଚୟର ଘନିଷ୍ଠତା ଥିଲେ ସେପରି ହୋଇଥାଏ । ଆଉ ବେଳେ କିନ୍ତୁ କୌଣସି ରୂପ କିମ୍ବା ଶବ୍ଦ ନଥିଲେ ସୁଦ୍ଧା କେହିଜଣେ ଆସୁଥିବାର ଗୂଢ଼ ଅନୁଭବ ହୋଇଥାଏ । କୌଣସି ଅଜ୍ଞାତ ସ୍ପନ୍ଦନ ହୁଏତ' ଅତି ଅଦ୍ଭୁତଭାବରେ ମନରେ ବା ସୂକ୍ଷ୍ମଭୂମିରେ ତରଙ୍ଗ ସୃଷ୍ଟିକରେ । ଏ ସମସ୍ତ ପର୍ଯ୍ୟାୟରେ ଯେମିତି ମୋଟାମୋଟି ଭାବେ ମିତ୍ରପକ୍ଷ ଏବଂ ଶତ୍ରୁପକ୍ଷକୁ ଚିହ୍ନଟ କରିଦେଇହୁଏ । ସେହିପରି ସ୍ୱର ଶୁଣି ବା ନ ଶୁଣି Divine ଏବଂ Undivine ବା Hostile ଶକ୍ତିଗୁଡ଼ିକ ଚିହ୍ନିହୁଏ । କେତେକଗୁଡ଼ିଏ ଶବ୍ଦ ଅତି ନିକଟ ତୀକ୍ଷ୍ଣ, ତୀବ୍ର ସ୍ନାୟୁମଣ୍ଡଳକୁ ବିଚଳିତ କଲାଭଳି, ସତେ ବା ଅତି ବିକଟ ଦର୍ଶନ କଦାକାର ଦାନବମାନେ କୁହାଟ ଛାଡୁଛନ୍ତି । ଶବ୍ଦକୁ ଶୁଣି ତା'ର ଭାବମୂର୍ତ୍ତି କଳ୍ପନା କରାଯାଇପାରେ । ସାଧକ ଯେଉଁ ପରିମାଣରେ ଯୋଗସ୍ଥ ହେଉଥାଏ ସେହି ପରିମାଣରେ ଏ ଦୁଷ୍ଟଶକ୍ତିଗୁଡ଼ିକ ସକ୍ରିୟ ହୋଇଉଠନ୍ତି ଏବଂ ବିଭିନ୍ନ ରୂପରେ ବିଭିନ୍ନ ପ୍ରକାରେ ବିଘ୍ନସୃଷ୍ଟି କରନ୍ତି । ଅଥଚ ସେ ଭିତରେ କାହାର ସ୍ମିତହସ ଟିକିଏ, ଦୂର ପକ୍ଷୀର ଡାକଟିଏ – ଜଣାଯାଏ ଯେମିତି ଭିତରେ ଶବ୍ଦତାଡ଼ନାରେ ବିଧ୍ୱସ୍ତ ଭୂମିକୁ ପୁଣି ସଜାଡ଼ି ଦେଉଛନ୍ତି କୋମଳ ସ୍ପର୍ଶରେ । ଖୁବ୍ ଆପଣାର ଲାଗେ । ମନେହୁଏ ଏଇ ବୋଧେ Divine । କୌଣସି ପ୍ରେକ୍ଷାଳୟରେ ମଞ୍ଚ ଉପରେ ବସି ସହସ୍ର ଶ୍ରୋତାଙ୍କ ମୁହଁକୁ ଚାହୁଁଥିବାବେଳେ, ଖୁବ୍ ଦୂରରେ ଅଳ୍ପ ଆଲୁଅ, ଅଳ୍ପ ଅଂଧାର ଭିତରେ ପୁଅ କିମ୍ବା ପତ୍ନୀର ମୁହଁଟି ଦିଶିଗଲେ ତାହାରି ଉପରେ ସମସ୍ତ ଗୁରୁତ୍ୱ ଆସିଥାଏ, ବାକିସବୁ ବ୍ୟର୍ଥ ମନେହୁଏ । ସେହିପରି ଅସଂଖ୍ୟ ପ୍ରତିକୂଳ, ରୁକ୍ଷ, ସଂହତିହୀନ କୋଳାହଳ ଭିତରେ ମାତୃସ୍ୱର ବୀଣାର ଝଙ୍କାର ପରି ବାଜିଉଠେ, ଜାଣିହୁଏ ଯେ ଏଇ ସେଇ । ଉଭୟକୁ ଜାଣିଗଲା ପରେ ଆଉ ବିଚଳିତ ହେବାର ନାହିଁ । ପ୍ରତିକୂଳ ସ୍ୱର ଏହିପରି, ଟ୍ରକ ସ୍କୁଟର ଗର୍ଜନପରି, ଲୁହାକାଠ ବାଡେଇଲାପରି, ଉଚ୍ଚସ୍ୱରରେ ଅଶ୍ଳୀଳ କହିଲା ପରି । ଜାଣିଗଲେ ସେଥିରେ କୌଣସି ପ୍ରତିକ୍ରିୟା ଆଉ ହୁଏ ନାହିଁ । ତାକୁ ସଂଶୋଧନ କରିବାକୁ, ତାକୁ ଦଣ୍ଡଦେବାକୁ କିମ୍ବା ତିରସ୍କାର କରିବାକୁ ଇଚ୍ଛାହୁଏ

ନାହିଁ । ଆଶ୍ରମରେ ମା'ଙ୍କ ପାଖରେ ଫରିୟାଦ୍ ହେଉଥିଲା ଯେ କେହି କେହି ଆଶ୍ରମବାସୀ ଚୋରିକରୁଛନ୍ତି । ମା'ତାଙ୍କ ଅଗାଧ ପ୍ରେମ, କ୍ଷମା, କୃପାଦୃଷ୍ଟିରେ ମଣିଷର ଅପରିପକ୍ୱତା ଦେଖି ସାମାନ୍ୟ ହସିଦେଉଥିଲେ । ଅନେକଙ୍କର ସନ୍ଦେହ ହେଉଥିଲା ଯେ କେମିତି ସେଭଳି ଶାସନ କିମ୍ବା ସଂଶୋଧନ କରାଯାଇପାରେ । ପରେ ସବୁ ବୁଝିଗଲେ । ଛୋଟ ପିଲାମାନେ କୁଣ୍ଡି କାଣ୍ଢି ଖେଳୁଥିବାବେଳେ ମାଟିକୁଣ୍ଡି ମାନଙ୍କରେ ବାଲିରଖି କାହାକୁ ଭାତ, କାହାକୁ ଡାଲି କହି ଖେଳୁଥାନ୍ତି । ତା'ଭିତରୁ କେହି ଆଉଜଣଙ୍କର ଭାତହାଣ୍ଡି ଟେକିନେଲେ ଦୁହିଁଙ୍କର କଳିହୁଏ । ସେମାନେ ଜାଣିପାରନ୍ତି ନାହିଁ ଯେ ଯାହାପାଇଁ ସେମାନେ କଳି କରୁଛନ୍ତି, ତାହା କେବଳ ଟିକିଏ ବାଲି । ବୟସ୍କ ଲୋକଟିଏ ସବୁଦେଖି ସବୁବୁଝି କେବଳ ଟିକିଏ ହସିଦିଏ । ସେ କ'ଣ ପିଲାଙ୍କୁ ଦଣ୍ଡଦେବାକୁ ଚାହେଁ ? ସେ କେବଳ ତାଙ୍କର ଦୃଷ୍ଟିଆସିବାଯାଏ, ବାଲିଟା ବାଲି ଦିଶିବାଯାଏ ଅପେକ୍ଷା କରେ । ସେହିପରି ଆମେ ମା'ଙ୍କ ଆଖିରେ ଅବୋଧ ଶିଶୁ, ବାଲିପାଇଁ କଳି କରୁଥିବା ବେକୁବ୍‌ଗୁଡ଼ିଏ ପିଲା ।



**୭-୧୦-୮୩**

କଚ୍ଛପଟିଏ ଭୂଇଁରେ ଚାଲିପାରେ, ପାଣିରେ ବି ପହଁରିପାରେ, ସେ ଉଭୟଚର । କୌଣସି ଗୋଟିଏ ପରିବେଶରେ ଥିଲାବେଳେ ସେ ଅନ୍ୟ ପରିବେଶକୁ ଲୋଡ଼ୁଥାଏ । ହୁଏତ' ସେ କୌଣସି ଗୋଟିକରେ ସନ୍ତୁଷ୍ଟ ନୁହେଁ କିମ୍ବା ଉଭୟ ପ୍ରତି ସମଭାବରେ ଉଦାସୀନ । ଆମେ ସୁଖଦୁଃଖର ପରିବେଶରେ ପ୍ରବେଶ କରିଥାଉ, ବେଳେବେଳେ ନିଜ ଆୟତ୍ତରେ ଜାଣିଶୁଣି କିମ୍ବା ଅଣାୟତ୍ତରେ ବଦ୍ଧଜୀବପରି । ତେବେ ସବୁବେଳେ ସୁଖରେରହିବାକୁ କାମନାକରି ଦୁଃଖ ଭୋଗକରୁ । କାରଣ ସୁଖକାମନା ସୁଖ ନୁହେଁ, ତାହା ଦୁଃଖ, ସବୁ କାମନା ଦୁଃଖ । କାମନାରୁ ମୁକ୍ତହେବା ଅର୍ଥ ଉଭୟ ଦୁଃଖ ଏବଂ ସୁଖ କାମନାରୁ ମୁକ୍ତ ହେବା । ମୁକ୍ତାବସ୍ଥାରେ ସ୍ଥିରତା ଆସେ । କଚ୍ଛପ ତା'ର ଏକ ଦୃଷ୍ଟାନ୍ତ । ତା'କୁ ବିଚଳିତ କରୁଥିବା ଏବଂ ବିଚଳନରେ ସହାୟକ ହେଉଥିବା ସବୁ ଇନ୍ଦ୍ରିୟକୁ ସେ ଭିତରକୁ ନେଇଯାଏ । ଫଳରେ ସ୍ଥିର ହୋଇଯାଏ । ଇନ୍ଦ୍ରିୟମାନଙ୍କୁ ସଂହରଣ କରି ଆଣିବା ଅତି କଠିନ, ଯୋକକୁ ଅର୍ଦ୍ଧଭୁକ୍ତ ଅବସ୍ଥାରେ ଟାଣିବା ଭଳି । ଯୋକ ଏଭଳିଭାବେ ଲାଖିଯାଏ, ଯେ ତାକୁ ବଳକାର ଭିଡ଼ିଲେ ସେ ଲମ୍ବିଯାଏ, କିନ୍ତୁ ଛାଡ଼େ ନାହିଁ । ଇନ୍ଦ୍ରିୟମାନେ ନିଜ ନିଜ ବିଷୟରେ ସେହିଭଳି ମୁହଁଲଗେଇ ସଂଲଗ୍ନ ରହିଥାନ୍ତି । ତାକୁ ସେଥିରୁ ଛଡ଼ାଇବା ପାଇଁ ମୁହଁରେ କିଛି କିଛି ଲୁଣ ଦେବା ଦରକାର । ଲୁଣ ହିଁ ବୈରାଗ୍ୟ ଚେତନା । ଅଭ୍ୟାସପୂର୍ବକ ବୈରାଗ୍ୟ ଆଚରଣ କଲେ ଇନ୍ଦ୍ରିୟ ସଂଯତ ହୁଅନ୍ତି ଏବଂ ମନ ସ୍ଥିର ହୁଏ । "ଅଭ୍ୟାସେ ନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ।"



## ୮-୧୦-୮୩

ପ୍ରିୟ ବ୍ୟକ୍ତି ଯଦି ପାଖରେ ନାହାନ୍ତି ତେବେ ତାଙ୍କୁ ବିଭିନ୍ନ ପରିବେଶରେ, ବିଭିନ୍ନ ଭଙ୍ଗୀରେ, ବିଭିନ୍ନ ବେଶଭୂଷାରେ କଳ୍ପନା କରାଯାଏ । କଳ୍ପିତ ରୂପ ଗୁଡ଼ିକ କଳ୍ପନା କରୁଥିବା ବ୍ୟକ୍ତିର ମାନସିକ ସୃଷ୍ଟି (Mental formation) । ସେଥିରେ ସେ ନିଜର ବିଭିନ୍ନ ଇଚ୍ଛାକୁ ସନ୍ତୁଷ୍ଟ କରିବାକୁ ରୂପ କଳ୍ପନା କରିଥାଏ । ସେଇ ମନୋଭୂମିରେ ସବୁ ପ୍ରକାର ସତ୍‌ଅସତ୍ କାର୍ଯ୍ୟମାନ ସଂପାଦିତ ହେଲାପରି ବୋଧହୁଏ । ଏ ସମସ୍ତ ଚଳଚିତ୍ର ସହିତ ଦୂରସ୍ଥ ପ୍ରିୟ ବ୍ୟକ୍ତିଙ୍କର କୌଣସି ସଂପର୍କ ନଥାଏ । ସେହି ପରିଧ୍ୟାନ କଲାବେଳେ ଧେୟକୁ ନେଇ କଳ୍ପନା ନାନା ପ୍ରକାର ଚଳଚିତ୍ର ସୃଷ୍ଟିକରେ । ସେ ସମସ୍ତ ଧ୍ୟାନର ସହାୟକ ନୁହନ୍ତି । ବରଂ ମନକୁ ସେଥିରେ ଅସ୍ଥିର ହେବାକୁ ହୁଏ । କଳ୍ପନାର ରୂପ ଭାସମାନ ମେଘପରି ମୁହୂର୍ତ୍ତେ ମୁହୂର୍ତ୍ତେ ବଦଳି ଚାଲିଥାଏ । ସେ ଧେୟ ହେଲେ ସୁଦ୍ଧା ତାଙ୍କର ଏପରି ଚିନ୍ତନ, ଯେ କୌଣସି ବିଷୟ ଚିନ୍ତନଠାରୁ ଭିନ୍ନ ନୁହେଁ । ଏଥିରୁ ନିଷ୍କୃତି ପାଇବାକୁ ଦୁଇଟି ପନ୍ଥା ଉନ୍ମୁକ୍ତ । ଗୋଟିଏ ବାହ୍ୟ, ଅନ୍ୟଟି ଆଭ୍ୟନ୍ତର । ବାହ୍ୟପନ୍ଥା ହେଲା ଆଖିଫିଟେଇ ବାସ୍ତବ ଜଗତକୁ ପ୍ରତ୍ୟକ୍ଷ କରିବା । ସେଥିରେ କଳ୍ପନାର ଇନ୍ଦ୍ରଜାଲ ଦୂର ହୋଇଯାଏ । ଏହା ଅପେକ୍ଷାକୃତ ଅନେକ ସହଜ । ଆଭ୍ୟନ୍ତର ପନ୍ଥାରେ ମନକୁ ଦୃଢ଼କରି ସେ ସମସ୍ତ ରୂପକୁ ପୋଛିଦେବାକୁହୁଏ ।ଯେତେ ପ୍ରିୟହେଲେ ମଧ୍ୟ ସେ ସବୁ କେବଳ ଅଳୀକ କଳ୍ପନା ବୋଲି ଭାବିବାକୁ ହୁଏ । ଏବଂ ସେଗୁଡ଼ିକ ପ୍ରକୃତରେ ପୋଛି ହୋଇଯାନ୍ତି । ବେଳେବେଳେ ଅବଶ୍ୟ ଅପ୍ରତ୍ୟାଶିତ ଭାବରେ ଅତିପ୍ରାଞ୍ଜଳ ଧେୟରୂପ ଦେଖାଦିଅନ୍ତି । ସେଥିରେ କଳ୍ପନାର ପ୍ରୟାସ ନଥାଏ । ସେ ସ୍ୱତଃ ଆସନ୍ତି, ତଥାପି ସେଇଠି ମଧ୍ୟ ପରୀକ୍ଷା କରିନେବା ନିରାପଦ । ପରୀକ୍ଷା ହେଲା କଳ୍ପିତ ରୂପକୁ ଯେପରି ପୋଛି ଦିଆହୁଏ, ସେପରି ଦୃଢ଼ସଂକଳ୍ପ କରି ତାକୁ ପୋଛିଦେବା । ଯଦି ତାହା ଆତ୍ମିକ ଅନୁଭବ ପାଇଁ ଆସିଥାଏ ତେବେ ତାହା ସେହିପରି ପ୍ରାଞ୍ଜଳ ଏବଂ ଅବିଚଳିତ ରହିବ ଏବଂ ତାକୁ ଧ୍ୟାନ କରିବା ଦ୍ୱାରା ମନ ଏକାଗ୍ର ଏବଂ ସ୍ଥିର ରହିବ । ତେବେ ସେଥିରେ ଆଉ କିଛି ନ କରି କୃତଜ୍ଞତାର ସହିତ ସେ ଧେୟ ରୂପକୁ ସ୍ୱୀକାର କରିନେବା ଉଚିତ୍ । ଏହା କାହାପାଇଁ କିପରି ଆସିବ ବା ନ ଆସିବ ସେଥିପାଇଁ କୌଣସି ନିୟମ ନାହିଁ । କେବଳ ନିଜ ନିଜର ଅନୁଭବର କଥା । କିନ୍ତୁ ଶ୍ରୀ ଅରବିନ୍ଦଙ୍କ ପ୍ରକୃତ ଧ୍ୟାନର ଅନୁଭବ ବିଷୟରେ ଶ୍ରୀମା' ସୂଚନା ଦେଇଛନ୍ତି, ଏକ ସ୍ଥିର, ବିମଳ ଏବଂ ଅତି କୋମଳ ଅନୁଭବ ହେଉଛି ଶ୍ରୀଅରବିନ୍ଦଙ୍କ ଅନୁଭବ । ସେଥିରେ ରୂପନାହିଁ, କେବଳ ଏକ ବିସ୍ତାର, ଅଭୂତ କୋମଳତା ହିଁ ତା'ର ଲକ୍ଷଣ ।



## ୯-୧୦-୮୩

ଉପସ୍ଥିତ ବ୍ୟକ୍ତିକୁ ପ୍ରତ୍ୟକ୍ଷ କରିହୁଏ । କିନ୍ତୁ ଅନୁପସ୍ଥିତ ଥିଲେ ତା ବିଷୟ କଳ୍ପନା କରି ତା ସହିତ ସଂପର୍କ ସ୍ଥାପନ କରାଯାଏ । ବହୁପ୍ରକାର ସନ୍ଦନ ଭିନ୍ନ ଭିନ୍ନ ଭୂମିରେ ଆମକୁ ସ୍ପର୍ଶ କରିପାରନ୍ତି । Contact ପାଇଁ

କେବଳ ଚାକ୍ଷୁଷ ଅନୁଭବ ଅନିବାର୍ଯ୍ୟ ନୁହେଁ । ଅନେକ ଭାଗ୍ୟବାନ୍ ଯେ ଶ୍ରୀ ଅରବିନ୍ଦଙ୍କୁ ଦେଖିଛନ୍ତି, କାନରେ ଶୁଣିଛନ୍ତି, କେହି କେହି ମଧ୍ୟ ସ୍ପର୍ଶ କରିଛନ୍ତି । କିନ୍ତୁ ସେ ଶରୀରରେ ଥିବା ସମୟରେ ଯେ କେହି ଏ ପୃଥିବୀରେ ଥିଲେ, ପୃଥିବୀ ଚେତନାର ଅଂଶରୂପେ ଆତଯାତ କରୁଥିଲେ, ସେମାନେ ମଧ୍ୟ ତାଙ୍କର Contact ରେ ଆସିଛନ୍ତି, ସ୍ପର୍ଶ ଲାଭ କରିଛନ୍ତି । ଯେଉଁମାନେ ସଚେତନ, ତାଙ୍କ ପାଇଁ ଏବେସୁଦ୍ଧା ଶ୍ରୀଅରବିନ୍ଦ ଅତି ବାସ୍ତବ ଏବଂ Contact ରୂପେ ଅନୁଭବ୍ୟ । ଶ୍ରୀମା' କହିଛନ୍ତି ଯେ ଶ୍ରୀ ଅରବିନ୍ଦ Subttle Physical ଅର୍ଥାତ ସୂକ୍ଷ୍ମ ଜଗତରେ ରହିଛନ୍ତି । ସେଇଠି ରହି ସମସ୍ତ ଯୋଗସାଧନାକୁ ନିୟନ୍ତ୍ରିତ କରୁଛନ୍ତି, ପ୍ରସ୍ତୁତ କରୁଛନ୍ତି ଜଗତକୁ ଅତିମାନସ ଅବତରଣ ପାଇଁ । ତେବେ କେହି କେହି ସାଧକ ବେଳେବେଳେ ଶ୍ରୀଅରବିନ୍ଦଙ୍କ ସେଭଳି ସୂକ୍ଷ୍ମଦର୍ଶନ ମଧ୍ୟ ଲାଭ କରୁଛନ୍ତି । ଅନେକେ ହୁଏତ ତାଙ୍କ ରୂପକଳ୍ପନା କରି ଗୁଡ଼ିଏ Mental formation କୁ ନେଇରହିଛନ୍ତି । ଏ କଳ୍ପିତ ରୂପ ସେ ସୂକ୍ଷ୍ମଦର୍ଶନରୁ ନିଶ୍ଚୟ ଭିନ୍ନ । ସୂକ୍ଷ୍ମଦର୍ଶନରେ ଆବିର୍ଭାବ ହୁଏ । ସେଥିପାଇଁ ସାଧକ କୌଣସି ପ୍ରୟାସ କରିବାକୁ ପଡ଼େନାହିଁ । ଭିତରେ କେବଳ ଏକ ଶାନ୍ତ ନୀରବ ପ୍ରସ୍ତୁତି ଥିଲେ ହେଲା । କିନ୍ତୁ ଅନ୍ୟପକ୍ଷେ ରୂପକଳ୍ପନା ଏକ ନିବିଡ଼ ପ୍ରୟାସ । ସେ ବି ବେଶିକାଳ ଧାରଣ କଲା ଭଳି ନୁହେଁ । ଶୂନ୍ୟର କଳେବରକୁ ଧରିରଖି ହେବ ନାହିଁ । ସେ ସେହି ଶୂନ୍ୟରେ ମିଳାଇଯିବ । ଏଣୁ ରୂପକଳ୍ପନାର ପ୍ରୟାସ ଅପେକ୍ଷା ନୀରବ ରହି ସ୍ଥିରଭାବରେ ଅପେକ୍ଷା କରିବା ହିଁ ବାଞ୍ଛନୀୟ । ତେଣିକି ଯାହା ହେବା କଥା ସେ କରିବେ ।



**୧୦-୧୦-୮୩**

ଆଶ୍ରମର ବିଭିନ୍ନ ସ୍ଥାନରେ ଗୋଟିଏ କଥା ମୌଳିକ ଅନୁଶାସନ ରୂପେ ଲେଖି ଝୁଲେଇ ଦିଆଯାଇଛି । ସେଇଟି ହେଲା - 'ନୀରବ ରହ' ନୀରବ ରହିବା ସ୍ଥୂଳ ଅର୍ଥରେ ବୁଝିଲେ ପାଟିତୁଣ୍ଡ ନ କରିବା । ପ୍ରୟୋଜନ ହେଲେ ଫିସ୍‌ଫିସ୍‌କରି କହିବା । ଏଇଆ କ'ଣ ତା'ର ଅର୍ଥ ? ଏପରି ନୀରବତା ଚୋରଙ୍କ ଆଡ୍‌ଡାରେ ମଧ୍ୟ କଡ଼ାକଡ଼ି ପାଳିତ ହୁଏ । ତେବେ ପାଟିତୁଣ୍ଡ ନ କରିବା ସାମାନ୍ୟତମ ବାହ୍ୟ ଆଚରଣ । ପ୍ରକୃତ ନୀରବତାଟି ଭିତରେ । ମନର ଯାବତୀୟ କୋଳାହଳ, ନାନା ପ୍ରକାର movement ଚଳପ୍ରଚଳ । ସେ ଭିତରେ ଗୋଟାଏ ରୀତିମତ ହାଟ ବସିଥାଏ । ସେ ସମସ୍ତଙ୍କୁ ସ୍ତବ୍ଧନୀରବ କରିବା ଏ ଅନୁଜ୍ଞାର ଅନ୍ତର୍ଭୁକ୍ତ । ତା' ବାହାରେ ଆବେଗ ପ୍ରବେଗ ହେତୁ ରକ୍ତଚାଳନା ତୀବ୍ର ହୋଇଥାଏ । ଶ୍ୱାସପ୍ରଶ୍ୱାସ ଘନଘନ ହେଉଥାଏ । ସମୁଦ୍ରରେ ଜୁଆର ଉଠିଲେ ହୁଲି ଢଙ୍ଗାମାନେ ଯେଉଁଭଳି ହୁଅନ୍ତି, ପ୍ରାୟ ସେଭଳି ଅବସ୍ଥା । ତାକୁ ଆୟତ୍ତ ଏବଂ ଶାନ୍ତକରି ପ୍ରାଣକେନ୍ଦ୍ରକୁ ସ୍ଥିର କରିବା ହେଉଛି ନୀରବତାର ଅଙ୍ଗ । ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ପ୍ରତିବାଦ କରି କୋଳାହଳ କରନ୍ତି । ଆଣ୍ଠୁଗଣ୍ଠି ଚିତ୍କାରକରି ଆହ୍ୱାନ କରନ୍ତି - "ଆମକୁ କଷ୍ଟ ହେଉଛି, ଆମେ ଆଶ୍ୱସ୍ତି ଚାହୁଁ, ପଦ୍ମାସନରେ ବସି ପାରିବୁ ନାହିଁ" - ତାକୁ ତତ୍‌କ୍ଷଣାତ୍ ମୁକ୍ତକରି ସୁସ୍ଥ କରିଦେବାକୁ ହୁଏ । କୋଳାହଳ କମିଯାଏ । ମୋଟ ଉପରେ ମନପ୍ରାଣ ଶରୀରର ସର୍ବତୋଭାବେ ସମତା ଓ ପ୍ରଶାନ୍ତି ରକ୍ଷା ହିଁ ପ୍ରକୃତ

ନୀରବତା । କୌଣସିଠାରେ କୌଣସି ଉତ୍ତେଜନା ଉତ୍ତାପ ଏବଂ ତଜ୍ଜନିତ କୋଳାହଳ ନ ରହିବା ବିଧେୟ । ସବୁଠାରୁ ବେଶୀ ଶବ୍ଦାୟିତ ଅଞ୍ଚଳ ହେଲା ମନ । ତାକୁ ଏକ ଗଭୀର କୋମଳ ବ୍ୟାପ୍ତି ଭିତରେ ବୁଡ଼େଇ ରଖିବା ନୀରବତାର ସାଧନା । ବାହ୍ୟ ଜଗତରେ ତ ଶବ୍ଦ ହେଉଛି, ହେଉଥିବ । ନିଶାର୍ଦ୍ଧରେ ସବୁ ନୀରବ ହୋଇଗଲେ ସୁଦ୍ଧା ହୃତ୍‌ସ୍ପନ୍ଦନ ଶୁଭିବ । ମସ୍ତିଷ୍କଭିତରେ ଗୋଟାଏ ଅନାହତ ସ୍ୱନ ସୁଦୂର ଝିଙ୍କାରି ସ୍ୱର ପରି ଶୁଭିବ । କିନ୍ତୁ ତାକୁ ମଧ୍ୟ ପାରି ହୋଇଯିବାକୁ ହେବ । ଧ୍ୟାନ କଲାବେଳେ ଯଦି ବାହାରର ଶବ୍ଦ ବାରମ୍ବାର ଆଘାତ କରି ସ୍ନାୟୁକୁ ବିଚଳିତ କରୁଛି, ତାହା କ୍ଷତିକାରକ । ବରଂ ସେପରି ସ୍ଥଳେ ଆଖିଖୋଲି ବସି ରହିବା ବରଂ ନିରାପଦ । କିନ୍ତୁ ପ୍ରକୃତ ସାଧକ ଶବ୍ଦକୁ ଖସେଇ ଦିଏ । କୂର୍ମପରି ଶ୍ରବଣେନ୍ଦ୍ରିୟକୁ ଓହରେଇ ଆଣେ । ଶବ୍ଦ ଶୁଭୁଥାଏ, କିନ୍ତୁ ବହୁଦୂରରୁ ଶୁଭିଲାପରି କୌଣସି ବିଚଳନ ସୃଷ୍ଟି କରିପାରେ ନାହିଁ । ଖଣ୍ଡାଯୁଦ୍ଧ କରୁଥିବାବେଳେ ସମସ୍ତ ଏକାଗ୍ରତା ଖଣ୍ଡାମୁନ ଉପରେ ରହିଥାଏ । କିନ୍ତୁ ଆଖି ଅନ୍ୟାନ୍ୟ ବସ୍ତୁ ମଧ୍ୟ ଅସ୍ପଷ୍ଟ ଦେଖୁଥାଏ, ଲକ୍ଷ୍ୟ କିନ୍ତୁ ଖଣ୍ଡାମୁନରେ । ସେହିପରି ଧ୍ୟାନସ୍ଥ ବ୍ୟକ୍ତି ଭିତରେ ବୁଡ଼ି ରହିଥାଏ, ବାହାରର ଶବ୍ଦ ଶୁଭେ, କାରଣ କାନ ଖୋଲାଥାଏ, କିନ୍ତୁ କୌଣସି ବିକ୍ଷୋଭ ହୁଏ ନାହିଁ । ଶ୍ରୀ ଅରବିନ୍ଦ କହୁଛନ୍ତି ପଛରେ ଗୁଳି ଫୁଟିଲେ ମଧ୍ୟ ଧ୍ୟାନଭଙ୍ଗ ନ ହେବାକଥା... ନୀରବତା ହେଉଛି ସାଧନାର ଭୂମି ମାତ୍ର । ତାହା ପାଇବା ମଧ୍ୟ ଏପରି ସାଧନାସାପେକ୍ଷ ।



## ୧୧-୧୦-୮୩

ଗୁରୁ-ଆଶ୍ରିତ, ବିଭୁ ଆଶ୍ରିତ ବ୍ୟକ୍ତିର ଆଧ୍ୟାତ୍ମିକ ସାଧନା ସହିତ ଅସଂଖ୍ୟ ଆଧିଭୌତିକ ଏବଂ ଆଧିଦୈବିକ ସଂକଟ, ବିପଦ ଏବଂ ଦୁଃଖ ଦେଖା ଦେଇଥାଏ । ଯେତେପ୍ରକାର ଅସୁବିଧା, ହଇରାଣ, ଅପମାନ ସବୁ ତାହାରି ଭାଗରେ ପଡ଼େ । କୁହାଯାଏ ଯେ, ସେଭଳି ଶୁଦ୍ଧ ଏବଂ ଅନନ୍ୟଚେତା ଭାବରେ ଶରଣାପନ୍ନ ହୋଇ ପାରିନାହିଁ । ମଣିଷର ସୀମିତ ସାମର୍ଥ୍ୟ ଭିତରେ କିଏ ଭଲା ସଂପୂର୍ଣ୍ଣ କଲାଣି ? ସାଧ୍ୟମତେ କରିବ, ତା'ବୋଲି ଯେତେ କଷ୍ଟ ସେଇ ଭୋଗିବ ? ଦ୍ୱିତୀୟ ଉତ୍ତର ଦିଆଯାଏ ଯେ ପ୍ରଭୁ ଭକ୍ତକୁ, ଗୁରୁ ସାଧକକୁ, ଏମିତି ପରୀକ୍ଷା କରନ୍ତି । ବିପଦରେ ଧୈର୍ଯ୍ୟ ରଖିପାରୁଛି କି ନାହିଁ, ସଂକଟବେଳେ ସ୍ମରଣ କରୁଛି କି ନାହିଁ । ଏତ ଅତି ନିଷ୍ଠୁର ବ୍ୟାପାର, କୁକୁରଟିଏ ପ୍ରଭୁଭକ୍ତ ହେଲାବୋଲି ତା'ର ଗୋଟିଏ ଗୋଡ଼ ଭାଙ୍ଗି ଦିଆଯିବ, ସେ ସମ୍ଭାଳୁଛି କି ନାହିଁ । ତିନି ଗୋଡ଼ରେ ଚାଲିପାରୁଛି କି ନାହିଁ, ପ୍ରଭୁକୁ ତତ୍‌ସତ୍ତ୍ୱେ ମାନୁଛି କି ନାହିଁ । ଅତି ଇତର ମାଲିକପଣିଆର ଏହା ଲକ୍ଷଣ । ପରୀକ୍ଷା କ'ଣ କରିବ, କେଉଁ କଥାକୁ ପରୀକ୍ଷା କରିବ ? ଅନ୍ତର୍ଯ୍ୟାମୀ ପୁରୁଷକୁ କ'ଣ ଅଜଣା ଭଲା ? ଅତଏବ ଏ ପରୀକ୍ଷା କଥା ମଧ୍ୟ ଠିକ୍ ଜଣାଯାଉନାହିଁ । ତେବେ ଦୋଷ ଯଦି ସାଧକର ନାହିଁ, କିମ୍ବା ବିଭୁଙ୍କର ନାହିଁ, ଏଇ ମାଧମ, ସ୍ଥୂଳ, ଅଜ୍ଞାନଜନିତ ମାଧ୍ୟମ ହିଁ ଦାୟୀ । ତାକୁ ଅସ୍ୱୀକାର କରି ଆଲୋକ ସଂଧାନ କରିବା ତା'ର ବିରୋଧ । ସେ ନିଶ୍ଚୟ ଯୁଦ୍ଧ କରିବ । ତା'ର ଫଳହେଲା ଅପରିମେୟ କଷ୍ଟ ଓ ଯାତନା । ସାଧାରଣ ଜୀବଧର୍ମର ସହଜ ପନ୍ଥା ହୋଇଥିଲେ କୌଣସି ଅସୁବିଧା ନଥିଲା ।

ଏ ମାର୍ଗରେ ଯିବା ହିଁ ବିପଦକୁ ବରଣ କରିବା । ଏଣୁ ପ୍ରତ୍ୟେକ ସାଧକ ଜଣେ ଲେଖାଁ ଯୋଦ୍ଧା, ଯୁଦ୍ଧ କରିବ ଏବଂ କରିଚାଲିଥିବ । ଜିଣିବ ନା' ନାହିଁ, କହିହେବ ନାହିଁ । କେବେ କେଉଁକାଳେ ସତ୍ୟର ବିଜୟ ହେଲେ, ପ୍ରଭୁର ବିଜୟରେ ଭୃତ୍ୟର ବିଜୟ ପରି କ'ଣ ହୋଇପାରେ, ନ ହେଲେ ଯାତନା ହିଁ ସତ୍ୟ । ପୁଣି ଅନୁଭବ ଆସୁଛି ଯେ ଆମେ ଏପରି କଷ୍ଟଭୋଗ କଲାବେଳେ ସେ ସ୍ୱୟଂ ଯୋଗସାଥିରେ ଆମ ଭିତରେ ଥାଇ କଷ୍ଟ ଭୋଗ କରନ୍ତି, ଏତିକି ଆଶ୍ୱସ୍ତି । ନ ହେଲେ ଅତି ନିର୍ମମ ସଂସାରରେ ସାଂଘାତିକ ଦୁର୍ଦ୍ଦଶା । ହେଉ, ପ୍ରଭୁଙ୍କ ଇଚ୍ଛା ହିଁ ପୂର୍ଣ୍ଣ ହେଉ ।



**୧୩-୧୦-୮୩**

ପ୍ରତି ମୁହୂର୍ତ୍ତରେ ପରିବେଶ ଅଭୂତପୂର୍ବ, ସବୁବେଳେ ନଥିଲା - ନ ହେବ ପରିସ୍ଥିତି । ମୁହୂର୍ତ୍ତଟି ସବୁ ପ୍ରକାରରେ ଅନନ୍ୟ । ସ୍ମୃତିପାଇଁ କାର୍ଯ୍ୟକାରଣ ବିଚାର କରାଯାଏ, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଯୋଡ଼ାଯାଏ ଏବଂ ପରିବର୍ତ୍ତନର ଚିର ସ୍ରୋତଭିତରେ ଅପରିବର୍ତ୍ତିତ ଗୋଟିଏ କର୍ତ୍ତାର ଅନୁମାନ କରାଯାଏ । ଯଦି ସ୍ମୃତି ଏସବୁ ଧାରଣ କରୁ ନଥାନ୍ତା, ତେବେ କାହା ସହିତ କାହାର ପରିଚୟ ସମ୍ଭବ ହୁଅନ୍ତା ନାହିଁ । ସମସ୍ତେ ସମସ୍ତଙ୍କ ପାଇଁ ସବୁବେଳେ ଅଭୂତ ହୋଇ ଆର୍ବିଭୂତ ହେଉଥାନ୍ତେ । ଯେଉଁ ଅନ୍ୟ ମୁହୂର୍ତ୍ତଟି ଚାଲିଯାଉଛି, ତାହା ଚିରକାଳ ପାଇଁ ଯାଉଛି । ଏହା ଅନୁଭବ କଲେ ଅସହାୟ ଏବଂ କାତର ଲାଗିବ । ନଈ ଭିତରକୁ ଦୁଇଥର ପଶିବା, ଦୁଇଟି ନଈଭିତରକୁ ଦୁଇଟି ବ୍ୟକ୍ତି ଭିନ୍ନ ଭିନ୍ନ ସମୟରେ ପଶିବା ଏକାକଥା । କିନ୍ତୁ ବିଚିତ୍ର ବିଧାନରେ ଏ ସତ୍ୟ ଅନୁଭବକୁ ଆସେ ନାହିଁ । ଆସେ ଠିକ୍ ତାର ବିପରୀତ ଅନୁଭବ । ମୁଁ ଯେମିତି ଥିଲି ସେମିତି ଅଛି । କାଲି ଯେଉଁ ବଜାରକୁ ଯାଇଥିଲି, ଆଜି ସେଇ ବଜାରକୁ ଯିବି, ଆସନ୍ତାକାଲି ଅମୁକ ସାଙ୍ଗକୁ ନେଇଯିବି । ଏ ସମସ୍ତ ଅତି ସାଧାରଣ ସାମାନ୍ୟ ଅନୁଭବ । କାଳର ଅପ୍ରତିହତ ପ୍ରଧାବିତ ସ୍ରୋତକୁ ଥରେ ଦେଖିଦେଲେ ତେଣିକି ଜଗତ୍ ଆଉ ପ୍ରକାରେ ଦିଶିବ । ପ୍ରତି ମୁହୂର୍ତ୍ତକୁ ଗୁରୁତ୍ୱ ଦେଇହେବ । ସାରାଜୀବନରେ ଆତ୍ମାନୁଭବ ବା Soul moment ମାତ୍ର କେତେ ସେକେଣ୍ଡ ପାଇଁ ଆସେ ବା' ଆସେ ନାହିଁ । କାଳ ଚେତନାରେ ହୁଏତ ଟିକିଏ ଅଧିକା ଆସିବାର ସମ୍ଭାବନା ଅଛି ।



**୧୪-୧୦-୮୩**

କୌଣସି କାର୍ଯ୍ୟକୁ ଆନ୍ତରିକତା ସହ କରିବାକୁ ଉପଦେଶ ଦିଆଯାଇଛି । ପ୍ରକୃତ ଆନ୍ତରିକତାରେ (Sincerity) ଗୋଟିଏ ପ୍ରକାର ନିଷ୍ଠା ଏବଂ ଜରୁରୀଭାବ **(Seriousness)** ମିଶି ରହିଥାଏ । ନ ହେଲେ

ଯେଉଁ: ପରିମାଣରେ ସକ୍ରିୟ ହେବା କଥା ତା' ନ ହୋଇ ସବୁ ଢ଼ିଲା ଧରିଥାଏ । ହଁ, ଚାଲିଛି ତ, ଚାଲିଛି । ଏଥିରେ ଆମର କ'ଣ ହାତ ଅଛି । ଆନ୍ତରିକତା ସହିତ ଯଥାଶକ୍ତି କାମ କରୁଛି । ତେଣିକି ମା' ଯାହା କରିବେ । ଏଭଳି ଉକ୍ତିରେ ଦୁଇଟିଯାକ ଶବ୍ଦର ଅପଳାପ ଘଟୁଛି । ଆନ୍ତରିକତା ବେପରୁଆ ସହଜ, ସୁବିଧାବୋଧ ନୁହେଁ । କିମ୍ବା ଯଥାଶକ୍ତି କହିଲାବେଳେ ପ୍ରକୃତରେ ତାହା ବୁଝାଏ ନାହିଁ । ଆମ ନିଜ ଶକ୍ତିର ଅନେକ କିଛି ସମ୍ଭାବନା ଥିବା ସ୍ଥଳେ, ପ୍ରତାରଣା ପାଇଁ ସାମାନ୍ୟ ପ୍ରୟାସପରେ ଯଥାଶକ୍ତି କରୁବୋଲି କହିଦିଆଯାଏ । ସେଭଳି କାମରେ ବିଶ୍ୱାସ ଏବଂ ଆନ୍ତରିକତା କିଛି ପରିମାଣରେ ଅଛି, କିନ୍ତୁ ଜରୁରୀଭାବ ନାହିଁ, Sincerity ଥାଏ କିନ୍ତୁ Seriousness ନଥାଏ । ପୁଅ ସାଂଘାତିକ ଜ୍ୱରରେ ପଡ଼ିଥିବାବେଳେ, ଆମେ କ'ଣ କହୁ - 'ମୁଁ ତ' ଖୁବ୍ Sincerely ଡାକ୍ତରକୁ ଡାକୁଛି, ଭଗବାନଙ୍କୁ ଡାକୁଛି ଯଥାଶକ୍ତି ଚେଷ୍ଟା କରୁଛି, ଆଉ କ'ଣ କରିବି ? ବରଂ ବର୍ଷାଦିନେ ସମସ୍ତ ବିପଦକୁ ବେଖାତିର କରି ଧାଇଁଯିବାକୁ ହୁଏ । ପ୍ରତି ମୁହୂର୍ତ୍ତ ମୂଲ୍ୟବାନ୍ ମନେହୁଏ, ଗୋଟେ ପ୍ରକାର ଗମ୍ଭୀରତା ଆସେ ପରିସ୍ଥିତିରେ । ସେଇପରି ବିରାଟ ଏକ ଯୋଜନା, ଆଧ୍ୟାତ୍ମିକ ବିକାଶ । ରୂପାନ୍ତର, ଶରୀରରେ ଦେବାବତରଣ ଇତ୍ୟାଦି ପାଇଁ ଯେତେପରିମାଣରେ Seriousness ପ୍ରୟୋଜନ ତା' କାହିଁ ? ହଁ, ଆଜି ଯଦି ପାଞ୍ଚ ମିନିଟ୍ ଧ୍ୟାନହେଲା ଭଲ, ନ ହେଲା ଭଲ, ଦେଖିବା, କାଲି ଅଛି, ନ ହେଲେ ଏତେ କ'ଣ ଅସୁବିଧା ହୋଇଗଲା ? ଅତି ଢ଼ିଲା, ବେପରୁଆଭାବେ କଥାଟାକୁ ନିଆଗଲେ, କୌଣସି ଫଳ ଆଶାକ ରିବା ବୃଥା । ଯଦି ଧ୍ୟାନ ହେଉନାହିଁ, କାହିଁକି ହେଉନାହିଁ, ମୁଁ କ'ଣ କରିବି, କେମିତି କ'ଣ ହେବ ମା' କେମିତି ମୋତେ ସାହାଯ୍ୟ କରନ୍ତେ, ଏ ଭଳି ଆକୁଳତା କାହିଁ ? ସମୟ ବାଲି ପରି ହାତମୁଠାରୁ ଖସିଯାଉଛି, ଅଥଚ କିଛି ହେଉନାହିଁ ବୋଲି ବ୍ୟାକୁଳତା କାହିଁ ? ଯେତିକି ଦିନ ସଂସାରରେ ଆରାମରେ ମା' ରଖିଛନ୍ତି, ସୁବିଧା ଦେଖି, ସୁସ୍ଥ ବିଳାସରେ ଯଦି କେବେ ଟିକିଏ ଏ ଆଡ଼କୁ ଚାହିଁ ଦୁଇପଦ କ'ଣ ମୁ... ...ଆ କହିଦିଆଗଲା, ସେତିକି ଯଥେଷ୍ଟ । ମନେକରୁଥିବା ବ୍ୟକ୍ତିପାଇଁ ଆଉ କ'ଣ କୁହାଯାଇପାରେ ? ତେଣିକି ମା'ଙ୍କ କୃପାକଥା । ସେ ସବଳ ଦୁର୍ବଳ ମଣିଷକୁ ନିଜର ସନ୍ତାନ ରୂପେ ଟେକି ଧରିଛନ୍ତି । ଦୁର୍ବଳପାଇଁ ବରଂ ସ୍ୱତନ୍ତ୍ର ବ୍ୟବସ୍ଥା । ଏହାର ସୁଯୋଗ ନେବାକୁ ନିହାତି ଅପଦାର୍ଥ, ଅଯୋଗ୍ୟ, ନିଷ୍କର୍ମା ହେଲେ ଚଳିବ କି ? ଯଦି ଚଳିବ ଚଳୁ ।



**୧୫-୧୦-୮୩**

ଦୈନନ୍ଦିନ ଯାତ୍ରାରେ କେଉଁଠି ଖାଲଖମା, କେଉଁଠି ବିପଦଆପଦ - ଏ ସମସ୍ତକୁ ଜଗି କେହିଜଣେ ହାତଧରି ବାଟ କଢ଼େଇ ନ ନେଲେ କ'ଣ ସହଜରେ ଯାଇହେବ ? ମହାପୁରୁଷଙ୍କ ପନ୍ଥା ମହାପୁରୁଷଙ୍କ ପାଇଁ । ଜଙ୍ଗଲରେ ହାତୀ ପଲାସି ଗଲାବେଳେ ଦଶଫୁଟର ନାଳଟାଏ ଅନାୟାସରେ ଗୋଟିଏ ପାହୁଣ୍ଡରେ ପାରିହୋଇଯାଏ କିନ୍ତୁ ପିମ୍ପୁଡ଼ିଟିଏ ସେ ବାଟରେ ଯିବ କିପରି ? ଆଉ ଗୋଟିଏ ପିମ୍ପୁଡ଼ି ରୂପରେ ସେ ଆସି କ'ଣ ତାର ସମସ୍ତ ପିମ୍ପୁଡ଼ି ସମସ୍ୟାକୁ ବୁଝି, ଗୁରୁତ୍ୱ ଦେଇ ତାକୁ ପାରି କରିନେବେ ? ନେବେ । କହୁଛନ୍ତି

ନେବେ ବୋଲି । ସେ ଅହରହ ପାଖରେ ଅଛନ୍ତି । ତାଙ୍କୁ କେବଳ ଅନୁଭବ କରିପାରିଲେ ହେଲା, ନିଜେ ଆଗ ନିଜ ସମସ୍ୟାକୁ ସମ୍ପୂର୍ଣ୍ଣ ବୁଝି ତାକୁ ସମାଧାନ କରିବା ପାଇଁ ଆକୁଳତା ପ୍ରକାଶ କଲେ ସେ ଅବଶ୍ୟ ସେଥିରେ ସାହାଯ୍ୟ କରିପାରିବେ । କିନ୍ତୁ ସେ ବିଷୟରେ ନିଜେ ଯଦି ଆଗେ ଅବହେଳା କରୁଥାଉ ଏବଂ ତାମସିକ ଢ଼ଙ୍ଗରେ ସବୁ ତାଙ୍କ ଉପରେ ଛାଡ଼ିଦେଉ, ସେ ମଧ୍ୟ ସେଇଦୂରରେ ଥାଇ ସାକ୍ଷୀରୂପେ ଦେଖୁଥିବେ । ଯାହା ଘଟିବା କଥା ଘଟିଯିବ । ପାଖରେ କେହି ଜଣେ ରହି ପ୍ରତି ପଦକ୍ଷେପରେ ହାତଧରି କଢ଼େଇନେବା, କେତେ ଆଶ୍ୱାସନା, କେତେ ଆଶ୍ୱସ୍ତି ଓ ଆଶାର୍ କଥା । କିନ୍ତୁ ସେ ସମସ୍ତ ଆମ ନିଜ ଉପରେ ନିର୍ଭର କରେ ।



## ୧୬-୧୦-୮୩

ଯେ କୌଣସି ଚିନ୍ତାପାଇଁ ମାନସିକ ପ୍ରୟାସ କରିବାକୁ ପଡ଼ିଥାଏ । ଚିନ୍ତାକୁ ସଚେତନ ଭାବରେ ଧାରଣ କରାଯାଏ । ତା'ର ଉଦୟ, କ୍ରମବିକାଶ ଏବଂ ବିଲୟ ପାଇଁ ମନର କର୍ତ୍ତୃତ୍ୱ ଦାୟୀ ରହେ । କିନ୍ତୁ ସ୍ୱପ୍ନାବସ୍ଥାରେ ରୂପ, ଶବ୍ଦ କିମ୍ବା ଚିନ୍ତା ଉପରେ କୌଣସି ଆୟତ୍ତ ନ ଥାଏ । ସେସବୁ କେଉଁଠାରୁ ଆସନ୍ତି, କିପରି ରହନ୍ତି ଓ କେଉଁଆଡ଼େ ଚାଲିଯାନ୍ତି ତାକୁ ମନ ଜାଣିପାରେ ନାହିଁ । ସେହିପରି ବେଳେବେଳେ ନିଜର ବିନା ପ୍ରୟାସରେ ଅକସ୍ମାତ ଚିନ୍ତାଟିଏ ମନଭୂମିକୁ ଅବତରଣ କରିଆସେ । ତା'ର ସ୍ୱରୂପ ବୋଧ ହୁଏ ଆଲୋକ, କିନ୍ତୁ ସେ ଭୂମିକୁ ଆସିଲେ ଚିନ୍ତାରୂପ ଧାରଣ କରିଥାଏ । ଏହା ମନର ବହିର୍ଭୂତ ଭୂମିରୁ ଆସିଥାଏ । ଦେଖାଯାଏ ଯେ, ନିଜ ଭିତରେ ଏକ ସ୍ଥିର, ନୀରବ କ୍ଷେତ୍ର ପ୍ରସ୍ତୁତ ଥାଏ, ସେତିକିବେଳେ ଏ ଚିନ୍ତାସବୁ ଅବତରଣ କରନ୍ତି । ଏହା ବି ହୋଇପାରେ ଯେ ଚନ୍ଦ୍ରବିମ୍ବ ସମୁଦ୍ରରେ ସବୁବେଳେ ପଡ଼ିଥାଏ । କିନ୍ତୁ ସମୁଦ୍ର ବିକ୍ଷୁବ୍ଧଥିବାରୁ ତାହା ସ୍ପଷ୍ଟ ହୁଏ ନାହିଁ । ଶ୍ରୀ ଅରବିନ୍ଦ ମାନସ ଓ ଅତିମାନସର ମଧ୍ୟ ଭୂମିରେ ଏକାଧିକ ପର୍ଯ୍ୟାୟକୁ ଚିହ୍ନିତ କରିଛନ୍ତି ଯଥା Higher mind, illumined mind, over mind । ହୁଏତ' ପ୍ରସ୍ତୁତ ଅବସ୍ଥାରେ କୌଣସି ଏକଉଚ୍ଚତର ଅଂଚଳରୁ ସିଧାସଳଖ ଚିନ୍ତା ଅବତରଣ କରିଆସେ । ଧ୍ୟାନାବସ୍ଥାରେ ମନ ଅନାନ୍ଦୋଳିତ ଏବଂ ନୀରବ ଥିବାବେଳେ ଏହା ଘଟିପାରେ । ତେବେ ସତର୍କରହି ତାକୁ ପରୀକ୍ଷା କରିବାକୁ ପଡ଼ିପାରେ । ହୁଏତ' ତାହା ଛଦ୍ମବେଶରେ ସାମାନ୍ୟ mental formation, ଏମିତି ଅକସ୍ମାତ ଉଦୟ ହେଲାପରି ଦିଶେ । ଚିହ୍ନିବା ପାଇଁ ତା'ପଶ୍ଚାତରେ କାମନା ଏବଂ ଫଳାଭିସନ୍ଧି ଲାଗିରହିଥାଏ । ଏଣୁ ଏ ସମସ୍ତଙ୍କୁ ନିୟମିତଭାବରେ ଲିପିବଦ୍ଧ କରି ତାକୁ ପରୀକ୍ଷାକଲେ କିଛି କିଛି ଅଜ୍ଞାତ ଭୂମିରୁ ଅବତରଣ କରିଥିବା ଚିନ୍ତା ଜଣାପଡ଼ିପାରେ । ଲିପିବଦ୍ଧ କରିବା ପାଇଁ ହୁଏତ ଇଚ୍ଛା ହେବ ନାହିଁ । ତା'ର କାରଣ ଆମେ ସେ ବିଷୟରେ ଏତେ ଗୁରୁତ୍ୱ ଦେଉନା । ଅଥଚ ଧୋବା ଖାତାରେ ଚିରା ଜନାର ହିସାବ ରଖି ସପ୍ତାହେ ପରେ ତାକୁ ଗଣିରଖିବାରେ ସାମାନ୍ୟ ତ୍ରୁଟି ଆମର ହୁଏ ନାହିଁ । ଧରାଯାଉ ଜଣାଗଲା ଯେ - ଚିନ୍ତା ଅବତରଣ କରୁଛି, ତା'ପରେ କ'ଣ ହେବ ? ଏଇଆ ହେବ ଯେ ମାନସ ଊର୍ଦ୍ଧ୍ୱରେ ଯେଉଁ ଭୂମି ଆମର ଅଜ୍ଞାତ ଥିଲା, ଯାହା ବିଷୟରେକେବଳ ଶ୍ରୀ ଅରବିନ୍ଦଙ୍କଠାରୁ ଆମେ ଶୁଣିଥିଲୁ, ତାହା ଆମ ଅନୁଭବକୁ ଆସିବ, ବିଶ୍ୱାସ ଦୃଢ଼ୀଭୂତ ହେବ । ଏବଂ ସାଧନାରେ ସେଇପରିମାଣରେ

ଅଗ୍ରଗତି ହେବ । ଅବଶ୍ୟ ଏ ବିଷୟରେ ଯଦି କେହି ଆଦୌ Serious ନୁହଁନ୍ତି, ସତର୍କ ରହି ସବୁକଥା ଜଗି ପରୀକ୍ଷାକରି ସତକୁ ସତ ଉଦ୍‌ବର୍ତ୍ତନ ପାଇଁ ସଚେଷ୍ଟ ନୁହଁନ୍ତି, ତାଙ୍କୁ କିଛି କହିବାର ନାହିଁ ।



**୧୭-୧୦-୮୩**

ବେଳେବେଳେ କୌଣସି ଏକ ଅପରିଚିତ ପରିବେଶରେ ପହଞ୍ଚିଗଲେ ହଠାତ୍ ମନେହୁଏ ଯେ ତାହାଖୁବ୍ ପରିଚିତ । ଆଉ କେବେ, ଆଉ କେଉଁଠି ହୁଏତ ଆପଣ ତାକୁ ଦେଖିଛନ୍ତି । ଅବିକଳ ସେମିତି । କିନ୍ତୁ ପ୍ରତ୍ୟେକ ପରିବେଶ ଅନନ୍ୟ ଏବଂ ଅପୂର୍ବ । ଏହା ଆଗରୁ କେବେ ସମ୍ଭବ ହୋଇ ନଥିବ । ତେବେ ଭବିଷ୍ୟତରେ ଘଟିବାକୁ ଥିବା ଘଟଣାଟି ମନର ଅସାଧାରଣ ବିସ୍ତାରରେ ହୁଏତ ଧରାଯାଇ ପାରେ । ଏହା ଯଦି ସତ୍ୟ ତେବେ ଏଥିରୁ ଗୋଟିଏ ତଥ୍ୟ ପ୍ରମାଣିତ ହେଉଛି ଯେ, କାଳର ସ୍ରୋତ ନାହିଁ । ତାହା ସ୍ଥିର ଏବଂ ତା'ର ବିଭିନ୍ନ ସ୍ଥାନରେ ଯାହା ଘଟିବା କଥା ଘଟି ରହିଛି । ଚଳମାନ ଚେତନା ତାକୁ ଦେଖିଚାଲିଛି । ପୃଥିବୀ ଉପରେ ନଦୀ ପର୍ବତ ଯେ ଯାହା ସ୍ଥାନ ଆବୋରି ବସିଛନ୍ତି । କେବଳ ରେଳ ଯାତ୍ରୀଟି ସେମାନଙ୍କୁ ସେଇ ସ୍ଥାନରେ ଆବିଷ୍କାର କରେ । ସେଇ କାରଣରୁ ହୁଏତ ଶ୍ରୀକୃଷ୍ଣ କହିଛନ୍ତି, "ମୟୈବୈତେ ନିହତା ପୂର୍ବମେବ", ସେମାନେ ମୋ ଦ୍ୱାରା ପୂର୍ବରୁ ନିହତ ହୋଇସାରିଛନ୍ତି । ସେହିକାରଣରୁ ହୁଏତ ତ୍ରିକାଳଦ୍ରଷ୍ଟା ପୁରୁଷମାନେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ସମପରିମାଣରେ ପ୍ରତ୍ୟକ୍ଷ କରିପାରୁଥିଲେ ।ଏ ଅଂଚଳରେ ବିଜ୍ଞାନ ମଧ୍ୟ କିଛି ପରିମାଣରେ ସ୍ୱୀକାର କରିଆସିଲାଣି । ସେମାନେ କହୁଛନ୍ତି ଯେ, ପ୍ରତ୍ୟେକ ବସ୍ତୁ, ଘଟଣା ଇତ୍ୟାଦିର ଗୋଟିଏ field ଅଛି । ଚୁମ୍ବକଖଣ୍ଡ ଚାରିଆଡ଼େ ଯେମିତି ଚୁମ୍ବକୀୟ ଶକ୍ତିର ଗୋଟାଏ ଅଦୃଶ୍ୟ ଅଥଚ କ୍ରିୟାଶୀଳ ଭୂମିଥାଏ, ସେ ଭିତରକୁ ଲୁହା ପ୍ରବେଶ କଲେ ଯେମିତି ଟାଣି ହୋଇଯାଏ, ସେହିପରି ଚାରିଘଣ୍ଟାପରେ ଯେଉଁ ଘଟଣା ଘଟିବାକୁ ଅଛି ବା ଚାରିଘଣ୍ଟା ଆଗରୁ ଯେଉଁ ଘଟଣା ଘଟିଯାଇଛି, ତା'ର ଏଇ ମୁହୂର୍ତ୍ତରେ ଛାୟାପାତ ହେଉଛି । ଅତୀତକୁ ସ୍ମୃତି ମାଧ୍ୟମରେ ଗ୍ରହଣ କରିବା ସାଧାରଣ ଅଭ୍ୟାସ ହୋଇଥିଲେ ବି ଭବିଷ୍ୟତ ଘଟଣାକୁ ଏଇ ଛାୟାପାତରୁ ଅନୁଭବ କରିବା ଏକ ଅସାଧାରଣ ଶକ୍ତି । ଏହାକୁ E.S.P. ବା Extra sensory perception (ଅତୀନ୍ଦ୍ରିୟ ଅବବୋଧ) କୁହାଯାଉଛି । ତେବେ ଏଗୁଡ଼ିକ ସାଧାରଣ ମନସ୍କତାର ବହିର୍ଭୂତ ଶକ୍ତି ଏବଂ ସୂଚନା ଦେଉଛି ଯେ ମନର ଊର୍ଦ୍ଧ୍ୱରେ ଆହୁରି ଅନେକ ସ୍ତର ଅଛି ଯାହା କ୍ରମଶଃ ପ୍ରକଟିତ ହେବାପାଇଁ ପ୍ରୟାସ କରୁଛି ।



## ୧୮-୧୦-୮୩

କେହି ଜଣେ ଆସି ଆକସ୍ମିକ ଭାବରେ ଯଦି ଖୁବ୍ ଅଶ୍ଳୀଳ ଭାଷାରେ ଗାଳି ଦେଲା, ତେବେ ଆମ ଭିତରେ ତା'ର ତୀବ୍ର ପ୍ରତିକ୍ରିୟା ହୁଏ । ଆମେ ପ୍ରତିବାଦ କରୁ ତଦ୍ବାରା, କ୍ରୋଧ, ହିଂସା ପ୍ରକାଶିତ ହୁଏ । ସାଧନାର ଗୋଟିଏ ସାଧାରଣ ଅନୁଭବ ହେଲା ଯେ, ଅସଂଖ୍ୟ ଅପଶକ୍ତି ସାଧକକୁ ତା'ର ସ୍ଥିରତାରୁ ବିଚଳିତ, ବିଚ୍ୟୁତ କରିଦେବା, ତାକୁ ବିଭିନ୍ନ ପରିସ୍ଥିତିରେ ଉତ୍ତେଜିତ ଉତ୍ତ୍ୟକ୍ତ କରିବା । ଏଭଳି ପରିସ୍ଥିତିରେ ସ୍ଥିର ରହି ପରେ ଦେଖିବା କହି ଟାଳି ଦେଇପାରିଲେ ସେ ଶକ୍ତି ବଳେ ଓହରିଯାଏ । କିନ୍ତୁ ଏହା ସମାଧାନ ନୁହେଁ । ବିଚଳିତ ନ ହୋଇ ମୁକାବିଲାକ-ରିବା, ସ୍ଥିରରହି ଯୁଦ୍ଧ କରିବାପାଇଁ ଉପଦେଶ ଦିଆଯାଇଛି । କିନ୍ତୁ ଏତଦ୍ବାରା ଆଉପ୍ରକାରେ ଅନ୍ୟତ୍ର ସେ ଶକ୍ତି ଆସି ଆମକୁ ବିବ୍ରତ କରିବାର ସମ୍ଭାବନା ରହିଯାଉଛି । ଥରେ ଗୋଟିଏ ନୂଆ ଜଳଖିଆ ଦୋକାନରେ ପଞ୍ଚାଏ ଦୁଷ୍ଟଟୋକା ପଶି ହଇରାଣ କରିବାକୁ ଚାହିଁଲେ । ସେମାନେ ଖାଇସାରି ପ୍ଲେଟରେ ହାତ ଧୋଇଲେ । ଦୋକାନୀ ମନାକଲା ଏବଂ ଗୋଟିଏ ନୋଟିସ ଲେଖି ଝୁଲେଇ ଦେଲା "କେହି ପ୍ଲେଟରେ ହାତ ଧୁଅନ୍ତୁ ନାହିଁ ।" ସେ ଟୋକାମାନେ, କପ୍‌ରେ ଧୋଇଲେ । ନୋଟିସ ବାହାର କଲା "ପ୍ଲେଟ୍‌ରେ ଏବଂ କପ୍‌ରେ ହାତ ଧୁଅନ୍ତୁ ନାହିଁ", ତା'ପରେ "ପ୍ଲେଟ୍‌ରେ, କପ୍‌ରେ, ଟେବୁଲରେ, ଚେୟାର୍‌ରେ, ତଳେ, ଧୁଅନ୍ତୁ ନାହିଁ" - ଏମିତି ଲେଖା ବଢ଼ିଚାଲିଲା । କିନ୍ତୁ ସମସ୍ୟା ଯେଉଁଠି ଥିଲା ସେଇଠି । ଦୋକାନୀ ଶେଷକୁ ଗୋଟିଏ ହାତଧୁଆ ବେସିନ୍ ଆଣି ଲଗାଇଲା ଏବଂ ଗୋଟିଏ ନୋଟିସ୍ ଲଗାଇଲା - 'ଦୟାକରି ବେସିନ୍‌ରେ ହାତ ଧୁଅନ୍ତୁ' । ସାଙ୍ଗେ ସାଙ୍ଗ ସମସ୍ୟା ସମାଧାନ ହୋଇଗଲା । ସମାଧାନରେ ଯେଉଁ ଅପଶକ୍ତି ବିରୋଧ କରନ୍ତି ବୋଲି କୁହାଯାଇଛି ସେମାନେ ଅଜ୍ଞାନକେନ୍ଦ୍ରରୁ ବାହାରନ୍ତି । ଜ୍ଞାନକେନ୍ଦ୍ରରେ ଯେଉଁ ଅନୁକୂଳ ଶକ୍ତି - ସଂକଳ୍ପ କାର୍ଯ୍ୟକରନ୍ତି ସେମାନଙ୍କୁ ସେମାନେ ସ୍ୱତଃ ଏବଂ ସ୍ୱାଭାବିକ ଭାବରେ ଉତ୍ତେଜିତ କରନ୍ତି । ଏହାର ପ୍ରତିକ୍ରିୟା ଅହଂ ମାଧ୍ୟମରେ ପ୍ରକାଶିତ ହେବାରୁ - କୁତ୍ସିତରୂପ ନେଇ ଥାଏ - ଯଥା କ୍ରୋଧ, ହିଂସା ଇତ୍ୟାଦି । ଫଟା ଡାକବାଜି ଯନ୍ତ୍ରରେ ସବୁଠାରୁ ମଧୁର ସ୍ୱର ମଧ୍ୟ ରୁକ୍ଷ ଶୁଣାଯାଏ । ଫଟା ଡାକବାଜି ଯନ୍ତ୍ରରେ ସବୁଠାରୁ ମଧୁର ସ୍ୱର ମଧ୍ୟ ରୁକ୍ଷ ଶୁଣାଯାଏ । ତେବେ ମୂଳକଥା ହେଲା ଯେ ବିରୋଧ ଆଦୌ ନାହିଁ । ଡାହାଣ ହାତ କୌଣସି କାମ କଲାବେଳେ ବାଁ ହାତ ଯଦି ତା'ର ସ୍ୱାଭାବିକ କାର୍ଯ୍ୟକରେ, ତାକୁ ବିରୋଧ କରିବା ଏବଂ ତା' ସହିତ ଯୁଦ୍ଧକରିବା ଏକ ହାସ୍ୟାସ୍ପଦ ପରିସ୍ଥିତି । ସେହିପରି ଗୋଟିଏ ଚେତନାର ବୃନ୍ତରୁ ଜ୍ଞାନ ଏବଂ ଅଜ୍ଞାନ ଅଙ୍କୁରିତ ହୋଇଛନ୍ତି । ସେମାନଙ୍କର ସ୍ୱଧର୍ମ ପୃଥକ୍ । ଏଇ ପାର୍ଥକ୍ୟ ଅଥଚ ଏହି ମୌଳିକ ଏକତା ବୁଝିଗଲେ ବୋଧେ ବିରୋଧ ରହିବ ନାହିଁ ।



## ୧୯-୧୦-୮୩

ଜଡ଼ବସ୍ତୁଟି ଗୋଟିଏ ବାଧ୍ୟ ମାଧ୍ୟମ । ତା'ର ନିଜର କିଛି ପ୍ରତିବାଦ କରିବାର ନଥାଏ । ମାଟିପିଣ୍ଡଟିକୁ ଯେମିତି ରୂପଦେଲେ ମଧ୍ୟ ସେ ସେଥିରେ ରାଜି । ଅଥଚ ପିଲାଟିକୁ ତା'ଇଚ୍ଛା ବିରୁଦ୍ଧରେ କିଛି କରାଇ ପାରିବା ସମ୍ଭବ ନୁହେଁ, ଅନ୍ତତଃ ବିନା ପ୍ରତିବାଦରେ । କାରଣ ସେ ସଚେତନ । ସ୍ୱୟଂକ୍ରିୟ ହୋଇ ବା

ସ୍ୱାଧୀନଭାବରେ କ୍ରିୟାଶୀଳ ହେବାପାଇଁ ତା'ଭିତରେ ଅଦମ୍ୟ ଇଚ୍ଛା । ସେଭଳି କୌଣସି ଚେତନା ଜଡ଼ପିଣ୍ଡରେ ନାହିଁ - ଏହା ହେଲା ସାଧାରଣ ଭାବରେ ଯାହା ଦେଖାଯାଇଥାଏ । ସେଇ ଜଡ଼ପିଣ୍ଡ କିନ୍ତୁ ଖୁବ୍ ଅବାଧ୍ୟ ଭାବରେ ପ୍ରତିବାଦ କରେ । ଧରାଯାଉ ପାଞ୍ଚଟନ୍ ପଥର ଘୁଞ୍ଚାଇଲେ ଘୁଞ୍ଚିବ ନାହିଁ । ଛୁଞ୍ଚିମୂନ ଉପରେ ଠିଆହୁଅ କହିଲେ ଠିଆହେବ ନାହିଁ । ମାଟିପିଣ୍ଡଟି ମୁହଁ ନାକ କାଢ଼ିଲେ ରାଜି ହୋଇପାରେ, କିନ୍ତୁ ଗୋଟି ଗୋଟି କେଶ ଗଣିବାକୁ କହିଲେ ସେ ରାଜି ହେବ ନାହିଁ । ଏ ରାଜି ନ ହେବା ହେଉଛି ସୀମାଜନିତ ଅକ୍ଷମତା । ସେ ହୁଏତ ନୀରବ ରହି ସୂଚାଇଦେଉଥାଏ, ବାସ୍, ଏତିକି ଯା ବାହାରେ କିମ୍ବା ଏହା ଉପରକୁ ମୁଁ ଆଉ ଆସିପାରିବି ନାହିଁ । ମଣିଷଟିଏ କିନ୍ତୁ ଯେତେବେଳେ ଅମଙ୍ଗ ହୁଏ ତାହା ଅକ୍ଷମତା ଜନିତ ନ ହୋଇପାରେ । ସେ ହୁଏତ ପାରିବ କିନ୍ତୁ କରିବ ନାହିଁ ବା କରିବାକୁ ରାଜିନୁହେଁ । ସେ ଅମଙ୍ଗ ହେବାର କାରଣ ଅନେକ । ସେଥିରୁ ଗୋଟିଏ ହେଲା ଶରୀରର ଜଡ଼ଧର୍ମ । ଏବଂ ଏଇଧର୍ମ ସହିତ ଅହଂର ଅଭିନ୍ନଭାବ । ଚାରିଟାରୁ ମୁଁ ଉଠିପାରିବି ନାହିଁର ଅର୍ଥ ହେଲା ଯେ ଶରୀର ଉଠିବାକୁ ଅକ୍ଷମ ବା ଉଠିଲେ ତାକୁ ଅସୁବିଧା ହେଉଛି । କିନ୍ତୁ ଚା'ରିଟା କ'ଣ ଦି'ଟାରୁ ଉଠିବାକୁ ସେଇ ଶରୀର ଖୁବ୍ ସକ୍ଷମ । ଏଥିରେ ସୀମା ବହିର୍ଭୂତ ଅକ୍ଷମତା ନାହିଁ । ଅଛି ଗୋଟାଏ ପ୍ରକାର ଅଜ୍ଞାନ ଏବଂ ତଜ୍ଜନିତ ତାମସିକ ପ୍ରତିରୋଧ । ଏହାକୁ ଉତ୍ତୀର୍ଣ୍ଣ ହେବାକୁହେଲେ ଅଧିକମାତ୍ରାରେ ଚେତନାଶ୍ରୟୀ ହେବାକୁ ହେବ, ଜ୍ଞାନ ଏବଂ ସଂକଳ୍ପର ସାହାଯ୍ୟ ନେବାକୁ ହେବ । ସେଥିପାଇଁ ରାତି ତିନିଟାରେ ସତୁରି ବର୍ଷ ବୟସରେ ବାବାଜୀ ମହାରାଜ ଉଠି, ସ୍ନାନାଦି ସମାପନ କରି ଧ୍ୟାନଧାରଣା କରିପାରୁଛନ୍ତି । ଶରୀରର ଅକ୍ଷମତା ଏକ କୃତ୍ରିମ ବାହାନା ମାତ୍ର । ସେହିପରି ମାଟିପିଣ୍ଡଟିକୁ ଯଦି ଯନ୍ତ୍ର ସାହାଯ୍ୟରେ ଛାଣି ଖୁବ୍ ନରମ କରିଦିଆହୁଏ, ସେହିଭଳି ସୂକ୍ଷ୍ମ ହତିଆର ନେଇ କାର୍ଯ୍ୟ କରାଯାଏ ସେଥିରେ ଗୋଟି ଗୋଟି କେଶ ମଧ୍ୟ ତିଆରି ହୋଇପାରିବ । ମଣିଷ ଯେତେବେଳେ ରାଜି ହୋଇ ଯାଏ ମାଧ୍ୟମ ହେବାକୁ, ଅତି ସହଜରେ ଦିବ୍ୟଶକ୍ତି କାର୍ଯ୍ୟ କରିପାରନ୍ତି । ତା'ର ଅହଂକେନ୍ଦ୍ରିକ ସ୍ୱଂୟକ୍ରିୟତା ହିଁ ବାଧାଦେଉଥାଏ । ତାକୁ ଆୟତ କରିପାରିଲେ କାର୍ଯ୍ୟସିଦ୍ଧି ହୋଇଯାଏ । ତାହାହିଁ ମା'ଙ୍କର Are you ready ?" ପ୍ରଶ୍ନର ତାତ୍ପର୍ଯ୍ୟ ହୋଇପାରେ, ଏହାପୂର୍ବରୁ ଏମିତି ପଚରା ଯାଇନାହିଁ । ଜଡ଼ କିମ୍ବା ଇତରପ୍ରାଣୀକୁ ସେ ନିଜ ଶକ୍ତିରେ ବିବର୍ତ୍ତିତ କରି ଆଣିଛନ୍ତି । ମଣିଷକୁ ମଧ୍ୟ ଆଉ ପଚରାଯାଇନାହିଁ, ବରଂ ସେ ଅନିଚ୍ଛାପ୍ରକାଶ କରି ବସିଗଲେ ସୁଦ୍ଧା ତାକୁ ଏକପ୍ରକାର ବାଧ୍ୟ କରାଯାଇଛି, ଦିବ୍ୟକାର୍ଯ୍ୟ ସଂପାଦନ କରିବାକୁ । ଏବେ କିନ୍ତୁ ତା'ର Consent ର ପ୍ରୟୋଜନ । ଛୋଟ ଖଣ୍ଡିତ ଧାର ନିଜ ଇଚ୍ଛାରେ ଗଙ୍ଗା ପ୍ରବାହରେ ପ୍ରବେଶ କରିପାରିଲେ ଗଙ୍ଗାସ୍ରୋତ ତାକୁ ସମୁଦ୍ରଯାଏ ନେଇଯାଇପାରିବ । କିନ୍ତୁ ନଦୀଗର୍ଭର ଶିଳା ଖଣ୍ଡ Consent ଦେବା ଅବସ୍ଥାରେ ନାହିଁ, ଯେତେ ସହସ୍ରବର୍ଷ ଲାଗୁପଛକେ ତାକୁ କେବଳ ଗଙ୍ଗାଧାର ହିଁ କିଛି କିଛି ଘୁଞ୍ଚେଇ ନେଇଯିବ । Willing ଏବଂ Unwilling ମାଧ୍ୟମ ଭିତରେ ଏଇ ବୋଧହୁଏ ପାର୍ଥକ୍ୟ ।



## ୨୧-୧୦-୮୩

ଘରଚଟିଆ କାଚ ଝରକାଦେଇ ବାହାର ଦୃଶ୍ୟ ଦେଖିପାରୁଥାଏ କିନ୍ତୁ ବାରମ୍ବାର କାଚରେ ବାଡ଼େଇ ହୋଇ ବିମୂଢ଼ ହେଉଥାଏ । ବୁଝିପାରେ ନାହିଁ କ'ଣ ସେ ଅଦୃଶ୍ୟ ପ୍ରତିବନ୍ଧକ । ସାଧନାକ୍ଷେତ୍ରରେ ମଧ୍ୟ ସେଇଆ । ସମୟ ସମୟରେ ପ୍ରତିରୋଧ କରୁଥିବା ଶକ୍ତିକୁ ଦେଖି ହୁଏ, ବୁଝିହୁଏ, କିନ୍ତୁ ଅନ୍ୟ ସମୟରେ ସେ ଏତେ ସୂକ୍ଷ୍ମରୂପରେ କାମକରୁଥାଏ ଯେ ଆଦୌ ଜଣାପଡ଼େ ନାହିଁ । ଲକ୍ଷ୍ୟ ଦିଶୁଥାଏ ଅଥଚ ପହଞ୍ଚି ହୁଏନାହିଁ । ମଝିରେ ଏକ ରହସ୍ୟମୟ ପ୍ରତିବନ୍ଧକ । ଏହି ପ୍ରତିବନ୍ଧକର ସ୍ଥୂଳରୂପ ସବୁ ମାଟି କାଦୁଅ ପଥରପରି ସିଧାସଳଖ, ବାଧାଦେଲେ ତା'ର ପ୍ରତିକାର ପାଇଁ ଚିନ୍ତାକରି ହୁଏ । ନିର୍ଦ୍ଦିଷ୍ଟ ସୀମା ଏବଂ ପ୍ରକୃତି ଥିବାରୁ ସେଗୁଡ଼ିକୁ ଜୟ କରାଯାଇପାରେ, କିନ୍ତୁ ଏ ଅଦୃଶ୍ୟ ରୂପ ଅନିର୍ଦ୍ଦିଷ୍ଟ । ଏଣୁ ତାକୁ ମୁକାବିଲା କରିବାପାଇଁ ଗୁରୁଙ୍କର ଦିବ୍ୟଦୃଷ୍ଟିର ଆଶ୍ରୟ ନେବାକୁ ହୁଏ । ସେ କହି ଦେଇପାରନ୍ତି, କ'ଣ କରିବାକୁ ହେବ ।



## ୨୦-୧୦-୮୩

ସୂର୍ଯ୍ୟଙ୍କୁ ସବିତା କୁହାଯାଏ, କାରଣ ସେ ସବୁ ପ୍ରାଣର ଉତ୍ସ, ସବୁ ଶକ୍ତିର ଉତ୍ସ । ଏଣୁ ଆକାଶରେ ତାଙ୍କ ସ୍ଥିତି ଉପରେ ସ୍ଥାବରଜଙ୍ଗମ କ୍ରିୟା ପ୍ରତିକ୍ରିୟା ନିର୍ଭର କରେ । ଭିନ୍ନ ଭିନ୍ନ ଅବସ୍ଥାରେ ସୂର୍ଯ୍ୟଙ୍କର ଭିନ୍ନ ଭିନ୍ନ ପ୍ରଭାବ ପଡ଼ିଥାଏ । ସ୍ୱାନୁଭବରୁ ଆର୍ଯ୍ୟ ଋଷିମାନେ ବ୍ରାହ୍ମମୁହୂର୍ତ୍ତକୁ ଆଧ୍ୟାତ୍ମିକ ସାଧନାର ପ୍ରକୃଷ୍ଟ ସମୟ ବୋଲି ଘୋଷଣା କରିଛନ୍ତି । ଯେତେବେଳେ ଆକାଶରେ ସୂର୍ଯ୍ୟ ନଥାନ୍ତି କିନ୍ତୁ ତାଙ୍କର ପ୍ରତିଶ୍ରୁତି ଧ୍ୱନିତ ହେଉଥାଏ, ବାତାବରଣ ସ୍ତବ୍ଧ ପ୍ରସ୍ତୁତ ରହିଥାଏ, ପୂର୍ବ ଦିଗରେ ଅସ୍ପଷ୍ଟ ଅରୁଣିମା ତାରାଲୋକରେ ମିଶି ରହିଥାଏ, ସେତିକିବେଳେ ଜାଗତିକ ଚେତନା ପାଇଁ ନିଦ୍ରାଭଂଗର ସମୟ । ଉଦ୍ଭିଦମାନଙ୍କ କ୍ଷେତ୍ରରେ ଏହାର ଲାକ୍ଷଣିକ ପ୍ରମାଣ ଅଧିକ । ପ୍ରତିଟି ତରୁଲତା ଗୁଳ୍ମଦ୍ରୁମର ପ୍ରତ୍ୟେକ ପତ୍ର ଉନ୍ମୁଖ ହୋଇ ଅପେକ୍ଷାକରେ । ସେତିକିବେଳେ ନୀରବପୃଥିବୀ ଅଟଳ ଅଭିପ୍ସାରେ ଧ୍ୟାନମଗ୍ନ ଥାଏ ... । ଏହି ସମୟରେ ମହାକାଶର ଅନନ୍ତ ଶକ୍ତିପ୍ରବାହ ପୃଥିବୀ ବାତାବରଣକୁ ଭେଦକରୁଥାଏ । ଏହି କାରଣରୁ ବ୍ରାହ୍ମମୁହୂର୍ତ୍ତରେ ଶରୀର ମନକୁ ଶୁଦ୍ଧ ସଂଯତ କରି ଧ୍ୟାନକଲେ ଅଧିକ ସୁଫଳ ମିଳିଥାଏ । ଜାଗୃତି ଅଥଚ ଘନ ନୀରବତା ସେତେବେଳେ ରାଜତ୍ୱ କରୁଥାଏ । ଯେଉଁ ବିସ୍ତୃତ ଆଲୋକିତ, କୋମଳ ଗଭୀର ବ୍ୟାପ୍ତି ପାଇଁ ଧ୍ୟାନ କରାଯାଏ, ତାହା ସହଜଲଭ୍ୟ ହୁଏ । ଏଥିରେ ଗୋଟିଏ ଅସୁବିଧା ହୋଇପାରେ । ମନ ଜାଗ୍ରତାବସ୍ଥାରେ, ବିଭିନ୍ନ ଧ୍ୱନି ସହିତ ଏତେ ଅଭ୍ୟସ୍ତ ଯେ ସେଇ ନୀରବ ସମୟ ତାକୁ ଅସ୍ୱାଭାବିକ ଲାଗେ, ଏବଂ ସେ ନିଜେ ପ୍ରଚଣ୍ଡ କୋଳାହଳ କରେ, ଅତି ପ୍ରବଳ ବେଗରେ ଚଞ୍ଚଳ ହୋଇଉଠେ । ତାକୁ ଆୟତ୍ତ କରୁକରୁ ନୀରବତା ଶୀତଳତାର ସୁଯୋଗ ନେଇ ନିଦ୍ରା ଘନକୁହୁଡ଼ି ପରି ମଡ଼େଇ ହୋଇପଡ଼େ । ଚେତନା ଆଚ୍ଛନ୍ନ ହୋଇଯାଏ । ଅନେକେ ସେଥିପାଇଁ ଧ୍ୟାନାବସ୍ଥାରେ ଶୋଇଯାନ୍ତି । ସଚେତନ ଧ୍ୟାନରେ ଶୋଇବା

ଏକ କଠିନ ସାଧନା । କିନ୍ତୁ ଧ୍ୟାନଚ୍ୟୁତ ହୋଇ ଶୋଇଯିବା, ତାମସିକ ସ୍ଖଳନ । ତଥାପି ସତର୍କତାର ସହିତ ବ୍ରାହ୍ମମୁହୂର୍ତ୍ତରେ ଧ୍ୟାନାଦି ସାଧନା ଏକାନ୍ତ କରଣୀୟ ।



## ୨୭-୧୦-୮୩

ଥରେ ଗୋଟିଏ ହାତୀ ଜଙ୍ଗଲରେ ଦିନରାତି ଡାକିବାରୁ ଲୋକେଯାଇ ତା'ପାଖେ ପହଞ୍ଚିଲେ । ଦେଖିଲାବେଳକୁ ହାତୀଟି ତଳେ ପଡ଼ି ରଡ଼ି ଛାଡ଼ୁଛି । ଗୋଟାଏ ବିରାଟ ଅଜଗର ତା' ଚାରିଗୋଡ଼କୁ ଏକାଠି ବାନ୍ଧିପକାଇଛି । ଅଜଗରର ବନ୍ଧନରୁ ହାତୀକୁ ମୁକ୍ତକରିବାକୁ ସେମାନଙ୍କର ବଳ ଅଣ୍ଟିଲା ନାହିଁ । ସେମାନେ ଦେଶର ରାଜାଙ୍କୁ ଯାଇ ଜଣାଇଲେ । ସେଦିନ ରାଜାଙ୍କ ଜନ୍ମଦିନ । ଜନ୍ତୁ ମାରିବା ମନା । ତଥାପି ସେ ଜଙ୍ଗଲରେ ଯାଇ ପହଞ୍ଚିଲେ । ହାତୀର ଅବସ୍ଥା ଦେଖି ତାଙ୍କୁ ଭାରି ଭୟ ଲାଗିଲା ସେ ଅନ୍ୟ କୌଣସି ଉପାୟ ନ ଦେଖି ହାତୀର ପଛରେ ଥାଇ ହଠାତ୍ ଗୁଳିଟାଏ ଫୁଟାଇଲେ । ସେଇ ଶବ୍ଦରେ ହାତୀ ଚମକିପଡ଼ିବାରୁ ତାର ପ୍ରକାଣ୍ଡ ଗୋଡ଼ ଗୁଡ଼ିକ ଛାଟିହୋଇଗଲା । ସେତିକିରେ ସାପଟି ଛିଣ୍ଡି ଗଡ଼ ଗଡ଼ ହୋଇଗଲା । ହାତୀ ଚାଲି ଗଲା ଜଙ୍ଗଲକୁ । ସେ ବିଚରା ଜାଣିନଥିଲା, ତା ନିଜର ବଳ କେତେ । ଆମ ଭିତରେ ମଧ୍ୟ ଏପରି ଗୁପ୍ତଶକ୍ତି ଦୁର୍ବଳ ଅସହାୟ ହୋଇପଡ଼ି ରହିଛି । ତାକୁ ଜାଗ୍ରତ କରି ଦେଲେ ସେ ସମସ୍ତ ବାଧାବନ୍ଧନକୁ ଅନାୟସରେ ଜିଣି ଯାଇପାରେ । ତେବେ ଠିକ୍ ମାତ୍ରାରେ ଚମକି [illegible] ଲ ହେଲା । ଯଦି ଗୁଳି ଶବ୍ଦକୁ ଶୁଣି ନ ଶୁଣିଲାପରି ସେ ଧିମେଇ ଯାଏ, ତେବେ ବନ୍ଧନରୁ ମୁକ୍ତହେବା ସହଜ ନୁହେଁ । ଚକ୍ରରେ ନିଜେ ଗ୍ରାହମୁଣ୍ଡ କାଟି ମୁକ୍ତ କରିବାକୁ ସେ ସମର୍ଥ ଏବଂ ପ୍ରତିଶ୍ରୁତ । ଶରଣାଗତକୁ ସେ ରକ୍ଷାକରିବେ ହିଁ କରିବେ । "ତସ୍ୟାହଂ ନ ପ୍ରଣଶ୍ୟାମି ସଚମେନ ପ୍ରଣଶ୍ୟତି ।" କିନ୍ତୁ ସେ ଚାହାନ୍ତି ତାଙ୍କ ଶକ୍ତି ଏ ମାଧ୍ୟମରେ କାର୍ଯ୍ୟକରୁ । ସେ ନିଜେ ସେ ଶକ୍ତିକୁ ଧାରଣକରି ମୁକ୍ତ ହେଉ । ସେଥିପାଇଁ ମା' ପଚାରୁଛନ୍ତି "Are you willing ? ତମେ ରାଜି ତ ?" ତା' ହେଲେ ବାକି ଦାୟିତ୍ୱ ତାଙ୍କର ।

ମଜାକଥା ହେଲା ଯେ ଅହଂଶାସିତ ମନ ସବୁବେଳେ ପରଆପଣା ଜ୍ଞାନରେ ସମସ୍ତ ଜିନିଷକୁ ଖଣ୍ଡିତ ବିଭାଜିତ କରି ଦେଖେ । ଆଧ୍ୟାତ୍ମିକ ପ୍ରସ୍ତୁତି ପାଇଁ ଏଇ Individuality (ବ୍ୟକ୍ତିସତ୍ତା) କୁ universal (ସର୍ବାତ୍ମା) ରେ ବିସର୍ଜନ ଦେବାକୁ ପଡିବ । ଜଡ଼ଚେତନ ଯାହା 'ଅନ୍ୟ' ରୂପେ ଦିଶୁଛି ତାକୁ 'ମୁଁ' ବୋଲି ଅନୁଭବ କରିବାକୁ ହେବ । 'ନେହ ନାନାସ୍ତି କିଞ୍ଚନ' ବୋଲି ଅନୁଭବ କରିବାକୁ ହେବ । ତା'ହେଲେ ତ' ସବୁ ପାରସ୍ପରିକ ସଂପର୍କ ଆଉ ରହିବ ନାହିଁ । ମୁଁ ଯଦି ସେ ତେବେ ତା'ର ଏବଂ ମୋର ସଂପର୍କ କିପରି ରହିପାରିବ ? ସଂପର୍କ ପାଇଁ ବ୍ୟବଧାନ ଅନିବାର୍ଯ୍ୟ । କିନ୍ତୁ ଶ୍ରୀ ଅରବିନ୍ଦ କହୁଛନ୍ତି ଯେ ଏଇ ବ୍ୟକ୍ତି ସତ୍ତାର ବିସ୍ତାର ପରେ ହିଁ ପ୍ରକୃତ ଏବଂ ସାମଗ୍ରିକ ସଂପର୍କ ଆସିବ । ତା'ର ଏବଂ ମୋର ସଂପର୍କ ସେତିକିବେଳେ ସମ୍ଭବ ହେବ ଯେତେବେଳେ ମୁଁ ସେ ବୋଲି ମୁଁ ଅନୁଭବ

କରିପାରିବି । କେମିତି ଅଡୁଆ ଲାଗୁଛି ବୁଝିବାକୁ । ଏହାଜାଣି ଶ୍ରୀଅରବିନ୍ଦ କହୁଛନ୍ତି ହଁ ଆପାତତଃ ବିଚିତ୍ର ଲାଗୁଛି, କିନ୍ତୁ "that is the magic and yet the logic of the infinite" ତାହାହିଁ ଅସୀମଙ୍କର ଯୁକ୍ତି ଏବଂ ଯାଦୁ ।



**୨୮-୧୦-୮୩**

ନାସ୍ତିକ ସିନା ଈଶ୍ୱରଙ୍କୁ ବିଶ୍ୱାସ କରେ ନାହିଁ, ଏଣୁ ତାଙ୍କୁ ଦେଖିବାକୁ କେବେହେଲେ ଇଚ୍ଛାକରେ ନାହିଁ । କିନ୍ତୁ ଯେ ବିଶ୍ୱାସ କରେ ତା'ମନରେ ସବୁବେଳେ ଇଚ୍ଛା ହୁଏ ଈଶ୍ୱରଙ୍କୁ କୌଣସିମତେ ଦେଖିବାକୁ । ତାକୁ କୁହାଯାଏ 'ସର୍ବ ଖଲ୍ୱିଦଂ ବ୍ରହ୍ମ' ସବୁଠାରେ ସେହି ଅଖଣ୍ଡୈକ ବିଦ୍ୟମାନ । ସେ କିଛି ବୁଝେ କିନ୍ତୁ ସନ୍ତୁଷ୍ଟ ହୁଏ ନାହିଁ । ସକଳଘଟେ ନାରାୟଣ ଦେଖିବା କଣ ସହଜ । ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ । ସେ ପଚାରେ ଏଇଟା ତର୍କ, ତତ୍ତ୍ୱ ବୁଦ୍ଧି ପାଇଁ ସିନା କଥା, କିନ୍ତୁ କେଉଁଠି ନିର୍ଦ୍ଦିଷ୍ଟ କରି କହନ୍ତୁ । ଏ ଅପରିମେୟ ଜଡ଼ଚେତନ ଭିତରେ ସେ କେଉଁଠି ? ଗୁରୁ କରୁଣା ପରବଶ ହୋଇ ମାର୍ଗ ନିର୍ଦ୍ଦେଶ କରନ୍ତି - ତୁମକୁ କ'ଣ ସବୁଠୁ ବେଶୀ ଭଲଲାଗେ ? କେଉଁଠି ତୁମର ଆଶ୍ଚର୍ଯ୍ୟାନୁଭବ ହୁଏ ? ବିରାଟ ଗଛଟାଏ ଦେଖିଲେ କିମ୍ବା ହିମାଳୟକୁ ଦେଖିଲେ ବିମୂଢ଼ଭାବ ଆସୁଛି ? ଫୁଲଟାଏ ଦେଖିଲେ ମଧ୍ୟ ସେହି ପରି ଭିତରେ ବିସ୍ମୟ ସୃଷ୍ଟି ହେଉଛି ? କିନ୍ତୁ ସେତିକିରେ ଯଦି ଅନୁଭବ ସରିଯାଉଛି, କେବଳ ସୌନ୍ଦର୍ଯ୍ୟ ବୋଧରେ ରହିଯାଉଛି ତେବେ ତାହାକେବଳ Aesthetics । କିନ୍ତୁ ଏଇଠି ଆଉ ପାଦେ ଆଗେଇ ପାରିଲେ ତାହା ଆଧ୍ୟାତ୍ମିକ ସୀମାସ୍ପର୍ଶ କରିବ । ହିମାଳୟ ଦେଖି ଚିତ୍ତବୃତ୍ତି ଦ୍ରବୀଭୂତ ହେଲା । ସେଇଠି ସେଇ ଅବସ୍ଥାରେ ଅନୁଭବ କରିବାକୁହେବ - ଏଇ ବିଶାଳ ପର୍ବତ ରୂପରେ ଆପଣ ପ୍ରକଟିତ ହୋଇଛନ୍ତି, ଏ ଫୁଟିଲା ପଦ୍ମଟି ତା'ହେଲେ ଆପଣ, ଏ ବିରାଟ ବଟବୃକ୍ଷ, ଆକାଶ, ପବନ, ସୂର୍ଯ୍ୟ ଇତ୍ୟାଦି ଇତ୍ୟାଦି । ଅର୍ଥାତ୍ ଯେଉଁ ଯେଉଁ ସ୍ଥଳରେ ଆଶ୍ଚର୍ଯ୍ୟାନୁଭୂତି ଆସୁଛି, ସେଇଠି ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିବାର ଚେଷ୍ଟା ହିଁ ଆଧ୍ୟାତ୍ମିକ ସାଧନା - ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନମ୍ । ଏ ଧାରାରେ 'ବାସୁଦେବଃ ସର୍ବମିତି' ସ୍ତରକୁ ପହଞ୍ଚି ହେବ । କିନ୍ତୁ ପ୍ରଥମେ ଏଇ ବିଭୂତି ଆବିଷ୍କାର କରିବାକୁ ହେବ, ତା'ପରେ ବିଶ୍ୱରୂପ ।



**୨୯-୧୦-୮୩**

ନିନ୍ଦା ପ୍ରଶଂସା ସହ ଜଡ଼ିତ ହେବାର କାରଣ କିଛି ନାହିଁ । ନିଷ୍ଠାର ସହିତ ନିଜ ଶକ୍ତି ଅନୁସାରେ କାର୍ଯ୍ୟଟିଏ କରିବାପରେ ତା'ର ଯାହା ପ୍ରତିକ୍ରିୟା ହେଲା, ତାକୁ ବିଚାରକୁ ନେବା ଅର୍ଥ ଫଳାଭିସନ୍ଧିକୁ ସ୍ୱୀକାର

କରିବା । ପ୍ରକୃତରେ ଆମେ ଯେଉଁ ଧାରାରେ କାର୍ଯ୍ୟକରୁ, ତାହା ଗୋଟିଏ ରେଖା, ଅନ୍ୟମାନେ ଯାହା କରନ୍ତି ସେଗୁଡ଼ିକ ପ୍ରତ୍ୟେକେ ସ୍ୱତନ୍ତ୍ର ସମାନ୍ତର ରେଖା । ଯେ ନିନ୍ଦାକରେ, ସେ ତାହା ହିଁ କରେ, ଯେ ପ୍ରଶଂସାକରେ ସେ ତାହାହିଁ କରେ । ଏଣୁ ସେମାନେ ତାଙ୍କ ଧର୍ମରକ୍ଷା କଲାବେଳେ ନିଜେ ବିଚଳିତ ହେବାର କିଛି କାରଣ ନାହିଁ । ନିନ୍ଦା ଉତ୍ତେଜିତ କରେ, ପ୍ରଶଂସା ଉତ୍ସାହିତ କରେ । କିନ୍ତୁ ଭିତରେ ଏପରି ଏକ ସ୍ଥିତିକୁ ଆସ୍ତେ ଅନୁଭବ କରିବାକୁ ହେବ ଯାହା କୌଣସି ପରିସ୍ଥିତିରେ ବିଚଳିତ ହୁଏନାହିଁ । ଖୁବ୍ ଶୀତଳ ସ୍ଥିର କେନ୍ଦ୍ରଟିଏ । ଶରୀର ଓ ମନ ରାଜ୍ୟରେ ଯାହାଶେଷରେ କରାଯିବା କଥା ନିଷ୍ଠାର ସହିତ, ଏକାଗ୍ରତାର ସହିତ କରାଯାଉ । କିନ୍ତୁ କାମରେ ସାଧାରଣ ଶକ୍ତି ଲାଗିଗଲାପରେ, ଆଉ ଏକ ଉଦ୍‌ବୃତ୍ତ ଅଂଶ ସେଥିରେ ସଂପୃକ୍ତ ନ ରହି ମୁକ୍ତ ରହିଥାଏ । ଯେପରି କୌଣସି କୁଣ୍ଡରେ ପାଣି ଥିଲେ ତାକୁ ଗୋଟିଏ ଦଣ୍ଡ ଦ୍ୱାରା ଭେଦକରାଯାଇପାରେ । ପାଣିର ସଂପୂର୍ଣ୍ଣ ଗଭୀରତା ମାପିସାରି ଦଣ୍ଡଟିର ଉଦ୍‌ବୃତ୍ତ ଅଂଶ ଉଭାରି ରହେ । ସେହିପରି ସଂସାରର ଯାବତୀୟ କର୍ମରେ ସବୁକାର୍ଯ୍ୟକାରୀ ବୃତ୍ତି, ମନ ଶରୀରକୁ ନିଯୁକ୍ତ କରି ସୁଦ୍ଧା ଗୋଟାଏ ଅଂଶ ସେଥିରେ ଅସଂପୃକ୍ତ ରହିପାର । ତାକୁ ଅନ୍ୟପ୍ରକାରେ ବୁଝିଲେ ସେ ହିଁ, ସାକ୍ଷୀ-ପୁରୁଷ, ନିର୍ଲିପ୍ତ ଆତ୍ମାପୁରୁଷ । ସେଇଠି ସଂଯୁକ୍ତ ହେଇ ତା'ସହିତ ଏକୀଭୂତ ହେଲେ କୌଣସି ସଂସାର ବିଷୟ ବିଶେଷ ବିଚଳିତ କରିବାର ଆଶଙ୍କା ନାହିଁ ।



## ୩୦-୧୦-୮୩

ଗୋଟିଏ ଜଡ଼ବସ୍ତୁକୁ ଗୋଟିଏ ଦିଗରୁ ଶକ୍ତି ପ୍ରୟୋଗ କରି ସେଇ ଶକ୍ତିର ଦିଗରେ ଚାଳିତ କରାଯାଇପାରେ । ଦୁଇଟି ଶକ୍ତି କାର୍ଯ୍ୟକଲେ ସେ ଉଭୟର ପରିମାଣ ଶକ୍ତିଦିଗରେ ଚାଳିତ ହୁଏ । ଏହିପରି ଅସଂଖ୍ୟ ଶକ୍ତି କାର୍ଯ୍ୟକଲେ, ସେ ପରିଶେଷରେ ଗୋଟିଏ ପରିଣାମାତ୍ମିକା ଶକ୍ତି ଦିଗରେ ଘୁଞ୍ଚିଯାଏ । ଏହାଜଡ଼ ଧର୍ମ ବା ବସ୍ତୁଧର୍ମ । କିନ୍ତୁ ପିମ୍ପୁଡ଼ିଟିକୁ ଯଦି ଟିପ ମାରି ଚାଳିତ କରାଯାଏ, ସେ କଦାପି କଳ୍ପିତ ମାର୍ଗରେ ଯିବ ନାହିଁ । ସେ ବୁଲିପଡ଼ିପାରେ । କିନ୍ତୁଯିବ ତା ନିଜ ମାର୍ଗରେ । କାରଣ ପିମ୍ପୁଡ଼ି ସଚେତନ । ସେହିପରି ଆମେ 'ବାୟୁର୍ନାବମିବାମ୍ଭସି' । ସମୁଦ୍ରରେ ପବନଚାଳିତ ଡଙ୍ଗା ପରି ବିଭିନ୍ନ କାମନାବାସନାରେ ତାଡ଼ିତ ହୋଇଥାଉ, ଯେତେବେଳେ ଯାହା ଆମକୁ ଠେଲି ଦେଲା, ସେଇଦିଗରେ ଭାସିଯାଉ । ଏହାକୁ drift କହନ୍ତି । କିନ୍ତୁ ଯେ ସଚେତନ, ତା' ଉପରେ ସଂସାରର ବିଭିନ୍ନ ଶକ୍ତି କାର୍ଯ୍ୟ କଲେ ସୁଦ୍ଧା ପରିଶେଷରେସେ ନିଜ ମାର୍ଗକୁ ହିଁ ବୁଲିଆସେ । ଲକ୍ଷ୍ୟସ୍ଥିର ଥିଲେ ହିଁ ଏହା ସମ୍ଭବ ।



## ୧-୧୧-୮୩

ବସ୍ତୁ, ବସ୍ତୁ ଭିତରେ ପ୍ରଭେଦ ନ ଆଣିଲେ ମଣିଷ ମନ କିଛି ବୁଝିପାରେ ନାହିଁ, ଏଣୁ ପ୍ରଭେଦ ଏବଂ ବୈଷମ୍ୟ ଉପରେ ଆମର ଏତେ ବେଶୀ ଗୁରୁତ୍ୱ । ସ୍ୱତନ୍ତ୍ର ବ୍ୟକ୍ତିଟିଏ ଅନ୍ୟ କାହାରି ଭଳି ହୋଇ ନଥିବାରୁ ସେ ବିଶିଷ୍ଟ ଏବଂ ଅନନ୍ୟ, ସେହିପରି ପ୍ରତ୍ୟେକ ବସ୍ତୁ ଅନନ୍ୟ ଏବଂ ସ୍ୱତନ୍ତ୍ର । ଏଭଳି ଦେଖିବା ମଣିଷ ମନର ସ୍ୱାଭାବିକ କ୍ରିୟା । ଏଥିରୁ ଅନ୍ୟ ପ୍ରତି ଆତ୍ମୀୟତା ଜାଗ୍ରତ ହୋଇପାରେ ନାହିଁ । ବରଂ ବୈଷମ୍ୟ ଉପରେ ଦୃଷ୍ଟି ଥିବାରୁ ବୈରଭାବ ଜାତ ହେବା ସ୍ୱାଭାବିକ । ଏହାର ବିପରୀତ ମଧ୍ୟ ସତ୍ୟ, ଅର୍ଥାତ୍ ମିତ୍ରତା ପାଇଁ ପରସ୍ପର ମଧ୍ୟରେ ଥିବା ସାମ୍ୟକୁ ଆବିଷ୍କାର କରିବାକୁ ହେବ । ଏଇ ସାଧାରଣ ଭୂମି ନଥିଲେ ବନ୍ଧୁତା ସମ୍ଭବ ନୁହେଁ । ସେଥିପାଇଁ ଅନ୍ୟ ପାଖରେ ବୈଷମ୍ୟ ନ ଦେଖି ନିଜ ସହିତ ସାମ୍ୟ ଲକ୍ଷ କରିବା ବିଜ୍ଞତାର ଲକ୍ଷଣ । ପ୍ରତ୍ୟେକ ବ୍ୟକ୍ତି ଏକ ଭଲମନ୍ଦର ବିଚିତ୍ର ସମାହାର । ଏଣୁ ଦୁଇଟି ବ୍ୟକ୍ତି କେବେ ଏକ ପ୍ରକାର ହୋଇପାରିବେ ନାହିଁ । କିନ୍ତୁ ଯଦି ଜଣେ ଅଧାଗ୍ଲାସ ପାଣି ଦେଖି କହେ - 'ଗ୍ଲାସ୍‌ଟି ଅଧାଖାଲି' ଏବଂ ଅନ୍ୟ ଜଣେ କହେ - 'ଗ୍ଲାସ୍‌ଟି ଅଧା ଜଳ ଭର୍ତ୍ତି' । ଅବିକଳ ସେହିଭଳି ଆମେ ପରସ୍ପରକୁ ବୁଝିବା ଉଚିତ୍ । ଜଣକୁ ଦେଖି ତାର ଆମ ସାଙ୍ଗେ ମିଶୁ ନଥିବା ହଜାରେ ବଦଗୁଣ ବଖାଣିବାର ଅର୍ଥ କିଛି ନାହିଁ ବରଂ ତାକୁ ଠିକ୍ ଭାବେ ବୁଝିଗଲେ, ସେ କାହାରି ଅନିଷ୍ଟ କରେ ନାହିଁ ବୋଲି ବିଶ୍ୱାସ ଆସିଗଲେ, ତେଣିକି ଆଉ କିଛି ଚିନ୍ତା ରହେନା ନାହିଁ ।



## ୨-୧୧-୮୩

ଅନେକ ସମୟରେ ଆମର ଅଭିଯୋଗ ହେଲା ଯେ ଆମ ଯୋଜନା ଅନୁସାରେ କିଛି ଘଟୁନାହିଁ । ଗୋଟିଏ କଥା ଆମେ କରିବାକୁ ଚାହୁଁଛୁ, କିନ୍ତୁ ହେଉଛି ଆଉ ପ୍ରକାର । ସେଥିପାଇଁ କୌଣସି କାରଣ ନ ଖୋଜି ଆମେ ଈଶ୍ୱରଙ୍କୁ ଦୋଷ ଦେଇଥାଉ । କହୁ, ଆମେ ଏତେ ଡାକିଲୁ, ଏତେ କହିଲୁ, ସେ ଶୁଣିଲେ ନାହିଁ । କି ଛାର କଥା ଆମେ ଅବା ମାଗୁଥିଲୁ, ସେତିକି ମଧ୍ୟ ହେଲା ନାହିଁ । ଅଥଚ ଅନ୍ୟମାନେ ଅଛନ୍ତି, ଯାହାଙ୍କ ଦୁଆର ମୁହଁରେ କନକଧାରା ବର୍ଷା ହେଉଛି । ଏମିତି କେତେ କ'ଣ । କିନ୍ତୁ ମୂଳ କଥାଟିକୁ ଆମେ ବୁଝିପାରୁନାହିଁ । ଆମେ ଯେତେବେଳେ କୌଣସି କାର୍ଯ୍ୟ କରୁ ତା'ସକାଶେ ଆମ ମନରେ ପ୍ରଥମେ ଇଚ୍ଛା ଜାଗରିତ ହୁଏ । ଏଇ ଇଚ୍ଛାଟି ସାଧାରଣତଃ ଅହଂକେନ୍ଦ୍ରିତ ଏବଂ କାମନା ଆଶ୍ରିତ । ନିଜେ କର୍ତ୍ତା ନିଜେ ଭୋକ୍ତା-ଏଇ ଭାବଟି ତା'ଭିତରେ ଲୁକ୍‌କାୟିତ ଥାଏ । ଅଭ୍ୟାସବଶତଃ ଈଶ୍ୱରଙ୍କୁ ଥରେ ଜଣେଇ ଦେଉ ଲାଭ ଆଶାରେ । ଏଣୁ ସେଭଳି କର୍ମହେବା ସମ୍ଭବ ନୁହେଁ । ଯଦି ସଂକଳ୍ପ ଦୃଢ଼ ଏବଂ ଶୁଦ୍ଧ, ଯଦି ସାତ୍ତ୍ୱିକ ଅଭିପ୍ସାରେ ନିଜ ଦାୟିତ୍ୱକୁ ଈଶ୍ୱରାର୍ପିତ କରାଯାଏ, ସଂକଳ୍ପର କେନ୍ଦ୍ରଶକ୍ତି ରୂପେ ସେ ସ୍ୱୟଂ କ୍ରୀୟାଶୀଳ ହୁଅନ୍ତି । ଏଣୁ ସେ କାର୍ଯ୍ୟ ବିଫଳ ହୁଏ ନାହିଁ । ଏହା କିନ୍ତୁ ସୁଦୂରପରାହତ ଆଦର୍ଶ କେବଳ । ତାହା ସହଜସାଧ୍ୟ ନୁହେଁ । ସେଭଳି ସଂକଳ୍ପ ତ କରିପାରୁ ନାହିଁ । କିନ୍ତୁ ନିଜର ଅସୁବିଧା ହେବାମାତ୍ରେ ତତ୍‌କ୍ଷଣାତ୍ ଯୁକ୍ତିକରୁ 'ଭକ୍ତ ମରି ହଜିଗଲେ

ଭଗବାନଙ୍କର କିଛିଯାଏ ଆସେ ନାହିଁ । ସେ ପ୍ରକୃତରେ ନାହାନ୍ତି । ଥିଲେ ସେ ଆସି ଆମର ଏ କାର୍ଯ୍ୟଟିକୁ କରି ଦେଉ ନାହାନ୍ତି କାହିଁକି ?' ଈଶ୍ୱରଙ୍କୁ ପ୍ରତିଥର ଏଭଳି ଆହ୍ୱାନ ଦିଆଯାଏ ନିଜକୁ ଆସି ଆମ ଇଜ୍‌ଲାସରେ ପ୍ରମାଣିତ କରିବାକୁ । କେତେଥର ସେ ଆସି ପ୍ରମାଣ ଦେଉଥିବେ । ଷାଠିଏ ବର୍ଷ ଦାମ୍ପତ୍ୟ ଭିତରେ ସ୍ତ୍ରୀର ସତୀତ୍ୱ ସହସ୍ରଥର ପ୍ରମାଣିତ ହୋଇଥିଲେ ମଧ୍ୟ ପୁଣି ପୁଣି ସେ ପ୍ରମାଣ ଆବଶ୍ୟକ କରିବା ଏବଂ ଅତୀତର ସବୁ ପ୍ରମାଣକୁ ଭୁଲିଯିବା ଭଳି ଏ କଥା । ଆମ ଜୀବନରେ ମନେପକାଇଲେ କେତେ ଯେ ସଂକଟରୁ ସେ ଆମକୁ ପାରକରି ନେଇ ଆସିଛନ୍ତି । ଅଥଚ ଏଇଥର କ'ଣ ଟିକିଏ ଅସୁବିଧା ହୋଇଗଲାବେଳେ ସାଙ୍ଗେ ସାଙ୍ଗେ ଆକ୍ଷେପ । ସବୁବେଳେ ବିଶ୍ୱାସ ମୂଳରେ ହିଁ ଆଘାତ । ସଂଶୟ ସନ୍ଦେହ ପାଖେ ପାଖେ ରହି ସାମାନ୍ୟତମ ସୁଯୋଗରେ ଅଜ୍ଞାନର ଆଢୁଆଳରେ ବିଶ୍ୱାସକୁ ଆଘାତ କରନ୍ତି । ସେ ବାରମ୍ବାର ଆମ ଜୀବନରେ ପ୍ରମାଣିତ ହୋଇସାରିଛନ୍ତି । ଏପରିକି ଆମର ସ୍ଥୂଳବୁଦ୍ଧିରେ ଦେଖି ସ୍ୱୀକାର କଲାଭଳି ପ୍ରମାଣ ଦେଇଛନ୍ତି, କିନ୍ତୁ ପୁଣି ଆମେ ତାଙ୍କୁ ଅପମାନ ଦେବାକୁ କେତେବେଳେ ପାଶ୍ଚାତ୍‌ପଦ ନୋହୁଁ । ଏଣିକି ଅନ୍ତତଃ ପ୍ରତି ପରିସ୍ଥିତିରେ ତାଙ୍କରି ଇଚ୍ଛା ପୂର୍ଣ୍ଣ ହେବାକୁ ପ୍ରାର୍ଥନା କରାଯାଉ । ଆମ ଇଚ୍ଛା ପୂର୍ଣ୍ଣ କରିବା ନ କରିବା ତାଙ୍କର ବିଚାର୍ଯ୍ୟ ନୁହେଁ ବୋଲି ବୁଝିଯିବା ଉଚିତ୍ । ଆମର ସଂକଟ ବିଷୟରେ ସେ ଆମ ଅପେକ୍ଷା ବେଶି ସଚେତନ । ଚିର ଜାଗ୍ରତ ପୁରୁଷ ସର୍ବଦା ଦେଖୁଛନ୍ତି । ଯାହା ସାମୟିକ ଭାବରେ ବିପଦ ପରି ଦେଖାଯାଏ ତାହା ହୁଏତ ଆଉ ଏକ ଉନ୍ନତତର ବ୍ୟବସ୍ଥା ପାଇଁ ପ୍ରସ୍ତୁତି ।



## ୩-୧୧-୮୩

Souls that do not aspire are God's Failure ଏକଥାଟିକୁ ଶ୍ରୀ ଅରବିନ୍ଦ କହିଛନ୍ତି । ଏଥିରେ Soul କୁ କିମ୍ବା ତାର Divinity କୁ ଅସ୍ୱୀକାର କରାଯାଉ ନାହିଁ । ବରଂ କୁହାଯାଉଛି ଯେ ଏପରି କେତେକ ଆତ୍ମା ହୁଏତ ସମ୍ଭବ ଯାହାଙ୍କର ଅଭୀପ୍ସା ନାହିଁ । 'ମମୈବାଂଶୋ ଜୀବଲୋକେ ଜୀବଭୂତଃ' ହେଉଛି ଏ ଆତ୍ମା । ଏହା ହିଁ ସେଇ ଆଦି ଚେତନାର ଅଂଶ ମାତ୍ର । ତେବେ ବିବର୍ତ୍ତନର ଧାରାରେ ପ୍ରଚ୍ଛନ୍ନ ଚେତନା କ୍ରମଶଃ ପ୍ରକଟ ହେଉଛନ୍ତି । ସେଥିପାଇଁ ଆତ୍ମା ନିଜେ Divine ହୋଇଥିଲେ ସୁଦ୍ଧା Divine life ସକାଶେ ସାଧନାର ପ୍ରୟୋଜନ ହେଉଛି । ପଦ୍ମ ଫୁଟିଲାବେଳେ ତାରି ପାଖୁଡ଼ାରେ ଯେପରି ବିକଶିତ ଏବଂ ପୂର୍ଣ୍ଣ, ଷୋଳ ପାଖୁଡ଼ାରେ ମଧ୍ୟ ସେହିପରି ବିକଶିତ ଏବଂ ପୂର୍ଣ୍ଣ । କେବଳ ପରିମାଣଗତ ପାର୍ଥକ୍ୟ ହିଁ ବିଦ୍ୟମାନ । ଶ୍ରୀ ଅରବିନ୍ଦ ଅନ୍ୟତ୍ର କହୁଛନ୍ତି ଯେ ନିଶ୍ଚେତନାର ଅତଳ ଗହ୍ୱରରୁ ଅତି କଷ୍ଟରେ ଚେତନା ମୁକୁଳି ଆସିବାକୁ ପ୍ରୟାସ କରୁଛି । ଏହି ଅବିରାମ ପ୍ରଗତିର ଭିନ୍ନ ଭିନ୍ନ ସ୍ତରରେ ଅଭିପ୍ସା ଅସ୍ପଷ୍ଟ । ଏବଂ କୌଣସି କୌଣସି ସ୍ତରରେ ତାହା ଅନୁପସ୍ଥିତ ମଧ୍ୟ ରହିପାରେ । ଜଡ଼, ପ୍ରାଣ ଏବଂ ମନ ପରେ ସଚେତନତାର ଯେଉଁ ବିକାଶ ଆମେ ଦେଖିବାକୁ ପାଉଛୁ ଅନ୍ୟ କୌଣସି ପ୍ରାଣୀ ପାଖରେ ତାହା ନାହିଁ । କିନ୍ତୁ ପ୍ରକାଶିତ ହେଉ ଅଥବା ନ ହେଉ ଆସାର ଅଭିପ୍ସା ଚିରକାଳ । ଅଭିପ୍ସା ନ କରି ଆତ୍ମା ନାହିଁ । କେବଳ ତାହା କେଉଁଠାରେ ସ୍ପଷ୍ଟ ଏବଂ

ପ୍ରକାଶିତ ଅଥଚ ଅନ୍ୟ ଠାରେ ତାହା ପ୍ରଚ୍ଛନ୍ନ । ଏଣୁ କୁହାଯାଇଛି ଯେ ଯଦି କୌଣସି ଆତ୍ମାର ଅଭିପ୍ସା ନାହିଁ - ଯାହା କି ସମ୍ଭବ ନୁହେଁ - ତେବେ ତାହା ଈଶ୍ୱରଙ୍କ ବୈଫଲ୍ୟ ତା'ମାନେ ଈଶ୍ୱରଙ୍କ ବୈଫଲ୍ୟ ବା ଆସିଲା କେଉଁଠୁ । ଶ୍ରୀ ଅରବିନ୍ଦଙ୍କ ବାକ୍ୟରେ ଈଶ୍ୱରଙ୍କ ବୈଫଲ୍ୟ ରୂପକ ଏକ ଅସମ୍ଭବ ବିକଳ୍ପ ଦ୍ୱାରା ପରୋକ୍ଷରେ କୁହାଯାଇଛି ଯେ ଅଭିପ୍ସା ନ ଥିବା ଆତ୍ମା ନାହିଁ । ଅଭିପ୍ସା ଆତ୍ମାର ସ୍ୱାଭାବିକ ସ୍ୱଧର୍ମ ।



**୬-୧୧-୮୩**

ଅଭିନୟ କଲାବେଳେ ମୂଳ ପରିଚୟ ଭୁଲି ହୋଇଯାଏ । ଭୁଲି ନହେଲେ ସେହି ପରିମାଣରେ ଅଭିନୟ ଅପିରପକ୍ୱ ଏବଂ ବିଫଳ ହେବା ସ୍ୱାଭାବିକ । କିନ୍ତୁ ଅଭିନେତା ଯଦି ତା'ର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ବିଷୟରେ ସଚେତନ ନ ରହେ କିଏ ଅଭିନୟ କରୁଛି ବୋଲି ବୁଝି ନ ପାରେ ତେବେ ଅନେକ ବିଭ୍ରାନ୍ତିର ଅବକାଶ ରହିଛି । ଜୀବନରେ ଆମେ ଅସଂଖ୍ୟ ଭୂମିକାରେ ଅଭିନୟ କରୁଛୁ ଏବଂ ଭାବୁଛୁ ଯେ ଆମେ ସେଇ ଭୂମିକାର ଚରିତ୍ର । କିନ୍ତୁ ଅଭିନେତା କିଏ ଜାଣିବାକୁ ଚାହୁଁ ନାହୁଁ । କେବଳ ଭୂମିକାକୁ ଦେଖିପାରିବା ଖଣ୍ଡିତ ଦୃଷ୍ଟି ଏବଂ ଖଣ୍ଡିତ ଜ୍ଞାନ । ତାର ଫଳସ୍ୱରୂପ ଦୁଃଖ ଶୋକ ଯନ୍ତ୍ରଣା । ରଂଗମଞ୍ଚ ଉପରର ଦୁଃଖ ଶୋକ ସହିତ ଅଭିନେତାର ସଂପର୍କ ନଥିଲେ ସୁଦ୍ଧା ସେ ଅଭିନୟ କଲାବେଳେ ତାକୁ ସତ୍ୟରୂପେ ଭୋଗ କରିଥାଏ । ଆଗରୁ ଅନେକ ଭୂମିକା ନିର୍ବାହ କରିବାକୁ ହେବ ଏବଂ ସେ ସମସ୍ତ ମିଶିଗଲେ ଆମର ଏକକ ଭୂମିକାଟି ହେଉଛି ନିର୍ବୋଧ ମଣିଷର ଭୂମିକା (The role of foolish man) ଏ ବିଷୟରେ ସଚେତନ ହେଲେ ଦୁଃଖ ଅନେକ ପରିମାଣରେ ଲାଘବ ହୋଇଯିବ । ଦୁଃଖ-ଯନ୍ତ୍ରଣାରୁ ପରମ ଆନନ୍ଦକୁ, ଅଜ୍ଞାନରୁ ଅଖଣ୍ଡଜ୍ଞାନକୁ, ଅନ୍ଧକାରରୁ ଆଲୋକକୁ ମାନବାତ୍ମାର ନିର୍ଦ୍ଧାରିତ ଗତି । ସେ ଦୃଷ୍ଟିରୁ ଅଜ୍ଞାନ ଏବଂ ଅଜ୍ଞାନର ପରିଣାମ ଭୋଗିଲେ ହିଁ ତାକୁ ଅତିକ୍ରମ କରିବାର ଅଭିପ୍ସା ଜାଗ୍ରତ ରହିବ । ଅଭିନୟ କରାଯାଉ କିନ୍ତୁ ଯଥା ସମୟରେ ଅଭିନେତାର ନିର୍ଲିପ୍ତ ଭୂମିରୁ ରଙ୍ଗମଞ୍ଚର ଦୁଃଖଶୋକକୁ ଏକ ସାହାଯ୍ୟକାରୀ ଆଧ୍ୟାତ୍ମିକ ଅନୁଭବ ରୂପେ ଗ୍ରହଣ କରିପାରିଲେ ତାର ତୀବ୍ରତା ଅନେକ ପରିମାଣରେ ଲାଘବ ହୋଇ ପାରିବ ।



**୭-୧୧-୮୩**

ବାଲି ଦେଖିଲେ ପିଲାଙ୍କର ଇଚ୍ଛାହୁଏ ଖେଳିବାକୁ । ସେଥିରେ ସେମାନେ ଘର ତୋଳନ୍ତି ବହୁ ପରିଶ୍ରମ କରି । ପୁଣି ଆଉ ଗୋଟାଏ ଖିଆଲରେ ତାକୁ ଭାଙ୍ଗି ମଧ୍ୟ ଦିଅନ୍ତି । ମୋଟ ଉପରେ ଯେତେ ସମୟ ସେମାନଙ୍କର ଅକାରଣରେ ଯାଏ ତା'ର ଫଳ କିଛି ନାହିଁ । ମଣିଷ ମନର ବ୍ୟବହାର ପ୍ରାୟ ଏଇଭଳି ।

ଏଇକ୍ଷଣେ ଖିଆଲ ହୋଇଛି ତ କୌଣସି ଗୋଟିଏ ବିଷୟ ସପକ୍ଷରେ ଖୁବ୍ ଯୁକ୍ତିକରି ତାକୁ ପ୍ରତିଷ୍ଠିତ କରିପକାଏ । କିନ୍ତୁ ପରମୁହୂର୍ତ୍ତରେ ତାକୁ ପୁଣି ଅନ୍ୟ ପକ୍ଷରୁ ଯୁକ୍ତି ପ୍ରୟୋଗ କରି ଭାଙ୍ଗିପକାଏ । ଏପରି ଚାଲିଥାଏ । ସେଥିପାଇଁ କୌଣସି ନିଶ୍ଚିତ ଅଗ୍ରଗତି ସମ୍ଭବ ହୁଏ ନାହିଁ କିମ୍ବା କୌଣସି କାର୍ଯ୍ୟ ନିଷ୍ପନ୍ନ ହୁଏନାହିଁ । ମନ ପାଇଁ ଆଉ ଗୋଟିଏ ତୁଳନା କଥା କୁହାଯାଇଛି । ମନ ଗୋଟିଏ ଖୁବ୍ ବଡ଼ ସିଦ୍ଧ ପୁରୁଷ ଥିଲା, ସେ ତପସ୍ୟା କରି ଭଗବାନଙ୍କୁ ସନ୍ତୁଷ୍ଟ କରିବାରୁ ସେ ଆସି ତାକୁ ବର ଯାଚିଲେ । ସେ ବର ମାଗିଲା ଯେ ଭଗବାନ୍ ତାର ଭୃତ୍ୟ ହୁଅନ୍ତୁ । ଭଗବାନ ଉତ୍ତର ଦେଲେ "ଆଚ୍ଛା ମୁଁ ତୋ ଭୃତ୍ୟ ହେବି, କିନ୍ତୁ କାମ କରି କରି ମୋର ଏମିତି ଅଭ୍ୟାସ ହୋଇଯାଇଛି ଯେ ମୁଁ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ବସି ରହି ପାରବି ନାହିଁ । ମୋତେ ଅହରହ କାମ ଯୋଗେଇ ପାରିଲେ ମୁଁ ତୋର ଭୃତ୍ୟ ହେବି" । ସିଦ୍ଧ ଭାବିଲା "ଓ, ଏଇ କଥା, ଏଥିରେ ଅସୁବିଧା କଣ ? ମୁଁ ରାଜି ।" ଭଗବାନ କହିଲେ – "କିନ୍ତୁ ଗୋଟିଏ ସର୍ତ୍ତ । ଯଦି ମୁହୂର୍ତ୍ତେ ତୁ କାମ ଯୋଗେଇ ପାରିବୁ ନାହିଁ ତା'ହେଲେ ତୁ ମୋର ଭୃତ୍ୟ ହେବୁ ।" ସିଦ୍ଧ କହିଲା – "ଅସ୍ତୁ" । ତା'ପରେ ସେ ଆରମ୍ଭ କଲା । "ଅମୁକ ପାହାଡ଼କୁ ଟେକି ଆଣ, ସମୁକ ସମୁଦ୍ରକୁ ଶୁଖାଇଦେ ଇତ୍ୟାଦି । ଯେତେ ଦୁରୁହ କାର୍ଯ୍ୟ ହେଲେ ସୁଦ୍ଧା ତା ତୁଣ୍ଡରୁ ଆଦେଶ ବାହାରୁ ବାହାରୁ ସେ କାର୍ଯ୍ୟ ହୋଇଗଲା । ସେ ଅନେକ ଦିନ ପ୍ରତି ମୁହୂର୍ତ୍ତରେ ଆଦେଶ ଦେଇ ଦେଇ କ୍ଳାନ୍ତ ହୋଇପଡ଼ିଲା ଏବଂ ମୁହୂର୍ତ୍ତେ ତୁନି ପଡ଼ିଗଲା । ଭଗବାନ୍ କହିଲେ 'ହେଇ ଚୁକ୍ତି ଅନୁସାରେ ବର୍ତ୍ତମାନ ତୁ ମୋର ଭୃତ୍ୟ ହେବୁ । ସିଦ୍ଧ କହିଲା, "ଠିକ୍ ମୁଁ ମଧ୍ୟ ଗୋଟାଏ ମୁହୂର୍ତ୍ତ ବସିବି ନାହିଁ ।" ଭଗବାନ୍ ଅଳ୍ପ ହସି କହିଲେ, ଠିକ୍ ଅଛି, ତୋର ପ୍ରଥମ କାମ ହେଲା ପୃଥିବୀର ସବୁଠାରୁ ବଡ଼ ବାଉଁଶ କାଟି ନେଇଆସ । ଗୋଟାଏ ମୁହୂର୍ତ୍ତରେ ସେ ନେଇ ଆସିଲା । ପୁଣି ଆଦେଶ ପାଇ ପୋତିଦେଲା । ବାଉଁଶକୁ ଚିକ୍କଣ କରିଦେଲା । ତା'ପରେ ଆଦେଶ ହେଲା, "ଯା ଉପରକୁ ଚଢ଼ି ଯା ଓହ୍ଲେଇ ଆ । ପୁଣି ଚଢ଼ିଯା, ଓହ୍ଲେଇ ଆ – ଏହିପରି କରୁଥା, ମୁଁ ଅନ୍ୟ ଆଦେଶ ନ ଦେଲାଯାଏ ।" ଏହି କାର୍ଯ୍ୟ ସେ ଅତି ପରାକ୍ରମଶାଳୀ ସିଦ୍ଧ ଶକ୍ତି ଏଯାଏଁ କରି ଚାଲିଛି ଏବଂ ତାହା ହେଉଛି ମଣିଷର ମନ । ସେ ସଦା ଚଞ୍ଚଳ ଏବଂ ନିଜକୁ ନିଜେ ବିରୋଧ କରୁଥିବାରୁ ନିଷ୍ଫଳ ପ୍ରୟାସୀ ।



## ୮-୧୧-୮୩

ନୂଆ ପହଁରା ଶିଖିଲାବେଳେ ପିଲାଟିଏ ତୁଠ ପଥରରେ ହାତ ରଖି କେବଳ ଗୋଡ଼କୁ ପାଣିରେ ପିଟୁଥାଏ । ଭାବୁଥାଏ ଯେ ସେ ପହଁରୁଛି । ଆସ୍ତେ ଆସ୍ତେ ସେ ପାଣି ପ୍ରତି ଆକୃଷ୍ଟ ହୁଏ, ପାଣି ସହିତ ଅଭ୍ୟସ୍ତ ହୁଏ ଏବଂ ସବୁଦିନ କିଛି କିଛି ଅଧିକ ପ୍ରୟାସ କରି କିଛି କିଛି ଅଧିକ ବାଟ ପହଁରିଯାଏ । ପରିଶେଷରେ ତା'ର ଶକ୍ତି ବୃଦ୍ଧି ପାଇ ସେ ଆର କୂଳକୁ ପହଞ୍ଚିଯାଏ । ସାଧନା ମଧ୍ୟ ଠିକ୍ ସେହିପରି । ପ୍ରଥମେ ଅନ୍ୟ ସାଧକଙ୍କୁ ଦେଖି ତାଙ୍କ ଭଳି ବାହ୍ୟ ଆଚରଣ କରିଥାଏ । ସକାଳୁ ଗାଧୋଇବା, ଧ୍ୟାନ ମନ୍ଦିରକୁ ଆସିବା, ଧୂପ ଜାଳିବା, ଆଖିବୁଜି ବସିବା । ପିଲାଳିଆ ସାଧକ ଏତିକିରେ ଭାବିଥାଏ ଯେ ତା'ର ସାଧନା ଠିକ୍ ଚାଲିଛି । ବେଳେ

ବେଳେ ସେ କହିବାର ଶୁଣାଯାଏ ଯେ ସେ 'କାଠିଏ' ଧ୍ୟାନ କରୁଛି । ଅର୍ଥାତ୍ ଗୋଟିଏ ଧୂପକାଠି ଜଳିସାରିବା ପର୍ଯ୍ୟନ୍ତ ଆଖିବୁଜି ବସି ରହୁଛି । ଏହା ପିଲାଳିଆମି । ଧ୍ୟାନ ଧାରଣାରେ ମଣିଷ ଯାହା, ଭୂମି ଛାଡ଼ି ପାଣି ଭଳି ଆଉ ଏକ ଉପାଦାନରେପହଁରିବା ତାହା । ତା'ର ବିସ୍ତାର, ତା'ର ଗଭୀରତା, ତା'ର ଧର୍ମ ଆଚରଣକୁ ଚିହ୍ନିବାକୁ ହେବ । ଜଣେ ଯଦି କେବଳ ତୁଠ ପଥରକୁ ଧରି ଗୋଡ଼ ପିଟୁଥାଏ, ସେ ସାରାଜୀବନ ବିତିଗଲେ ମଧ୍ୟ ପହଁରିବା କ'ଣ ଜାଣି ପାରିବ ନାହିଁ । ସେହିପରି ସକାଳୁ ଉଠି ଗାଧୁଆପାଧୁଆ କରି ଆଖି ବୁଜିବା କେବଳ ଗୋଟାଏ ଅର୍ଥହୀନ ଶାରୀରିକ ଶ୍ରମହୋଇ ରହିଯିବ Just a foolish physical exercise ଧ୍ୟାନ କିପରି କରିବାକୁ ହୁଏ ସେଥିପାଇଁ ନାନା ପ୍ରକାର ଉପଦେଶ ରହିଛି । ଖୁବ୍ ଜଟିଳ ଧାରା, ଉପଧାରା ବିଷୟ କୁହାଯାଇଛି । ବୌଦ୍ଧମାନେ ଧ୍ୟାନ ଉପରେ କେତେକ ଗବେଷଣା କରିଛନ୍ତି ଏବଂ ତଦବିଷୟକ ଗ୍ରନ୍ଥ ବର୍ତ୍ତମାନ ବୁଝିବା କଠିନ । ଏବେ ଅତିନ୍ଦ୍ରିୟ ଧ୍ୟାନ (Transcendental Meditation) ଅଷ୍ଟାଙ୍ଗଯୋଗର ଷଷ୍ଠ ଅଙ୍ଗଠାରୁ ଅନେକ ଭିନ୍ନ । (ସମଂ କାୟ ଶିରୋଗ୍ରୀବଂ ଧାରୟନ୍ନଚଳଂ ସ୍ଥିରମ୍, ସଂପ୍ରେକ୍ଷ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ) କାୟାଗ୍ରୀବା ଏବଂ ଶିରକୁ ସରଳରେଖାରେ ସ୍ଥିର ଅଚଞ୍ଚଳ ଧାରଣ କରି ନାସାଗ୍ରରେ ଦୃଷ୍ଟି ନିବଦ୍ଧ କରି ଧ୍ୟାନ କରିବାକୁ ଗୀତା କହୁଛନ୍ତି – କିନ୍ତୁ ଏ ତ କେବଳ ବହିରଙ୍ଗ । ଅନ୍ତରଙ୍ଗ ବିଷୟ କ'ଣ ? କିପରି ଧ୍ୟାନ କରାଯିବ ? ଧ୍ୟାନ କ୍ରିୟାଟି କ'ଣ, ଅନେକଙ୍କ ମତରେ ଧ୍ୟାନ ହେଉଛି ଗୋଟାଏ relaxation । ଶରୀରକୁ, ପ୍ରାଣକୁ, ମନକୁ ଆବେଗଶୂନ୍ୟ, କ୍ରିୟାଶୂନ୍ୟ କରିବାକୁ ପଡ଼ିବ । ମନକୁ ଶାନ୍ତ ସ୍ଥିର କରିଦେବାକୁ ପଡ଼ିବ । ଆଖି ବୁଜିବା ଦ୍ୱାରା ଯଦି ଚଳଚ୍ଚିତ୍ର ପରି ନାନାବିଧ ରୂପ ଦେଖାଯାଉଛି ଏବଂ ଚଞ୍ଚଳ ହେଉଛି ବରଂ ଆଖି ଖୋଲି ରଖିବା ଉଚିତ୍ । କାରଣ ସ୍ଥୂଳବସ୍ତୁ ଆପାତତଃ ସ୍ଥିର ଥିବାରୁ ସେଥିରେରୂପର ବ୍ୟଭିଚାର ନାହିଁ । ଏଣୁ ଧ୍ୟେୟ ଗୁରୁ ବା ଇଷ୍ଟ ଦେବତା ବିଗ୍ରହ ଅଥବା ଚିତ୍ର ଉପରେ ଦୃଷ୍ଟି ସ୍ଥିର ରଖି ମନର ବିକ୍ଷେପକୁ ଆୟତ୍ତ କରାଯାଏ । ତାପରେ ଆଖି ବୁଜିଲେ ଯଦି ଚିନ୍ତା ଶୂନ୍ୟ, ପ୍ରଶାନ୍ତ ବ୍ୟାପ୍ତି ଅନୁଭବ ହେଉଛି ତା'ହେଲେ ସେଇଠି ଧ୍ୟାନର ଆରମ୍ଭ । ଯଦି ନିହାତି କିଛି ସମୟ ଚିନ୍ତା କରିବାକୁ ହେଉଛି ତେବେ ମା'ଙ୍କୁ କେନ୍ଦ୍ର କରି ଚିନ୍ତା କରାଯାଇପାରେ । ସେଥିରେ ସାହାଯ୍ୟ ମିଳେ । କିନ୍ତୁ ତାହା ମଧ୍ୟ ଏକପ୍ରକାରର ଚଳଚ୍ଚିତ୍ର । ଏଣୁ ମୁଣ୍ଡ ଉପରୁ ଗୋଟିଏ ଶୀତଳ ବିଶାଳ ଜ୍ୟୋତି ଅବତରଣ କରି ଭିତରେ ପ୍ରବେଶ କରୁଛି ଏଇ ଅନୁଭବ ଆଣିବାକୁ ହେବ । ତାପରେ ହୃତକେନ୍ଦ୍ର ଗଭୀରତା ଭିତରେ ନିଶ୍ଚଳ, ସ୍ଥିର ମାତ୍ର ଶୀତଳ ଘନ ନୀରବତା ଅନୁଭବ କରିହେବ । ଶ୍ରୀମା ଏହାକୁ ପ୍ରକାଶ କରିବାକୁ କହୁଛନ୍ତି । O, it was solid so solid ଏହାର ସାଧାରଣ ଅର୍ଥ କିଛି ନୁହେଁ । କିନ୍ତୁ ସେ ଅନୁଭବକୁ ପ୍ରକାଶ କରିବାକୁ ଅନ୍ୟ ଶବ୍ଦ ନାହିଁ । ସାଧନାବସ୍ଥାରେ ଦେହ ମନ ପ୍ରାଣ ଶୁଦ୍ଧ ସ୍ନାନ କଲାପରେ ନୂତନ ଶକ୍ତିରେ ପ୍ରାଣବନ୍ତ ହୋଇଯାଆନ୍ତି । ଧ୍ୟାନର ଆକର୍ଷଣ ଏପରି ଯେ ଥରେ ତା'ର ସ୍ପର୍ଶ ପାଇଗଲେ ବାରମ୍ବାର ସେଇଠି ବୁଡ଼ିଯିବାକୁ ଇଚ୍ଛାହୁଏ । ତେବେ ଅହରହ ଅଧିକରୁ ଅଧିକ ପ୍ରୟାସର ପ୍ରୟୋଜନ । ନୂତନ ରାଜ୍ୟରେ ଅନବରତ ଅଗ୍ରସର ହୋଇ ଚାଲିଥିବା ହିଁ ସାଧନା । କେବଳ ତୁଠ ପଥରରେ ହାତରଖି ପାଣିରେଗୋଡ଼ ପିଟୁଥିବା ଭଳି ଅନୁଭବର କିଛି ଅର୍ଥ ନାହିଁ ।



## ୧୦-୧୧-୮୩

ସାଧନାରେ ହେଉ ଅଥବା ଜୀବନରେ ହେଉ, ମୁଖ୍ୟତଃ ଏକାକୀ ହିଁ ଯିବାକୁ ହୋଇଥାଏ । ଅନ୍ୟମାନଙ୍କର ଉପଦେଶ, ବକ୍ତୃତା, ଆଲୋଚନା ନିଶ୍ଚୟ କିଛି ସାହାଯ୍ୟ କରେ । କିନ୍ତୁ ପ୍ରକୃତ ସାଧନାଟି ନିଜେ ହିଁ କରିବାକୁ ହୁଏ । ସେଥିରେ ମା'ଙ୍କ ବ୍ୟତିରେକ ଆଉ କେହି ପାଖରେ ନ ଥା'ନ୍ତି । ଏଣୁ ନିଜର ଅନୁଭବକୁ ନିଜେ ବୁଝି ତାର ଗୁଣ ଏବଂ ମାନ ନିର୍ଣ୍ଣୟ କରି ତେଣିକି ତା'ର କିଭଳି ସଂଶୋଧନ ହେବ ଆହୁରି କ୍ରମୋନ୍ନତି ହେବ ସେଥିପାଇଁ ଯତ୍ନବାନ ହେବାକୁ ପଡ଼ିବ । ଏକାକୀ ହୋଇଗଲେ ସାଧାରଣତଃ ଦୁର୍ବଳବୋଧ ହୁଏ, ଭୟ ଲାଗେ । କିନ୍ତୁ ଆତ୍ମାର ଏକାକୀତ୍ୱ ଏକ ଚୂଡ଼ାନ୍ତ ସତ୍ୟ । ସେଠାରେ ଭୟର ଲେଶ ନାହିଁ । ନୈରାଶ୍ୟ ବିଫଳତାବୋଧର ଢ଼େର ଉଚ୍ଚରେ ସେ ଏକାକୀ ଅନୁଭବ । ବରଂ ବିଭିନ୍ନ ପ୍ରକାର ସଂପର୍କର ବାଡ଼ ଡେଇଁ ସେଇ ମୌଳିକ ସତ୍ୟ ପାଖରେ ପହଞ୍ଚିବା ହିଁ ସାଧନାର ଏକ ପର୍ଯ୍ୟାୟ । ବୁଝିଯିବାକୁ ହେବ ଯେ ନିଶ୍ଚେତନ କିମ୍ବା ନିମ୍ନଚେତନ ପ୍ରାଣୀଙ୍କ ଭଳି ମଣିଷର ବିବର୍ତ୍ତନ ପାଇଁ ଆଉ ଜାଗତିକ ମହାଶକ୍ତି ଦାୟୀ ନୁହଁନ୍ତି । ମଣିଷ ପାଇଁ ସେ ସ୍ୱୟଂ ଦାୟୀ । ସେ ନିଜେ ଦାୟିତ୍ୱ ସ୍ୱୀକାର କରିବାକୁ ପଡ଼ିବ, ନିଜେ ନିଜକୁ ଉତ୍ତୋଳିତ କରି ଧରି ରଖିବାକୁ ପଡ଼ିବ । ସେଥିରେ ହିଁ ଭାଗବତୀ ଶକ୍ତି ଯଥାବିଧି କାର୍ଯ୍ୟ କରିବେ - ବ୍ୟକ୍ତିଗତ ଦାୟିତ୍ୱ ବ୍ୟତିରେକ ସାଧନା ବ୍ୟାହତ ହେବାର ସମ୍ଭାବନା ଅନେକ ।



## ୧୧-୧୧-୮୩

ବ୍ଲଟିଂ କାଗଜରେ କୌଣସି ରଂଗରେ ସ୍ୟାହି ଟୋପାଏ ପଡ଼ିଗଲେ ସେ ଶୋଷିନିଏ । ସେ ଦାଗ ପୋଛିବାର ନୁହେଁ କାରଣ ତାହା ଏପାଖ ସେପାଖ ଭେଦିଯାଏ । କିନ୍ତୁ ବ୍ଲଟିଂ କାଗଜଟିକୁ ଆମେ ନିର୍ବିଚାରରେ ଏହି ପ୍ରକାର ସ୍ୟାହି ଶୋଷିବାରେ ବ୍ୟବହାର କରିଥାଉ । ଫଳରେ ଏହି ତୃଷାର୍ତ୍ତ କାଗଜଟି ବିବିଧ ବର୍ଣ୍ଣର ଏକ ଅନିର୍ଦ୍ଦିଷ୍ଟ ଚରିତ୍ର ବହନ କରେ । ଆମ ମନ ସେହିପରି, ଚେତନା ସେହିପରି । ଯଦି ବାଛ ବିଚାର ନ କରି ଆମେ ତା ଉପରେ ବିଭିନ୍ନ ରଙ୍ଗ ମଡ଼େଇ ଦେଉ, ତାହା ହୋଇଯିବ ବୈଶିଷ୍ଟ୍ୟହୀନ, ବ୍ୟକ୍ତିତ୍ୱହୀନ ଗୋଟାଏ କିଂଭୂତ ବସ୍ତୁ । ଆମ ପାଖକୁ ଆସୁଥିବା ଅନେକ ପ୍ରକାର ଲୋକଙ୍କ ଭିତରୁ କେତେକଙ୍କୁ ଆମେ ଦାଣ୍ଡଦୁଆରୁ ବିଦାୟ କରିଦେଉ । ଆଉ କେତକଙ୍କୁ ପାଖ ପିଣ୍ଡାରୁ, କେତେକଙ୍କୁ ବୈଠକ ଘରୁ ଏବଂ ଆଉ କେତେକଙ୍କୁ ଶୋଇବାଘର ପର୍ଯ୍ୟନ୍ତ ଅନୁମତି ଦେଉ । କ୍ୱଚିତ୍ କାହାକୁ ଠାକୁର ଘର ଭିତରକୁ ପଶିବାକୁ ଦେଇଥାଉ । ଏହିପରି ନକରି ଯଦି ସବୁ ସାହାଣ ମେଲା କରିଦିଆଯାଏ, ତେବେ ଠାକୁରଘରେ କୁକୁର ପଶିଯିବାର ଆଶଙ୍କା ଅଛି । ସଂସାରର ସଂଘାତ ଅସଂଖ୍ୟ । ଅହରହ ଏମାନଙ୍କର ତାଡ଼ନା ଆସି ଲାଗୁଥାଏ କିନ୍ତୁ କେନ୍ଦ୍ର ଅବିଚଳିତ ଏବଂ ଅସ୍ପୃଷ୍ଟ ରହିବା ଉଚିତ୍ । ସବୁଠାରୁ ବିଚିତ୍ର କଥା ହେଲା ଯେ ଆମର ଶତ୍ରୁପକ୍ଷ ବିଷୟରେ ଅସୁବିଧା ହୁଏନାହିଁ, କିନ୍ତୁ ଛଦ୍ମବେଶୀ ମିତ୍ରକୁ ନେଇ ସବୁପ୍ରକାର ଗଣ୍ଡଗୋଳ । ଠାକୁରଙ୍କ ସଂକ୍ରାନ୍ତୀୟରୁ ଗୁରୁଙ୍କ

ସଂକ୍ରାନ୍ତୀୟ ଅବାନ୍ତର ଦୂଷିତ ଚିନ୍ତା ପଶିଯାଇ ଭିତରର ସ୍ଥିରତା ଏବଂ ଶୁଚିତାକୁ ଦୂଷିତ, ବିଚଳିତ କରିପକାନ୍ତି । ଏଣୁ ସାବଧାନ ରହି ଖୁବ୍ ପରୀକ୍ଷା କରିନେବାକୁ ହେବ । ପରୀକ୍ଷା କଲେ ହିଁ ବେଳେ ବେଳେ ସ୍ୱୀକୃତି ପାଇ ସେମାନେ ପଶିଆସନ୍ତି । ସବୁଆଡ଼କୁ ଜଗି ଅନ୍ତରର ଠାକୁର ଘରଟିକୁ ଯଥାସମ୍ଭବ ନିର୍ମଳ ଏବଂ ସ୍ଥିର ରଖିବାକୁ ପଡ଼ିବ ।



## ୧୪-୧୧-୮୩

କୌଣସି ଉତ୍ତମ ବାକ୍ୟଟିଏ କେଉଁଠି ହୁଏତ ଆସିଛି, ଠିକ୍ ମନେ ପଡୁନାହିଁ । ତାକୁ ମନେ ନପକାଇ ମଧ୍ୟ ରହି ହେଉନାହିଁ । ଏଣୁ ଖୋଜା ଚାଲିଛି । ବିବିଧ ଗ୍ରନ୍ଥ ଭିତରେ ସେ ବାକ୍ୟ ଲୁଚି ରହିଛି, କିନ୍ତୁ ମିଳୁନାହିଁ । ଏ ଗୋଟାଏ ପ୍ରକାର ପରିସ୍ଥିତି । ଆଉ ଗୋଟିଏ ପରିସ୍ଥିତି ହେଲା ଯେ ପ୍ରଥମ ଗ୍ରନ୍ଥଟିକୁ ଫିଟାଉ ଫିଟାଉ ସେହି ପୃଷ୍ଠାର ପ୍ରଥମ ବାକ୍ୟଟି ହେଉଛି ସେଇ ଚିର ପ୍ରତ୍ୟାଶିତ ବାକ୍ୟ । ଏଥିରେ ସମୟ ଶ୍ରମ ଏବଂ ସୌଭାଗ୍ୟର ତାରତମ୍ୟ ଥିଲେ ସୁଦ୍ଧା ବାକ୍ୟଟି ହଜିବା ଏବଂ ତାକୁ ଖୋଜିବା କଥାଟି ଉଭୟ କ୍ଷେତ୍ରରେ ସମାନ । ଆମ ଜୀବନରେ ରହି ଭୁଲିଯାଇଥିବା ପରମ ସତ୍ୟଟିକୁ ସଂସାରର ଅତି ବିସ୍ତୃତ ଗ୍ରନ୍ଥରୁ ଖୋଜି ବାହାର କରିବା ଅତୀବ କଷ୍ଟକର । ତାକୁ ମନେପକାଇ ପାରିଲେ ସ୍ମୃତି ଲାଭ ହୁଏ । ସ୍ମୃତି ଲାଭ ହେବା ଅର୍ଥ ତତ୍ତ୍ୱଜ୍ଞାନର ଉଦୟ ହେବା । ସ୍ମୃତିର୍ଲବ୍ଧା ତ୍ୱତ୍ ପ୍ରସାଦତ୍ ମୟାଚ୍ୟୁତ । ବିଷ୍ଣୁ ପ୍ରସାଦରୁ ସ୍ମୃତି ଲାଭହୁଏ ।



## ୧୫-୧୧-୮୩

ମଞ୍ଜିଟିଏ ମାଟିରେ ପକେଇ ଦେଇଥିବା ବ୍ୟକ୍ତି ଭାବେ ସେ ସେଥିରୁ ବର୍ଦ୍ଧିତ ବୃକ୍ଷର ଫଳ ପାଇଁ ସେହିଁ କେବଳ ଦାୟୀ । ବୀଜ ପକେଇବା ପାଇଁ ଏ ସାମାନ୍ୟ ମାଧ୍ୟମଟିକୁ ଏତେ ବଡ଼ ଦାୟିତ୍ୱ ଦେବା ହାସ୍ୟାସ୍ପଦ, କାରଣ କ୍ଷିତି ଆପ ବାୟୁ ସବିତାମାନଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯାହାପାଇଁ ବୀଜ ଅଙ୍କୁରିତ ହୁଏ, ପଲ୍ଲବିତ ପୁଷ୍ପିତ ହୁଏ ଏବଂ ପରିଶେଷରେ ଫଳଦାନ କରେ । ଏଣୁ ଯେକୌଣସି କାର୍ଯ୍ୟରେ ଅତି ବିସ୍ତୃତ ଭୂମିରେ ଅସଂଖ୍ୟ ଶକ୍ତି ନିଯୁକ୍ତ ହୁଅନ୍ତି । ତନ୍ମଧ୍ୟରୁ ବ୍ୟକ୍ତିଟିର ଭୂମିକା ଅତି ସାମାନ୍ୟ ।



## ୨୨-୧୧-୮୩

ଥରେ ଦୁଇ ବନ୍ଧୁ ସନ୍ଧ୍ୟାବେଳେ ଯାଉଥିଲେ । ବାଟରେ ଗୋଟିଏ ଛକରେ ସଂକୀର୍ତ୍ତନ ଚାଲିଥାଏ । ଜଣେ କହିଲା - ଚାଲ ଏଇଠି ମିଶି କୀର୍ତ୍ତନ କରିବା । ଆର ଜଣକ ତାକୁ କ୍ଷମା ମାଗିନେଇ କହିଲା - ଦେଖ ଭାଇ । ମୁଁ ତୋ ଭଳି ପୁଣ୍ୟାତ୍ମା ନୁହେଁ । ମୋର ଏଇଠି ମନ ନାହିଁ । ଆର ଛକ ଉପରେ ମୋର ଗୋଟିଏ ନାରୀ ବନ୍ଧୁ ଅଛି । ମୁଁ ତା ପାଖକୁ ଯାଉଛି - କାଲି ଗୁରୁଙ୍କ ମଠରେ ଦେଖା ହେବ । ଏତିକି କହି ସେ ଚାଲିଯିବାରୁ ପ୍ରଥମ ଜଣକ ତା ସକାଶେ ଖୁବ୍ ଦୁଃଖ ପ୍ରକାଶ କଲା ଏବଂ କୀର୍ତ୍ତନରେମିଶିଲା । ମଝିରେ ମଝିରେ ସେ ଅନ୍ୟମନସ୍କ ହୋଇ ତା' ବନ୍ଧୁକଥା ଭାବୁଥାଏ । ତା'ପରଦିନ ଗୁରୁଙ୍କ ପାଖରେ ଦୁହେଁ ଯାଇ ପହଞ୍ଚିଲେ । ଗୁରୁ ଦ୍ୱିତୀୟ ଶିଷ୍ୟଟିକୁ ଟିକିଏ ବେଶୀ ଆଦର କରିବାର ଲକ୍ଷ୍ୟକରି ପ୍ରଥମ ଶିଷ୍ୟ କିଛି ବୁଝିପାରିଲା ନାହିଁ । ଶେଷରେ ସୁବିଧା ଦେଖି ସେ ଗୁରଙ୍କ ପାଖରେ ଅଭିଯୋଗ କଲା - "ଗୁରୁଦେବ, ଗତକାଲି ସେ ରାତିସାରା ନାରୀ ସଂସର୍ଗ କରିଛି । ମୁଁ ନାମ ସଂକୀର୍ତ୍ତନ କରିଛି । ଅଥଚ ଆପଣ ମତେ ଜମା ଚାହୁଁ ନାହାନ୍ତି । ତା ଉପରେ ସବୁ ଆଦର ଅଜାଡ଼ି ଦେଉଛନ୍ତି । ଗୁରୁ ଅଳ୍ପହସି ତା ମୁହଁକୁ ଚାହିଁଲେ - କହିଲେ, "ଠିକ୍ କଥା, ବାହ୍ୟତଃ ତୁ ସଂକୀର୍ତ୍ତନ କରିଥିଲୁ ଏବଂ ସେ ନାରୀ ସଂସର୍ଗରେ ଥିଲା । କିନ୍ତୁ ତୋ ମନ କେଉଁଠି ଥିଲା ? ତୁ କେବଳ ତୋ ବନ୍ଧୁ କଥା କଳ୍ପନା କରୁଥିଲୁ । ମନେ ମନେ ତୁ ହିଁ ନାରୀ ସଂସର୍ଗରେ ଥିଲୁ । ସେ ମଧ୍ୟ ସେହିପରି, ତୋ କଥା, କୀର୍ତ୍ତନ କଥା ଭାବୁଥିଲା । ଏଣୁ କାଲି ସେ ଶରୀର ଅଶୁଦ୍ଧ ଥାଇସୁଦ୍ଧା ମନ ଶୁଦ୍ଧ ରଖିଥିବାରୁ ସବୁ ପୁଣ୍ୟ ତା'ର ।" ସେହିପରି କୌଣସି ପୁଣ୍ୟ ଧାମକୁ ଅଗତ୍ୟା ଆସି ନ ପାରିଲେ ସୁଦ୍ଧା ମନ ଧ୍ୟାନରେ ସେଇକଥା ଚିନ୍ତା କରିବା ହିଁ ଯଥେଷ୍ଟ । ସେହିପରି ମାନସିକ ତୀର୍ଥ କରାଯାଏ । ସେହିପରି ମାନସିକ ପୂଜା କରାଯାଏ । ଫଳ ସମାନ ।



## ୨୩-୧୧-୮୩

ଦେବୀଙ୍କ ପାଖରେ ଜଣେ ଭକ୍ତ ଆଖିବୁଜି ପ୍ରାର୍ଥନା କଲାପରେ ଦେଖିଲା ଯେ ପୂଜକ ତାକୁ କ'ଣ ଦେଉଛନ୍ତି । ସେ ନିର୍ବିଚାରରେ ତାହା ଗ୍ରହଣ କରି ଚାଲିଗଲା । ଆଉଜଣେ କିନ୍ତୁ ସେଇ ପରିସ୍ଥିତିରେ ମୁଠା ଫିଟେଇ ଦେଖିଲା - ଦେବୀଙ୍କ ବେଲପତ୍ର ପ୍ରସାଦ ଜାଣି ତାକୁନେଇ ବାହାରିଗଲା । ତୃତୀୟ ଜଣେ କିନ୍ତୁ ମନେ ମନେ ଚାହିଁଲା ଦେବୀଙ୍କ ଧଣାମାଳର ଫୁଲ ପଦକରୁ ଗୋଟାଏ ଫୁଲ ଯଦି ପୂଜକ ଦିଅନ୍ତେ କିନ୍ତୁ ତାହା ସେ ନ ପାଇ ଆଉ କ'ଣ ପାଇବାକୁ ଇଚ୍ଛା ପ୍ରକାଶ ନ କରି ଚାଲିଗଲା ।

ଏ ତିନିହେଁ କ'ଣ ପାଇଲେ ? ସ୍ଥୂଳ ଦୃଷ୍ଟିରେ ପ୍ରଥମଟି ପାଇଲା କିଛି ବିଶ୍ୱାସ । ସେ ଜମା ପ୍ରଶ୍ନ କରୁନାହିଁ, ଆପତ୍ତି କରୁନାହିଁ, କାମନା କରୁନାହିଁ । ଯାହା ପାଇଛି ତାହା ତା ସକାଶେ କୋଟିନିଧି । ଦ୍ୱିତୀୟଟି ପାଇଲା କିଛି ସନ୍ତୋଷ । ଯାହେଉ ମା'ଙ୍କ ପ୍ରସାଦ କିଛି ମିଳିଗଲା । କିନ୍ତୁ ତୃତୀୟ ଜଣକ ପାଇଁ କେବଳ

ହତାଶା । ତତ୍ତ୍ୱତଃ ଦେଖିଲେ କିନ୍ତୁ କେହି କିଛି ପାଇଲେ ନାହିଁ । କାରଣ ପାଇବା ନ ପାଇବା ଏ କ୍ଷେତ୍ରରେ ସେପରି କିଛି ସାଧାରଣ ଭୌତିକ ବିଚାର ନୁହେଁ । ଆରାଧ୍ୟ କ'ଣ ଦିଅନ୍ତି ବା ନ ଦିଅନ୍ତି ତାହା ସେ କେବଳ ତା'ର ପ୍ରତ୍ୟକ୍ଷ ଅନୁଭବରୁ ଜାଣିପାରିବ । ଅଧିକାଂଶ ସମୟରେ ସେ ଯାହା ଦିଅନ୍ତି ଆଶାତୀତଭାବରେ ମହାର୍ଘ ଏବଂ ମହାନ । କିନ୍ତୁ ବେଳେ ବେଳେ ତାହା ଏତେ ଆବୃତ ଅବସ୍ଥାରେ ଆସେ ଯେ ଆମେ ତାକୁ ହିଁ ସତ୍ୟ ବୋଲି ଧରିନେଉ, ଖୁବ୍ କୁଣ୍ଠାରେ । ପୂଜକ କ'ଣ ଦେଲା ନ ଦେଲା ତାହା କେବଳ ବାହ୍ୟ ବିଚାର ।



## ୨୪-୧୧-୮୩

ଶତ୍ରୁପକ୍ଷ ଯେତେବେଳେ ଘେରିଯାନ୍ତି ସେତେବେଳେ ଦୁଇ ପ୍ରକାର ଚିନ୍ତା ଆସେ । ଗୋଟିଏ ହେଲା ଯେ ମୁଁ ଯଦି ପ୍ରଭୁ ପାଖରେ ସମର୍ପିତ ମୋତେ ଏପରି ବିପତ୍ତିରେ କାହିଁକି ପକାଗଲା ଏବଂ ଯଦି ପକାଗଲା ସେ ନିଜେ କାହାନ୍ତି ? ସେ କ'ଣ ମୋତେ ଛାଡ଼ିଗଲେ ? ଅନ୍ୟ ଚିନ୍ତାଟି ହେଲା ଯେ ଏ ବେଶ୍ ଶୁଭ ଲକ୍ଷଣ । ବୋଧହୁଏ ସାଧନାରେ ନୂତନ ସମାର୍ଥ୍ୟ କିଛି ପ୍ରକାଶ ପାଇବାରୁ କିଛି ନୂଆ ରାଜ୍ୟ ଜୟ କରିଯିବାରୁ ଶତ୍ରୁପକ୍ଷ ସଜାଗ ହୋଇ ବିରୋଧ କଲେଣି । ନିଜେ ଯାହା ବିଭିନ୍ନ କାରଣରୁ ଜାଣିହୁଏ ନାହିଁ, ତାହା ଶତ୍ରୁର ଆଚରଣରୁ ଜାଣିହୁଏ ଉଭୟ ଚିନ୍ତା ସ୍ୱାଭାବିକ ଏବଂ ଯଥାର୍ଥ । ପ୍ରଥମଟିରେ ସାଧାରଣ ନାକ କାନ୍ଦୁରା ଭକ୍ତଟିଏ, ପିଲାଳିଆ କଟାଳ କରୁଛି ଭଗବାନଙ୍କ ପାଖରେ । ବେଳେ ବେଳେ ତାର ଆଚରଣ ଭାରି ଆପତ୍ତିଜନକ । ସେ ପଦେ ପଦେ ଭଗବାନଙ୍କର ପ୍ରମାଣ ଚାହୁଁଥାଏ, ତାଙ୍କ କରୁଣାର ପ୍ରମାଣ ଚାହୁଁଥାଏ । ଜୀବନରେ ଗୋଟିଏ ପ୍ରମାଣ ପାଇଥିଲେ ସନ୍ତୁଷ୍ଟ ଏବଂ କୃତଜ୍ଞ ହୋଇଯିବା ଉଚିତ୍ । ଆଉ ପ୍ରମାଣ କ'ଣ ? ସେ ତ ଅଛନ୍ତି ଏବଂ ବାହୁ ବେଢ଼େଇ ରଖିଛନ୍ତି ଏଥିରେ ସନ୍ଦେହ କରିବାର ଅର୍ଥ କ'ଣ ? ଏ ଜାଣି ସେଇ ଅବିଶ୍ୱାସୀ ସ୍ୱାମୀର ଆଚରଣ । ସେ ଅତି ସୁନ୍ଦରୀ ସ୍ତ୍ରୀଟିକୁ ବିବାହ କଲା ପରେ ତାକୁ ଆଜୀବନ ସନ୍ଦେହ କରୁଥାଏ, ପ୍ରମାଣ ଚାହୁଁଥାଏ ସେ ସ୍ତ୍ରୀଟି ପତିବ୍ରତା କି ନୁହେଁ, ଭାରି ଅବିଶ୍ୱାସୀ, କ୍ଷୁଦ୍ରଚେତା, ଛୋଟ ମଣିଷଟିଏ ଏପରି ବ୍ୟବହାର କରିଥାଏ । ସେହିପରି ମା'ଙ୍କ କରୁଣା । ଯଦି ବିଶ୍ୱାସ କରିଛ, ଯଦି ଏକାନ୍ତ ଭାବେ ବର୍ଷ ବର୍ଷ ଧରି ଭାବିଛ, ତେବେ ସ୍ମରଣ କର କେତେ ସହସ୍ରଥର ସେ ରକ୍ଷା ନ କରିଛନ୍ତି, ହାତଧରି ବାଟ କଢ଼େଇ ନ ନେଇଛନ୍ତି, ବିପଦ ବାରଣ ନ କରିଛନ୍ତି, ସଂକଟ ମୋଚନ ନ କରିଛନ୍ତି । କିନ୍ତୁ ସେ ଗଲା କଥା ଗଲା, ଏବେ ପୁଣି ଆସି ସେ ତାଙ୍କ ପ୍ରମାଣ ଦେବେ କେବଳ ତମରି କଥାରେ ? ଛୋଟ ଛୋଟ ବାରମ୍ବାର ଅଶୁଦ୍ଧ ଚିନ୍ତା ପୂରଣ ହେବା ପାଇଁ ସେ ଆସି ଉଭା ହେବେ କାହିଁକି ? ବରଂ ବିଶ୍ୱାସ ଦୃଢ଼ କରି କହିବାକୁ ହେବ 'ମା' ଢ଼େର ଦେଇଛୁ, ଢ଼େର ପାଇଛି, ମୋତେ ପ୍ରତି ପଲକପାତରେ ଆବୋରି ରଖିଛୁ । ଯଦି ଶତ୍ରୁ ଆସିଛନ୍ତି, ଆସନ୍ତୁ । ମୁଁ ଧୈର୍ଯ୍ୟର ସହିତ ଅବିଚଳିତ ମୋର ସ୍ୱଧର୍ମ ରକ୍ଷା କରିବି ଏବଂ ଏହା ଧ୍ରୁବ ସତ୍ୟ ଯେ ତୁମେ ମୋ ସହିତ ମିଶି ସଂଗ୍ରାମ କରିବ ଏବଂ ତୁମର ହିଁ ବିଜୟ ସୁନିଶ୍ଚିତ । ମା'ଙ୍କର ଜୟ ହେଉ ।



## ୨୭-୧୧-୮୩

ତନ୍ତୀ ଲୁଗା ବୁଣିବା ଆଗରୁ ଲମ୍ବା ସୂତାଗୁଡ଼ିକୁ ଟାଣିରଖେ । ସୂତାଗୁଡ଼ିକ ସ୍ୱତନ୍ତ୍ର କିନ୍ତୁ ସଂଲଗ୍ନ । କୌଣସିଟିକୁ କାଢ଼ି ନେବାର କିମ୍ବା କୌଣସି ନୂଆ ଖିଅଟିଏ ତା ଭିତରେ ପୂରେଇ ଦେବାର ଉପାୟ ନାହିଁ । ତା'ପରେ ତନ୍ତରେ ପକାଇ ତାକୁ ସେ ଭରଣି କରେ । କଣ୍ଟାକୁ ବାଁରୁ ଡାହାଣକୁ ଡାହାଣରୁ ବାଁକୁ ଚଳାଇ ସେ ଲୁଗାର ବର୍ଣ୍ଣ, ଚିତ୍ର ଓ ତାର ବୁଣେଇ ସ୍ଥିର କରେ । ଏ ଲମ୍ବା ସୂତାଗୁଡ଼ିକ ଆମ ଜୀବନରେ ଏବଂ ସ୍ୱାଭାବିକ ଅଲଂଘ୍ୟତା । ଯଥା ଆମର ପିତା ମାତା କୂଳ, ଦେଶ, କାଳ । ଏଥିରୁ କାହା ଉପରେ ଆମର ଆୟତ୍ତ ନାହିଁ । ସେମାନଙ୍କୁ ସ୍ୱୀକାର କରି କେବଳ ନିଜ ପ୍ରୟାସରେ ଭରଣି ସୂତାଦ୍ୱାରା ଜୀବନର ମୂଲ୍ୟବୃଦ୍ଧି ବା ହ୍ରାସ କରାଯାଇ ପାରେ । ସେଗୁଡ଼ିକ ଆମର ଚରିତ୍ର ଏବଂ ବ୍ୟକ୍ତିତ୍ୱ ସ୍ଥିର କରିବାରେ ଅପରିହାର୍ଯ୍ୟ ହେଲେ ସୁଦ୍ଧା ସ୍ୱାଧୀନ ବିକାଶ ପାଇଁ ବେଳେ ବେଳେ ପ୍ରତିବନ୍ଧକ ରୂପେ ଠିଆ ହୋଇଯାନ୍ତି । ତାକୁ ଯଥାସମ୍ଭବ ଉପଯୋଗ କରିବା ହିଁ ବିଜ୍ଞତା । ଏ ବୟନ କାର୍ଯ୍ୟରେ ତେବେ କୃପା କିପରି କାର୍ଯ୍ୟକରେ ? କୃପା ଏ ସମଗ୍ର ସୂତାର ତନ୍ତୁଗୁଡ଼ିକୁ ରେଶମୀ କରି ଦେଇପାରେ । ଜାଲ ପରି ସୂକ୍ଷ୍ମ ଏବଂକୋମଳ କରିଦେଇ ପାରେ । ଜୀବନର ସାମଗ୍ରିକ ମାନ ଏବଂ ମୂଲ୍ୟ ପରିବର୍ତ୍ତିତ ରୂପାନ୍ତରିତ କରିଦେଇ ପାରେ । କିନ୍ତୁ ବୁଣିବା ପାଇଁ ଆଡ଼େଣି ଏବଂ ଭରଣି ସୂତାର ପ୍ରୟୋଜନ ସର୍ବଦା ରହିଥାଏ । ସେଥିରେ ଅନ୍ୟଥା ହୁଏ ନାହିଁ ।



## ୨୮-୧୧-୮୩

ସୋରାଏ ଜମି ପାଇଁ ଦୁଇ ପଡ଼ୋଶୀ ଭିତରେ କଳିତକରାଳ ମାଲିମକଦ୍ଦମା ହୋଇଥାଏ । କିନ୍ତୁ ସାଧାରଣ ବୁଦ୍ଧିରେ ମଧ୍ୟ ବୁଝିହୁଏ ଯେ ସେ ଜାଗାଟିକ ପୃଥିବୀ ପୃଷ୍ଠରେକେଉଁ ଅନନ୍ତକାଳରୁ ରହି ଆସିଛି ଏବଂ ଅନନ୍ତକାଳ ଯାଏ ରହିଥିବ । ଏ ଝଗଡ଼ୁଥିବା ପଡ଼ୋଶୀ ଦୁଇଟି ଯେମିତି ଆସିଛନ୍ତି ସେମିତି ଯିବେ । ସେ ଜମି ଯାର ନୁହେଁ କି ତା'ର ନୁହେଁ । କେବଳ ଜମି ପାଇଁ ନୁହେଁ, ଯାବତୀୟ ଭୌତିକ ବସ୍ତୁ ପାଇଁ ତାକୁ ଅଧିକାର କରି ସାମୟିକ ଭାବରେ ନିଜର ବୋଲି ଜାହିର କରିବାକୁ ମଣିଷର କି ଆକୁଳତା । ବସ୍ତୁ ଜଗତ ଭଳି ଭାବଜଗତ, ଚିନ୍ତାଜଗତରେ ମଧ୍ୟ ସେହିଭଳି ବ୍ୟବହାର, ସେହିଭଳି ଅଧିକାର-ପ୍ରବଣତା ରହିଛି । ଅପରକୁ ଦୁଃଖ ଦେଇ ତାକୁ ବଞ୍ଚିତ କରି, ବିଚ୍ୟୁତ କରି ତା'ଠାରୁ ବଳାତ୍କାରକରି ଛଡ଼େଇ ଆଣି ଭୋଗ କରିବାର ପ୍ରବୃତ୍ତି ପଶୁଠାରେ ବିଦ୍ୟମାନ । ସେଇ ପ୍ରବଣତା ମଣିଷ ପାଖରେ ମଧ୍ୟ ଅବିକୃତଭାବେ ରହିଛି । କେବଳ ବୁଦ୍ଧି, ବିବେକ ବିଚାର ଦ୍ୱାରା ସେ ସାମାନ୍ୟ ନିୟନ୍ତ୍ରିତ ହେବା ଶିଖୁଛି । ଏହା ହିଁ ସ୍ୱତନ୍ତ୍ର ବ୍ୟକ୍ତିଚେତନାର ମୌଳିକ ପ୍ରାଣ-ବୃତ୍ତି । ନିଜ ପର ଭେଦ ଜ୍ଞାନ ଉପରେ ଏ ଜଡ଼ ନିଶ୍ଚେତନ ଜଗତରେ ସେ ଗୋଟିଏ ବ୍ୟକ୍ତିକୁ ବଞ୍ଚିବାରେ ସାହାଯ୍ୟ କରେ । ଅଧିକାର କରିବା ଦ୍ୱାରା ନିଜକୁ ସେ ପ୍ରତିପାଦିତ କରୁଥାଏ । ଏ ଅଧିକାର କରିବାର ପଶ୍ଚାତ୍‌ରେ ଆଉ ଗୋଟିଏ କ୍ରିୟା ବଡ଼ ବିଚିତ୍ରଭାବରେ ଚାଲିଥାଏ । ତାହାହେଲା ଆନନ୍ଦ ପାଇଁ

ଆକର୍ଷଣ । ସେ ପ୍ରକୃତରେ ଆନନ୍ଦ ପାଇବାକୁ ଏତେ କଥା କରୁଥାଏ । ସେ ଖାଏ ଖୁଆଏ, ମରେ ମାରେ କିମ୍ବା ମରାଏ, ଅଧିକାର କରେ ଅଥବା ଅଧିକୃତ ହୁଏ । ସବୁଥିରେ କେମିତି ଆନନ୍ଦ ପାଇବା ପାଇଁ ତା'ର ଗୋଟିଏ ପ୍ରବଣତା କାର୍ଯ୍ୟ କରୁଥାଏ । ସେ ସ୍ତରରେ ଚେତନା ବିକାଶ ଲାଭକରି ନ ଥିବାରୁ ପ୍ରମାଦ ଏବଂ ଅସତ୍ୟାଦି ଦୋଷ ସେଥିରେ ଲାଗିଥାଏ । ଏ ପର୍ଯ୍ୟାୟରେ ମଣିଷ ପାଇଁ ଏ ଚେତନା ମହାଜାଗତିକ ନିୟମରେ ଅପରିହାର୍ଯ୍ୟ । ଏଥିରୁ କିନ୍ତୁ ସେ ଅବଶ୍ୟ ମୁକୁଳିବ । ଯେତେବେଳେ ବ୍ୟକ୍ତି ବିସ୍ତୃତ ହୋଇ ବିଶ୍ୱରେ ପରିଣତ ହେବ, Individual Universal ହୋଇଯିବ, ସେତେବେଳେ ପ୍ରାଣିକ ଅହଂରୁ ସେ ମାର୍ଜିତ ସଂଶୋଧିତ ହୋଇ ସତ୍ୟାଭିମୁଖୀ ହୋଇଯିବ ଏବଂ ସତ୍ୟରେଲୀନ ହୋଇଯିବ । ଯେପରି ଟୋପାଏ କାଳି ହାତରେ ଲାଗେ କିନ୍ତୁ ବାଲ୍‌ଟିଏ ପାଣିରେ ମିଶେଇ ଦେଲେ ଲାଗେ ବା ନ ଲାଗେ କିନ୍ତୁ ଥାଏ । ଅଥଚ ତାକୁ ପ୍ରଶାନ୍ତ ମହାସାଗରରେ ପକାଇଦେଲେ ସେଇଠି ସେ ଅନନ୍ତ ବ୍ୟାପ୍ତି ଭିତରେ ସତ୍ତାହୀନ ହୋଇଯାଏ, ସେହିପରି ନିଜ ପର ଭେଦଭାବକୁ ଉତ୍ତୀର୍ଣ୍ଣ ହୋଇଗଲେ ଜମି ସୋରାକ ପାଇଁ ଦୁଇଟି ପଡ଼ୋଶୀ କଳିଆ କରିବା ଅବାନ୍ତର, ହାସ୍ୟାସ୍ପଦ ଏବଂ ଅସମ୍ଭବ ।



**୨୯-୧୧-୮୩**

ପ୍ରଚଣ୍ଡ ଖରାଦିନେ ସବୁ ନଦୀ ନାଳ ଶୁଖିଗଲା ବେଳେ ଗଙ୍ଗାରେ ବନ୍ୟା ଆସେ । ସାଧାରଣ ବର୍ଷାଦିନେ ତ ବନ୍ୟା ଆସେ, ଯେମିତି ଅନ୍ୟ ନଈରେ ଆସେ । କିନ୍ତୁ ଅନ୍ୟଆଡ଼େ ଘୋର ଜଳାଭାବ ପଡ଼ିଗଲା ବେଳେ ଗଙ୍ଗା ଉଚ୍ଛୁଳା ବୋହୁଥାଏ । ହିମାଦ୍ରି ଗାତ୍ରରେ ବହୁ କାଳରୁ ସଞ୍ଚିତ ତପସ୍ୟା ସତେ ବା କରୁଣାରେ ବିଗଳିତ ହୋଇ ଗଙ୍ଗାଧାରକୁ ପରିପୁଷ୍ଟ କରେ । ସଜ୍ଜନମାନେ ଜୀବନରେ ସାଧାରଣ ସ୍ନେହ ମମତା ମୈତ୍ରୀ ସଂପର୍କରେ ଉତ୍‌ଫୁଲ୍ଲ ହୁଅନ୍ତି ଅନ୍ୟମାନଙ୍କ ପରି । କାରଣ ବର୍ଷାକାଳରେ ବାରିପାତ ମଧ୍ୟ କରୁଣା । ତାହା ନଥିଲେ ନଦୀ ସମ୍ଭବ ନୁହେଁ । ଜୀବନ ସମ୍ଭବ ନୁହେଁ । କିନ୍ତୁ ଯେତେବେଳେ ସବୁ ଆଡୁ ଏ ସ୍ୱାଭାବିକ ଉଜ୍ଜୀବକ ସ୍ପନ୍ଦନ କମିଯାଏ, "ଜୀବନ ଯଖନ ଶୁକାଏ ଯାଏ ।" ସେତେବେଳେ ସେମାନେ ଆଉ ଏକ ନିଭୃତ କେନ୍ଦ୍ରରୁ କରୁଣା ଲାଭ କରି ପ୍ରଫୁଲ୍ଲିତ ହୁଅନ୍ତି । ସୁଖପାଇଁ ତ' ସଂସାର ଉପାଦାନ ଯୋଗାଏ । ସେ ଉପାଦାନରେ ଅକୃପଣ ବିଭୁକୃପା ବିତରିତ ହେଉଥାଏ ସମସ୍ତଙ୍କ ପାଇଁ କିନ୍ତୁ ପ୍ରଗାଢ଼ ଦୁଃଖ ଏବଂ ସଂକଟ କାଳରେ କେବଳ ସମର୍ପିତ ଆଶ୍ରିତ ଏବଂ ଯୁକ୍ତ ପୁରୁଷମାନେ ଆଉ ଏକ ଶୁଦ୍ଧ ଭୂମିରୁ କରୁଣା ଲାଭ କରିଥାନ୍ତି । ଖରାଦିନେ କେବଳ ଗଙ୍ଗାରେ ହିଁ ବନ୍ୟା ଆସିପାରେ । ଦୁଃଖର ରୁଦ୍ରତାପରେ ଯେଉଁମାନେ ଦୁଇକୂଳ ଖାଇ ଭରପୁର ବହି ଯାଇପାରନ୍ତି ସେମାନଙ୍କର ଯୋଗସୂତ୍ର ଉତ୍ତୁଙ୍ଗ ହିମାଦ୍ରିରେ । ସେଇମାନେ ଗଙ୍ଗାଧାର ସଦୃଶ ନିଭୃତରେ ପରିପୁଷ୍ଟ ସାଧୁ ପୁରୁଷ ।



## ୩୦-୧୧-୮୩

ଜଣେ ଓଦା ସରସର ମଣିଷ ଯେତେ ଚେଷ୍ଟାକରି ପୋଛିଲେ ସୁଦ୍ଧା କୌଣସି ଜିନିଷକୁ ଶୁଖାଇ ପାରିବ ନାହିଁ, କାରଣ ପୋଛିବା ଦ୍ୱାରା ହିଁ ସେ ନିଜେ ଓଦା କରୁଥାଏ । ଯଦି ମୋ ଭିତରେ ମୁଁ ଅଜ୍ଞାନ ନେଇ ଆସିଛି, ମୋ ଭିତରେ ମୂଳତଃ ଯଦି ରୋଗ ଜରା ମୃତ୍ୟୁର ବୀଜ ପୋତିହୋଇ ରହିଛି, ମୁଁ ଯାହା କଲେସୁଦ୍ଧା ସେସବୁ, ଏ ସଂସାରରୁ କଦାପି ଲୋପ ପାଇ ପାରିବ ନାହିଁ । ଯଦି ଲୁଗାଟିକୁ ସଂପୂର୍ଣ୍ଣରୂପେ ବଦଳାଇ ଦିଆଯାଏ ତେଣିକି ସେ ଯେଉଁଆଡ଼େ ଗଲେ ମଧ୍ୟ ଆଉ ଓଦା ହେବନାହିଁ । ଏଣୁ ପୋଛିବାର ମଧ୍ୟ ପ୍ରୟୋଜନ ହେବ ନାହିଁ । ସେହିପରି ଏଯାଏଁ ପୃଥିବୀରେ ଯେତେସବୁ ନୈତିକ ଏବଂ ଧାର୍ମିକ ନିର୍ଦ୍ଦେଶ କରାଗଲା ସେଥିରେ ଏ ମୌଳିକ ସମସ୍ୟାଟିର ସମାଧାନ ହୋଇ ପାରିଲା ନାହିଁ, କାରଣ ତାର ମୂଳ କେହି ଠଉରେଇ ପାରି ନଥିଲେ । ଶ୍ରୀ ଅରବିନ୍ଦ ତାକୁ ନିରୂପଣ କରି କହୁଛନ୍ତି, ସେ ନିଶ୍ଚେତନା ଭିତରେ ହିଁ ଶୁଭାଶୁଭ (Good & Evil) ଉଭୟ ସଂଯୁକ୍ତ ହୋଇ ରହିଛି । ମଣିଷକୁ ସ୍ୱତନ୍ତ୍ର ସତ୍ତାରେ ବଞ୍ଚିବା ପାଇଁ ସେ ଯେଉଁ ଖଣ୍ଡିତ ଚେତନା ପାଇଛି, ସେଥିରେ ଜ୍ଞାନ ଅଜ୍ଞାନ ମିଶ୍ରିତ ହୋଇ ରହିଛି । ସେଥିରୁ, ଭ୍ରମ, ସେଥିରୁ ଅନୃତ ଏବଂ ସେଥିରୁ ଅଶୁଭ (Evil) ପ୍ରକଟିତ ହୁଏ । ଏହାର ଏକମାତ୍ର ସମାଧାନ ହେଉଛି ଚେତନାର ରୂପାନ୍ତର । କିନ୍ତୁ ଏ କଠିନ କାର୍ଯ୍ୟ ପାଇଁ ଯେଉଁ ସର୍ବପ୍ରଥମ ନିର୍ଦ୍ଦେଶ ସେ ଦେଉଛନ୍ତି, ତାହା ହେଲା ନିଜର ଆତ୍ମାକୁ ଆବିଷ୍କାର କର । ଏଥିରେ ଅସୁବିଧା ହେଉଛି ଆବିଷ୍କାର କରିବା । ସେ କ'ଣ ଆତ୍ମାଠାରୁ ଭିନ୍ନ ଅନ୍ୟ କିଛି ? ତା'ଠିକ୍ ନୁହେଁ । ଆମେ ବର୍ତ୍ତମାନ ନିଜର ସ୍ୱତନ୍ତ୍ର ବ୍ୟକ୍ତି ସତ୍ତାରେ ଅହଂଦ୍ୱାରା ଆବୃତ୍ତ ହୋଇ ରହିଛୁ । ଦେହାତ୍ମପ୍ରତ୍ୟୟ ଅବିଦ୍ୟା-ସେହିପରି ମନପ୍ରାଣ ଅହଂକାର ଇତ୍ୟାଦି ମଧ୍ୟ ଆତ୍ମା ନୁହେଁ । ଏ ସମସ୍ତ ଆତ୍ମା ସ୍ୱୟଂ ଭେଦକରି ନିଜକୁ ନିଜେ ଆବିଷ୍କାର କରନ୍ତି । ଉଦାହରଣ ସ୍ୱରୂପ ଶୀତଦିନେ ପ୍ରସ୍ତ ପ୍ରସ୍ତ ପୋଷାକ ରେଜେଇ କମ୍ବଳ ଭିତରେ ଜଣେ ଶୋଇଛନ୍ତି । ନିଜକୁ ନିଜେ ସ୍ପର୍ଶ କରିବାକୁ ତାଙ୍କୁ ଏ ଆବରଣ ସବୁ ଗୋଟିଏ ଗୋଟିଏ କରି କାଢ଼ିବାକୁ ପଡ଼ିବ । ପରିଶେଷରେ ନିଜର ସଂପୂର୍ଣ୍ଣ ନିରାବରଣ ସତ୍ତାକୁ ଅନୁଭବ କରି ସେ କହିବ ଯେ ମୁଁ ଏବେ ନିଜକୁ ଆବିଷ୍କାର କଲି । ଅତି ସ୍ଥୂଳ ଭାବରେ ଆତ୍ମାର ଆବିଷ୍କାର ଏହିପରି । କିନ୍ତୁ ଏତ ସହଜ ନୁହେଁ । ଶରୀରକୁ ଅନାତ୍ମା ବୋଲି ପ୍ରଥମେ ଜାଣିବାକୁହେଲେ ଶରୀରକୁ ପୂର୍ଣ୍ଣରୂପେ ବୁଝିବାକୁ ହେବ । ଯାହାର ଆକାର ବର୍ଣ୍ଣ ଦିଶୁଚି ତା ପଶ୍ଚାତ୍‌ରେ ଆହୁରି ଅନେକ ଶାରୀରିକ ସତ୍ୟ ସବୁ ରହିଛି, ତାକୁ ଜାଣିବାକୁ ହେବ । ତା'ଠାରୁ କଠିନ ମନ ଓ ପ୍ରାଣକୁ ଜାଣିବା । ଏ ସମସ୍ତକୁ ଜାଣି ଏମାନଙ୍କୁ ଉତ୍ତୀର୍ଣ୍ଣ ହେବାପରେ ଆତ୍ମଦର୍ଶନ ସମ୍ଭବ । ଅତଏବ ରୂପାନ୍ତରର ସର୍ବପ୍ରଥମ ସୋପାନ ରୂପେ ଯାହା ଶ୍ରୀଅରବିନ୍ଦ କହିଛନ୍ତି, ତାର ଦୁରୂହତା ଦୃଷ୍ଟିରୁ ସମଗ୍ର ଯୋଜନାର ଦୂରଧିଗମ୍ୟତା କିଛି କିଛି ଅନୁଭବ କରିବା କଥା ।



## ୩-୧୨-୮୩

ଆଧ୍ୟାତ୍ମିକ ସାଧନା ମୁଖ୍ୟତଃ ବ୍ୟକ୍ତିଗତ ଏକାକୀ ପ୍ରୟାସ । ଅନ୍ୟ ସହିତ ମିଶିପାରିଲେ ଭଲ, ଅଧିକନ୍ତୁ ନ ଦୋଷାୟ ରୀତିରେ । କିନ୍ତୁ ବେଳେବେଳେ ସେହିପରି ସୋଦର ଆତ୍ମାଟିଏ ସହସାଧକରୂପେ ମିଳିଗଲେ

ସାଧନା ଦ୍ରୁତତର ହୁଏ । ସେଭଳି ଯଦି ନ ମିଳିଲା ଯାହାକୁ ମନ ତାହାକୁ ସାଙ୍ଗରେ ଯୋଡ଼ିଧରି ହଇରାଣ ହୋଇ କିଛି ଅର୍ଥ ନାହିଁ । ପ୍ରତ୍ୟେକ ବ୍ୟକ୍ତି ସ୍ୱତନ୍ତ୍ରଭାବରେ ଭଗବାନଙ୍କ ପାଖରେ ଦାୟୀ । ସେ ଯାହା କରିବେ, ଭଗବାନଙ୍କ ସହିତ ତା ନିଜର ବୁଝାମଣା ଉପରେ ନିର୍ଭର କରି କରିବ । ତା'ର କଣ ହେଲା ନ ହେଲା ସେହି କେବଳ ଜାଣି ପାରିବ । ଏ ପୃଥିବୀରେ ଦ୍ୱିତୀୟ ବ୍ୟକ୍ତି ଆଉ କେହି ନାହିଁ ଯେ ତା ଭିତରର ମୁହୂର୍ତ୍ତ ମୁହୂର୍ତ୍ତର ଅନୁଭବକୁ ବୁଝିପାରିବ । ଯଦି ଆଉ କେହି ଜଣେ ନ ଥିଲେ ସାଧନା ହୋଇପାରୁନାହିଁ, ତା'ହେଲେ ଜଣାଗଲା ଯେ ଈଶ୍ୱରଙ୍କଠାରୁ ଏ ବ୍ୟକ୍ତିଜଣକ ଉପରେ ସାଧନା ବେଶୀ ନିର୍ଭରଶୀଳ । ଏହା ଆଧ୍ୟାତ୍ମିକତାର ଅନୁକୂଳ ନିଶ୍ଚୟ ନୁହେଁ । ବରଂ ଯଦି କେହି ନ ମିଳୁଛନ୍ତି - ଏକାକୀ ନିଜ ରାସ୍ତାରେ ଚାଲିବା ଅନେକ ଭଲ । "ଯଦି ତୋର ସାଥେ କେଉଁ ନାଆୟ ତୋ ଏକଲା ଚଲୋରେ" । ଏହା ହିଁ ସଂକଳ୍ପବଦ୍ଧ ଆଧ୍ୟାତ୍ମ ସାଧନାର ଲକ୍ଷ୍ୟ ।



**୪-୧୨-୮୩**

ସମଗ୍ର ସଂସାର ମନକୈନ୍ଦ୍ରିକ ଏବଂ ମନ ସର୍ବସ୍ୱ କହିବା ଯାହା ଏ ବିଶ୍ୱବ୍ରହ୍ମାଣ୍ଡ ବସ୍ତୁମାତ୍ର କହିବା ତାହା । ଉଭୟ ଆଂଶିକ ସତ୍ୟ, ଏଣୁ ପରିଣାମତଃ ମିଥ୍ୟା । ଏପରି କେତେଗୁଡ଼ିଏ ସୂକ୍ଷ୍ମ ମାନସିକ ଅନୁଭବ ଏବଂ ସତ୍ୟତା ଅଛି ଯାହା ସ୍ଥୁଳ ଇନ୍ଦ୍ରିୟ ଅନୁଭବର ଜଗତରେ ବ୍ୟକ୍ତହେବା ସମ୍ଭବ ନୁହେଁ । ସେଗୁଡ଼ିକ ବସ୍ତୁ ଜଗତ ଭଳି ସତ୍ୟ । କିନ୍ତୁ ତାକୁ ସ୍ୱୀକାର କରିବାକୁ ଯାଇ ଯଦି ଏ ଦୃଶ୍ୟମାନ ଜଗତକୁ ଅସ୍ୱୀକାର କରାଯାଏ ତାହା ଭୁଲ୍ ହେବ । ସେହିପରି ଯାହା ଦିଶୁଚି ତାହା ହିଁ ସତ୍ୟ । ଏତଦ୍‌ଭିନ୍ନ ଆଉ କିଛି ନାହିଁ ବୋଲି କହିବା ମଧ୍ୟ ସଂକୀର୍ଣ୍ଣ ଅଜ୍ଞାନର ପରିଚାୟକ । ଯେହେତୁ ଦୟା, କରୁଣା ପ୍ରେମ, ସତ୍ୟ ଆଦି ମାନସିକ ଚିନ୍ତାରୂପ, ତାକୁ ମିଥ୍ୟା ବୋଲି କହି, କଖାରୁଟିକୁ ସତ୍ୟ ବୋଲିବା ହାସ୍ୟାସ୍ପଦ କଥା । Physical mind ଟି ବିଚାରା କେତେ ବାଟ ଯାଇପାରିବ ? ଏଣୁ ସେ ତା'ର ସୀମା ଭିତରେ ରହି ବାକି ସବୁ ଅସ୍ୱୀକାର କରୁଥାଏ । କିନ୍ତୁ ତାକୁ ଯଦି ସେଇ ବସ୍ତୁକୁ ଆଉ ଗଭୀରଭାବେ ଦେଖିବାକୁ କୁହାଯାଏ, ତେବେ ତାର ସେଇ ବସ୍ତୁଜନିତ ସ୍ଥିର ଜ୍ଞାନ (ବା ଅଜ୍ଞାନ) ଆଉ ଦୃଢ଼ ପ୍ରତିରୋଧ କରିପାରେନାହିଁ, ପରାସ୍ତ ବୋଧକରେ । ନିମ୍ନ ଅବଚେତନ ଏବଂ ନିଶ୍ଚେତନ ଠାରୁ ଆରମ୍ଭ କରି ଅତିଚେତନା ପର୍ଯ୍ୟନ୍ତ ସମଗ୍ର ବିସ୍ତାରରେ ଉପଯୁକ୍ତ ଜ୍ଞାନ ହିଁ ଜ୍ଞାନ ପଦବାଚ୍ୟ, ପୂର୍ଣ୍ଣ ଜ୍ଞାନ ।



**୫-୧୨-୮୩**

ଘର ପାଖକୁ ଲାଗି ରହିଥିବା ବାଡ଼ି ଖଣ୍ଡିକରେ ସମସ୍ତ ସମୟ ଏବଂ ଶକ୍ତି ବିନିଯୋଗ କଲି । ତା'ବାହାରେ ଆଉ ଯେଉଁ ପଚାଶ ଏକର ଜମି ଅଛି ତାକୁ ଉଜାଡ଼ି ଦେବା କିମ୍ବା ଗାଈ ଗୋରୁ, ବାରହା, ଚୋର ସେ ଫସଲକୁ

ନଷ୍ଟ କରିବାକୁ ଛାଡ଼ିଦେବା, କୌଣସି ବିଜ୍ଞତାର ଲକ୍ଷଣ ନୁହେଁ । ଆମ ଭିତରେ ଯେଉଁ ଅତି ବିସ୍ତୃତ ଭୂମି ରହିଛି, ସେଠାକୁ ନ ଯାଇ କେବଳ ଘର ପରିବାର ସଂକୀର୍ଣ୍ଣ ସ୍ୱାର୍ଥକୁ ଏକମାତ୍ର ଧ୍ୟେୟବୋଲି ବିଚାରିବା ମଧ୍ୟ ସେହିପରି ଗୋଟିଏ ଭ୍ରମ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଆଧ୍ୟାତ୍ମିକ ବିସ୍ତାର ଭିତରେ ସାଧନାରତ ରହି ନିଜର ସଂଲଗ୍ନ ଭୂମିକୁ ଅବହେଳା କରିବା । ଜଣେ ତା'ର ପଚାଶ ଏକର ଭୂମିର ଯତ୍ନ ନେଲାବେଳେ ଛୋଟ ବାଡ଼ି ଖଣ୍ଡିକର ଯତ୍ନ ଅତି ସହଜରେ ନେଇପାରେ । ତଦ୍ୱାରା ସେ ତାର ବୃହତ୍ତର ସାମର୍ଥ୍ୟର ସାହାଯ୍ୟ ନେଇଥାଏ । ସଂସାରକୁ ଛାଡ଼ି ସାଧନା ନୁହେଁ, କିମ୍ବା ସେଥିରେ ବୁଡ଼ିରହି ସାଧନା ନୁହେଁ, ବରଂ ତାକୁ ସ୍ୱୀକାର କରି ତାକୁ ନିଜ ସାଙ୍ଗରେ ନେଇ ତାକୁ ପରିବର୍ତ୍ତିତ କରି ଉଦ୍‌ବର୍ତ୍ତିତ କରି ସାଧନା କରାଯାଇଥାଏ - ସଂସାର ଏବଂ ସତ୍ୟ ଭିନ୍ନ ଅସଂପୃକ୍ତ ବସ୍ତୁ ନୁହଁନ୍ତି । ଏକକ ସତ୍ୟ, ବ୍ୟାପକ ସତ୍ୟ ମଧ୍ୟ । ଏପରି ନ ବୁଝିଲେ ମାନସିକ ଭ୍ରାନ୍ତି ସାଧନାର ବାଧକ ହେବା ସ୍ୱାଭାବିକ ।



## ୬-୧୨-୮୩

ଜଣେ ଡାକ୍ତର ଅଛନ୍ତି । ତାଙ୍କ ପାଖରେ ଅତି ଜଟିଳ ରୋଗ ନେଇ ଲୋକ ପହଞ୍ଚିଲେ ସେ ପ୍ରଥମେ ଶୁଣିଯାନ୍ତି । ତାପରେ ତାଙ୍କ ତୁଣ୍ଡରୁ ଦୁଇଟି ଶବ୍ଦ ବାହାରେ "No problem" ସମସ୍ୟା ଯେତେ ଗମ୍ଭୀର କିମ୍ବା ଗୁରୁତର ହୋଇଥାଉ ପଛେ ସେ ଏଇ ଦୁଇଟି ଶବ୍ଦ କହି ଅଳ୍ପ ହସି ଦିଅନ୍ତି । ଏହା ଏକ ଅତି ପ୍ରଶାନ୍ତ ସ୍ଥିର ଦୃଷ୍ଟିଭଙ୍ଗୀ ଏଥିରେ ସେ କୌଣସି ସମସ୍ୟାକୁ ସମସ୍ୟା ବୋଲି ସ୍ୱୀକାର କରନ୍ତି ନାହିଁ । ଏହା କେବଳ କହିଦେଲେ ହୁଏ ନାହିଁ । ସମସ୍ୟାଟି ପ୍ରକୃତରେ ତାଙ୍କୁ "No problem" ହୋଇ ଅନୁଭବ ହୁଏ । ଏହା ଆଧ୍ୟାତ୍ମିକ ଭୂମିରେ ରହି କୁହାଯାଇପାରେ । ଛୋଟ ଛୋଟ ସମସ୍ୟା ନେଇ ବିବ୍ରତ ହୋଇଥିବା ପିଲାଟିଏ ମା'ଙ୍କ ପାଖରେ ପହଞ୍ଚି ସବୁ ବଖାଣି ସାରିଲା ପରେ 'ମା' ତା ପିଠିରେ ହାତମାରି ତା ମୁହଁକୁ ଚାହିଁ ସତେ ବା କହୁଛନ୍ତି "No problem" ଏଥିରେ ସତକୁ ସତ ତା'ର ସମସ୍ତ ସମସ୍ୟା କୁହୁଡ଼ିର ପାହାଡ଼ ପରି ମିଳାଇ ଯାଏ । ମନେ ହୁଏ - ସତେ ତା ସମସ୍ୟା କାହିଁ ? ଯାହା ସମସ୍ୟା ପରି ଦିଶୁଥିଲା ତାହା ତା'ହେଲେ ସମସ୍ୟା ନଥିଲା ? ମୋର ସୀମିତ ଶକ୍ତି ଜ୍ଞାନ ଏବଂ ସୀମିତ ଦୃଷ୍ଟି ହେତୁରୁ ମୁଁ ତାକୁ ସେଇଳି ଦେଖୁଥିଲି ? "No problem" କହିବା ଦ୍ୱାରା ଅତି ସ୍ଥିର ସନ୍ତୁଳିତ ହୋଇ ସମସ୍ୟାକୁ ଅସ୍ୱୀକାର କରାଗଲା । ଜରା, ବ୍ୟାଧି, ଦୁଃଖ ମୃତ୍ୟୁ ଆଗରେ ମଧ୍ୟ ଏହା କୁହାଯାଇପାରେ "No problem" ।

ଆଉ ଜଣେ ସେପରି ଆଉ ଏକ ଢଙ୍ଗରେ ଜୀବନର ସମ୍ମୁଖୀନ ହୁଅନ୍ତି । ତାଙ୍କର ଅସ୍ତ୍ରହେଲା "So what" - ଚୋରି ହୋଇଗଲା, ଘର ପୋଡ଼ିଗଲା, ବନ୍ଧୁ ଚାଲିଗଲେ । ନିଜେ ରୋଗରେ ପଡ଼ିଛନ୍ତି "So what" କଷ୍ଟ ପାଉଛନ୍ତି ଏବଂ ପାଇବେ - So what ମରିଯିବେ So what । ଏହା ଏକ ଉପେକ୍ଷାର ସ୍ୱର । କିନ୍ତୁ ବୀର ଯୋଦ୍ଧାର ସ୍ୱର । ସେ ବି କୌଣସି ସମସ୍ୟାକୁ ସମସ୍ୟା ବୋଲି ଗ୍ରହଣ କରନ୍ତି ନାହିଁ । କିନ୍ତୁ ଯୋଦ୍ଧା ଢଙ୍ଗରେ ବେଖାତିର ଢଙ୍ଗରେ, ଯାହା ହେଉଯାଉ, ସୃଷ୍ଟି ଲେଉଟି ଯାଉ - ସେଥିରେ କ'ଣ ଯାଏ ଆସେ

- So what । ସେ ଯେଉଁ ଅବିଚଳିତ ସ୍ଥିର ସତ୍ୟକୁ ଗ୍ରହଣ କରିଛନ୍ତି ତାହା ସେହିପରି ଅଖଣ୍ଡ ରହିଥିବ । ତାକୁ କିଛି ହେଲେ ସ୍ପର୍ଶ କରିପାରିବ ନାହିଁ । ଏଥିରେ ତାଙ୍କର ଅଗାଧ ବିଶ୍ୱାସ ତେବେ ଏହା ଅପେକ୍ଷା No problem କହିବାର ଆବେଗ, କିମ୍ବା ଯୁଦ୍ଧ ଘୋଷଣାର ଅର୍ଥ ନାହିଁ । No problem ! No problem - ଆଃ ସତେ ମଣିଷକୁ ଆଶା ଆଶ୍ୱାସନା ଦେବାକୁ ଏହାଠାରୁ ବଳି ଆଜି ଆଉ କ'ଣ ବାକ୍ୟ ଥାଇପାରେ ।



**୭-୧୨-୮୩**

ତାସ୍ ଖେଳ ଚାଲିଥାଏ । ଖେଳିବା ଲୋକ ଖେଳୁଥାନ୍ତି । କିନ୍ତୁ ଦେଖଣାହାରୀଙ୍କ ଉଦ୍‌ବେଗ, ଉତ୍କଣ୍ଠା ଆନନ୍ଦ ନୈରାଶ୍ୟ ବିରକ୍ତି କହିଲେ ନସରେ । ତାସ୍ ମୁଠାର ବାବନ ପତା ଭିତରୁ ଗୋଟିଏ ହେଲେ ସେମାନଙ୍କ ହାତରେ ନଥାଏ । ଖେଳାଳୀ କ'ଣ କେତେବେଳେ ଖେଳିବ ତା'ବି ସେମାନେ ଜାଣି ପାରନ୍ତି ନାହିଁ । ଅପ୍ରତ୍ୟାଶିତ ଭାବରେତାସ୍ ପତା ପଡ଼େ ଏବଂ ଖେଳ ହୋଇଯାଏ । ସେତିକିରେ ଦେଖଣାହାରୀଙ୍କର ଯାବତୀୟ ପ୍ରତିକ୍ରିୟା । ଯଦି ସେମାନେ ତାଙ୍କର ଖେଳ ସହିତ ଅସଂପୃକ୍ତି ବୁଝିପାରନ୍ତେ, କିମ୍ବା ଜାଣି ପାରନ୍ତେ ସେ ସମଗ୍ର ଖେଳରେ ଚାହିଁଲେ ସୁଦ୍ଧା ସେମାନଙ୍କର କିଛିହେଲେ ଆୟତ୍ତ ଆସି ପାରିବ ନାହିଁ, ତେବେ ଅନ୍ୟ ପ୍ରକାର ଫଳ ହୁଅନ୍ତା । ଅଧିକାଂଶ ସମୟରେ ଅସଂପୃକ୍ତି ସ୍ଥାନରେ ସଂପର୍କ ଆରୋପ କରି ଆମେ ଉତ୍ତେଜିତ ହୋଇଥାଉ । ଅସଂଖ୍ୟ ଅଜ୍ଞାତ ଅକଳନୀୟ ଶକ୍ତି ଆମ ଚାରିପେଟ ଖେଳୁଥିଲା ବେଳେ, ଆମେ ନିଜେ ସେଥିରେ କର୍ତ୍ତାପଣ କଳ୍ପନା କରି ଘୋର ଅଶାନ୍ତି ଲୋଡ଼ିନେଉ । ତଟସ୍ଥ ଠିଆ ହୋଇପାରିଲେ, ଜଣାଯିବ ଯେ ସମଗ୍ର ଘଟଣାର କର୍ତ୍ତା ଆଉ ଜଣେ । ତାକୁ ସ୍ୱୀକାର କରି ପରିହାସରେ ନିଜକୁ ସୁଦ୍ଧା ସମର୍ପି ଦେଲେ ଅସୁବିଧା କମିଯିବ । ସମର୍ପିବ କ'ଣ ଏବଂ କାହାକୁ ? ସର୍ବବ୍ୟାପୀ ସତ୍ତା ପାଖରେ ଏ ଦେବାନେବା କ୍ରିୟାଟି ଅର୍ଥହୀନ । କିନ୍ତୁ ସେ ବିଷୟରେ ସଚେତନ ହୋଇପାରିବା ମଣିଷର ବୈଶିଷ୍ଟ୍ୟ । ସେତିକି ଦରକାର ।



**୮-୧୨-୮୩**

ବ୍ୟକ୍ତିଟିଏ ନିଜକୁ ପ୍ରତ୍ୟକ୍ଷ ଅନୁଭବ କରେ । ନିଜକୁ ଅର୍ଥାତ ନିଜର ଶରୀରକୁ ନିଜର ଇଚ୍ଛା, କାମନା ବାସନା ଅଭିଳାଷ, କ୍ଷୁତ୍ ପିପାସା, ସୁଖ ଦୁଃଖ, ଯାତନା ଯନ୍ତ୍ରଣା - ଏ ସବୁକୁ ସେ ପ୍ରତ୍ୟକ୍ଷ ଅନୁଭବ କରେ । ଅନ୍ୟକୁ, ବ୍ୟକ୍ତି ବା ବସ୍ତୁକୁ ସମଗ୍ର ଦୃଶ୍ୟମାନ ଜଗତକୁ ସେ ପରୋକ୍ଷରେ ଇନ୍ଦ୍ରିୟ ମାଧ୍ୟମରେ, ମନ ମାଧ୍ୟମରେ ଅନୁଭବ କରେ । କିନ୍ତୁ ଅନୁଭବ ନ କରି ବିସ୍ମୃତ ଭାବରେ ସେ ଆଉ ଏକ ସତ୍ତାକୁ ଅନୁଭବ କରୁଥାଏ ଯାହା ଏ ସମସ୍ତ ଜଗତ୍‌ର ଏବଂ ତା ନିଜର ମୂଳ କାରଣ ସ୍ୱରୂପ ଏକକ ସତ୍ୟ । ସେ ସବୁବେଳେ

ଅତଃପରମ୍ । କିନ୍ତୁ ସେ ଅଛି ଏ ଅନୁଭବ ତାକୁ ତ୍ୟାଗକରେ ନାହିଁ । ପ୍ରଥମଟି Man ଦ୍ୱିତୀୟଟି Nature ଏବଂ ତୃତୀୟଟି God – ସେ କିନ୍ତୁ ଏ ସମସ୍ତଙ୍କୁ ଏକାଠି ଅନୁଭବ କରିପାରେ ନାହିଁ । ହୁଏତ କହେ ମୁଁ ହିଁ ଏକମାତ୍ର ସତ୍ୟ, ମୁଁ ଚାହିଁଥିଲେ ଜଗତ୍, ଆଖି ବୁଜିଦେଲେ ଶୂନ୍ୟ । ମୁଁ ଚିନ୍ତାକଲେ ଈଶ୍ୱର ନ କଲେ ନାହିଁ । ମୋ ପାଇଁ ମୋର ସୁଖ ଦୁଃଖ ଭୋଗ ସଂଭୋଗ ପାଇଁ, ବାକି ସବୁ । ଦ୍ୱିତୀୟରେ ସେ କହେ ଯେ ଏ ପରିବ୍ୟାପ୍ତ ବିଶ୍ୱ ହିଁ ସତ୍ୟ । ଏ ଗ୍ରହ ତାରା ମଣ୍ଡଳର ରାଜ୍ୟ, ଏ ପୃଥିବୀ, ତରୁତୃଣ, ସ୍ଥାବର, ଜଂଗମ ଯାହା ଭିତରେ ମୁଁ ନିଜେ ଏକ ଅଂଶ । ଏତଦ୍‌ଭିନ୍ନ ଏହାର ଉପରେ ବା ବାହାରେ ଆଉ କିଛି ନାହିଁ । ତୃତୀୟରେ ସେ କହେ ଏ ଜଗତ୍ ମିଥ୍ୟା । ମୋତେ ଏ ଶରୀରରୂପକ ମିଥ୍ୟା ଜାଲ ଧରି ରଖିଛି । ଈଶ୍ୱର ହିଁ ଏକମାତ୍ର ସତ୍ୟ । ସେହିଁ ତ ଏକକ ସତ୍ୟ 'ନେହ ନାନାସ୍ତି କିଞ୍ଚନ' ଏଠି ନାନା ପଦାର୍ଥ କିଛି ନାହିଁ – ପ୍ରଥମ ମତରେ ସେ ନିଜର ଶରୀର ଏବଂ ଅହଂକାରକୁ ସ୍ୱୀକାର କରି ମାନେ ଅଂଶକୁ ସ୍ୱୀକାର କରି Nature ଏବଂ God କୁ ଅସ୍ୱୀକାର କରେ । ଦ୍ୱିତୀୟରେ Natureକୁ ସ୍ୱୀକାର କରି man ଏବଂ Godକୁ ଅସ୍ୱୀକାର କରେ । ତୃତୀୟରେ Godକୁ ସ୍ୱୀକାର କରି man ଏବଂ Natureକୁ ଅସ୍ୱୀକାର କରେ । ଅର୍ଥାତ ସେ ତିନୋଟିରୁ ଯେକୌଣସି ଗୋଟିକୁ ଗ୍ରହଣ କଲେ ଅନ୍ୟ ଦୁଇଟି ବଳେ ଅସ୍ୱୀକୃତ ହୋଇ ଯାଉଛନ୍ତି । କାରଣ ସମସ୍ତଙ୍କୁ ଏକାଠି ଧାରଣ କରିବାର ବ୍ୟାପ୍ତି ତା ଭୂମିରେ ନାହିଁ । କିନ୍ତୁ ତିନିହେଁ ସତ୍ୟ । ଗୋଟିଏ Individual ଅନ୍ୟଟି Universal ଏବଂ ତୃତୀୟଟି Transcendental । ଏକକ ସତ୍ୟର ଏହା ତ୍ରିବିଧ ପ୍ରକାଶ ।



## ୧୦-୧୨-୮୩

ଘରେ ଉଈ ଲାଗିଲେ କ'ଣ କରାଯାଏ ? ପ୍ରଥମେ ଉଈଗାରକୁ ଦେଖୁ ଦେଖୁ ତାକୁ ଛାଡ଼ି ଦେବାକୁହୁଏ । ତା ଆରଦିନ ସକାଳୁ ପୁଣି ଉଈ ଉଠି ଆସିଥା'ନ୍ତି । ଏମିତି ଅହରହ ଉଈ ଝାଡ଼ିବାକୁ ପଡୁଥାଏ । ନହେଲେ ସେମାନେ ଚାରିଆଡ଼େ ମାଡ଼ିଯିବେ । ତେବେ ଏମାନଙ୍କୁ କ'ଣ ମୂଳରୁ ମାରିହେବ ନାହିଁ ? ହେବ, କିନ୍ତୁ ସେମାନଙ୍କ ମୂଳକୁ ଆବିଷ୍କାର କରିବା ପରେ । ସେମାନଙ୍କ ମୂଳ, ଘରର ଭିତ୍ତି ତଳେ ଖୁବ୍ ଗଭୀରରେ । ସେଇଠି ରାଣୀ ଉଈ ଥାଏ । ସେଇଠି ସେମାନଙ୍କ କେନ୍ଦ୍ର । ସେଇଠି ପହଞ୍ଚି ସେମାନଙ୍କୁ ସମୂଳେ ଉଚ୍ଛେଦ କରିପାରିଲେ ସେମାନଙ୍କ ଉପଦ୍ରବରୁ ଚିରକାଳ ରକ୍ଷା ମିଳିପାରେ । ଠିକ୍ ସେହିପରି ଆମ ମନରେ, ଚେତନାରେ, ପ୍ରତିଦିନ ଉଈ ମାଡ଼ି ଯାଉଛନ୍ତି । ପ୍ରତିଦିନ ଉଈ ଝାଡ଼ିବା ଏକ କର୍ତ୍ତବ୍ୟ । କିଛି ଧ୍ୟାନ ଧାରଣା ଆଦି ମାଧ୍ୟମରେ ଏଇ ଉଈଝଡ଼ା ଚାଲିଥାଏ । ବହୁକାଳ ପରେ ହୁଏତ ମୂଳ ଖୋଜି ସେମାନଙ୍କର ଅବଶ୍ୟ ବିନାଶ ଘଟିବ । କିନ୍ତୁ ସାଧନାର ଦୈନନ୍ଦିନ ବାଟହେଲା ଏ ଉଈ ଝାଡ଼ିବା ।



## ୧୨-୧୨-୮୩

ଥରେ କିଛି NCC ପିଲାଙ୍କୁ ବ୍ରହ୍ମପୁରରୁ ଗୋପାଳପୁରକୁ ଚାଲି ଚାଲି ଯିବାକୁ ପଡ଼ିଲା । ଅନ୍ୟାନ୍ୟ ବେଶ - ଉପକରଣ ସହିତ ଚାଲିବା ନିଶ୍ଚୟ ଖୁବ୍ କଷ୍ଟକର । ଗୋଡ଼ ଘୋଳେଇ ହେବା, ହାଲିଆ ହୋଇଯିବା, ପାଦରେଫୋଟକା ପଡ଼ିବା ଇତ୍ୟାଦି ପ୍ରତି କୌଣସି ବିଚାର ନରଖି ନିଶୁଆ ହାବିଲଦାର ମାନେ ପିଲାଙ୍କୁ ତଡ଼ିଦେଲେ । ଯାହାହେଉ ପଛେ ସେମାନଙ୍କ ଭୟରେ ଚାଲିବାକୁ ବାଧ୍ୟ । ପରିଶେଷରେ ସେମାନେ ଗୋପାଳପୁରରେ ସମୁଦ୍ରକୂଳରେ ପହଞ୍ଚିଲେ । ସେଇଠି ସେମାନଙ୍କୁ ଛାଡ଼ି ଦିଆଗଲା । ସେମାନେ ସ୍ୱାଧୀନଭାବରେ ବୁଲାବୁଲି କରିବାକୁ ଏବଂ ସେ ମନୋରମ ବେଳାଭୂମି ଦେଖିବାକୁ କୁହାଗଲା । ପିଲାଏ କିନ୍ତୁ ଚାରି ପାଞ୍ଚ ଜଣ ଲେଖା ସେଇ ବାଲି ଉପରେ ବସି କେବଳ ଗପିଲେ । ବାଲି ଖୋଳିଲେ । କେହିହେଲେ ନିଜ ଇଚ୍ଛାରେ କିଛି ଶ୍ରମ କଲେ ନାହିଁ । ପରୀକ୍ଷା ଭୟରେ, ଅଜ୍ଞାତ ଦୁର୍ଗତିର ଆଶଙ୍କାରେ ଆମମାନଙ୍କୁ ମୋଗଲ ଇତିହାସର ଅସଂଖ୍ୟ ନାମ ଘୋଷିବାକୁ ପଡ଼ିଛି । ସେଭଳି ପରିଶ୍ରମ କରି ଦିନରାତି ଅଠର ଘଣ୍ଟା ପଢ଼ିବାକୁ ଆମର ସାମର୍ଥ୍ୟ ନିଶ୍ଚୟ ଅଛି । କିନ୍ତୁ ଏବେ ସ୍ୱୟଂଶାସିତ ହୋଇ ଦିନକୁ ଅଧଘଣ୍ଟାଏ ଅନ୍ତତଃ ସଦ୍‌ଗ୍ରନ୍ଥ ପଢ଼ିବାକୁ ମନ ବଳୁନାହିଁ । ବିଭିନ୍ନ ଆଳରେ ତାକୁ ଏଡ଼େଇ ଯିବାର ଫନ୍ଦା ଖୋଜା ଚାଲିଛି । ପାଞ୍ଚମିନିଟ୍ ଧ୍ୟାନ କରିବାକୁ ବସିବା ବେଳେ ସହସ୍ର ବିକଳ୍ପ ଚିନ୍ତା, ବାଧା ବିଘ୍ନ ଆସି ପହଞ୍ଚି ଯାଉଛନ୍ତି । ଶ୍ରୀ ଅରବିନ୍ଦଙ୍କ ଦିବ୍ୟଜୀବନ ଗ୍ରନ୍ଥ ପାଞ୍ଚ ପୃଷ୍ଠା ପଢ଼ିଲେ ନିଦ ଘାରି ଆସୁଛି । ଇଚ୍ଛା ଦୃଢ଼ତା ନାହିଁ, ସଂକଳ୍ପ ନାହିଁ । ପ୍ରୟୋଜନ ହେଲେ ସରକାରୀ ନିର୍ଦ୍ଦେଶରେ ଆଜି ରାତି ସାରା ବସି କାଗଜପତ୍ର ଘାଣ୍ଟି ଶହେ ପୃଷ୍ଠା ଲେଖା ପ୍ରସ୍ତୁତ କରିପାରିବା ଜଣେ ଲୋକ କାହିଁକି, ପାଞ୍ଚପୃଷ୍ଠା ପଢ଼ିବାକୁ ଅଧଘଣ୍ଟାଏ ସମୟ ଦେବ ନାହିଁ । ଏହା ଏକ ଆଶ୍ଚର୍ଯ୍ୟର ବିଷୟ । ମୂଳକଥା ହେଲା, ମନରେ ଆମେ ସବୁ କ୍ରୀତଦାସ । ଚାବୁକ୍ ପଡୁଥିଲେ ବା ପଡ଼ିବାର ଭୟ ଥିଲେ ଆମେ ଖଟୁଥାଉ । ସେ ଭୟ ନଥିଲେ, କିଛି କରୁନା । ଆମ ଭିତରେ ସଜାଗତା, ସଚେତନତା ଆସିନାହିଁ ଏବଂ ଗୁରୁତ୍ୱ ମଧ୍ୟ ସ୍ଥିର କରାହୋଇ ନାହିଁ । Top Priority ବୋଲି ଯାହା ଆମେ ସର୍ବପ୍ରଥମେ କରିଥାଉ ସେଥିରେ ଆଧ୍ୟାତ୍ମିକ ପ୍ରୟାସ ଆଦି ଅନ୍ତର୍ଭୁକ୍ତ ନୁହଁନ୍ତି । ସମୟ ସୁବିଧା ମିଳିଲେ, ସହଜରେ ଯଦି ହୋଇ ପାରୁଛି, ତେବେ ସପ୍ତାହରେ ବା ମାସକରେ ଥରେ ଆଖିବୁଜି ବସା ଯାଇପାରେ । ଅନ୍ୟାନ୍ୟ ମଣିଷ ନିର୍ଦ୍ଦେଶ ଦେଲେ ଆମେ ତରବର ଆଜ୍ଞା ପାଳନ କରୁ ଅଥଚ ମାଲିକଙ୍କ ନିର୍ଦ୍ଦେଶକୁ ଖାତିର୍ ନାହିଁ । ଏହା ହିଁ ଦୁର୍ଭାଗ୍ୟର ବିଷୟ ଏବଂ ଆଶ୍ଚର୍ଯ୍ୟର ବିଷୟ ।



## ୧୪-୧୨-୮୩

ଶବ୍ଦଟିଏ କିମ୍ବା ନାମଟିଏ ପାଇଗଲେ ଆମେ ଭାବୁ ଆମର ଜ୍ଞାନ ହୋଇଗଲା । ଜଣକୁ ଆଙ୍ଗୁଠି ଦେଖାଇ କୁହାଗଲା ଯେ ଏ ହେଲେ ରାମ ବାବୁ, ଆମେ ଏତିକିରେ ଖୁସି । ବାଆସ୍ ହୋଇଗଲା ରାମବାବୁଙ୍କ ବିଷୟରେ

ଜାଣିବା । ଏଣିକି ପ୍ରୟୋଜନ ହେଲେ ଆମେ କହିପାରୁ "ଓ ରାମବାବୁ ? ତାଙ୍କୁ ମୁଁ ଭଲଭାବରେ ଜାଣିଛି ।" କ'ଣ ଜାଣିଛନ୍ତି ? ତାଙ୍କର ଘର, ଗାଁ ବାଡ଼ି, ତାଙ୍କ ବାପ ମାଁ, ବନ୍ଧୁ କୁଟୁମ୍ବୀ, ତାଙ୍କ ନିଜର ପୁଅ ଝିଅ, ପତ୍ନୀ, ତାଙ୍କ ଦେହରେ ରୋଗ ଯନ୍ତ୍ରଣା, ତାଙ୍କ ପ୍ରାଣରେ ଅଭିଳାଷ ଆକାଂକ୍ଷା, ମନରେ ଚିନ୍ତା, କଳ୍ପନା, ସ୍ମୃତି - ଏ ସମସ୍ତ ବିଷୟରେ କିଛି ଜାଣି ନାହାନ୍ତି । ତାଙ୍କ ସୁଖ ଦୁଃଖର ଇତିହାସ ତାଙ୍କ ରୁଚି, ବିଚାର ଆଦି କିଛି ଜାଣି ନାହାନ୍ତି । ଅଥଚ କହୁଛନ୍ତି ଯେ ତାଙ୍କୁ ଆପଣ ଜାଣିଗଲେ । ସେହିପରି ମା'ଙ୍କ ଛବିଟିଏ ଦେଖି, ତାଙ୍କ ହସ, ତାଙ୍କ ଆଖି ଦେଖି ସେତିକିରେ କେବଳ ଆମେ ସନ୍ତୁଷ୍ଟ ହୋଇଯାଉ । "ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍" - ତାଙ୍କର ପରିବ୍ୟାପ୍ତ ବିଭୂତି ବିଷୟରେ ଚିନ୍ତା କରୁନା - ସେହିପରି ଅଭିପ୍ସା, ସମର୍ପଣ, ପ୍ରତ୍ୟାଖ୍ୟାନ ଆଦି ଶବ୍ଦ ଶୁଣି ମନେରଖି ଯଥେଷ୍ଟ ବ୍ୟବହାର କରି କହୁ ଯେ ଆମେ ସେସବୁ ବୁଝି ଯାଇଛୁ । ଧରାଯାଉ ଅଭିପ୍ସା । ତାହା କ'ଣ କେବଳ ଇଚ୍ଛା, କାମନା ଅଭିଳାଷ ? ଅଭିପ୍ସାର ନିର୍ଦ୍ଦିଷ୍ଟ ଲକ୍ଷଣ କ'ଣ ? କାହାକୁ ଅଭିପ୍ସା କହିବ ? ତାହା ଶରୀର ମନ ପ୍ରାଣ ଆଦି ଭିନ୍ନ ଭିନ୍ନ ଭୂମିରେ କିପରି ପ୍ରକାଶିତ ହୁଏ ? ଅଭିପ୍ସାର ଅନୁଭବ କ'ଣ ? ଯେମିତି ପ୍ରଶ୍ନ କରାଯାଇଛି "ସ୍ଥିତ ପ୍ରଜ୍ଞସ୍ୟ କା ଭାଷ, ସମାଧିସ୍ଥସ୍ୟ କେଶବ । ସ୍ଥିତଧିଃ କିଂ ପ୍ରଭାଷେତ କିମାସୀତଃ ବ୍ରଜେତ୍ କିମ୍ ।" ସବୁ ଅନୁଭବକୁ ଆସିଲେ ତାର ଅର୍ଥ ବୁଝିହୁଏ । କେବଳ ଶବ୍ଦ ଶୁଣି ମୁଖସ୍ଥ କଲେ ନୁହେଁ । ସେଥିରେ ନିଜକୁ ଏବଂ ଅପରକୁ କେବଳ ପ୍ରତାରିତ କରାଯିବାର ସମ୍ଭାବନା ବେଶୀ ।



## ୧୮-୧୨-୮୩

ଯେ ମୂଳରୁ ବିଶ୍ୱାସ କରିଯାଇଛି ଯେ ସେ ନିଶ୍ଚୟ ହାରିଯିବ, ସେ ଯୋଦ୍ଧା ନୁହେଁ, ତା ପାଇଁ ଯୁଦ୍ଧ ବି ନାହିଁ । ଅଗାଧ ଅଟଳ ବିଶ୍ୱାସର ପନ୍ଥା ଯୋଦ୍ଧାର ପନ୍ଥା । ସାଧକ ମାତ୍ରେ ଯୋଦ୍ଧା । ଯଦି ତା'ର ବିଶ୍ୱାସ ତୁଟିଗଲା, ତା'ହେଲେ ସେ ଆଉ ଆଗକୁ ଯିବା ସମ୍ଭବ ନୁହେଁ । ପ୍ରଥମରୁ ତା'ର ଅନ୍ତତଃ ଏତିକି ବିଶ୍ୱାସ କରିବା ଦରକାର ଯେ ସେ ପାରିବ । ତା'ଭିତରେ ଅନନ୍ତ ସମ୍ଭାବନା ଅଛି । ଧୈର୍ଯ୍ୟ ଧରି ଲାଗି ରହିଲେ ସାଧନାର ଫଳ ଅବଶ୍ୟ ମିଳିବ । କିନ୍ତୁ ସେ ଯଦି ମୂଳରୁ ଭାବିବସେ ଯେ ସେ ଅତି ସାଧାରଣ ଦୁର୍ବଳ ମଣିଷ, ପାପୀ, ଅପରାଧୀ, ତାର ଉଦ୍ଧାର ନାହିଁ । କୌଣସି ପ୍ରକାରେ ସେ ମୁକୁଳି ପାରିବ ନାହିଁ - ତେବେ ଜଣାଗଲା ଯେ ସେ ଚାହୁଁନାହିଁ, କିଛି ହେବାକୁ । ନିଜର ସଂକୁଚିତ ସୀମାକୁ ସେ ଅତିକ୍ରମ କରିବାକୁ ଚାହୁଁନାହିଁ । ସେଥିପାଇଁ ସେ ଅତିକ୍ରମ କରି ପାରିବ ନାହିଁ । ଅନ୍ୟପକ୍ଷେ ସେ ଭାବେ, ମୁଁ ଅବଶ୍ୟ ପାରିବି । ଶ୍ରୀ ଅରବିନ୍ଦ କହିଛନ୍ତି - ମହାପୁରୁଷମାନେ କହିଛନ୍ତି ଯେ ମୋ ଭିତରେ ସ୍ୱୟଂ ଭଗବାନ୍ ଅଛନ୍ତି - ସେ ହିଁ ସାଧନା କରନ୍ତି । ସେ ସ୍ୱୟଂ ସିଦ୍ଧ । ତେବେ ନ ହେବ କାହିଁକି ? କ'ଣ ନ ହେବ ? ସମୁଦ୍ର ନିଶ୍ଚୟ ବିଶାଳ, ମୋର ଶକ୍ତି ନିଶ୍ଚୟ ସୀମିତ । କିନ୍ତୁ ଯାହା ଉପରେ ସବୁ ନିର୍ଭର କରେ ତା'ର ଶକ୍ତି ଅପାର । ସେ ଯଦି ଚାହିଁବ ମୋ ଶକ୍ତିରେ ତା'ର ଶକ୍ତି ପ୍ରବେଶ କରିଯିବ - ସମୁଦ୍ରକୁ ଗୋଷ୍ପଦ ପରି ମୁଁ ପାରିହୋଇ ଯାଇପାରିବି । ଏ ଅଂଧାର

ପରେ ନୂତନ ସୂର୍ଯ୍ୟ ଉଦୟ ହେବ ବୋଲି ସେ ପ୍ରତିଶ୍ରୁତି ଦେଇଛନ୍ତି । ତାହା ଅବଶ୍ୟ ହେବ । ଯଥା ସମୟରେ ହେବ । ବ୍ୟସ୍ତ ହୋଇ ଅନ୍ଧାରକୁ ଦେଖି ଭାଙ୍ଗି ପଡ଼ିବା ସାଧକର ଲକ୍ଷଣ ନୁହେଁ । ବିଶ୍ୱାସ ରଖିବାକୁ ହେବ ଅଟଳ, ଅତୁଟ ।



## ୨୧-୧୨-୮୩

ପ୍ରାଣୀ ଚେତନା ପାଇଁ ସର୍ବପ୍ରଥମ ସ୍ଥାନ ହେଉଛି ଜଡ଼ ଜଗତର ସ୍ଥାନ । ତାହା ଆବଶ୍ୟକ ଏବଂ ଅପରିହାର୍ଯ୍ୟ । ତଦ୍ୱାରା ଜୀବନଧାରଣର ଦୈହିକ ଉପାଦାନ ସହିତ ପରିଚୟ ହୁଏ । ପ୍ରୟୋଜନ ଭେଦରେ ପରିବେଶକୁ ଜାଣିବାକୁ ଏବଂ ଅଧିକାର କରିବାକୁ ଆବେଗ ସୃଷ୍ଟିହୁଏ । ଫଳରେ ସଂପର୍କଜନିତ ସୁଖ ଦୁଃଖ ସୃଷ୍ଟି ହୁଏ । ଦେହ ଏବଂ ପ୍ରାଣର ଏଇ ପ୍ରାଣୀ ଜୀବନ ସହିତ ମନର କିଛି କିଛି ଅଂଶ ଯଥା ଦୈହିକମନ ଏବଂପ୍ରାଣିକ ମନ ମଧ୍ୟ ସଂଯୁକ୍ତ ହୁଏ – ଏଣୁ ଏତିକିରେ ଅଧିକାଂଶ ମଣିଷ ସନ୍ତୁଷ୍ଟ ରହିଯିବାର ଦେଖାଯାଏ । ଏଥିରେ ସେ ନିଜେ ଗ୍ରାସାଚ୍ଛାଦନ ଆଦି ବିଷୟରେ ସ୍ୱଚ୍ଛଳତା ପାଇଁ ବୁଦ୍ଧି ପ୍ରୟୋଗ କରେ । ଅନେକ ଯନ୍ତ୍ର କୌଶଳ ଉଦ୍ଭାବନ କରେ । ବିଜ୍ଞାନବଳରେ ଅନେକ ଆଶ୍ଚର୍ଯ୍ୟ ତଥ୍ୟ ଏବଂ ଆଶ୍ଚର୍ଯ୍ୟ ରାଜ୍ୟ ଅଧିକାର କରେ । ମନେକରେ ଯେ ଏହା ହିଁ ମାନବଜାତି ପାଇଁ ସର୍ବଶେଷ ସମ୍ଭାବନା । ଏହାକୁ ଶ୍ରୀଅରବିନ୍ଦ Constitutinal Ignorance ବା ଶରୀର ଧର୍ମୀ ଅଜ୍ଞାନ ବୋଲି ଆଖ୍ୟାତ କରିଛନ୍ତି । କିନ୍ତୁ ଏହାକୁ ଅତିକ୍ରମ କରିବାକୁ ହେବ । ମଣିଷର ବିଶେଷତ୍ୱ ତା'ର ମନସ୍କତା । ତାର ମନ ପ୍ରାଣୀ ମନଠାରୁ ଅନେକ ଉନ୍ନତ ଏବଂ ବିସ୍ତୃତ । ମନକୁ କେବଳ ଶରୀରର, ଜୀବନର ସୁଖ-ସମ୍ଭୋଗ ପଛରେ ବିନିଯୋଗ ନ କରି ସୂକ୍ଷ୍ମତର ଏବଂ ଉର୍ଦ୍ଧ୍ୱତର ମାନସ ରାଜ୍ୟରେ ମନକୁ ସ୍ୱାଧୀନ କରିବାକୁ ହେବ । ସ୍ୱାଧୀନ ମନରେ ସାମାନ୍ୟ ପରିମାଣରେ ଶରୀରକୁ ଏବଂ ପ୍ରାଣକୁ ସଂଯତ, ମାର୍ଜିତ ଏବଂ ରୂପାନ୍ତରିତ କରିବାର ଶକ୍ତି ଅଛି । ଯେଉଁ କ୍ଷେତ୍ରରେ ମନ ଏପରି ଉର୍ଦ୍ଧ୍ୱ ରାଜ୍ୟରୁ ନିୟନ୍ତ୍ରଣ କରେ, ସେ ଶୁଦ୍ଧ ମାନସ ପ୍ରାଣିକ ଭୂମି, Mental Beings ମାନଙ୍କ ଭୂମି । ଏକଦା ପ୍ରାଚୀନ ଗ୍ରୀସ୍‌ରେ ସେଭଳି ଏକ ଉତ୍ତରଣ ଘଟିଥିଲା । ମୁକ୍ତ ମନର ବିସ୍ତୃତ ପ୍ରଭାତରେ ସେମାନଙ୍କର ଜୀବନଧାରଣର ମାନ, ପାରସ୍ପରିକ ସଂପର୍କ, ସାହିତ୍ୟ ସଂସ୍କୃତି ସବୁ ଏକ ଉଚ୍ଚତର ପର୍ଯ୍ୟାୟକୁ ଉତ୍ତୋଳିତ ହୋଇ ପାରିଥିଲା । କିନ୍ତୁ ମନର ସର୍ବଶ୍ରେଷ୍ଠ ଏବଂ ଉଚ୍ଚତମ ପ୍ରକାଶରେ ଚେତନାର ବିକାଶ ସରିଯାଏ ନାହିଁ । ତାହା ମନସ୍କ ପ୍ରାଣୀଟିଏ ପାଇଁ (Thinking animal) ହୁଏତ ଯଥେଷ୍ଟ । ମନର ଉର୍ଦ୍ଧ୍ୱରେ, ତାର ଅଗମ୍ୟ ଆହୁରି ସୂକ୍ଷ୍ମଭୂମି ରହିଛି । ଯେଉଁଠାରେ କେବଳ ଆତ୍ମଚେତନା ହିଁ ପ୍ରବେଶ କରିପାରେ । ମାନବର ରୁଚି ଏବଂ ଲକ୍ଷ୍ୟ ସେଇ ଦିଗରେ । କିନ୍ତୁ କ୍ରମାନ୍ୱୟ ଉର୍ଦ୍ଧ୍ୱକୁ ଉଠିଲେ ସୁଦ୍ଧା ଜଡ଼ ଜଗତକୁ ଛାଡ଼ିବାକୁ ହୁଏନାହିଁ, ତୋଳିନେବାକୁ ହୁଏ ।



## ୨୪-୧୨-୮୩

ନୈରାଶ୍ୟ ଆଧ୍ୟାତ୍ମିକ ସାଧନାର ଘୋର ବାଧକ । ସେଥିରେ ବିଶ୍ୱାସ ଘୋଡ଼େଇ ହୋଇଯାଏ । ପ୍ରତିକୂଳ ପରିସ୍ଥିତିରେ ଦୁର୍ବଳ ହୋଇଗଲେ ନୈରାଶ୍ୟ ଦେଖାଦିଏ । ପ୍ରାୟ ସେଇ ପରିମାଣରେ ବିଶ୍ୱାସ ମଧ୍ୟ ଦୋହଲି ଯାଇଥାଏ । ବିପଦ ଆସିଲେ ଆମେ ସାଧାରଣତଃ ଈଶ୍ୱରଙ୍କ ସାହାଯ୍ୟ ଲୋଡ଼ିଥାଉ । ସେ କୌଣସି ନା କୌଣସି ଉପାୟରେ ଆମକୁ ବିପଦରୁ ଉଦ୍ଧାର କରିନେବା କଥା । ସେ ହୁଏତ ଉଦ୍ଧାର କରନ୍ତି । କିନ୍ତୁ ବିଳମ୍ବ ହୋଇଗଲେ ସାଙ୍ଗେ ସାଙ୍ଗେ ଈଶ୍ୱରଙ୍କୁ ଏବଂ ତାଙ୍କ ଶକ୍ତି ଉପରେ ଅବିଶ୍ୱାସ ଜାଗିଉଠେ । ଚାରିଆଡ଼ୁ ନୈରାଶ୍ୟ ଘେରିଯାଏ । ଏହା ହିଁ ପରୀକ୍ଷାର ସମୟ । ଯାହାହେଲେ ସୁଦ୍ଧା ଆକାଶରୁ ସବୁବେଳେ ନଇଁ ଆସୁଛି ତାଙ୍କ ଆଶୀର୍ବାଦ । ଆଶ୍ରିତ ସବୁବେଳେ ତାଙ୍କ ଉପସ୍ଥିତି ଉପରେ ଅବିଚଳିତ ବିଶ୍ୱାସ ରଖି ପାରିଲେ ସେ ମଧ୍ୟ ସବୁ ସଂକଟରୁ ତାକୁ ତ୍ରାଣ କରନ୍ତି । ଆଲିପୁର ଜେଲ୍‌ରେ ଯେତେବେଳେ ବିପଦର ଘନାଘଟା ଚତୁର୍ଦ୍ଦିଗରୁ ଘେରି ରହିଥିଲା, ଶ୍ରୀଅରବିନ୍ଦ 'ବାସୁଦେବଂ ସର୍ବମିତି' ଅନୁଭବ କରିଥିଲେ । ଫଳ ମଧ୍ୟ ତଦ୍ରୂପ ହୋଇଥିଲା । ସମସ୍ତ ମେଘ ଅପସାରିତ ହୋଇଯାଇଥିଲା । ଏଇ ସଂକଟ ବେଳାରେ ତାଙ୍କ ଉପରେ ବିଶ୍ୱାସ ରଖିବାକୁ ତାଙ୍କୁ ହିଁ ପ୍ରାର୍ଥନା କରାଯାଇପାରେ ।



## ୧୭-୧-୮୪

ବିଜ୍ଞାନ ସର୍ବପ୍ରଥମେ ଅନ୍ଧବିଶ୍ୱାସକୁ ଆକ୍ରମଣ କଲା । ଅନ୍ଧବିଶ୍ୱାସ କ'ଣ ? ଯାହା ବିଜ୍ଞାନସମ୍ମତ ନୁହେଁ । ଅର୍ଥାତ୍ ଯାହାକୁ ପରୀକ୍ଷାଗାରରେ ନିୟନ୍ତ୍ରିତ ପରିବେଶରେ ପ୍ରମାଣ କରି ହେବ ନାହିଁ । ଯାହାକୁ ଇନ୍ଦ୍ରିୟ ମାଧ୍ୟମରେ ସ୍ଥୂଳ ରୂପେ ଗ୍ରହଣ କରିହେବ ନାହିଁ । ଯାହା ପାଇଁ ଯୁକ୍ତି ନାହିଁ । ଏଥିରେ ନିଶ୍ଚୟ ଅନେକ ଉପକାର ହେଲା । ମନସ୍କ ପ୍ରାଣୀ ତା ନିଜ ମନ ଉପରେ, ବୁଦ୍ଧି ଉପରେ ଯଥେଷ୍ଟ ଭରସା ପାଇଲା, ତା'ର ସାହସ ବଢ଼ିଗଲା – ତା'ର ସରଳ ବିଶ୍ୱାସର ସୁଯୋଗ ନେଇ ଭଣ୍ଡ, ମିଥ୍ୟାଚାରୀ, ଧର୍ମଗୁରୁ, ଦୀକ୍ଷାଗୁରୁମାନେ ତାକୁ ଯାହା ମନ ତାହା ଆଉ ଶିଖେଇ ପାରିଲେ ନାହିଁ । ଏହା ନିଶ୍ଚୟ ମନ ଜଗତର ଏକ ଅପୂର୍ବ ବିଜୟ । କିନ୍ତୁ ଏଥିରେ ଗୋଟିଏ ଅସାମାନ୍ୟ କ୍ଷତି ମଧ୍ୟ ହେଲା । ଯୁଗ ଯୁଗ ଧରି ମଣିଷର ବର୍ଦ୍ଧିଷ୍ଣୁ ଚେତନାରେ ବହୁ ଅତିନ୍ଦ୍ରିୟ ଜଗତର ସଂଘାତ ଯାହା ପାଇଁ, ତା'ର କୌଣସି ଯୁକ୍ତି ନଥିଲା, କିନ୍ତୁ ଥିଲା ଏକ ଗଭୀର ଅନୁଭବ । ସେ ସମସ୍ତ ମଧ୍ୟ ବିଜ୍ଞାନର ସଂଜ୍ଞା ଅନୁସାରେ ଅନ୍ଧବିଶ୍ୱାସ ବୋଲି ପରିହାର କରାଗଲା । ଅତଏବ ହିସାବ ଖାତାରେ ଲାଭ ହେଲା କି କ୍ଷତି ହେଲା କହିବା ସହଜ ନୁହେଁ । ତେବେ ବିଜ୍ଞାନ ଯେ ଚୂଡ଼ାନ୍ତ ସତ୍ୟ, ଏକଥା ବିଜ୍ଞାନବିତ୍‌ମାନେ ଆସ୍ତେ ଆସ୍ତେ ସନ୍ଦେହ କରିବା ଆରମ୍ଭକଲେ । ସବୁ ପ୍ରମାଣ ସାପେକ୍ଷ୍ୟ ଏବଂ ପ୍ରମାଣଯୋଗ୍ୟ ବୋଲି ଆଉ ଗ୍ରହଣ କରାଗଲା ନାହିଁ । Theory of Indetermenacy ଆସି ବିଜ୍ଞାନର ନିଷ୍ପତ୍ତିର ସ୍ୱରକୁ ଅନିଶ୍ଚିତ କରିଦେଲା । ଫଳରେ ବିଜ୍ଞାନ ନିଜର ସୀମା ବିଷୟରେ ସଚେତନ ହେବା ପରେ ସୀମା ବହିର୍ଭୂତ

ଅନନ୍ତ ସମ୍ଭାବନାକୁ ବିନା ପ୍ରମାଣରେ ସ୍ୱୀକାର କଲା । ସବୁ ଆଉ କାର୍ଯ୍ୟକାରଣରେ ବୁଝାଇ ଦିଆଯାଇ ପାରିଲା ନାହିଁ । ଅଜ୍ଞାତକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଅଜ୍ଞେୟକୁ ମଧ୍ୟ ସ୍ୱୀକାର କଲା। ଅଜ୍ଞେୟ କ'ଣ ? ତାକୁ ଅଜ୍ଞେୟ ବୋଲି ଜାଣିଲେ ତ ସେ ଜ୍ଞେୟ ହୋଇଗଲା - ତା'ଠିକ୍ ନୁହେଁ, ସେ ପ୍ରାୟ ଏହିପରି । ଜାଲଟିଏ ନେଇ ସମୁଦ୍ରକୁ ଛାଣିଲେ କିଛି ଜୀବ ନିର୍ଜୀବ ପଦାର୍ଥ ସେଥିରେ ଧରିହେବ । ପାଣିକୁ ଧରିହେବ ନାହିଁ, ତଥାପି ତାକୁ ସେଇ ଜାଲରେ କିଛି ଅନୁଭବ କରିହେବ । କିନ୍ତୁ ଜାଲଟିକୁ ନେଇ ଯଦି ପବନକୁ କିମ୍ବା ଆକାଶକୁ ଧରିବାକୁ ଚେଷ୍ଟା କରାଯାଏ, ତେବେ ତାହା ଆଦୌ ସମ୍ଭବ ନୁହେଁ, ଜାଲଟି ମାଧ୍ୟମ ରୂପେ ସେ କ୍ଷେତ୍ରରେ ଆଦୌ ପର୍ଯ୍ୟାପ୍ତ ନୁହେଁ । ସେହିପରି ଯେଉଁ ମାଧ୍ୟମରେ ଜ୍ଞାନ ଆହରଣ କରାଯାଏ, ତାର ସୀମା ବହିର୍ଭୂତ ଯାହାକିଛି ସେସବୁ ଅଜ୍ଞେୟ । ତେଣିକି ଯଦି ଜ୍ଞାନର ସଂଜ୍ଞା ଏବଂ ମାଧ୍ୟମ ବଦଳାଇ ଦିଆଯାଏ ତେବେ ଅଜ୍ଞେୟ ମଧ୍ୟ ଜ୍ଞେୟ ହୋଇପାରେ । ସେ ଜ୍ଞାନ କିନ୍ତୁ ସଂପୂର୍ଣ୍ଣ ଭିନ୍ନ ପର୍ଯ୍ୟାୟର ଜ୍ଞାନ ।



## ୧୮-୧-୮୪

ସତ୍ୟାଶ୍ରୟୀ ହେଲେ ଜୀବନରେ ବାଧା ବିପଦ ସମାନୁପାତିକ ଭାବରେ ବୃଦ୍ଧି ପାଇବାର ଦେଖାଯାଏ । ତା'ର କାରଣ ବୋଧହୁଏ ସୂକ୍ଷ୍ମ ଜଗତରେ ଏକପ୍ରକାର ଯୁଦ୍ଧ ଘୋଷଣା । ଧରାଯାଉ, କୌଣସି ଗୋଟିଏ ଅଞ୍ଚଳରେ ସୂର୍ଯ୍ୟତାପକୁ ଅଧିକ ଗ୍ରହଣ କରିବାରୁ ସେଠିକାର ବାୟୁମଣ୍ଡଳ ଉତ୍ତପ୍ତ ହୋଇଗଲା ଏବଂ ସେଇଠାରେ ଲଘୁଚାପ ସୃଷ୍ଟିହେଲା । ଲଘୁଚାପ ସୃଷ୍ଟି ହେଲାମାତ୍ରେ ଚାରିଆଡୁ ପ୍ରବଳ ବେଗରେ ବାୟୁ ବୋହିବା ଅନିବାର୍ଯ୍ୟ । କ'ଣ ଗୋଟାଏ ଅସ୍ୱାଭାବିକ ଘଟିବାରୁ ତାକୁ ସ୍ୱାଭାବିକ କରିବା ପାଇଁ ଏ ଅଲଗା ଶକ୍ତିମାନେ ହଠାତ୍ ଜାଗ୍ରତ ହୋଇଯାନ୍ତି । ଲଘୁଚାପ କେନ୍ଦ୍ରରେ ଝଡ଼ ସୃଷ୍ଟି ହୁଏ । ବର୍ଷା ବତାସି ବିଦ୍ୟୁତ୍ କୁଢ଼େଇ ହୋଇପଡ଼େ ଦୋଷ କ'ଣ ? ସେ କାହିଁକି ଅଧିକମାତ୍ରାରେ ସୂର୍ଯ୍ୟକୁ ଗ୍ରହଣ କଲା ? କାହିଁକି ଉନ୍ମୁଖ ହୋଇ ଅଧିକ ଆଲୋକ ଏବଂ ଉତ୍ତାପକୁ ଧାରଣ କଲା ? ସେହିପରି ଜୀବନ, ଜୀବଧର୍ମରେ ତଳକୁ ମୁହଁ ପୋତି ଚାରା ଗୋଟେଇ ଚାଲୁଥିବା ପର୍ଯ୍ୟନ୍ତ ଗୋଟିଏ ଜାତିବାଚକ ଗୋଷ୍ଠୀରେ ଅନିର୍ଦ୍ଦିଷ୍ଟ ଭାବରେ ବଞ୍ଚିହୁଏ । କେହି ବିରୋଧ କରନ୍ତି ନାହିଁ । ବିରୋଧ କରିବାକୁ କିଛି ନଥାଏ । ଯେଉଁ ମୁହୂର୍ତ୍ତରେ ଦେଖାଗଲା ଯେ ସେ ବିଶିଷ୍ଟ ମୂଲ୍ୟରେ ଉଦ୍ଭାସିତ ହୋଇ ଉଠୁଛି, ତାକୁ ରେରେକାର କରି ଚାରିଆଡୁ ଶତ୍ରୁପକ୍ଷ ବେଢ଼ିଯାଆନ୍ତି । ସେ ଶତ୍ରୁତା କରେ ନାହିଁ, କରିପାରେ ନାହିଁ, କରିବା ପ୍ରୟୋଜନ ନାହିଁ । କିନ୍ତୁ ସେ କେବଳ ତାର ସ୍ଥିତିରେ, ଅନନ୍ୟ ସାଧାରଣ ଶୁଦ୍ଧିରେ, ସତ୍ୟନିଷ୍ଠତାରେହିଁ ଅସଂଖ୍ୟ ଶତ୍ରୁ ସୃଷ୍ଟିକରେ । ସେଥିପାଇଁ ତ ସତ୍ୟପଥ ହେଉଛି 'ଦୁର୍ଗଂପଥମ୍ ତତ୍ କବୟୋର୍ବଦନ୍ତି ।'



## ୨୧-୧-୮୪

କ୍ଷେତରେ ନୂଆ ଧାନଗଛ ଗଜେଇ ଆସିଲାବେଳେ ଅଦ୍ଭୁତ ସୁନ୍ଦର ଦିଶେ, ଶୋଭାରେ ଏବଂ ସମ୍ଭାବନାରେ । ପାଚିଲା ସୁନା ରଙ୍ଗର ଗୋଟିଏ ସଂପୁଟରେ ଧରିତ୍ରୀ ଘୋଡ଼େଇ ହୋଇଯାଏ । କିନ୍ତୁ ଆଖିର ଚଷମାରେଅନେକ ଦିନର ଅନେକ ମଳି ଲାଗିଥିଲେ ସେଥିରେ ଆଉ କ'ଣ ଦିଶିବ ? ଚଷମାଟିକୁ ପ୍ରଥମେ ସଫାକଲେ ହିଁ ଜଣାଯିବ ଯେ ସୁନାର ଫସଲ ଗଜାମାରି ଆସିଲାଣି । ଏଣିକି ସେ ଆହୁରି ସ୍ପଷ୍ଟ ଆହୁରି ଶୋଭାବନ୍ତ ହୋଇ ଉଠିବ । ତାକୁ କେହି ରୋଧି ପାରିବେ ନାହିଁ । ଜୀବନରେ ସେହିପରି ଅନ୍ଧାର ମାଡ଼ିଯାଇଛି ବୋଲି ବୋଧ ହେଉଥିଲାବେଳେ, ହୁଏତ, ତାହା ଗୋଟାଏ ପ୍ରକାର ଦେଖି ନ ପାରିବାର ଅସମର୍ଥତା । ଚଷମା ସଫାକରି ଦେଖିଲେ ହୁଏତ ଦୃଶ୍ୟ ଆଉ ଏକ ପ୍ରକାର । ସେ ସମ୍ଭାଳିବାକୁଅଛି, ସେ ଜାଣେ କ'ଣ କରିବାକୁ ହେବ । ତା'ର ଅପରିମେୟ ସାମର୍ଥ୍ୟରେ ଯେ ଯାହା କରିଚାଲିଛି ତାହା ସାଧାରଣ ଦୃଷ୍ଟିରେ ଦିଶିବ ନାହିଁ । ଏଣୁ ବେଳ ଜାଣି ପ୍ରୟୋଜନ ହେଲେ ସେ କହେ ଚଷମା ସଫାକରି ଅନା – 'ଦିବ୍ୟଂ ଦଦାମି ତେ ଚକ୍ଷୁଃ'... ଉପସ୍ଥିତ ଚିତ୍ର ଶେଷକଥା ନୁହେଁ: ତାହା ଭବି ତବ୍ୟରେ ବୁଡ଼ି ରହିଥିବା ଅତି ବିଶାଳ ସୁଦୂର ପ୍ରସାରିତ ସମ୍ଭାବନାରଗୋଟିଏ ବିନ୍ଦୁ ମାତ୍ର । ଏଣୁ ସେଥିରେ ବିଚଳିତ ହେବା କଥା ନୁହେଁ ।



## ୮-୨-୮୪

ଈଶ୍ୱର ସତ୍ତା ଅନୁଭବ କରିବା ପାଇଁ ବେଶୀ ଦୂର ଯିବାକୁ ପଡ଼େ ନାହିଁ । ତାର ଗୋଟିଏ ଶୁଭ ମୁହୂର୍ତ୍ତ ଅଛି । ଅକସ୍ମାତ୍ ଦିନେ କେବଳ ଗୋଟିଏ ଶୁଖିଲା ଅଶ୍ୱତ୍ଥ ପତ୍ର ଦେଖି ସେଥିରେ ମନଯୋଗ କଲେ ଈଶ୍ୱରାନୁଭବ ଆରମ୍ଭ ହୋଇଯାଏ । ପତ୍ରରେ ସବୁଜ ବସ୍ତୁ କିଛି ନଥାଏ । ମଣିଷର ରକ୍ତ ମାଂସାଦି ଚାଲିଗଲେ ଯେପରିଗୋଟିଏ କଙ୍କାଳ ଦେଖିବାକୁ ମିଳେ, ସେହିପରି ତାହା ଏକ ପତ୍ର କଙ୍କାଳ । କିନ୍ତୁ କି ସୂକ୍ଷ୍ମ ତନ୍ତୁନେଇ ସେ କାରିଗର ତାକୁ ଗଢ଼ିଛନ୍ତି । ତାରକସି କାମର ସୂକ୍ଷ୍ମ ଜାଲଟିଏ ସତେ ବା ! କିନ୍ତୁ ତାରକସି ଠାରୁ ଆହୁରି ବିଚିତ୍ର, କାରଣ ପ୍ରତ୍ୟେକ ସୂକ୍ଷ୍ମ ତନ୍ତୁ ଭିତରେ ନଳୀ । ତାର ଉପାଦାନ ସବୁ ଅତି ସୂକ୍ଷ୍ମ ଏବଂ କୋମଳ । ଅଥଚ ଝଡ଼ଝଞ୍ଜାର ପ୍ରବଳ ବେଗ ସମ୍ଭାଳିବାକୁ ମଧ୍ୟ ସକ୍ଷମ । ସେଥିରେ ବିଚିତ୍ର କାରୁକାର୍ଯ୍ୟ ସହିତ ଯେଉଁ କମନୀୟତା ରହିଛି ତାହା ବୁଝିବା ଦୁଷ୍କର । ଏ ପୁଣି ମାତ୍ର ଗୋଟିଏ ପତ୍ର । ଏହିପରି ଅନ୍ତତଃ କୋଟିଏ ପତ୍ର ହେଲେ ଏକମାତ୍ର ଅଶ୍ୱତ୍ଥ ଗଛର ପତ୍ର ବୈଚିତ୍ର୍ୟ ବୁଝାଯିବ । ଏହିପରି କୋଟି କୋଟି ଅଶ୍ୱତ୍ଥ ଗଛ । ଅଶ୍ୱତ୍ଥ ଗଛ ପରି କୋଟି କୋଟି ଅନ୍ୟାନ୍ୟ ଗଛଲତା, ଗୁଳ୍ମ, ଦୂର୍ବା, ତୃଣ ଭରି ରହିଛି ଅସଂଖ୍ୟ ଅରଣ୍ୟରେ । କାଳ ବିସ୍ତାରରେ ଶହେ ବର୍ଷ, ହଜାରେ ବର୍ଷ, ସାତ ଲକ୍ଷ ବର୍ଷରେ କ'ଣ କ'ଣ ସବୁ ବୈଭବ ଯେ ପ୍ରକାଶିତ ନ ହୋଇଥିବ ତା'ର ଇୟତ୍ତା ନାହିଁ ? ଏତ ଗଲା ବନସ୍ପତି କଥା – ତାଛଡ଼ା ଜଙ୍ଗମରେ କେତେ ବୈଚିତ୍ର୍ୟ ସବୁ ମିଶେଇ ଦେବା । ଜଳ ସ୍ଥଳର ପୃଥିବୀ – କେତେ ବିଶାଳ, କେତେ ବିଚିତ୍ର ! ମାତ୍ର ଏ କେବଳ ଧୂଳିକଣାଟିଏ

ଏ ଦୃଶ୍ୟମାନ ଆକାଶରେ । ଗ୍ରହ, ନକ୍ଷତ୍ର, ତାରାଦି ମହାକାଶରୁ ମହତୋ ମହୀୟାନ୍‌ର ଭାବ । ଚିତ୍ତ ବିମୂଢ଼କାରୀ । ଏ ସମସ୍ତ କେବଳ କାର୍ଯ୍ୟକାରିଣୀ ଦୈବୀଶକ୍ତି ପ୍ରକୃତିର ଚମତ୍କାରିତା - ତା ପଶ୍ଚାତ୍‌ରେ ଯେ ବୁଦ୍ଧି ରହି ସ୍ୱୟଂ ପ୍ରକାଶିତ ହେବାକୁ ଚାହୁଁଛନ୍ତି, ଏ ପର୍ଯ୍ୟନ୍ତ ଅନନ୍ତ ସମ୍ଭାବନା ଭିତରେ ଜଡ଼ରୁ ଚେତନ, ଚେତନରୁ ମନସ୍ ପର୍ଯ୍ୟନ୍ତ ପ୍ରକଟିତ ହୋଇଛନ୍ତି, ସେ ବିସ୍ତୃତ ସତ୍ତାକୁ କ'ଣ ମନରେ ଧରିହୁଏ ? ଏଭଳି ମନ ତାର ସମସ୍ତ ଶକ୍ତି ପରାସ୍ତ ହୋଇଗଲେ କ୍ଳାନ୍ତ ହୋଇଯାଏ । ତାପରେ ଯାହା ପରମ କରୁଣାରେ ଗଭୀର ସ୍ନେହ ଏବଂ ଆଶ୍ୱାସନାରେ ଦୂରତମ ବିନ୍ଦୁର ନିକଟତମ ବିନ୍ଦୁକୁ ଆସି ଯାଆନ୍ତି, ତାଙ୍କୁ ସ୍ମରଣ କରିବା ହିଁ ମନପାଇଁ ଏକମାତ୍ର ଈଶ୍ୱରାନୁଭୂତି ।



## ୧୪-୨-୮୪

ଅଜ୍ଞାନେନାବୃତଂ ଜ୍ଞାନଂ । ଅଜ୍ଞାନ ଦ୍ୱାରା ଜ୍ଞାନ ଆବୃତ ହୋଇ ରହିଛି । କାହିଁକି ? ଜ୍ଞାନ ସ୍ପଷ୍ଟତଃ ପ୍ରକାଶିତ ହେବାର ଅସୁବିଧା କଣ ? ଜ୍ଞାନ କ'ଣ ନିରାଧାର ରହି ପାରିବ ନାହିଁ ? ଭ୍ରୂଣକୁ ଜରାୟୁ ଆବୃତ କରି ରଖିଲା ପରି ଅଜ୍ଞାନ ଜ୍ଞାନକୁ ଧାରଣ କରିବା କ'ଣ ଅନିବାର୍ଯ୍ୟ ? - ନା । ଜ୍ଞାନ ଅବଶ୍ୟ ମୁକ୍ତହୋଇ ପାରିବ । କେବଳ ପୂର୍ଣ୍ଣ ଜ୍ଞାନ ହିଁ ଅଜ୍ଞାନରୁ ସର୍ବତୋଭାବେ ମୁକ୍ତ । ନଚେତ୍ ବାକି ସମସ୍ତ କେବଳ ଜ୍ଞାନାଜ୍ଞାନର ଏକ ପ୍ରକାର ମିଶ୍ରଣ । ଯଦି ପୂର୍ଣ୍ଣଜ୍ଞାନ କ୍ରମ ବିକଶିତ ହୁଏ, ତେବେ ଗୋଟିଏ ସ୍ତରରେ ଜ୍ଞାନଦ୍ୱାରା ଅଜ୍ଞାନ ଆବୃତ ହୋଇ ରହିବା ଯୁକ୍ତିସଂଗତ । ଅଜ୍ଞାନ ପ୍ରଚ୍ଛନ୍ନଭାବେ ଜ୍ଞାନ ଭିତରେ ରହିଯାଇ ପାରେ । ପୂର୍ଣ୍ଣ ଜ୍ଞାନରେ ସୁଦ୍ଧା ଅଜ୍ଞାନ ସତ୍ତାର ରୂପାନ୍ତରୀକରଣ ହେବ । ଅଜ୍ଞାନ ନ ରହି ପାରେ, କିନ୍ତୁ ଅଜ୍ଞାନର ସମ୍ଭାବନା ତ ଦୂର ହେଉନାହିଁ, କାରଣ 'ଏକ'ରେ ସିନା ଭୁଲ ନାହିଁ କିନ୍ତୁ ଦ୍ୱିଧା ବିଭକ୍ତ ହେବାମାତ୍ରେ ଅନ୍ୟ ସତ୍ତା ପୃଥକ୍ ରୂପେ ଦେଖାଦେବ ଏବଂ ଏହି 'ପୃଥକ୍' ହିଁ ପରିଣାମତଃ, ଆହୁରି ଆହୁରି ପୃଥକ୍ ହୋଇ ପରିଶେଷରେପାର୍ଥକ୍ୟର ଚୂଡ଼ାନ୍ତ ଅର୍ଥାତ୍ ବିପରୀତ ଧର୍ମ ଧାରଣ କରିବ । ଅନ୍ୟ ବା The other ହିଁ ଶେଷରେ ବିପରୀତ ହୋଇ ଛିଡ଼ାହେବ । ଆଲୋକରୁ ପୃଥକ୍ ହେବା ମାତ୍ରେ ତାହା କ୍ରମଶଃ ଅଂଧାରରେ ପରିଣତ ହେବ । ସତ୍‌ରୁ ପୃଥକ୍ ହେଲେ ଅସତ୍‌ରେପରିଣତ ହେବ । ଏଣୁ ସଂପୂର୍ଣ୍ଣ ଜଡ଼ ଭିତରେ ଯେପରି ଚେତନା ଅନୁପ୍ରବିଷ୍ଟ ହୋଇ ପ୍ରଚ୍ଛନ୍ନ ରହିଛି, ସେହିପରି ପୂର୍ଣ୍ଣ ଚୈତନ୍ୟରେ ମଧ୍ୟ ଜଡ଼ର ସମ୍ଭାବନା ରହିଛି - ସେଥିପାଇଁ ହୁଏତ Evolution ଏବଂ Involution ମିଶି ଏକ ନିତ୍ୟ ବର୍ତ୍ତମାନ ବୃତ୍ତ ।



## ୧୫-୨-୮୪

ଧ୍ୟାନ କରିବାର ସେପରି କୌଣସି ନିର୍ଦ୍ଦିଷ୍ଟ ବାଟ ନାହିଁ । ତା'ର କାରଣ ହେଲା ଯେ ଧ୍ୟାନାବସ୍ଥାର ଅନୁଭବ ସଂପୂର୍ଣ୍ଣ ବ୍ୟକ୍ତିଗତ ଏବଂ ଅନନ୍ୟ । ତେବେ ତାହା ମୁଖ୍ୟତଃ ମନକୁ ନେଇ ମନୋଭୂମିର ଏକ କ୍ରିୟା । ସେଥିପାଇଁ ପ୍ରଥମରୁ ଶରୀର ଏବଂ ପ୍ରାଣକୁ ସାମୟିକଭାବେ ଆଡ଼େଇ ଦେଇ ନ ପାରିଲେ ଧ୍ୟାନ

ସମ୍ଭବ ନୁହେଁ । ଧ୍ୟାନ ପାଇଁ ଅନେକ ଆସନର ବ୍ୟବସ୍ଥା ଅଛି । କିନ୍ତୁ ଆସନଟି ଶରୀରର ଗୋଟିଏ ସ୍ଥିର ଭଙ୍ଗୀ ହୋଇଥିବାରୁ ତାହା ଅନେକ ସମୟରେ ବ୍ୟାୟାମ ଭଳି ମୃଦୁ କଷ୍ଟପ୍ରଦ ହୋଇଥାଏ । ଏ କ୍ଷେତ୍ରରେ ଆସନ ଏପରି ହେବା ଉଚିତ, ଯାହା ଶରୀରକୁ କୌଣସି କ୍ଲେଶ ଦେବନାହିଁ ଏବଂ ଏ କ୍ଲେଶ ନଥିବାରୁ ଶରୀରକୁ ସହଜରେ ଭୁଲିଯାଇହେଉଥିବ । ଏଣୁ ଧ୍ୟାନ ପାଇଁ ଏକମାତ୍ର ଆସନ ସୁଖାସନ - ଯାହାକୁ ଯାହା ସୁଖକର ହେଲା । ତେବେ ଧ୍ୟାନ ଏକ ଜାଗ୍ରତ କ୍ରିୟା ହୋଇଥିବାରୁ ଶୟନ ଉପଯୋଗୀ କୌଣସି ଆସନ, ଯଥା ଶବାସନ ଏଥିରେ ବାଧକ ହେବାର ଯଥେଷ୍ଟ ସମ୍ଭାବନା ରହିଛି । ଅନ୍ତତଃ ମେରୁଦଣ୍ଡକୁ ଭୂମି ସହିତ ସରଳ ଲମ୍ବଭାବରେ ରଖି ପାରିଲେ ଭଲ । ତାପରେ ସୁଖାସନରେ ଥିବା ହେତୁ ଆସ୍ତେ ଆସ୍ତେ ଶରୀରକୁ ଢ଼ିଲା, ହାଲୁକା, ନିସ୍ପନ୍ଦ କରାଯାଏ । ଆସ୍ତେ ଆସ୍ତେ ଇନ୍ଦ୍ରିୟମାନଙ୍କୁ ସଂହରଣ କରାଯାଏ । ହଠାତ୍ ଘଣ୍ଟି ବାଜିଲେ ଆଖି ବନ୍ଦ ଏବଂ ଘଣ୍ଟି ବାଜିଲେ ଆଖି ମେଲା କରିବା ଧ୍ୟାନ ନୁହେଁ । ଦୂରରୁ ନିକଟକୁ ଦୃଷ୍ଟି ଏବଂ ଶ୍ରବଣକୁ ଆକୁଞ୍ଚନ କରି ଆଣିଲା ପରେ, ଆଖି ବନ୍ଦ ହୋଇଗଲେ, ଦେହ ଆଉ କୌଣସି ବିଷୟ ଦାବିକରେ ନାହିଁ । ଶରୀର ଏକପ୍ରକାର ଶୋଇଥାଏ । ଚେତନା ଶରୀରକୁ ପରୋକ୍ଷରେ ସ୍ୱୀକାର କରି ମନୋଃଭୂମିରେ ସୀମିତ ରହେ । ସେଇଠି ଆଉ ଏକ ରାଜ୍ୟ ଅସଂଖ୍ୟ ଶବ୍ଦ, ଅସଂଖ୍ୟ ରୂପ, ସ୍ମୃତି, କ୍ରିୟା-ଆବେଗ ସବୁ ଆଲୋଡ଼ିତ ହୁଅନ୍ତି । ସେ ସମସ୍ତ ମନଗଢ଼ା Mental Formation ଏପରିକି ଧେୟକୁ ରୂପ ମାଧ୍ୟମରେ ମନନ କରି ସେଥିରେ ନାନା ପ୍ରକାର କ୍ରିୟା ଏବଂ ବାକ୍ୟ ଆରୋପ କରିବା ମଧ୍ୟ Mental Formation । ମନ୍ତ୍ର ଜପ ମଧ୍ୟ ସେହିପରି । କିନ୍ତୁ ଗୋଟିଏ ରୂପ ଏବଂ ଗୋଟିଏ ଶବ୍ଦରୂପୀ ମନ୍ତ୍ରରେ ମନ ଏକାଗ୍ର ହେଲେ ବହୁ ଆଲୋଡ଼ନ ରହେ ନାହିଁ । ସବୁ ପ୍ରକାର Mental Formation କୁ ବାଦ୍‌ଦେଲେ ଏକପ୍ରକାର ପ୍ରଶାନ୍ତ, ପରିବ୍ୟାପ୍ତ ଘନ ନୀରବତା, ନିସ୍ପନ୍ଦତାର ଅନୁଭବ ହୋଇଥାଏ । ସେଇଠି ପ୍ରୟାସ ଅତି ସୂକ୍ଷ୍ମ ଏବଂ ପ୍ରଗାଢ଼ । କାରଣ ସରୁ ତାର ଉପରେ ଚାଲିଲା [illegible] ଉଭୟଆଡ଼େ ଯେକୌଣସି ମୁହୂର୍ତ୍ତରେ ପଡ଼ିଯିବାର ସମ୍ଭବନା । ଗୋଟିଏ ପଟେ ଦିବାସ୍ୱପ୍ନ, ଗୁଡ଼ାଏ ସ୍ମୃତିଚିତ୍ର ଏବଂ ଅନେକ କ୍ରିୟା ଏବଂ କୋଳାହଳର ଆବେଗ ଏବଂ ଅନ୍ୟପଟେ ଅଣାୟତ୍ତ ସ୍ୱପ୍ନଭୂମି । ସେଥିପାଇଁ ଧ୍ୟାନ କଲାବେଳେ ଅନେକ ଶୋଇଯାନ୍ତି - ଏହା କେବଳ ଶରୀର ବିଜ୍ଞାନୀମାନଙ୍କର Relax-ation କ୍ରିୟାର ଶେଷ ଅବସ୍ଥା, ଶରୀର ଏବଂ ମନର ସୁପ୍ତାବସ୍ଥା - ତାହା ଧ୍ୟାନ ନୁହେଁ । ଧ୍ୟାନାବସ୍ଥାରେ ଜାଗ୍ରତାବସ୍ଥାଠାରୁ ଆହୁରି ଅନେକ ଗୁଣ ଅଧିକ ଜାଗ୍ରତ ରହିବାକୁ ପଡ଼ିଥାଏ । ଏଣୁ ଶୋଇଯିବା ଏକ ବିଚ୍ୟୁତି । ଥରେ Mental Formation ଆଦିକୁ ଦୂରକରି ପ୍ରଶାନ୍ତ ହୋଇ ରହି ପାରିଲେ, ତେଣିକି ସବୁ ବ୍ୟକ୍ତିଗତ ଅନୁଭବ - ଜ୍ୟୋତି ଦର୍ଶନ, ବେଣୁ ଧ୍ୱନି, ଇତ୍ୟାଦି କାହାପାଇଁ କେମିତି କହିବା ସମ୍ଭବ ନୁହେଁ । ଗୁରୁ ଆଶ୍ରିତ ବ୍ୟକ୍ତି ଧ୍ୟାନରେ ଏଇ ସ୍ତରରେ ଅନେକ ସାହାଯ୍ୟ ପାଇଥାନ୍ତି ।



## ୧୬-୨-୮୪

କୌଣସି ଗୋଟିଏ ଆଙ୍କରେ ଦାୟିତ୍ୱରୁ ଖସିଯିବା ମଣିଷର ଅତି ପୁରୁଣା ଅଭ୍ୟାସ । ନିଜକୁ ନିଜେ ଦୟାକରି ସେ ଅଧିକାଂଶ ସମୟରେ ଯୁକ୍ତି କରିଥାଏ । "ଆହା ବିଚାରା ମୁଁ ଏତେ କର୍ମ କଲି, କେହି ଟିକେ

ଚାହିଁଦେଲେ ନାହିଁ, ପଦେ ପ୍ରଶଂସା କଲେ ନାହିଁ, କ'ଣ ଅଛି ଏମିତି ଖଟିବାରେ ? ଛାଡ଼, ଆଜି ତ'ମନ ଭଲ ନାହିଁ, ଦେହ ଭଲ ନାହିଁ, ଆଜି ଆଉ ପୂଜାପାଠ ନ କଲେ କ'ଣ ଚଳିବ ନାହିଁ ? ଏମିତି କ'ଣ ସୂତା ଧାରରେ ସବୁ ଚାଲିଥିବ, ଆମେ ଏବେ କୋଉ ସାଧକ ହୋଇଗଲୁଣି କି, ଏମିତି ନିୟମ ନିଷ୍ଠାରେ ସବୁ କରିବୁ ? ମଝିରେ ମଝିରେ ଟିକିଏ ଛୁଟି ନ ମିଳିଲେ କେମିତି ହେବ ? ବାଃ, ଯା'ପରେ ଛୋଟପିଲା, ସ୍କୁଲରୁ ଛୁଟି ପାଇଲା ପରି ଲଗାମ ଛଡ଼ା, ଧାଇଁ ବୁଲିବା ହେଲା କାମ । ଏମିତି ହେବାର କାରଣ କେବଳ ପୋଖତ ବୁଝାମଣାର ଅଭାବ । ଯେ ଦଉଡ଼ିଟିଏ ଧରି ଉପରକୁ ଉଠୁଛି, ସେ ଯଦି ଚାହେଁ ଗୋଟାଏ ମିନିଟ୍ ପାଇଁ ହାତଛାଡ଼ି ଦେବାକୁ, ସେତିକିରେ ସେ ଖସିଆସି ପାରେ ପୁରା ତଳକୁ । ତା'ନହେଲେ ବି ଖସୁଥିବାବେଳେ ପୁଣି ଦଉଡ଼ିକୁ ଧରି ସମ୍ଭାଳିବା ଭାରି କଠିନ ବ୍ୟାପାର । ହାତରୁ ଛାଲ ଛିଡ଼ି ଯାଇପାରେ, ରକ୍ତାକ୍ତ ହେବାକୁ ପଡ଼ିପାରେ । ଅହରହ ତେଣିକି ତଳକୁ ଚାଲିଆସିବାକୁ ହିଁ ପ୍ରବୃତ୍ତି ହୋଇପାରେ । ଅବଶ୍ୟ କୌଣସି ଏକ ଅଭ୍ୟାସକୁ ଅତିମାନ୍ୟତା ଦେଇ ପ୍ରାଣପଣ କରି ସେଥିରେ ଆସକ୍ତ ହେବାମଧ୍ୟ ଆଧ୍ୟାତ୍ମିକ ବିଚାର ନୁହେଁ, ସେଭଳି କୌଣସି କୃଚ୍ଛ୍ରସାଧନା କେବେ ପରମ ପଦରେ ପହଞ୍ଚାଇବାର ଜଣାନାହିଁ । କାରଣ, ଆସକ୍ତି ମାତ୍ରେ ତାମସିକ । ତେବେ ସାଧନାକୁ ଗୋଟାଏ ବାଧ୍ୟତାମୂଳକ ଶାସ୍ତିବୋଲି ଭାବି ପିଲାଙ୍କ ଭଳି ନିଜକୁ ନିଜେ ଠକି, ଭଣ୍ଡି ସେଥିରୁ ଖସିଯିବା ଯେପରି ଅନୁଚିତ, ସେଥିରେ ଗୁଡ଼ାଏ ଆସକ୍ତ ହୋଇ ଯନ୍ତ୍ରଭଳି ନିଯୁକ୍ତ ହେବା ମଧ୍ୟ ସେହିପରି ନିରର୍ଥକ । ମୂଳକଥା ହେଲା ଚେତନାଗତ । ଏ ସମସ୍ତ ବାହ୍ୟ ଆଚରଣ ସେହି ଚେତନା ସ୍ତରରେ ହିଁ ସଂଶୋଧିତ ହୋଇଯାଏ । ଏପରିକି ବାହ୍ୟତଃ ଉପଚାର ଦିଶୁଥିଲେ ମଧ୍ୟ ଚେତନାରେ କୌଣସି କଳୁଷ ଲାଗେ ନାହିଁ । ତେବେ କୌଣସି ବିଷୟ ଏଭଳି ସରଳ ସହଜ ଭାବେ ଛିଣ୍ଡେଇ ହେବନାହିଁ । ସାଧକ ନିଜେ ନିଜ ପାଖରେ ଦାୟୀ । ଯାହା ମନ ତାହାହେଉ, କିନ୍ତୁ ଠକିବାର ପ୍ରଶ୍ନନାହିଁ ।



## ୧୭-୨-୮୪

ବେଦ ଶାସ୍ତ୍ରାଦି ନିୟମିତ ଅଧ୍ୟୟନ କଲେ କ'ଣ ଆତ୍ମଜ୍ଞାନ ମିଳେ ? ନା । କାରଣ ତା'ହେଲେ ତ' ଚତୁର୍ବେଦକୁ ମୁଖସ୍ଥ କରିଥିବା ପଣ୍ଡିତମାନେ ସମସ୍ତେ ଆତ୍ମଜ୍ଞାନୀ ହୋଇଯାଇ ଥାନ୍ତେ, ସନତ୍ସୁଜାତ ଅତି ପରିଷ୍କାର ଭାବରେ ଧୃତରାଷ୍ଟ୍ରଙ୍କ ପ୍ରଶ୍ନର ଉତ୍ତର ଦେଇ କହୁଛନ୍ତି - 'ମୋଠାରୁ ଶୁଣି ରଖ, ମୁଁ ତୋତେ ମିଛ କହୁନାହିଁ, ବେଦଶାସ୍ତ୍ରରେ ଆତ୍ମା ମିଳେ ନାହିଁ ।' "ତେବେ ଶାସ୍ତ୍ର ଅଧ୍ୟୟନ ଏକ ଅତି ତୁଚ୍ଛ, ନିଷ୍ପ୍ରୟୋଜନ ନୁହେଁ କି ? କାହିଁକି ଜଣେ ଏତେ ପରିଶ୍ରମ କରି ଶ୍ରୀଅରବିନ୍ଦଙ୍କ ଗ୍ରନ୍ଥ ଚତୁଷ୍ଟୟ ପଢ଼ିବାକୁ ଯିବ ? କିନ୍ତୁ କଥା ସେପରି ନୁହେଁ । ଅଧ୍ୟୟନ କରିବା ସାଧନାର ଏକ ଅଂଶ, ତାହା ସିଦ୍ଧି ନୁହେଁ । ପଢ଼ିଦେଲେ ଯେ ଜଣେ ଅତିମାନସର ଅନୁଭବ ପାଇଯିବ ବା ଚେତନାର ଅତି ମହାନ୍ ସ୍ତରରେ ପହଞ୍ଚି ଯିବ, ଏହା ଏକ ଭ୍ରାନ୍ତ ଧାରଣା । ପଢ଼ିଲେ ମନଟିକୁ କେତୋଟି ଅଭୂତପୂର୍ବ ଚିନ୍ତାରାଜ୍ୟରେ ସୁଶାସିତ କରିହେବ । ଫଳମାଧ୍ୟମରେ ଉନ୍ମୁଖ କରିହେବ, ଯେପରି ପ୍ରତିପଦାର ଚନ୍ଦ୍ରକଳାକୁ ଦେଖିବା ସକାଶେ ବୃକ୍ଷଶାଖା ଏକ ମାଧ୍ୟମ, ସେପରି ଦୂରସ୍ଥ ଆତ୍ମଜ୍ଞାନ ପାଇଁ ଶାସ୍ତ୍ରମାନେ କେବଳ ଅବଲମ୍ବନ ମାତ୍ର, ତାର କାରଣ ନୁହନ୍ତି ।

## ୧୮-୨-୮୪

ନଦୀ ଢେଉ ନୁହେଁ, ତଟ ନୁହେଁ, ଜଳ ନୁହେଁ, ବାଲୁକାଶଯ୍ୟା ବି ନୁହେଁ, ଏ ସମସ୍ତର ସମାହାର ମଧ୍ୟ ନୁହେଁ, କାରଣ ଗିରିଗର୍ଭରୁ ସମୁଦ୍ର ପର୍ଯ୍ୟନ୍ତ ଏ ସମସ୍ତଟି ଯଦି ଏକ ନଦୀ, କିଏ ତା'ହେଲେ ପ୍ରବାହିତ ହେଉଛି, କେଉଁଠାରୁ କେଉଁଠାକୁ ? ଯେଉଁଠାରୁ ପ୍ରବାହିତ ହେଉଛି, ସେଇଠି ନଦୀ ଅଛି ନା ନାହିଁ ? ତଟସ୍ଥ ଗଛ ହୁଏତ' ଉତ୍ତର ଦେଇପାରେ । ସେଠି ବି ସେଇଆ । ଗଛଟି ଗଣ୍ଡି ନୁହେଁ, ଶାଖା ନୁହେଁ, ଫୁଲଫଳ କି ପତ୍ର ନୁହେଁ କିମ୍ବା ବୀଜାଙ୍କୁରଠାରୁ ଶୁଖିଲାକାଠର କୁଢ଼ ପର୍ଯ୍ୟନ୍ତ ଏ ସମସ୍ତର ସମାହାର ବି ନୁହେଁ । ନଦୀପରି ଏ ମଧ୍ୟ ଏକ ପ୍ରବାହର ନାମ ମାତ୍ର । ରୂପପ୍ରବାହ ଅସ୍ଥିର, ତାକୁ ଗୋଟିଏ ନାମରେ ଧରିରଖିବାକୁ କେବଳ ଚେଷ୍ଟା କରାଯାଉଛି । ନଦୀ ବିଷୟରେ ଗଛ କ'ଣ କହି ପାରିବ ? ତା'ର ଗୋଟିଏ ଅବସ୍ଥାରେ ନଦୀର ଗୋଟିଏ ଅବସ୍ଥାକୁ ସଂଯୁକ୍ତକଲେ ସେ ହୁଏତ କ'ଣ କହିପାରେ । ଗଛ ପୂର୍ବରୁ ନଦୀ ଥିଲା ଏବଂ ତା'ପରେ ମଧ୍ୟ ରହିବ । ଏଣୁ ଗଛ ନୁହେଁ, ହୁଏତ ପାହାଡ଼ କହିପାରେ, ପୃଥିବୀ କହିପାରେ ସେଇଠି ମଧ୍ୟ ସେଇ ଅସୁବିଧା । କାଳର ପ୍ରବାହରେ ରୂପର ପ୍ରବାହ । ସୂର୍ଯ୍ୟ ଚନ୍ଦ୍ର ତାରା ସବୁ ତାହାରି ଭିତରେ ଉଦୟ ଅସ୍ତ ହେଉଛନ୍ତି । ଏ ସମସ୍ତ ପ୍ରବାହକୁ ଏକମାତ୍ର ନାମ ଯଦି ଦିଆଯାଏ, ତା'ର ନାଁ ଜଗତ୍ ବା ସଂସାର । ପ୍ରବାହରେ ଥାଇ ପ୍ରବାହକୁ କଳନା କରିହେବ ନାହିଁ । ତେଣୁ ଏ ସମସ୍ତର ଊର୍ଦ୍ଧ୍ୱରେ ଅସଂପୃକ୍ତ କୌଣସି ସାକ୍ଷୀସତ୍ତା ହୁଏତ' ଏ ପ୍ରବାହକୁ ଦେଖୁଛି, - ହୁଏତ' ଏ ପ୍ରବାହର ସେହିଁ ଉତ୍ପତ୍ତି କାରଣ - ହୁଏତ ସେହି ସରୀସୃପପରି ସ୍ଥିର ଆଖିରେ ନିଜର ହଲୁଥିବା ଲାଙ୍ଗୁଡ଼କୁ ଚାହିଁଛି । ତାକୁ ଜାଣିବାର ଉପାୟ ନାହିଁ, କାରଣ କେଉଁ ସ୍ଥିତିରୁ ଆଦିସାକ୍ଷୀକୁ ସାକ୍ଷୀରୂପେ ପ୍ରତ୍ୟକ୍ଷ କରିହେବ ? ଏଠାରେ ଅନୁପପତ୍ତି ପ୍ରସଙ୍ଗ ଆସିଯାଉଛି -

'ଯାହା ଅଛି ଏବଂ ନାହିଁ' ଏ ଉଭୟଧର୍ମ ଯେ ଧାରଣକରେ ତାହା ହିଁ ଜଗତ୍ । ତାକୁ ମିଥ୍ୟାବୋଲି ଆଖ୍ୟାତ କରାଯାଇଛି । ପ୍ରକୃତରେ ତାହା ଅନିର୍ବଚନୀୟ । ଶ୍ରୀଅରବିନ୍ଦ ଏ ମିଥ୍ୟାଟିକୁ ଅସ୍ୱୀକାର କରନ୍ତି । ଏହା ହିଁ ଚେତନାର କ୍ରମବିବର୍ତ୍ତନର ଧାରା । ମୂଳଚେତନା ନିଜର ଶୁଦ୍ଧରୂପରେ ଏହି ଦେହମନପ୍ରାଣ ସଂଘାତରେ ବିକଶିତ ହେବ । ଯାହା ଅଛି, ଚିରକାଳ ଥିଲା ଓ ରହିବ । ସେହିଁ ନିଜଠାରେ ନିଜେ ପ୍ରକାଶିତ ହେବ ।



## ୧୯-୨-୮୪

ଜଣେ ଚେଷ୍ଟା କରୁଥାଏ ଏବଂ ଇଚ୍ଛାକରୁଥାଏ ପୂର୍ବକୁ ଯିବାପାଇଁ, ବସ୍ତୁତ ଯାଉଥାଏ ପଶ୍ଚିମକୁ । କେମିତି ସେ ବିପରୀତ ଦିଗରେ ଚାଲିଯାଏ ? ତାକୁ କିଏ ବା କ'ଣ ବଳାତ୍କାର କରେ ? ତାକୁ ପଚାରିଲେ ସେ ହୁଏତ କହେ ଯେ ପଶ୍ଚିମକୁ ଯାଉଛି ବୋଲି ସେ ଆଦୌ ଜାଣିପାରି ନାହିଁ । ପଶ୍ଚିମକୁ ଚିରକାଳ ପୂର୍ବଭଳି ଚାଲିଥିବା ଏକ ସାଂଘାତିକ ଦିଗଭ୍ରମ । କୌଣସି ଦିକ୍‌ଦ୍ରଷ୍ଟା ତାର ଭୁଲ ବୁଝାଇ ନଦେବାଯାଏ ସେ ବିଚାରା ଜାଣିପାରେ ନାହିଁ । ଭୁଲ୍ କରୁଥିବା ସତ୍ତ୍ୱେ ଠିକ୍ କରିବା ପାଇଁ ତାର ଇଚ୍ଛାଟି ହିଁ ତାକୁ ଶେଷରେ ରକ୍ଷାକରେ । ନହେଲେ

ସେ ଦିକ୍‌ଦ୍ରଷ୍ଟାଙ୍କ କଥାକୁ କାହିଁକି ଶୁଣନ୍ତା ? ସେ ତ'ଖୁସିରେ ପଶ୍ଚିମକୁ ପୂର୍ବଭଳି ଚାଲିଥିଲା ଏବଂ ସେଇଭଳି ଚାଲିଥାନ୍ତା ଅନ୍ଧାରରେ ପଶିବା ପର୍ଯ୍ୟନ୍ତ । ସେ କାହିଁକି ପୁଣି ମୁହଁ ଫେରେଇ ବିପରୀତ ଦିଗରେ ଯିବାର ଚିନ୍ତାକରି ଥା'ନ୍ତା ? ଯେତେ ସବୁ ବ୍ରତ, ଉପବାସ, ପୂଜାପାଠ, ନୈତିକ, ସାମାଜିକ, କୌଳିକ ଭଲମନ୍ଦ ଏଇ ପର୍ଯ୍ୟାୟର । ସେ ଭାବିଥାଏ, ଏହା ହିଁ ଆଧ୍ୟାତ୍ମିକତା, କିନ୍ତୁ ତାହା ତା'ର ବିପରୀତ, ବ୍ରତ, ଉପବାସାଦି ଶୌଚ ଅଶୌଚାଦି ହୁଏତ' ଗୋଟିଏ ଦୃଷ୍ଟିରୁ କରଣୀୟ । ନୈତିକତା ମଧ୍ୟ ଏକ ଲକ୍ଷ୍ୟ, ସେଥିରେ ଆଚରଣ ଶୁଦ୍ଧହୁଏ, କିନ୍ତୁ ଏହା ହିଁ ଠିକ୍ ଏବଂ ଏହା ହିଁ ଆଧ୍ୟାତ୍ମିକତା ଭାବିଲେ ପଶ୍ଚିମକୁ ପୂର୍ବ ଭାବିଲାଭଳି ଦିଗ୍‌ଭ୍ରମ ହୋଇଯିବ । ଯେ ଆଧ୍ୟାତ୍ମିକ ଜୀବନଯାପନ କରନ୍ତି ସେ ନୈତିକ ଭଲମନ୍ଦର ବନ୍ଧନରୁ ମୁକ୍ତ । ଆଶଙ୍କା ହୋଇପାରେ ଯେ ସେ ହୁଏତ ସେଇ କାରଣରୁ ଅନୈତିକ, ଅନାଚାରୀ ଏବଂ ଉଚ୍ଛୃଙ୍ଖଳ ହୋଇ ଯାଇପାରନ୍ତି । କିନ୍ତୁ ତା'ନୁହେଁ । ଯେ ଆତ୍ମ ସାକ୍ଷାତ୍‌କାର କରି ପାରିଛନ୍ତି, ଯେ ଜୀବନ୍ମୁକ୍ତ ସେ କଦାପି ଅସତ୍, ଅନ୍ୟାୟ ବା ଅନୀତି, ଅନିଷ୍ଟ କରିପାରନ୍ତି ନାହିଁ, ତାହା ତାଙ୍କର ସ୍ୱଭାବ ବିରୁଦ୍ଧ ହୋଇଥିବାରୁ ଅପ୍ରାସଙ୍ଗିକ ।

ଜଣେ ହୁଏତ ଏମିତି ନ ଜାଣି ପଶ୍ଚିମକୁ ଯାଉଥାଏ ଏବଂ ବାଟପାଇ ଫେରିଆସେ । ଆଉ ଜଣେ ଭିଡ଼ିହୋଇ ପଶ୍ଚିମକୁ ଚାଲିଯାଉଥିବାର ଅନୁଭବ କରେ । ପରିସ୍ଥିତି ଏଭଳି ହୁଏ, ତା ଶକ୍ତିର ବହିର୍ଭୂତ, ଏପରି ଅପଶକ୍ତିମାନେ ସକ୍ରିୟ ହୁଅନ୍ତି ଯେ ସେ ବାଧ୍ୟ ହୋଇ ପୂର୍ବଚିନ୍ତା କରିକରି ପଶ୍ଚିମକୁ ଯାଉଥାଏ । ସତେ ବା ସେ ପୂର୍ବ ଆଡ଼କୁ ମୁହଁ କରିଥାଏ । କିନ୍ତୁ ପଛଆଡ଼ିଆ ଘୁଞ୍ଚିଯାଉଥାଏ ପଶ୍ଚିମକୁ । ତା'ଅଣ୍ଟାରେ ଦଉଡ଼ି ଲଗେଇ କିଏ ତାକୁ ଟାଣିନେଉଥାନ୍ତି । ଏଭଳି ଅବସ୍ଥା ମଧ୍ୟ ପ୍ରମାଦପୂର୍ଣ୍ଣ । ଭୁଲ୍ ରହୁଛି ସେଇ ବ୍ୟକ୍ତି ପାଖରେ । ସେ ହୁଏତ ପୂର୍ବ ବିଷୟରେ ଠିକ୍‌ଭାବରେ ସଚେତନ ନୁହେଁ । ସେ ଜାଣେ ନାହିଁ ପୂର୍ବ କେଉଁଆଡ଼େ କିମ୍ବା ଜାଣିସୁଦ୍ଧା ତା'ଅନ୍ତରରେ ଏକାନ୍ତ ଭାବେ ଚାହିଁ ନାହିଁ ସେଇଆଡ଼େ ଯିବାକୁ, ଚାହିଁ ନାହିଁ ପ୍ରାର୍ଥନା କରିବାକୁ, ଗୁରୁକୃପା, ବିଭୁକୃପାକୁ ଆବାହନ କରିବାକୁ । ତା'ଭିତରେ ବାଙ୍କ ନ ଥିଲେ ଆଙ୍କୁଡ଼ା ଲାଗି ପାରିବ ନାହିଁ, ତା'ର ଜ୍ଞାତସାରରେ କିମ୍ବା ଅଜ୍ଞାତସାରରେ ସେ ସେଇଭଳି ଦଉଡ଼ି ଏବଂ ଅପଶକ୍ତିମାନଙ୍କୁ ଲୋଡୁଥାଏ ଯେଉଁମାନେ ତାକୁ ପଶ୍ଚିମକୁ ଓଟାରିନେବେ । ସେଥିରେ ସେ ପୀଡ଼ିତ ହେଉଛି ବୋଲି ମଧ୍ୟ ଆତ୍ମପୀଡ଼ନ ପ୍ରବୃତ୍ତି ଦ୍ୱାରା ବିଚିତ୍ର ସୁଖ ଲାଭ କରୁଥାଏ । ମୋତେ ଦୟାକରନ୍ତୁ, ମୁଁ ପ୍ରକୃତରେ ପୂର୍ବକୁ ଯିବାକୁ ଚାହେଁ, ମୋତେ ଏମାନେ ବାଧ୍ୟ କରୁଛନ୍ତି ପଶ୍ଚିମକୁ ଯିବାପାଇଁ, ଏଇଟା ଭୁଲ୍ । ଥରେ ଜଣେ, ଭୂତ ଅତ୍ୟାଚାରରୁ ମୁକ୍ତିପାଇବାକୁ ଶ୍ରୀମା'ଙ୍କ ସାହାଯ୍ୟ ପ୍ରାର୍ଥନାକଲେ । ମା'ଙ୍କ ଆଶୀର୍ବାଦ ପାଇ ସେ ତତ୍‌କ୍ଷଣାତ୍ ସେ ସେଇ ରାତିରୁ ମୁକ୍ତ ହୋଇଗଲେ କିନ୍ତୁ ପୁଣି ଚାରିପାଞ୍ଚଦିନ ପରେ ସେଇ ଭୂତ ପ୍ରକୋପ ହେଲା ବୋଲି ଟେଲିଗ୍ରାମ କଲେ । ମା'ପୁଣି ଆଶୀର୍ବାଦ ପଠାଇଲେ ଏବଂ ସେ ମୁକ୍ତହେଲେ । ତଥାପି କିଛିଦିନ ପରେ ତାହାପୁଣି ହେଲା । ମା'ହସି ହସି କହିଥିଲେ - 'ସେ ମୋତେ ଦାଣ୍ଡ ଦୁଆର ବାଟେ ଡାକୁଛି, ମୁଁ ଯାଇ ଚାଲି ଆସିଲାପରେ ଭୂତ ପାଇଁ ବାଡ଼ିକବାଟ ମେଲାକରି ଦେଉଛି । ଏଥିରେ କ'ଣ ହେବ ?" ତା'ମାନେ ଜାଣି ନ ଜାଣି ସେ ବିଚାରା ଭୂତଟିକୁ ଆବାହନ କରୁଥାଏ । ସେହିଭଳି, ପଶ୍ଚିମ ଶକ୍ତିମାନଙ୍କୁ ଆମେ ସୁଯୋଗ ଦେଉନଥିଲେ ସେମାନେ କଦାପି ଆମକୁ ଧରି ଟାଣିନେଇ ପାରନ୍ତେ ନାହିଁ । ଆମର ସଂକଳ୍ପ ଦୃଢ଼ ନୁହେଁ, ଦୃଷ୍ଟି ପରିଷ୍କାର ନୁହେଁ, ଏଣୁ ସବୁପ୍ରକାର ବିଭ୍ରାଟ ପାଇଁ ପରିସ୍ଥିତି ତିଆରି ହୋଇଯାଏ । ଗୁରୁସ୍ମରଣ କରି, ସ୍ଥିରସଂକଳ୍ପ କରି, ନିର୍ଦ୍ଦିଷ୍ଟ ପଦକ୍ଷେପ ନେଲେ, କାହାର ସାହସ ଅଛି ପଛକୁ ଟାଣି ନେବ ?

## ୨୯-୨-୮୪

ଯଦି ଘରଦୁଆରେ ଅକସ୍ମାତ କୌଣସି ଭବ୍ୟଅତିଥିଙ୍କ ଆବିର୍ଭାବ ହୁଏ, ତେବେ ସେହିପରି ଅପ୍ରସ୍ତୁତ ଅବସ୍ଥାରେ ହିଁ ତାଙ୍କୁ ସ୍ୱାଗତ ଜଣାଇବାକୁ ପଡ଼ିବ । ଲଜ୍ଜିତ ହେବାକୁ ପଡ଼ିବ ନିଜର ଅଯୋଗ୍ୟତା ପାଇଁ, ଅପରିଚ୍ଛନ୍ନତା ପାଇଁ । କିନ୍ତୁ ଉପାୟ ନାହିଁ । ସେଭଳି ଅତିଥିଙ୍କ ପାଇଁ ଯେପରି ଯଥାଯୋଗ୍ୟ ଅଭ୍ୟର୍ଥନା କରିବାକୁ ମନହେଉଥିବ, ତା'ର ଶତାଂଶ ମଧ୍ୟ ହୋଇପାରୁ ନଥିବାରୁ ଘୋର ଗ୍ଲାନିବୋଧରେ ମଥା ନଇଁଯିବ । ଆତ୍ମଧିକ୍କାର ଆସିବ, କାହିଁକି ପ୍ରସ୍ତୁତ ହୋଇପାରିଲି ନାହିଁ ବୋଲି ଅନୁତାପ ହେବ । କିନ୍ତୁ କ'ଣ କରାଯାଇ ପାରିବ ? ସେ ଆଉ କୌଣସି ଚେଷ୍ଟା ନ କରି ନିଜକୁ ସଂପୂର୍ଣ୍ଣ ଅନାବୃତ ଅର୍ପଣ କରି ଦେବ । ଘୋଡ଼େଇବାକୁ, ଲୁଚେଇବାକୁ ଆଉ କିଛି ନଥିବ । କାଦୁଅ ଘାଣ୍ଟୁଥିବା ଅବସ୍ଥାରେ ହଠାତ୍ ଗୁରୁଜନ ଆସି ପିଲାଟି ଆଗରେ ଠିଆହୋଇଗଲେ ତା'ର ଯାହା ଅବସ୍ଥା, ଠିକ୍ ସେହିପରି । ତେବେ ଏଇଭଳି ଯେ ଆସି ଅକସ୍ମାତ ପହଞ୍ଚି ଥାନ୍ତି ସେ ଯେତିକି ପରମମାନନୀୟ, ସେତିକି ଆପଣାର । ସେ ମମତାରେ, କରୁଣାରେ ଆର୍ଦ୍ର ହୋଇ ହୁଏତ' ଅନାନ୍ତି । ସବୁ ଅସାମର୍ଥ୍ୟକୁ କ୍ଷମା କରିଦିଅନ୍ତି । ନିଜେ ହୁଏତ' ନିଜ ହାତରେ କିଛି ସଜାଡ଼ି ଦିଅନ୍ତି । ବିଶୃଙ୍ଖଳ, ବିପର୍ଯ୍ୟସ୍ତକୁ ବିନ୍ୟସ୍ତ ସଂଯତ କରି ଦିଅନ୍ତି ସେ ଆହୁରି ଲାଜରେ ସଢ଼ିଯାଏ । ସବୁବେଳେ ମନେ ମନେ କହୁଥାଏ, ଧନ୍ୟୋସ୍ମି, ଧନ୍ୟୋସ୍ମି..... ଏବଂ ହତୋସ୍ମି, ହତୋସ୍ମି । ତା'ର ଭିତରେ ଏବଂ ବାହାରେ ଏକ କୃତକୃତ୍ୟଭାବ । ସେ ହାତ ମଳି ଛଳଛଳ ଆଖିରେ ମାନନୀୟ ଅତିଥିଙ୍କୁ ଚାହିଁଥାଏ । ମନରେ ଗୁଣି ହେଉଥାଏ, କି ଛାର ମଣିଷ ମୁଁ, ଏଠି ପାଦଧୂଳି ପକାଇ କୃତାର୍ଥକଲେ, ଅଯାଚିତ ଆସିଛନ୍ତି ଏହା ଆପଣଙ୍କର ମହନୀୟତା, ମୋର ଭାଗ୍ୟ । ମୋର କିବା ଯୋଗ୍ୟତା ? ମୋର ପ୍ରସ୍ତୁତି କାହିଁ, ଶୁଦ୍ଧି କାହିଁ, ସାମର୍ଥ୍ୟ କାହିଁ ? ଆପଣ ସ୍ୱୟଂ କୃପା କରି ଆସିଛନ୍ତି, ଆଖିରେ ଦେଖନ୍ତୁ ମୋର ଦୈନ୍ୟ... କ୍ଷମା କରନ୍ତୁ, ମନରେ କିଛି ଘେନା କରନ୍ତୁ ନାହିଁ - "ପ୍ରଭୁ ମେରେ ଅବିଗୁନ ଚିତ ନ ଧରୋ, ସମଦରଶୀ ପ୍ରଭୁ ନାମ ତିହାରେ, ଚାହେ ପାର-କରୋ ॥"



## ୩୦-୨-୮୪

ସହଯାତ୍ରୀ କିଏ ? ସେମିତି କହିଲେ ତ' ଗୋଟିଏ ଦିଗକୁ ମୁହଁକରି ମାତ୍ର ପାଦେ ହେଉପଛେ ଯାହାସାଙ୍ଗେ ଯାତ୍ରାକରିହୁଏ ସେ ସହ ଯାତ୍ରୀ, ସଂସାର ବୈଚିତ୍ର୍ୟ ଭିତରେ ଅନେକାନେକ ପରିସ୍ଥିତିରେ ଅନେକ ବ୍ୟକ୍ତି - ଚେତନା ସହିତ ସଂପର୍କ ହୁଏ । କିନ୍ତୁ ସହଯାତ୍ରା ହୁଏ ନାହିଁ । ଏପରିକି ଘନିଷ୍ଠ ବନ୍ଧୁକୁଟୁମ୍ବୀ ରୂପେ କିମ୍ବା ପତିପତ୍ନୀରୂପେ ଅର୍ଦ୍ଧଶତାବ୍ଦୀ ଧରି ଗୋଟିଏ ଘରେରହି ପାନାହାର କରୁଥିଲେ ସୁଦ୍ଧା ସେମାନେ ସହଯାତ୍ରୀ ନ ହୋଇପାରନ୍ତି । ଲକ୍ଷ୍ୟ ଏକ ହେଲେ ମଧ୍ୟ ସେଇଠି ପହଞ୍ଚିବା ପାଇଁ ଭିନ୍ନ ଭିନ୍ନ ପନ୍ଥା ରହିଛି । କିଏ କେଉଁବାଟେ ଯାଏ, ଏଣୁ ଏକାଠି ଯାତ୍ରାକରି ପାରୁନଥିବାରୁ ସେମାନେ ସହଯାତ୍ରୀ ନୁହନ୍ତି । ସମସ୍ତେ କିନ୍ତୁ

ଯାତ୍ରୀ, ଯେ ଯାହା ଢ଼ଙ୍ଗରେ ସବୁ ଯାତ୍ରା କରୁଥାନ୍ତି । ସେଇଭଳି ଦୁଇଜଣଙ୍କ ଭିତରେ ଗୋଟିଏ ସମ୍ଭାବ୍ୟ ଆଳାପ ଦୃଷ୍ଟାନ୍ତ ରୂପେ ନିଆଯାଉ । କୌଣସି ରେଳଷ୍ଟେସନରେ ସେମାନଙ୍କର ଦେଖାହେଲା । ଏଥିପାଇଁ ଯୋଜନା ନଥିଲା । ଅକସ୍ମାତ୍ ଗୋଟିଏ ଡାଳରେ ଦୂରାଗତ ଦୁଇଟି ପକ୍ଷୀ ପରସ୍ପରକୁ ସ୍ୱୀକାର କଲେ ଏବଂ ଅନେଇଲେ । କୌଣସି ଅଜ୍ଞାତ କାରଣରୁ ସେମାନେ ପରସ୍ପରକୁ ସ୍ୱୀକାର କଲେ ଏବଂ ଭଲ୍ଲାକଲେ । ଜଣେ ପଚାରିଲା "କୁଆଡ଼େ ଯିବେ ?" ଉତ୍ତର - 'ପୁରୀ' । ପ୍ରଶ୍ନ - କ'ଣ ଏଇ ହାଓଡ଼ା ଗାଡ଼ିରେ ଯିବେ ? ଉତ୍ତର "ହଁ", ପ୍ରଶ୍ନ - "ମୁଁ ତ ସେଥିରେ ପୁରୀ ଯାଉଛି, କିନ୍ତୁ ମୁଁ ଦ୍ୱିତୀୟ ଶ୍ରେଣୀରେ ଯିବି, ଆଉ ଆପଣ ?" ଉତ୍ତର - "ମୋର ବି ସେଇ ଦ୍ୱିତୀୟ ଶ୍ରେଣୀ । ପ୍ରଶ୍ନ - ତା'ହେଲେ ତ' ଏକାଠି ଯିବା, ପୁରୀରେ କ'ଣ କାମ ଅଛି ?" ଉତ୍ତର - "ସେଇଠି ଆଉ କାମ କ'ଣ, କେବଳ ଠାକୁର ଦର୍ଶନ ପାଇଁ ଯାଉଛି, ଆଉ ଆପଣ ?" ପ୍ର - "ମୋର ବି ତ ସେଇଆ, ତା'ହେଲେ ଅତି ଉତ୍ତମ ଯୋଗ ପଡ଼ିଲା, ସେଇଠି କିନ୍ତୁ ମୋରରହିବାପାଇଁ ବାଗାରିଆ ଧର୍ମଶାଳା, ଆପଣ କେଉଁଠି ରହିବେ ?" ଉ-"ମୁଁ ଆଉ କୋଉଠି ରିହବି, ସେଇ ଗୋଟାଏ କେଉଁ ଧର୍ମଶାଳାରେ ରହିଥାନ୍ତି, ଚାଲନ୍ତୁ ସେଇ ବାଗାରିଆରେ ଦୁହେଁ ରହିବା ।" ପ୍ର-"ଉତ୍ତମ, ସିଂହଦ୍ୱାର ସାମ୍ନାରେସେ ଧର୍ମଶାଳା, ସେଇଠି ସବୁ ସୁବିଧା ଅଛି । ସେଇଠି ସକାଳୁ ପହଞ୍ଚି ଗାଧୁଆ, ପାଧୁଆ, କରି ସିଧାଯାଇ କଳାଶ୍ରୀମୁଖକୁ ଦର୍ଶନ କରିବାରେ ମନ । ଆପଣ କ'ଣ ଭାବୁଛନ୍ତି ?" ଉତ୍ତର - "ଏଥିରେ ଆଉ କ'ଣ ଭାବିବାର ଅଛି, ସେଇଆ ହେଉ ।" ଦେଖାଗଲା ଯେ ଦୁହିଁଙ୍କ ଯାତ୍ରା ଯୋଜନାରେ ପ୍ରାୟ ଶହେରେ ନବେ ଭାଗ ମିଳିଗଲା, ଶହେରେ ଶହେ ମିଶିବା ଦୁଇଟି ସ୍ୱତନ୍ତ୍ର ବ୍ୟକ୍ତି ଭିତରେ ସମ୍ଭବ ନୁହେଁ । ସେମାନଙ୍କ ସଂସ୍କାର, ଅଭିଜ୍ଞତା, ଚେତନା ସବୁ ସ୍ୱତନ୍ତ୍ର । ସୂକ୍ଷ୍ମଭୂମିରେ ଅନୁଭବ ମଧ୍ୟ ସ୍ୱତନ୍ତ୍ର । ତଥାପି ସେମାନେ ଏକ ଦିଗରେ ଏକ ଲକ୍ଷ୍ୟରେ, ପ୍ରାୟ ପ୍ରତିଟି ପଦକ୍ଷେପ ଏକାଠି ରହିପାରୁଛନ୍ତି । ଏଣୁ ଏମାନଙ୍କୁ ସହଯାତ୍ରୀ କୁହାଯାଇପାରେ । ସେଇଗାଡ଼ିରେ କଫିବିକାଳୀ ଏବଂ ଲୁଗାବେପାରୀ ମଧ୍ୟ ପୁରୀ ଯାଉଥାନ୍ତି । ଏକାଭାବରେ, ପାଖାପାଖି ବସି କିନ୍ତୁ ସେମାନଙ୍କୁ ସହଯାତ୍ରୀ କୁହାଯାଇ ପାରିବ ନାହିଁ । ସେମାନଙ୍କର ସହାବସ୍ଥାନରେ କୌଣସି ତାତ୍ପର୍ଯ୍ୟ ନାହିଁ । ତାହା କେବଳ ଦୁଇଟି ଜଡ଼ବସ୍ତୁର ଆକସ୍ମିକ ନିକଟତା ଭଳି ନିଶ୍ଚେତନ ସଂପର୍କ - ସମଗ୍ର ସଂସାରଯାତ୍ରାରେ ସେ ଦୁଇଟି ଯାତ୍ରୀଭଳି ସମର୍ଧମୀ ବନ୍ଧୁଟିଏ କିମ୍ବା ସହଧର୍ମିଣୀଟିଏ ମିଳିଗଲେ ସେମାନେ ହିଁ ପ୍ରକୃତରେ ସହଯାତ୍ରୀ ।



୨୪-୩-୮୪

What is logic to the Divine is magic to men. ତା'ର କାରଣ ହେଲା ଯେ ମାନବ ବୁଦ୍ଧିର ସୀମା ଭିତରେହିଁ ତର୍କ କାର୍ଯ୍ୟ କରିଥାଏ । ଯାହା ତର୍କ ପ୍ରମାଣର ବହିର୍ଭୂତ ଅଥଚ ପ୍ରତ୍ୟକ୍ଷ ହେବାରୁ ଅନସ୍ୱୀକାର୍ଯ୍ୟ, ଜୀବନରେଏଭଳି ଘଟଣା ଘଟିଯାଏ ଯାହାକୁ ବୁଦ୍ଧିବଳରେ ବୁଝିହୁଏ ନାହିଁ, ଏଣୁ Magic ପରି ଲାଗେ । ଚାରିଆଡ଼ ମେଘପରି ବିପଦ ଘନେଇ ରହିଥାଏ । ଯେ କୌଣସି ମୁହୂର୍ତ୍ତରେ ହୁଏତ ପ୍ରଳୟ

କରିଦେବ । ଆଖିବୁଜି କେବଳ ବର୍ଷା ବିଦ୍ୟୁତ୍‌କୁ ଅପେକ୍ଷା କଲାବେଳେ ଦେଖାଯାଏ, ମାତ୍ର କିଛିକ୍ଷଣ ଭିତରେ ସବୁମେଘ ଅପସରି ଯାଇଛି । ନିର୍ମଳ ଆକାଶରେ ଚନ୍ଦ୍ରୋଦୟ ହୋଇଛି । ଏହା ମଣିଷ ଆୟତ୍ତରେ ହୁଏ ନାହିଁ, ମହାଜାଗତିକ ଶକ୍ତିଦ୍ୱାରା ହିଁ ହୁଏ ଏବଂ ସେ ଶକ୍ତିକୁ ବୁଝିବା ଦୁଃସାଧ୍ୟ । ମନ ବିଶେଷ ପରିସ୍ଥିତିରେ ଅତି ବିବ୍ରତ ଥିଲାବେଳେ, ଅପ୍ରତ୍ୟାଶିତ ଭାବରେ କେହି ଜଣେ ପଦେ କ'ଣ କହିଦିଏ । ସେ ମଧ୍ୟ ଜାଣେ ନାହିଁ ତା'ର ସେ ବାକ୍ୟଟିର ତାତ୍ପର୍ଯ୍ୟ । କିନ୍ତୁ ସେତିକିରେ ସଂକଟର ସମାଧାନ ହୋଇଯାଏ । ଜଗତ୍ ଓ ଜୀବନ ପୁଣି ସ୍ୱଚ୍ଛନ୍ଦରେ ଗତିକରେ । ଏହିଭଳି ଅଦୃଶ୍ୟ ଏବଂ ଅଜ୍ଞାତ ସହିତ ସଂଘାତ ଘଟୁଥାଏ । ପ୍ରଥମେ ତାକୁଆକସ୍ମିକତା କହି ଉଡ଼େଇ ଦିଆହୁଏ, ଆସ୍ତେ ଆସ୍ତେ କିନ୍ତୁ ଏକ ସକ୍ରିୟ ଜାଗ୍ରତଚେତନା ସହିତ ପରିଚୟ ହୁଏ । ସଂଦେହସ୍ଥାନରେ ବିଶ୍ୱାସ ଦେଖାଦିଏ, ତେଣିକି ତା'ଉପରେ ନିର୍ଭର କରିହୁଏ, ତାକୁ ଆବାହନ କରିହୁଏ । ତା'ର ଅକୃପଣ କୃପାପାଇ କୃତଜ୍ଞ ହେବାକୁ ହୁଏ । କିନ୍ତୁ ବିଚିତ୍ର କଥା, ମା'କୋଡ଼ରେ ଆଖିବୁଜି ସ୍ତନ୍ୟପାନ କରୁଥିବା ଶିଶୁ ଯେପରି ମା'ର ଅସ୍ତିତ୍ୱବିଷୟରେ ପ୍ରତ୍ୟକ୍ଷ କରିପାରେ ନାହିଁ, ଏଣୁ ହୁଏତ ସଂଦେହ କରେ, ସେହିପରି ଏ ସମସ୍ତ ଅନୁଭବସତ୍ତ୍ୱେ, ମନେହେଉଥାଏ ଯେ ଏହା କେବଳ କଳ୍ପନା, ଏମିତି ଖାଲି ଆକସ୍ମିକ ଘଟଣାଟା ଘଟିଯାଉଛି । ଏହା ପଶ୍ଚାତରେ କାହାରି ଇଚ୍ଛା ବା ଯୋଜନା ନାହିଁ । ସେ ହୁଏତ' ଏ ଧୃଷ୍ଟତା ପାଇଁ ଆମକୁ କ୍ଷମାକରେ ।



## ୧୩-୩-୮୪

[illegible] ପାଖେ ଉଠିଥିବା ଦୁଇଟି ଗଛର ପତ୍ରକୁ ବୁଢ଼ିଆଣୀ ସୂତାରେ ଛନ୍ଦିଦେଇଥାଏ । ସେ ବନ୍ଧନ ଯଦି ଗଛ ଦୁଇଟିର ସଂପର୍କ ବୋଲି କୁହାଯାଏ, ତାହା କେତେ ଦୁର୍ବଳ ଏବଂ କ୍ଷଣଭଂଗୁର ତାହା ଅନୁମାନ କରାଯାଇପାରେ । ସେହିପରି ମଣିଷ ମଣିଷ ଭିତରେସଂପର୍କ । ଗୋଟାଏ ମୁହୂର୍ତ୍ତରେ ସେମାନେ ବିଚ୍ଛିନ୍ନ ହୋଇଯାଇ ପାରନ୍ତି, ସଂପର୍କର ତନ୍ତୁଜାଲ ଛିଣ୍ଡିଯିବାକୁ କେତେ ଘଡ଼ି ? ତାକୁ ଛିଣ୍ଡିଯିବା ଭୟରେ ଜଗି ରହିବାକୁ ହୁଏ । ଖୁବ୍ ଜାଗ୍ରତ ରହି ପାରିଲେ କିଛିକାଳ ସଂପର୍କ ରହିପାରେ । ମାନବ ପ୍ରେମ ଏଥିରେ ସାହାଯ୍ୟ କରିଥାଏ । କିନ୍ତୁ ସେଥିରେ ସ୍ୱାର୍ଥର ମାତ୍ରା ଏତେ ବେଶୀ ଯେ ଦୁଇଟି ସ୍ୱାର୍ଥର ସଂଘର୍ଷ ଯେକୌଣସି ମୁହୂର୍ତ୍ତରେ ଘଟିଯାଇ ପାରେ । ଏ ପ୍ରକାର ବିସ୍ଫୋରଣକୁ ଏଡ଼ାଇ ଦେବା ହିଁ ସୌଜନ୍ୟ । ଏହା ହିଁ ସାମାଜିକତା । କିନ୍ତୁ ବିଭୁସଂପର୍କ ଅନ୍ୟ ପର୍ଯ୍ୟାୟର, ଗଛର ମାଟି ସହିତ ସଂପର୍କ ପରି । ସେଥିରୁ ସେ ତା'ର ଶକ୍ତି ଆହରଣ କରେ, ଅନ୍ନ ସଂଗ୍ରହ କରେ ଅଥଚ ସେ ବିଷୟରେ ସେ ସଚେତନ ନଥାଏ । ସେ ତା'ର ପରିଚୟ କେବଳ ଦୃଶ୍ୟମାନ ଅଂଶ ସହିତ ଯୋଡ଼ିରଖେ । ମାଟି ଉପରୁ ଶିଖଯାଏ, ସେ ନିଜକୁ ଗଛବୋଲି ଭାବିଥାଏ । ମାଟି ଭିତରେ ଅଂଶଟି ଅଂଧାରରେ ଅଜ୍ଞାତ ରହିଥାଏ । ସେଇଭଳି, ଯେଉଁଠାରୁ ଆମେ ଶକ୍ତି ଆହରଣ କରୁ, ଯାହା ସହିତ ଆମେ ଅତି ଦୃଢ଼ଭାବରେ ଜଡ଼ିତ, ସେ ହେଉଛନ୍ତି ସେଇ, 'ମତ୍‌ସ୍ଥାନି ସର୍ବଭୂତାନି-ଧାରୟାମି ଅହଂ [illegible] ।'



## ୧୫-୩-୮୪

ଆକାଶରେ ଭାସୁଥିବା ଛିନ୍ନମେଘ ପରି, ଆଖିବୁଜିଦେଲେ ମନ ଭିତରେ ଭେଳା ଭେଳା ଚିତ୍ର ଉଦୟ ଏବଂ ଅସ୍ତ ହୁଅନ୍ତି । ସେଥିରୁ ଅଧିକାଂଶ ସ୍ମୃତିର ନାଟକ । ଚରିତ୍ର ଘଟଣା ସବୁ ଜଣାଶୁଣା । କିନ୍ତୁ ସେଇ ସ୍ମୃତିର ସରହଦ ଭିତରକୁ ଅଜ୍ଞାତ ରାଜ୍ୟରୁ ଉପାଦାନ ସବୁ ପଶି ଆସନ୍ତି କଳ୍ପନା ମାଧ୍ୟମରେ । ସ୍ମୃତି ଗୋଳିଆମିଶା ହୋଇଯାଏ । ଦେଶକାଳ ସବୁ ଲଂଘିଆସେ ରୂପବର୍ଣ୍ଣର ବନ୍ୟା । ସେଇଠି ଭଲ ଅସାର କୌଣସି ଚିତ୍ର ସ୍ଥିର ରହେନାହିଁ, ସତେ ବା ସେ ସମସ୍ତ ବାୟୁରେ ତିଆରି ତା'ର ସ୍ଥୂଳତା ନାହିଁ କି ସ୍ଥିରତା ନାହିଁ । ଯା ବାହାରେ ଆଉ ପ୍ରକାରେ ଅନୁଭବ ହୁଏ । ଯେତେବେଳେ ମନକୁ ଚିନ୍ତାମୁକ୍ତ କରି ଏକାଗ୍ରଧ୍ୟାନ କରିବାକୁ ଚେଷ୍ଟାକରାଯାଏ, ସେତେବେଳେ ଧେୟରୂପକୁ ବିଲୀନ କରିଦେଇ ଗୋଟାଏ କିଂଭୂତ ରୂପ ଆସି ମନଶ୍ଚକ୍ଷୁ ଆଗରେ ଉଭାହୁଏ । ଅତି ପରିଷ୍କାର ଦିଶେ । କିନ୍ତୁ କି ଭୟଙ୍କର । କୋଡ଼ିପରି ଦାନ୍ତ, ଲଣ୍ଡାମୁଣ୍ଡ, ଆଖିକରଣ୍ଡା କୋଳିପରି, ସେ ବି ସବୁବେଳେ ସେମିତି ନୁହେଁ । ସେ କାମରୂପୀ - ସେ ରୂପ ସ୍ମୃତିରେ ନିଶ୍ଚୟ ନଥିଲା । ସ୍ମୃତିର ଭିନ୍ନ ଭିନ୍ନ ଉପାଦାନରେ ମଧ୍ୟ ତାହା ଗଠିତ ନୁହେଁ । ତେବେ ସେ ଆସେ କେଉଁଠୁ ? ଅଜ୍ଞାତ ଅପରିମେୟ ଅବଚେତନାର ଗହ୍ୱର ଭିତରୁ ଅଜ୍ଞାତ ଆଉ ଏକ ଭୂମିରୁ ଯେଉଁଠି ସାଧକର ପ୍ରତିପକ୍ଷ ତା'ର ସମଗ୍ର ସୈନ୍ୟବାହିନୀ ନେଇ ପ୍ରସ୍ତୁତ ରହିଛି । ଧ୍ରୁବଙ୍କ ଧ୍ୟାନ ଭଙ୍ଗ କରିବାକୁ ଅତି ଭୟଙ୍କର ମାର ରୂପମାନେ ତାଙ୍କ ଚାରିପଟେ ଆସି ବିଚରଣ କରିବାର ବର୍ଣ୍ଣନା ରହିଛି । ସେଇପରି ଗୌତମଙ୍କୁ ମାରମାନଙ୍କର ଅତ୍ୟାଚାର ସହିବାକୁ ପଡୁଥିଲା ବୋଲି ଜାତକଶାସ୍ତ୍ର କହନ୍ତି । ଏଥିରୁ ଜଣାଯାଉଛି ଯେ ଏଭଳି ଅନୁଭବ ସାଧନା କ୍ଷେତ୍ରରେ ଅବଶ୍ୟମ୍ଭାବୀ । ଭୂଇଁ ଉପରୁ ମହାକାଶକୁ ଉଠିବାକୁ ହେଲେ, ସ୍ତର ସ୍ତର ପଟଳ ପାରି ହେବାକୁ ପଡ଼େ । ସେହିପରି ଏ କଦର୍ଯ୍ୟ ରୂପ, ବର୍ଣ୍ଣ ଏବଂ ଚିନ୍ତା ଏକ ସ୍ତର । ସଚେତନ ରହି ସେମାନଙ୍କୁ ନିଷ୍କଳ, ନିସ୍ପୃହ ଚାହିଁରହି ଗୁରୁମନ୍ତ୍ର ଜପକଲେ ସେମାନେ ବିଲୀନ ହୋଇଯାନ୍ତି । ବାରମ୍ବାର ଚେଷ୍ଟାକରି 'ଧେୟରୂପ' ମନ ଭିତରକୁ ଆଣିବାକୁ ହୁଏ, ତାଙ୍କୁ ସ୍ଥିର ରଖିବା ପାଇଁ ମଧ୍ୟ ଚେଷ୍ଟା କରାଯାଏ । ତେବେ ଗୋଟାଏ ଅବସ୍ଥାରେ ପ୍ରଶାନ୍ତବ୍ୟାପ୍ତି ଆସି ସବୁପ୍ରକାର ଶବ୍ଦରୂପ ବର୍ଣ୍ଣକୁ ପୋଛିଦିଏ । ସେତିକିବେଳେ ଧ୍ୟାନ ସ୍ଥିରହୁଏ । ଶରୀର ମନ ପ୍ରାଣ ପଶ୍ଚାତ୍‌ରେଚୈତ୍ୟସତ୍ତା, ଚେତନାକୁ ଧାରଣ କରନ୍ତି, ଅଧିକାର କରନ୍ତି । ସେଇ କେତୋଟି ମୁହୂର୍ତ୍ତ ଅତି ମହାର୍ଘ ।



## ୮-୪-୮୪

ବସ୍ତୁ କିମ୍ବା ବ୍ୟକ୍ତି ଭଳି, ତାରିଖ ଗୁଡ଼ିକର ମଧ୍ୟ ବୈଶିଷ୍ଟ୍ୟ ଅଛି, ଯାହାକୁ ବ୍ୟକ୍ତିତ୍ୱ ବି କୁହାଯାଇ ପାରେ । ଧରାଯାଉ ଆଜିର ଏ ତାରିଖଟି ଗୋଟିଏ ତୁଳାଦଣ୍ଡ ପରି ସୁସମ ଏବଂ ସ୍ଥିର । ସତେ ବା ଏହାର ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତା ସବୁ ସମାନ, ଏହା ଏକ ସୁସମ ଘନବସ୍ତୁ । ତା'ପରେ ଏହାର ପ୍ରତ୍ୟେକଟି ସଂଖ୍ୟା ଯୁଗ୍ମ-ଚାରି ଏବଂ ଆଠ ଭିତରେ ସଂପର୍କ ମଧ୍ୟ ସୁସମ । ତାରିଖଟି ସତେ ବା ପ୍ରାଣାୟମର ଛନ୍ଦକୁ ସୂତ୍ର ଆକାରରେ ପ୍ରକାଶ କରାଯାଇଛି । ଆଉ ବେଳେ ବେଳେ ତାରିଖର ଅନ୍ୟ ପ୍ରକାର ଛନ୍ଦ ଆସେ, ଯେମିତି ୪-୪-୪୪, ୫-୫-

୫୫ ଗୋଟିଏ ମାତ୍ର ସଂଖ୍ୟାକୁ ନେଇ ସମଗ୍ରକାଳକୁ ମାପିଦେଇ ହେବ ବୋଲି, ସେ ତାରିଖ କହୁଛି । ଖୁବ୍ ଏକାଗ୍ର ତାରିଖଟି ୧-୧-୧୧ ବେଳକୁ ଶ୍ରୀଅରବିନ୍ଦ ପଣ୍ଡିଚେରୀକୁ ଆସି ସାରିଥିଲେ । ସେଦିନ ବିଷୟରେ ସେ କ'ଣ କହିଥିବେ କେଜାଣି, ଆଉ ଗୋଟାଏ ପ୍ରକାର ତାରିଖରେ ଜଣାପଡ଼େ ଯେମିତି ଆରୋହଣ କରାଯାଉଛି, ଯେମିତି ୧-୨-୩୪ । ଅର୍ଥାତ୍ ୩୪ ମସିହାର ଫେବୃୟାରୀ ପହିଲା ତାରିଖ । ଠିକ୍ ସେହିପରି ୨୧ ମସିହାର ମାର୍ଚ୍ଚ ୪ ତାରିଖରେ ଅବରୋହଣ ଘଟୁଛି । ଆଜିର ତାରିଖ ପରେ ଆଉ ତାରିଖ ସବୁଆସୁଛନ୍ତି ଅଗଷ୍ଟ ଆଠ ତାରିଖ ୮୮ ମସିହା, ସେହିପରି ସେପ୍ଟେମ୍ବର ୯ ତାରିଖ ୯୯ ମସିହା, ଜୁଲାଇ ୬ ତାରିଖ ୮୯ ମସିହା । ଏ ତାରିଖଗୁଡ଼ିକ ଅନନ୍ୟ ଏବଂ ବିଚିତ୍ର ସୂଚନାଗର୍ଭକ । ସଂଖ୍ୟାମାନଙ୍କର Occult ମୂଲ୍ୟରହିଛି । ଏଣୁ ଏ ତାରିଖ ଗୁଡ଼ିକ ମଧ୍ୟ ଯୋଗସାଧନାରେ ଲକ୍ଷଣୀୟ ।



## ୯-୪-୮୪

ଯୁଦ୍ଧପଡ଼ିଆରେ ଅନ୍ଧାର ମାଡ଼ିଗଲେ କେବଳ ସାମ୍ନାରେ ଦୁଇଚାରିଟି ପଦାତିକ ସୈନ୍ୟ ଦିଶନ୍ତି । କେବଳ ସେଇମାନଙ୍କୁ ଶତ୍ରୁପକ୍ଷ ବୋଲି ଭାବିନେବା ଭୁଲ୍ । ତାଙ୍କ ସହିତ ଅସ୍ତ୍ରକୁ ପ୍ରତିଅସ୍ତ୍ରକରି ଲଢୁଥିବାବେଳେ ହଠାତ୍ ଜ୍ୱଳନ୍ତ ଗୋଳାଟାଏ ମୁଣ୍ଡ ଉପର ଦେଇ ପାରି ହୋଇଯାଏ ବା ଦେହରେ ବାଜି ଅଙ୍ଗଛେଦ କରିପକାଏ । ବିହ୍ୱଳହୋଇ ଯୋଦ୍ଧାଟି ଭାବେ - ଏସବୁ କିପରି ହେଲା ? ଅପ୍ରତ୍ୟାଶିତ ପାଇଁ ସେ କ'ଣ କରିପାରିବ ? ସେହିପରି ପ୍ରତିପକ୍ଷର ଯୋଦ୍ଧା ଖଣ୍ଡାଟେକି ହାଣିବାକୁ ଗଲାବେଳକୁ କାହୁଁ ଗୋଟାଏ ଗୁଳିବାଜି ସେ ଲୋଟି ପଡ଼ୁଛି, ବିପଦ ପାରିହୋଇ ଯାଉଛି - ଏ ବି ଅପ୍ରତ୍ୟାଶିତ । ଜୀବନସଂଗ୍ରାମ ବିଷୟଟି ଏହିପରି । ଅନେକ ଅଜ୍ଞାତଭୂମିରେ ଅସଂଖ୍ୟ ଶକ୍ତି କ୍ରିୟାଶୀଳ ଥାଆନ୍ତି । ଆମ ଦୃଷ୍ଟିରେ ଯେଉଁ ଟିକକ ସଂସାର ଦିଶେ ତାହା ଅତି ନଗଣ୍ୟ । ତା'ର ସୁବିଶାଳ ଜଟିଳ ରୂପ ଆମର ଅଜ୍ଞାତ । ଏଣୁ ଜୀବନରେକୌଣସି ଘଟଣା ଘଟିବା କିମ୍ବା ନଘଟିବା ପାଇଁ ଦୃଶ୍ୟମାନ କାରଣ ପରି ଅନେକ ଅଦୃଶ୍ୟ କାରଣ ମଧ୍ୟ ରହିଥାଏ । ସୂକ୍ଷ୍ମାତିସୂକ୍ଷ୍ମ ଜଗତରେ ଘାତ ପ୍ରତିଘାତ ସବୁ ଏଠି ଆସି ପ୍ରତିଫଳିତ ହୁଏ । ଆମେ ଜାଣିପାରୁନା କିଏ ଆମର ସ୍ୱପକ୍ଷ କିଏ ବା ପ୍ରତିପକ୍ଷ । ଈଶ୍ୱର ଅର୍ପିତ ଜୀବନରେଏପରି କିଛି ବିକୀରଣ ହୁଏ, ଏପରି କିଛି ସ୍ପନ୍ଦନ ଦେଖାଦିଏ, ଏମିତି କିଛି ଅନୁକୂଳତା ଆସେ, ଯାହା ପାଇଁ ଅନେକ ଶୁଦ୍ଧ ଶକ୍ତି ତାର ସ୍ୱପକ୍ଷରେ କାର୍ଯ୍ୟକରନ୍ତି । ସେ ସମସ୍ତଙ୍କୁ ଆମେ ବିଭୁକୃପା ରୂପେ ବୁଝିଥାଉ । ସେପରି ବୁଝିବା ଭୁଲ୍ ନୁହେଁ, କିନ୍ତୁ ଠିକ୍ ମଧ୍ୟ ନୁହେଁ । କାରଣ ଆମର ସାଧାରଣ ବୁଦ୍ଧିରେ ଯାହା ଉପକାର ଏବଂ ମଙ୍ଗଳ ବୋଲି ଭାବିଥାଉ ଏବଂ ସେଥିରେ ସହାୟକ ହେବାରୁ ପ୍ରଭୁଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁ, ତାହା ତତ୍ତ୍ୱତଃ ଆମର ମଙ୍ଗଳ ନା ନୁହେଁ କହିବା କଠିନ । ସନ୍ନିପାତ ରୋଗୀକୁ ଦହି ଖାଇବାକୁ ଦେବା ବ୍ୟକ୍ତି ସେହି ସମୟରେ ତା'ର ତୃପ୍ତି ବିଧାନ କରୁଥିଲେ ସୁଦ୍ଧା ପ୍ରକୃତରେ ସେ ମିତ୍ରପକ୍ଷ ନୁହେଁ । ରୋଗୀ ତାକୁ ଚିହ୍ନିପାରେ ନାହିଁ, କାରଣ ଉପସ୍ଥିତ ପରିସ୍ଥିତିରେ ସେ

ଆଚ୍ଛନ୍ନ ଥାଏ । ବିଭୂକୃପା ପ୍ରକୃତରେ କିପରି ରୂପରେ ଆସେ, ତାହା ସାଧାରଣ ଦୃଷ୍ଟିରେ ସୁଖପ୍ରଦ କି ଦୁଃଖପ୍ରଦ କହିବା କଠିନ । ଜୀବନର ବିଭିନ୍ନ ପରିସ୍ଥିତିରେ ରହି ବିଭୁଆଶ୍ରିତ ହେବା ସହଜକଥା ନୁହେଁ ।



**୧୭-୪-୮୪**

ସମୁଦ୍ର ଢେଉରେ ସମୁଦ୍ର ଘୁଞ୍ଚେ ନାହିଁ, ଢେଉ ଉପରେ ଭାସୁଥିବା କାଠ ଉଠୁଥାଏ, ପଡୁଥାଏ କିନ୍ତୁ ଘୁଞ୍ଚେ ନାହିଁ । ଢେଉ ସ୍ରୋତ ନୁହେଁ । କିନ୍ତୁ ଢେଉକୁ ତ ଘୁଞ୍ଚିବାର ଆମେ ଦେଖୁ । ସେ ତା'ହେଲେ କ'ଣ ? ସବାଶେଷରେ କୂଳରେ ପିଟିହୋଇ ସେ ପୁଣି ଫେରିଯାଏ । ଢେଉ କେବେ ସମୁଦ୍ରରୁ ବିଚ୍ଛିନ୍ନ ହୁଏ ନାହିଁ । ସେ ସମୁଦ୍ରଠାରୁ ଅପର ନୁହେଁ । ସମୁଦ୍ର ଗର୍ଭରୁ ବୋଧହୁଏ ନିଶ୍ୱାସଟିଏ ଏମିତି ଗଡ଼ି ଗଡ଼ି କୂଳରେ ମୁକ୍ତ ହେଉଥାଏ । ପାଣି ଭିତରେ ରହି ସେ ପାଣିକୁ ଫୁଲାଇ ଢେଉରୂପ ଦେଇଥାଏ । କିନ୍ତୁ ନଦୀ ତରଙ୍ଗ ଅନ୍ୟପ୍ରକାର । ସେଇଠି ପାଣି ଘୁଞ୍ଚିଥାଏ, ସ୍ରୋତ ବହିଯାଏ । କିନ୍ତୁ ଢେଉ ସେଇ ତରଙ୍ଗ । ସ୍ରୋତ ତଳେ ପଥର, ଖଣା, ହୁଡ଼ା ଆଦିକୁ ଲଂଘିବାକୁ ଉପରେ ତରଙ୍ଗଟିଏ ଦେଖାଦିଏ ଏବଂ ସେଇଠି ରହିଥାଏ । ପ୍ରତି ମୁହୂର୍ତ୍ତରେ ନୂଆପାଣି ଆସି, ସେଇ ତରଙ୍ଗରେପ୍ରବେଶ କରି ପୁଣି ବାହାରିଯାଏ । ନଦୀର ତରଙ୍ଗ ପ୍ରକୃତରେ ସ୍ଥିର, ନଦୀ କିନ୍ତୁ ସ୍ରୋତସ୍ୱିନୀ । ସମୁଦ୍ର କିନ୍ତୁ ସ୍ୱୟଂ ସ୍ଥିର ଅଥଚ ଢେଉ ସଂକ୍ରମଣଶୀଳ, ଉଭୟଙ୍କର ଗତି ଏବଂ ସ୍ଥିତିର ସମାହାର ଅଛି । କିନ୍ତୁ ଧାରକ ଏବଂ ଧାରିତର ଭୂମିକା ଓ ଧର୍ମ ଓଲଟା - ଆମେ ହୁଏତ ସମୁଦ୍ର ପରି ସ୍ଥିରରହି ଢେଉର ମଡ଼ାଣ ସହିଯାଇ ପାରୁ କିମ୍ବା ନଦୀଭଳି ତରଙ୍ଗକୁ ଛାଡ଼ାଇ ପ୍ରତି ମୁହୂର୍ତ୍ତରେ ଆଗେଇ ଯାଇପାରୁ । ତରଙ୍ଗ ଯଦି ସୁଖଦୁଃଖର ପ୍ରତୀକ, ତେବେ ଉଭୟ କ୍ଷେତ୍ରରେ ତାହା ସହିତ ମିଶି ବିଚଳିତ ହେବାର ଅବକାଶ ନାହିଁ ?



**୧୯-୪-୮୪**

ବେଳେ ବେଳେ ଭୟର କାରଣ ନଥାଇ ସୁଦ୍ଧା ଭୟଭାବ ଦେଖାଦିଏ । ଭିତର ଦୁର୍ବଳ ଅନୁଭବ ହୁଏ, ସବୁକଥା ଡ଼ରମାଡ଼େ । ରାସ୍ତାଘାଟ, ମଣିଷ, ଯାହାକୁ ଦେଖିଲେ ଡ଼ରମାଡ଼େ । ମୋଟଉପରେ ବସ୍ତୁ ବା ବ୍ୟକ୍ତିମାନଙ୍କଠାରେ କିଛି ନଥାଏ । ମନ ଏକ ଅସ୍ୱାଭାବିକ ସ୍ଥିତିରେ ପ୍ରବେଶ କରିଥାଏ । ସେଇ ହିଁ ଭୟ । ଭୂଇଁ ଭିତରକୁ ଯାଇଥିବା ଚେର ଦୁର୍ବଳ ହୋଇଗଲେ ଗଛ ଦୋହଲିଗଲା ପରି ଆମର ଆଭ୍ୟନ୍ତରୀଣ ମନ ଦୁର୍ବଳ ହୋଇଗଲେ ସେମିତିଲାଗେ । ଯେ ସମଗ୍ର ଶକ୍ତିର ଆଧାର, ଯେ ସ୍ଥିର ଅଚଞ୍ଚଳ ଜ୍ୟୋତିରୂପ, ସେ ଆମ ଭିତରେ ଅଧ୍ୟକ୍ଷତା କରୁଛନ୍ତି, ତାଙ୍କ ସହିତ ସଂଯୁକ୍ତ ରହି ପାରିଲେ ପ୍ରଥମେ ଶକ୍ତିସଂଚାର ହୁଏ, ଆତ୍ମବିଶ୍ୱାସ

ଆସେ । ପରିସ୍ଥିତିର ମୁକାବିଲା କରିବାକୁ ସାହସ ମିଳେ । ସେଇଠୁ ଯୋଗ ହୁଗୁଳା ହୋଇଗଲେ ଅନାତ୍ମଜଗତ୍ ଭାରି ଅଂଧକାରମୟ ଏବଂ ଭୀତିପ୍ରଦ ଜଣାପଡ଼େ । ପ୍ରକୃତରେ ଅନାତ୍ମ କିଛି ନାହିଁ, ସେଇଟା ଛାଇଟାଏ କେବଳ, କିନ୍ତୁ ଛାଇଗୁଡ଼ିକ ତ' ଭୟ ଦେଖାନ୍ତି । ବିନା କାରଣରେ ଭିତର ଦୁର୍ବଳ ଜଣାଗଲେ ବିଷ୍ଣୁନାମ ସ୍ମରଣ କରାଯାଏ ଏବଂ ବିସ୍ମୟକର ଭାବରେ ଭୟ ଦୂରେଇଯାଏ ।



## ୨୦-୪-୮୪

ଆମେ ଯାହା ଇଚ୍ଛାକରୁ ତାହା ହୁଏନାହିଁ ବୋଲି ଅନେକ ଦୁଃଖ । ହୁଏ ନାହିଁ ମାନେ ଆମେ ଯଦି ଚମତ୍କାର ଲିମୋସାଇନ୍ ଗାଡ଼ିରେ ବସିବାକୁ ଇଚ୍ଛାକରୁ, ସେ ଗାଡ଼ିଟି ପ୍ରକୃତରେ ଆମ ପାଖରେ ଆସି ବସ୍ତୁରୂପରେ ଉପସ୍ଥିତ ହୁଏ ନାହିଁ । ଏଣୁ ସେଥିରେ ବସିଥିଲେ ଯେଉଁ ଦୈହିକ ସୁଖ ମିଳିଥାନ୍ତା ତାହା ଆମକୁ ମିଳେନାହିଁ । କିନ୍ତୁ ମନ ଭିତରେ ଆମେ କ'ଣ ଲିମୋସାଇନ୍ ଚଢ଼ୁ ନାହୁଁ କି ? ଇଚ୍ଛା କରିବା ସମୟରେ ସେ ସୁଖର କିଞ୍ଚିତ ସ୍ୱାଦ ଆମକୁ ମିଳିଗଲା ପରି ଅନୁଭୂତ ହୁଏ । ଯଦି ଆମେ କେବଳ ମନୋମୟ ହୋଇଥାନ୍ତେ, ତେବେ ସେ ଗାଡ଼ିଟି ବସ୍ତୁ ରୂପରେ ସାକାର ହେବାର କୌଣସି ପ୍ରୟୋଜନ ନଥାନ୍ତା । ଜଡ଼ରୂପରେ ତାକୁ ଲାଭ କରିବାର ବ୍ୟାକୁଳ ଶରୀର ଏବଂ ଶାରୀରିକ ମନଟି ନ ଥିବାରୁ କେବଳ ଇଚ୍ଛା ହିଁ ଭୋଗରେ ପରିଣତ ହୋଇଥାନ୍ତା । ଏହି ଇଚ୍ଛା ହିଁ ତ' ସୃଷ୍ଟିର ଆଦ୍ୟଶକ୍ତି- ସେ ଦୃଢ଼ ହେଲେ ସଂକଳ୍ପ, ଊର୍ଦ୍ଧ୍ୱମୁଖିନୀ ହେଲେ ଅଭିପ୍ସା, ନିମ୍ନ ମୁଖିନୀ ହେଲେ ବାସନା, ସେ ଆକାଂକ୍ଷା, ଉଦ୍‌ବେଗ, ଉତ୍‌କଣ୍ଠା, ଆବେଗ ପ୍ରବେଗ ଇତ୍ୟାଦି ଆଲୋଡ଼ନର ଜନନୀ - ସେଥିପାଇଁ କୁହାଯାଇଛି - 'ସ କାମୟତ ବହୁସ୍ୟାଂ' - ସେ କାମନା କଲେ ବହୁ ହୋଇଯିବେ ଏବଂ ତାହା ସେଇ ମୁହୂର୍ତ୍ତରେ ସଂଘଟିତ ହେଲା । ମଣିଷ ଇଚ୍ଛାକଲେ ସେ କେବଳ ମନ ଭିତରେ ରହି ଦୁର୍ବଳ ତରଙ୍ଗଟିଏ ହୋଇ ମରିଯାଏ । ସେ ମଧ୍ୟ ଅଗ୍ନିପରି । କିନ୍ତୁ ସେ ଅଗ୍ନିଜଗତକୁ ସଂଚରି ଯାଇ ରୂପ ପରିଗ୍ରହ କରିପାରେ ନାହିଁ । କାରଣ ମଣିଷର ଇଚ୍ଛାଟି ଶରୀର ଚେତନାରୁ ଏବଂ ଇନ୍ଦ୍ରିୟ ଜଗତ୍‌ରୁ ହିଁ ଆସେ । ତାହା ବିଶୁଦ୍ଧ ଇଚ୍ଛା ନୁହେଁ । ବିଶୁଦ୍ଧ ଇଚ୍ଛା ପ୍ରାୟ ଏହିପରି । ଧରାଯାଉ ଦେହଭାବ ନାହିଁ, ତା ସହିତ କୌଣସି ଇନ୍ଦ୍ରିୟ ମଧ୍ୟ ନାହିଁ, ପ୍ରାଣ ନାହିଁ, ସ୍ପନ୍ଦନ ନାହିଁ ଏମାନଙ୍କ ଦ୍ୱାରା ଶାସିତ ଏବଂ ପ୍ରେରିତ ହେଉଥିବା ଏବଂ ଏଠି ସେଠି ଯାଇ ପଡୁଥିବା ମନ ମଧ୍ୟ ନାହିଁ । କେବଳ ଅରୂପ ଚେତନା ଅଛି; ସ୍ୱୟଂସଂପୂର୍ଣ୍ଣ, ସ୍ୱତନ୍ତ୍ର, ନିରାଲମ୍ବ । ସେଇଠି ଯଦି ଇଚ୍ଛାହୁଏ ତା'ର କ'ଣ ରୂପ, ବିସ୍ତାର ବା ଗୁଣ ହେବ - କହିବା କଷ୍ଟକର । କିନ୍ତୁ ତାହାହେବ ଶୁଦ୍ଧଇଚ୍ଛା ଏବଂ ତାହା ମନପ୍ରାଣ ଓ ଶରୀର ସ୍ତରରେ ସମପରିମାଣରେ ପ୍ରକଟିତ ହେବ । ସାଧାରଣ ଇଚ୍ଛାରେ ଯେତିକି ପରିମାଣରେ ଏ ଶୁଦ୍ଧତା ରହେ, ସେତିକି ପରିମାଣରେ ତାହା ରୂପାୟିତ ହୋଇଯାଏ । ନଚେତ୍ ତାହା କେବଳ ମନରେ ଉଦୟ ହୋଇ ମନରେ ହିଁ ଅସ୍ତ ହୋଇଯାଏ । ସେତିକି ଭିତରେ ସୁଦ୍ଧା ସେ ସୂକ୍ଷ୍ମ ମନୋଭୂମିରେ ପ୍ରକଟିତ ହୋଇ ସୁଖଦୁଃଖ ଦେବାର ଶକ୍ତି ବହନ କରେ ।



## ୨୫-୪-୮୪

ମାଟି ମୂର୍ତ୍ତିଟିଏ ଗଢ଼ିବା ସହଜ, କିନ୍ତୁ ତାକୁ ଚୂଡ଼ାନ୍ତ ଚିକ୍କଣ ରୂପ ଦେବା ଖୁବ୍ କଠିନ । କିନ୍ତୁ ପଥର ମାଧ୍ୟମ ନେଲେ ମୂଳରୁ କାର୍ଯ୍ୟଟି ଖୁବ କଷ୍ଟକର । ବୋଧହୁଏ ଏ ସୃଷ୍ଟିର ଆଦି ଉପାଦାନ ମାଟି ବା clay। ତାକୁ ନେଇ ସାଧାରଣ ରୂପଦେବା ପରେ ତା'ର ସୂକ୍ଷ୍ମ ହୋଇ ସାରିଲା ପରେ ମଧ୍ୟ ଯଥେଷ୍ଟ ନୁହେଁ । ତାକୁ ଆହୁରି ସମୃଦ୍ଧ, ମାର୍ଜିତ, ମନୋଜ୍ଞ, ବିଜ୍ଞ, ସମର୍ଥ ଓ ପ୍ରାଣବନ୍ତ କରିବାକୁ ପଡ଼ିବ । ଏଥିପାଇଁ ଆହୁରି ଅନେକ ଯୁଗ ଲାଗିଯାଇ ପାରେ । From dust he came to dust-return ! dust ମାନେ ମାଟିର ଏକ ସୂକ୍ଷ୍ମ ଚୂର୍ଣ୍ଣ ରୂପ । ସେଥିରୁ କିଛି ଗଢ଼ି ହେବ ନାହିଁ । ବୋଧହୁଏ ଆଦି ସ୍ରଷ୍ଟା କରୁଣାର ଲୋତକରେ କିମ୍ବା ଶ୍ରମ ଘର୍ମରେ ତାକୁ ସିକ୍ତ କରିଥିଲେ ଏବଂ ଗଢ଼ିଥିଲେ ଏ ବିଶ୍ୱ । ମାଟିଟି ଅତି କୋମଳ ବାଧ୍ୟ ମାଧ୍ୟମ । ସେଥିରେ Resistance ବା ବିରୋଧ ମାତ୍ରା ଅତି କମ୍ । ତାକୁ ଯେମିତି ମନ ସେମିତି ବଙ୍କା ସଳଖ କରାଯାଇ ପାରେ । କିନ୍ତୁ ଗୋଟିଏ ସ୍ତରରେ ମୂର୍ତ୍ତି ପହଞ୍ଚିଗଲେ ସେଆଉ ସେତେ ବାଧ୍ୟନୁହେଁ । ସେ ରାଜି ନହେଲେ ସେଥିରୁ ସୂକ୍ଷ୍ମ ସୌନ୍ଦର୍ଯ୍ୟ ଫୁଟି ପାରିବ ନାହିଁ । ଏଣୁ ମାଧ୍ୟମର ସ୍ୱୀକୃତି ବା consent ର ପ୍ରୟୋଜନ ରହିଛି ସେଥିପାଇଁ ବୋଧେ ମଣିଷ ପାଖରେ ପହଞ୍ଚିଗଲା ପରେ ବିବର୍ତ୍ତନ ଧାରା ତାର ସ୍ୱୀକୃତି ନ ନେଇ ଆଗେଇ ପାରୁନାହିଁ । ସେ ଏଣିକି ନିଜେ ବଦଳିବାକୁ ରାଜିହେବ । ରାଜିହେଲେ ହିଁ ସ୍ରଷ୍ଟା ଗଢ଼ିତୋଳିବ, ନୂତନ ସୌନ୍ଦର୍ଯ୍ୟ । କିନ୍ତୁ ମୃତ୍ତିକାର ସହଜାତ ଗୁଣତାକୁ ସୀମା ବହିର୍ଭୂତ ସୂକ୍ଷ୍ମତା ପାଇଁ ଅନୁମତି ଦେବ ନାହିଁ । ଧରାଯାଉ ମୂର୍ତ୍ତି କାର୍ଯ୍ୟରେ ଏଭଳି ଏକ ରେଶମୀ ପରିଧେୟର ପ୍ରୟୋଜନ ହେବ ଯେ, ମାଟିରେ ଏକ ପ୍ରକାର ସ୍ୱଚ୍ଛତା ଆସି ଯିବ । ମାଟି ସ୍ୱଚ୍ଛହେବା ସହଜ ନୁହେଁ, ସେଥିପାଇଁ ସେ ନିଜେ ସ୍ୱୀକୃତି ଦେବା ମଧ୍ୟ ସହଜ ନୁହେଁ । କାରଣ ସେ ଗୋଟିଏ ପ୍ରକାର ବୁଝିଛି ଯେ, ତାହା ତା'ପାଇଁ ସମ୍ଭବ ନୁହେଁ । ସେ ମାଟି, ସେ କିପରି ସ୍ୱଚ୍ଛ ହେବ । କେମିତି ତା'ଭିତରେ ଆଲୋକ, ବାୟୁ, ସ୍ୱଚ୍ଛନ୍ଦରେ ଯାତାୟାତ କରି ପାରିବେ । କିପରି ସେ ତେଜୋମୟ ହୋଇଯିବ । ଏଇଟା ତା ପାଇଁ ରୂପାନ୍ତର, ତା'ର ଯାବତୀୟ ସ୍ଥୂଳଗୁଣର ଉତ୍ତରଣ । ସେହିପରି ଅତିମାନସ ଶକ୍ତି ରୂପାନ୍ତରୀକରଣ ପାଇଁ ପ୍ରସ୍ତୁତ ହେଲେ ସୁଦ୍ଧା ମନସ୍କ ମଣିଷ ସ୍ୱୀକୃତି ଦେବାକୁ ପ୍ରସ୍ତୁତ ନୁହେଁ, କିନ୍ତୁ "ଗତେପି ତ୍ୱାଂ ନ ଭବିଷ୍ୟନ୍ତି -ସର୍ବେ" - ନ୍ୟାୟରେ ସେ ରାଜି ନହେଲେ ମଧ୍ୟ ସ୍ରଷ୍ଟାର ସଂକଳ୍ପ ଅବଶ୍ୟମ୍ଭାବୀ, ତାହା ନିଶ୍ଚିତ ହୋଇସାରିଛି ଏଣୁ ହେବ ହିଁ ହେବ ।



## ୩୦-୪-୮୪

ଅତୀତର ଘଟଣା, ଚରିତ୍ର, ଏପରିକି କଥୋପକଥନ ଆଦି ମନେପଡ଼ିବା ସାମାନ୍ୟ ସ୍ମୃତିର ଅଭାବ । ଇଚ୍ଛାକରି ଜଣେ ସେସବୁ ମନେ ପକାଇ ପାରେ । କିନ୍ତୁ ବେଳେବେଳେ ନିରପେକ୍ଷ ପୁରାତନ ଆବେଗଟି ଆସି ଚେତନାକୁ ଅଧିକାର କରି ପକାଏ । ଅନେକ ବର୍ଷ ପୂର୍ବେ ସେଇ ବ୍ୟକ୍ତି ପିଲାଥିଲା ବେଳେ ଗୋଟାଏ

ବେଳାରେ ପୃଥିବୀ ଯେମିତି ଲାଗିଥିଲା, ଅବିକଳ ସେଇଭଳି ପୁଣି ଥରେ ଲାଗେ । ଏଇଟା ମନର ସାଧାରଣ ବାତାବରଣଟିଏ, ଗୋଟିଏ ଦୃଷ୍ଟିଭଙ୍ଗୀ ଏବଂ ସେଇ ହେତୁରୁ ଗୋଟାଏ ଅନୁଭବ । ଏଇ ବ୍ୟାପକ ଅନୁଭବରେ ନିର୍ଦ୍ଦିଷ୍ଟ ଘଟଣା ବା ବ୍ୟକ୍ତି ଜଡ଼ିତ ନୁହନ୍ତି । ଏଇଟା ଗୋଟାଏ ସାଧାରଣ ରଙ୍ଗ, ଗୋଟାଏ ସ୍ୱାଦ ଯାହା ସବୁ ଇନ୍ଦ୍ରିୟରୁ ଝରି ଆସି ଚାରିଆଡ଼େ ମଡ଼େଇ ହୋଇଯାଏ । ଆଉ ଗୋଟାଏ ଜଗତ୍‌କୁ ନେଇଯାଏ । ଖୁବ୍ ପରିଚିତ ଆପଣାର ଜଗତ୍ କିନ୍ତୁ କେଉଁକାଳରୁ ଛାଡ଼ି ଆସିଥିବା ଆତ୍ମୀୟ ପରି ବିସ୍ମୃତ ଜଗତଟିଏ । ଏଇ ଜଗତ ପୁଣି ଫେରି ଆସେ । କିନ୍ତୁ ସେ ଅନୁଭୂତି ଅଳ୍ପ ସମୟ ଭିତରେ ମିଳେଇ ଯାଏ । ପୁଣି ଏଇ ପୌଢ଼ ଜଗତ୍‌ର ପୌଢ଼ ମଣିଷଟିଏ ତାର ସବୁ ରୁକ୍ଷତା ନେଇ ଚାଲିଆସେ । ଏଥିରୁ ଜଣାପଡୁଛି ଯେ, ସମୟ, ସ୍ରୋତ ନୁହେଁ, ତାହା ସ୍ଥିର । ଦେଶାନ୍ତରକୁ ଗଲା ପରି କାଳାନ୍ତରକୁ ପ୍ରବେଶ କରି ହେବ । ସବୁ ଯେମିତି ଘଟିଥିଲା ବୋଲି ଆମେ ଭାବୁଛୁ, ତାହା ସେଇ କାଳବିନ୍ଦୁରେ ସବୁବେଳେ ଯେମିତି ସଂଘଟିତ ହୋଇ ରହିଛି । ବେଳେ ବେଳେ ଜ୍ଞାତସାରରେ କିମ୍ବା ଅଜ୍ଞାତରେ ଆମେ ପ୍ରବେଶ କରିଯାଉ । ଅବଶ୍ୟ ସମୟକୁ ଅସ୍ଥିର କହିବା ଯେତିକି ଭୁଲ ସ୍ଥିର କହିବା ମଧ୍ୟ ସେତିକି ଭୁଲ । Space କୁ ମଧ୍ୟ ସେମିତି ସ୍ଥିର କିମ୍ବା ଅସ୍ଥିର କହିବା ଭୁଲ୍ । ତେବେ ଉଭୟେ Space and time ମିଶ୍ରିତଭାବରେ ସ୍ୱତଃ ସ୍ପନ୍ଦିତ ହେଉଛନ୍ତି ଏବଂ ସେ ସ୍ପନ୍ଦନଟି ନିତ୍ୟ ବର୍ତ୍ତମାନ । ଆମେ ଯାହା ଅନୁଭବ କରୁ, ତାହା ଆପେକ୍ଷିକ ।



**୮-୫-୮୪**

ଇନ୍ଦ୍ରିୟ ଜଗତରୁ ମନକୁ ଓହରେଇ ଆଣି ସ୍ଥିର କଲାବେଳେ ସେ ଅଭ୍ୟାସ ବଶତଃ ଶୋଇଯାଏ । କାରଣ ବସ୍ତୁ ସଂଘାତରୁ ରକ୍ଷା ପାଇ ବିଶ୍ରାମ ନେବା ସକାଶେ ପ୍ରକୃତିର ଉପାୟ ହେଲା ନିଦ୍ରା । କବାଟ ଝରକା ସବୁ ବନ୍ଦ କରି ଘର ଭିତରେ ଅନ୍ଧାରରେ ଶୋଇଗଲା ପରି ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କଲା ପରେ ନିଦ୍ରା ଅନିବାର୍ଯ୍ୟ ରୂପେ ଦେଖା ଦିଏ । କିନ୍ତୁ ଯୋଗ ସାଧନାରେ ଏ ସ୍ଥୂଳ ଶରୀରର ନିଦ୍ରା ଧ୍ୟାନର ଉଦ୍ଦେଶ୍ୟ ନୁହେଁ । ବରଂ ଠିକ୍ ତା'ର ବିପରୀତ ହିଁ ଧ୍ୟାନର ଉଦ୍ଦେଶ୍ୟ । ଇନ୍ଦ୍ରିୟମାନଙ୍କୁ ଓହରେଇ ଆଣି ଜାଗ୍ରତ ରହିବା । ଏପରିକି ଜାଗ୍ରତ ଅବସ୍ଥାଠାରୁ ଆହୁରି ତୀବ୍ର ଭାବରେ ଜାଗ୍ରତ ରହିବା ହେଉଛି ଉଦ୍ଦେଶ୍ୟ । ତାହା କିନ୍ତୁ ଖୁବ କଷ୍ଟକର ଏବଂ ସାଧନା ସାପେକ୍ଷ । ସେଥିପାଇଁ ପ୍ରଥମତଃ ଶରୀର ସୁସ୍ଥ ଏବଂ ଅପରିଶ୍ରାନ୍ତ ରହିବା ପ୍ରୟୋଜନ । କୌଣସି ପରିଶ୍ରମ କରି ଧ୍ୟାନ କଲେ ନିଦ ଆସିଯିବା ସ୍ୱାଭାବିକ । ପରିଶ୍ରମ ପରେ ଅବସନ୍ନ ଶରୀର ଧ୍ୟାନ ଉପଯୋଗୀ ନୁହେଁ । ସେହିପରି ଘୋର ଆଳସ୍ୟ ଆସିଗଲେ ମନ ଅବସନ୍ନ ଥାଏ । ଉଭୟ ଶରୀର ଏବଂ ମନ ସାମାନ୍ୟ ସୁଯୋଗ ପାଇଲେ ଶୋଇ ଯାନ୍ତି । ସଜଫୁଟା ଫୁଲ ପରି ସ୍ଥିର, ସତେଜ, ପ୍ରାଣବନ୍ତ ଏବଂ ପ୍ରତି ଅଂଶରେ ଜାଗ୍ରତ ଦେହ ଏବଂ ମନ ନେଇ ଧ୍ୟାନ କରାଯିବା ଉଚିତ୍ । ଆଖିବୁଜୁ ବୁଜୁ ଯେ ଶୋଇଯାଏ ସେ ପ୍ରସ୍ତୁତ ନୁହେଁ, କିନ୍ତୁ ଜାଗ୍ରତ ରହିବା ଅର୍ଥ ନୁହେଁ ଯେ ଆଖି ବନ୍ଦ କରି ଶବ୍ଦ ସ୍ପର୍ଶ ମାଧ୍ୟମରେ ସ୍ମୃତି କଳ୍ପନାରେ ସାରା ବାହ୍ୟ ଜଗତର ଚଳଚ୍ଚିତ୍ର ଦେଖିବା । କିନ୍ତୁ ଏ ଅବସ୍ଥା ନିଦ୍ରାଠାରୁ ନିଶ୍ଚୟ ଶ୍ରେୟସ୍କର । କାରଣ ତା'ପରେ

ଆସ୍ତେ ଆସ୍ତେ ମନକୁ ସମସ୍ତ ବିଷୟ ଚିନ୍ତାରୁ ଖସେଇ ଅଣାଯାଇ ପାରେ । ବିଷୟକୁ ଆଶ୍ରିତ ନ ହୋଇ ମନ ଯେତେବେଳେ ଜାଗ୍ରତ ଏବଂ ସ୍ଥିର ରହେ, ସେତିକିବେଳେ ତାହା ଧ୍ୟାନର ଅଧିକାରୀ । ଇଷ୍ଟମନ୍ତ୍ର ଏବଂ ଇଷ୍ଟରୂପ ଦ୍ୱାରା ମନକୁ ବହୁ ପରିମାଣରେ ଶାନ୍ତ କରାଯାଇ ପାରେ । କିନ୍ତୁ ଅଶାନ୍ତ ମନରେ ଅନେକ ସମୟରେ ଏ ମନ୍ତ୍ର ଏବଂ ରୂପକୁ ଅବହେଳା କରି, ସଂପୂର୍ଣ୍ଣ ଉପେକ୍ଷା କରି ଚଳଚ୍ଚିତ୍ର ସବୁ ମଡ଼େଇ ହୋଇଯାନ୍ତି । କିନ୍ତୁ ସଂକଳ୍ପ ଦୃଢ଼ କଲେ ପରିଶେଷରେ ମନ ସ୍ଥିର ହୋଇଯାଏ । ତାପରେ ଧ୍ୟାନ ଅବସ୍ଥାରେ ଅନୁଭବ ଆଉ ଏକ ବିଚାର ।



## ୯-୫-୮୪

ଦୂର ଯାତ୍ରା ପାଇଁ ସୁବିଧା ହେବ ବୋଲି ଘୋଡ଼ାଟିଏ କିଣାଯାଏ । କିନ୍ତୁ ଦେଖାଯାଏ ଯେ ଯାତ୍ରା କଥା ଭୁଲିଯାଇ କେବଳ ଘୋଡ଼ାର ଯତ୍ନ ନିଆ ଚାଲିଛି । ଘୋଡ଼ା ପାଳିବା ହୋଇ ଯାଇଛି ଏକମାତ୍ର କର୍ମ ଏବଂ ଲକ୍ଷ୍ୟ । ମୁଖ୍ୟରୁ ଗୌଣକୁ ଖସି ଆସିବାର ଏପରି ଦୃଷ୍ଟାନ୍ତ ଅନେକ । ଫୁଟିଲା ଫୁଲଟିଏ ଭକ୍ତି ସହକାରେ ଠାକୁରଙ୍କୁ ଅର୍ପଣ କଲେ ସେ ପ୍ରୀତ ହୁଅନ୍ତି । ଫୁଲର ଶୁଦ୍ଧ ଉନ୍ମୁକ୍ତ ସମର୍ପିତ ଭାବକୁ ନିଜ ଚେତନାର ବାହକ କରି ପାରିଲେ ଐଶୀ କୃପା ପାଇଁ ଆମର କିଛି ଉନ୍ମେଷ ଘଟିପାରେ - ଏଇ ଆଶାରେ ଫୁଲଟିଏ ଅର୍ପଣ କରିବାର ବ୍ୟବସ୍ଥା ଅଛି । ସେ ଫୁଲ ନ ହୋଇ ପତ୍ରଟିଏ ହୋଇପାରେ, ଏପରିକି ପାଣି ଟୋପାଏ ବି ହୋଇପାରେ । "ପତ୍ରଂ, ପୁଷ୍ପଂ, ଫଳଂ, ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି" ସେଥିରେ କିଛି ଯାଏ ଆସେ ନାହିଁ । ମୂଳକଥା ହେଲା, ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି - ଭକ୍ତିଭାବ ଅଛି ନା ନାହିଁ । ବର୍ତ୍ତମାନ ସେସବୁ ମୂଳକଥା ଭୁଲିଯାଇ ଫୁଲ ଗୋଟାଇବା ହେଲା ଲକ୍ଷ୍ୟ । ସେଥିପାଇଁ ଚୋରି, କଳିତକରାଳ, ଧାଁ ଧଉଡ଼ - ଶେଷକୁ ସେ ଫୁଲ ଗଣ୍ଡାକ ମଧ୍ୟ ଦଳି ମକଚି ହୋଇ ମରିଯାନ୍ତି । ଫୁଲଗଦା କାହାର ବଡ଼, ଏଇଟା ଉପରେ ଜୋର । ସେହିପରି କିଏ କେତେ ସମୟ ଆଖି ବୁଜି ବସିଲା - ଧ୍ୟାନ ହଉ, ନ ହଉ । ଧ୍ୟାନର ମଧ୍ୟ ପ୍ରୟୋଜନ ନାହିଁ । ଧ୍ୟାନ କଲା ପରି ଦିଶିଲେ ହେଲା । ଚନ୍ଦନ ଚିତା କେତେ ଦୀର୍ଘ - ସେଥିରେ ଧାର୍ମିକତା ମପାଯାଉଛି । କିଏ କେତେ ସହଳ ଗାଧଉଚି, କେତେ ରାତିରୁ ଉଠି ପାରୁଛି, ସେଇଠି ଦୃଷ୍ଟି । ପ୍ରକୃତରେ ଶରୀର ମନ ଶୁଦ୍ଧ ହେଲା ନା ନାହିଁ, ତାକୁ କେହି ଭାବୁନାହିଁ । କେବଳଲୋକ ଦେଖାଣିଆ ବାହ୍ୟ ଆଚଣକୁ ନେଇ ବେଉସା କରିବା ଘୋର ଅଜ୍ଞାନ ଏବଂ ମିଥ୍ୟାଚାର । ସାଧକ ନ ହୋଇ ସାଧକ ପରି ଦିଶିବା, ପଣ୍ଡିତ ନ ହୋଇ ପଣ୍ଡିତ ପରି ଦିଶିବା, ସାଧୁ ନ ହୋଇ ସାଧୁପରି ଦିଶିବା - ଏଇ ଦିଶିବା ହେଲାଣି ଲକ୍ଷ୍ୟ । ହେବା କଥା କିଏ ବୁଝୁଛି ? ସତକୁ ସତ କିଏ ସାଧକ, କିଏ ଜାଣେ ? ଏଣୁ କ'ଣ ପ୍ରୟୋଜନ ସେଥିରେ ମାତିବା । ଅଳ୍ପ ଅଭିନୟ, ଅଳ୍ପ ବେଶ ଆଚରଣରେ ଯଦି ସେତକ ମିଳିଗଲା ଲୋକଖ୍ୟାତି ଭିତରେ, ସେଇ ଢେ଼ର୍ । ଯାକୁ ଇଂରାଜୀରେ କୁହାଯାଏ - Missing the wood for the tree" । ଅର୍ଥାତ୍ ଗଛଟିଏ ପାଇଁ ମହାରଣ୍ୟକୁ ହରାଇବା । ଘୋଡ଼ାଟିକୁ ସମସ୍ତେ ଦେଖି ପାରିଲା ଭଳି ପାଳୁଥିଲେ ଲୋକେ କହି ପାରନ୍ତି ଯେ, ଖୁବ୍ ଗୋଟାଏ

ବଡ଼ ଧରଣର ଯାତ୍ରା ହୁଏତ ହେବ । ସେଥିପାଇଁ କିଛିଦିନ ଏହାକୁ ସମ୍ମାନ ଓ ସଂଭ୍ରମରେ ଦେଖନ୍ତି । କିନ୍ତୁ ଯେତେବେଳେ, ଜଣାଯାଏ ଯେ, ସେ ସଇସଟିଏ ଘୋଡ଼ା ପାଳିବା ତାର ଏକମାତ୍ର ବୃତ୍ତି ଏବଂ ଲକ୍ଷ୍ୟ, ସେଇ ଅନୁସାରେ ଲୋକଙ୍କ ମତ ମଧ୍ୟ ପରିବର୍ତ୍ତିତ ହୋଇଯାଏ । ଦେହଟିକୁ ପାଳିବା ଏବଂ କେବଳ ପାଳିବାପାଇଁ ପାଳିବା, ଘୋଡ଼ା ପୋଷିବା ଭଳି ବ୍ୟର୍ଥ କାର୍ଯ୍ୟ । ଯଦି ଯାତ୍ରା ନାହିଁ, ତେବେ ଘୋଡ଼ାର ଅର୍ଥ କ'ଣ ?



**୧୮-୫-୮୪**

ନିତ୍ୟକର୍ମ ବା ନୈମିତ୍ତିକ କର୍ମରେ ବ୍ୟତିକ୍ରମ ହେଲେ ଗ୍ଲାନିବୋଧ ଆସେ । ଧରାଯାଉ, ପ୍ରତିଦିନ ସ୍ନାନାଦି ସାରି ଭବନକୁ ଯିବା କଥା । ଅନେକ ଦିନର ଅଭ୍ୟାସ, ଯିବାକୁ ପଡ଼େ । ଗଲେ ଭଲଲାଗେ । ଦିନେ ଯିବାକୁ ମନହେଲା ନାହିଁ । ନ ଯିବାରେ କ୍ଷତି କ'ଣ ?... ତାର ଉତ୍ତର ଏଇଭଳି । ଯଦି ଯିବାରେ ଲାଭ ହେଉଥାଏ ତେବେ ନ ଗଲେ ନିଶ୍ଚୟ କ୍ଷତି ହେବ । କିନ୍ତୁ ଲାଭ କ୍ଷତିର ବିଚାର କାହିଁକି ଆସିବ ? ବରଂ ତାକୁ ଅନ୍ୟ ଦୃଷ୍ଟିରୁ ଦେଖିଲେ ଆଉ ପ୍ରକାରେ ଅର୍ଥ ଆସୁଛି । କୌଣସି ଶୁଦ୍ଧ ସାତ୍ତ୍ୱିକ ଅଭ୍ୟାସ ପାଇଁ ପ୍ରଥମେ ସଂକଳ୍ପର ପ୍ରୟୋଜନ ହୁଏ । ମନକୁ ଦୃଢ଼ କରି ଶରଣାପନ୍ନ ହୋଇ କାର୍ଯ୍ୟ ଆରମ୍ଭ କରାଯାଏ । ସଂକଳ୍ପର ଦୃଢ଼ତା ଉପରେ ଅଭ୍ୟାସର କାର୍ଯ୍ୟକାଳ ନିର୍ଭରକରେ । ପ୍ରଥମେ ଅନିଚ୍ଛା ବାଧା ଦେଇଥାଏ । ତା'ମୂଳରେ ଥାଏ ତାମସିକ ଆଳସ୍ୟ । ଜୀବନକୁ ସହଜ ଜୀବ ଧର୍ମରେ ବଞ୍ଚିବାର, ପରିବର୍ତ୍ତନ-ବିରୋଧୀ, ବେପରୁଆ ଭାବ । କିଏ ଘ... ଏତେ କଥା ? କ'ଣଟାଏ ହୋଇଯିବ ଏ ପରିଶ୍ରମ କରି ? ଶରୀରକୁ କଷ୍ଟ ଦେଇ କିଏ ସ୍ୱର୍ଗକୁ ଗଲାଣି ... ଇତ୍ୟାଦି ପ୍ରଶ୍ନ ମନରେ ଉଦୟ ହୁଏ । ତାକୁ ପ୍ରତି ଯୁକ୍ତିରେ ଆୟତ୍ତ କରାଯାଏ । ମଣିଷ କେବଳ ଗୋଟିଏ ଜୀବ ନୁହେଁ । ସେ ସଚେତନ, ବିବେକୀ, ମନସ୍କଜୀବ । କେବଳ ବଞ୍ଚିବା ତା'ପାଇଁ ଯଥେଷ୍ଟ ନୁହେଁ । ସେ ଅନ୍ୟ ପ୍ରକାରେ ବଞ୍ଚିବାକୁ ଚାହେଁ, ବଞ୍ଚିବା ଉଚିତ୍ । ଏଣୁ ଏଭଳି ଧ୍ୟାନ ଧାରଣାଦି ଦ୍ୱାରା ସେ ନିମ୍ନଭୂମିର ଜୀବ ସତ୍ତାଠାରୁ ଭିନ୍ନ ହୁଏ । ଏପରି ଅନେକ ଯୁକ୍ତି, ପ୍ରତିଯୁକ୍ତି ଚାଲିଥାଏ । କାର୍ଯ୍ୟ ବି ଚାଲିଥାଏ । ଦିନେ ହଠାତ୍ ଅନୁଭବ ହୁଏ ଯେ ଏପରି ବଳ ପ୍ରୟୋଗ କରି ଘୋଷାରିବାର ଅର୍ଥ କିଛି ନାହିଁ । ଯଦି ତାହା ଶୁଭକାର୍ଯ୍ୟ ଏବଂ ତାହା ମଙ୍ଗଳଦାୟକ ତାହା ମଧ୍ୟ ଆନନ୍ଦଦାୟକ ହେବା ଉଚିତ୍ । ସେଥିରେ ମନ ଲାଗିଯିବା ଉଚିତ୍ । ଅଭ୍ୟାସରେ ପଡ଼ିଯିବା ଉଚିତ୍ । ଏପରି ଅବସ୍ଥାରେ ଯଦି ଦିନେ ବ୍ୟତିକ୍ରମ ହୋଇଗଲା ସେଥିରେ କିଛି ଯାଏ ଆସେ ନାହିଁ । କାରଣ ଅଭ୍ୟାସ ତା'ଆରଦିନ ପୁଣି ସ୍ୱାଭାବିକ ହୋଇଯିବ । ଖୁବ୍ ଗୋଟାଏ ଗଣ୍ଡି ପକାଇ କୃଚ୍ଛ୍ରସାଧନା ପରି କଟ୍ଟର ଆଚରଣ ନିଜେ ଲକ୍ଷ୍ୟ ହୋଇଯାଏ । ଆଚରଣଟା କ'ଣ ଲକ୍ଷ୍ୟ କି ? ଆଚରଣରେ ଥାଇ ଆଚରଣକୁ ଅତିକ୍ରମ କରିବା ହିଁ ଲକ୍ଷ୍ୟ । ମୋଟ ଉପରେ କୌଣସି ଗୋଟାଏ ଅଭ୍ୟାସ ଏମିତି ନିୟମରେ ପରିଣତ ହେଉ । ବ୍ୟତିକ୍ରମରେ ଅପରାଧ ବୋଧ ନ ଆସୁ । ଉତ୍ତେଜିତ ଗ୍ଲାନିବୋଧ ନ ଆସୁ । 'ହେଲା ! ଏଣିକି ଦେଖିବା !' ଏପରି ଅବିଚଳିତ ରହିବା ସୁସ୍ଥ ବିଚାରର ଲକ୍ଷଣ ।



## ୧୩-୬-୮୪

ଅହଂକାରରର ଗୋଟିଏ ସୂକ୍ଷ୍ମରୂପ ହେଲା, ନିଜକୁ ନିଜେ ଆହା କହି ପ୍ରୟାସ ପ୍ରଚେଷ୍ଟାମାନଙ୍କରୁ ନିବୃତ୍ତ କରିବା । "ଆହା ମୋ ଭଳି ସାଧୁ ସଚ୍ଚରିତ୍ର ପୁଣି ଏତେ କଷ୍ଟ ପାଇବାକୁ ଥିଲା ? ଆହା ମୁଁ କାମରେ ଖଟି ଖଟି ମଲିଣି ଆଉସବୁ କିଛି ନକରି ସୁଖରେ ଅଛନ୍ତି, ଆହା ମୋ ଯୋଗ୍ୟତା କାହା ଆଖିରେ ପଡ଼ିଲା ନାହିଁ ଆହା, ମଣିଷ, ଦେବତା ମୋ ପାଇଁ ନ୍ୟାୟ ବିଚାର କଲେନାହିଁ" ଇତ୍ୟାଦି । ଏଥିରେ ନିଜକୁ ଲକ୍ଷକୋଟି ଜୀବଜନ୍ତୁଙ୍କ ଭିତରେ ଅଯଥା ବୈଶିଷ୍ଟ୍ୟ ଦିଆଯାଏ । ଅନ୍ୟକୁ ନ ବୁଝି ତା'ପ୍ରତି ଦ୍ୱେଷ, ଅସୂୟା, ବିରୋଧ କରାଯାଏ, ଆଳସ୍ୟ ସପକ୍ଷରେ ଯୁକ୍ତି କରାଯାଏ । ଏଭଳି ମଣିଷ ନିଜକୁ ହିଁ ପ୍ରତାରଣା କରୁଥାଏ । କିନ୍ତୁ ଦୃଷ୍ଟି ନିର୍ମଳ ହେଲେ ଦେଖାଯିବ ଯେ ସେ ଦୁର୍ଲ୍ଲଭ ମଣିଷ ଜନ୍ମ ପାଇଛି । ସୁସ୍ଥ ସମର୍ଥ ଅଛି । ଏ ବିପୁଳ ପୃଥିବୀରେ ତା'ର ସମ୍ଭାବନା ଅମାପ । ତା'ପ୍ରତି କେହି ଅନ୍ୟାୟ କରି ନାହାନ୍ତି ଅଧିକାଂଶ ଭୟ, ଉତ୍କଣ୍ଠା, ଆବେଗ କେବଳ ତାର ମନଗଢ଼ା ଭୂତ । ସେ ଯାହା ନ ପାଇଛି ତା'ପାଇଁ ବ୍ୟଥିତ ହେବା ଅପେକ୍ଷା ଯାହା ପାଇଛି ତାହା ବୁଝି ସେଥିପାଇଁ କୃତଜ୍ଞ ହେବା ଅଧିକ ବିଜ୍ଞତା । କାରଣ ଅପ୍ରାପ୍ତ ବସ୍ତୁପାଇଁ ଉତ୍କଣ୍ଠା ଏବଂ ହତାଶ । ସେ ବସ୍ତୁକୁ ଆଣିଦିଏ ନାହିଁ । ବରଂ ଯାହା ପ୍ରାପ୍ତ ତା'ର ସ୍ୱାଭାବିକ ଉପଭୋଗରୁ ବଞ୍ଚିତ କରେ । ଏଣୁ ଯେ କୌଣସି ପରିସ୍ଥିତିରେ ଯଦି ସେ ପ୍ରଫୁଲ୍ଲ ଏବଂ ସନ୍ତୁଷ୍ଟ ରହି ପାରିଲା, ଯଦି ଯେତେବେଳେ ପଚାରିଲେ କହିପାରିଲା - **"No problem"** ସବୁ ଠିକ୍ଅଛି । ଉତ୍ତମ ଚାଲିଛି, ସେ ଖୁବ୍ ଆଗେଇ ପାରିଛି ବୋଲି ବୁଝିବାକୁହେବ ।



## ୨୮-୬-୮୪

ମୋତେ କେହି ସ୍ପର୍ଶ କରି ପାରିବେ ନାହିଁ । କାରଣ ସ୍ପର୍ଶ କରୁଥିବା ସେ ଆଙ୍ଗୁଠିଟି ସ୍ୱୟଂ ମୁଁ । ସେହିପରି ମୋତେ କେହି ଦେଖିପାରିବେ ନାହିଁ, କାରଣ ମୁଁ ହିଁ ଦୃଷ୍ଟି, କେହି ଶୁଣି ପାରିବେ ନାହିଁ, ମୁଁ ହିଁ ଶ୍ରବଣ । - ଏ ସମସ୍ତ ଯାହା ଦିଶୁଚି, ସ୍ଥାବର ଜଙ୍ଗମର ସମାହାରସେ ସମସ୍ତ ମୁଁ । ଜୀବ ଭିତରେପ୍ରେମ, ଅନୁରାଗ କ୍ରୋଧ, ହିଂସା ଆଦି ଆବେଗ ମୁଁ, ଦେଶ କାଳ, ତଥ୍ୟ ତତ୍ତ୍ୱ ଚିନ୍ତା ସମସ୍ତ ମୁଁ । - ଯାହା ସାମାଜିକ, ମାନସିକ, ଆଧ୍ୟାତ୍ମିକ ମୂଲ୍ୟ ରହିଛି, ସେ ସମସ୍ତ ମୋତେ ଆଶ୍ରିତ ହୋଇ ରହିଛି - ସେ ସମସ୍ତ ମଧ୍ୟ ମୁଁ । ମୁଁ ପୂଜକ, ପୂଜା ଏବଂ ପୂଜ୍ୟ, ଭୋକ୍ତା, ଭୋଜନ ଏବଂ ଭୋଜ୍ୟ । "ମତଃ ପରତରମ୍ ନାନ୍ୟଦ୍ କିଞ୍ଚିଦସ୍ତି ଧନଞ୍ଜୟ । ମୟି ସର୍ବମିଦଂ ପ୍ରୋତମ୍ ସୂତ୍ରେ ମଣି ଗଣାଇବ ।" ଏହା ଅତି ଉଚ୍ଚସ୍ତରର ଭୂମାନୁଭୂତି । ତାହାର ଆସୁରୀ ପ୍ରକାଶ ମଧ୍ୟ ସମ୍ଭବ । ହିରଣ୍ୟକଶିପୁ ପ୍ରବଳ ପରାକ୍ରମୀ, ସେ ତା ଢ଼ଙ୍ଗରେ ଅନୁଭବ କରିଥିଲା ଯେ, ତା'ର ଆଦେଶରେ ଏ ସମସ୍ତ ଚାଲିଛି । ଏଣୁ ପ୍ରହ୍ଲାଦକୁ ବ୍ୟତିକ୍ରମ ଭାବି ସଂହାର କରିବାକୁ ତତ୍ପର ହୋଇ ଉଠିଥିଲା । ବ୍ୟକ୍ତି ସୀମାକୁ ସର୍ବଦା ଅତିକ୍ରମ କରିଯିବାପାଇଁ ଏକ ପ୍ରବୃତ୍ତି କାମ କରିଥାଏ । ବିଭିନ୍ନ ସଂପର୍କ ଏବଂ ମମତା ସୂତ୍ରରେ ଆମେ ଅନ୍ୟ ସହିତ ଭିନ୍ନ ଭିନ୍ନ ସ୍ତରରେସଂଯୁକ୍ତ ହେଉ । କିନ୍ତୁ ସମସ୍ତ ପ୍ରାଣୀଙ୍କୁ ନିଜ

ଭିତରେ ଗ୍ରହଣ କରି ପାରୁନାହିଁ । ବାଧକ ହୁଏ ଆମ ଭିତରେ ବଦ୍ଧମୂଳ ଅନ୍ୟଭାବ । 'ନାନା'କୁ ଅତିକ୍ରମ କରି ଏକରେ ପହଞ୍ଚିବା ଭଳି ବିସ୍ତାର ଘଟେ ନାହିଁ । ତା'ର ସାଧନାର ମାର୍ଗ ତା'ର ସହାୟକ ଏବଂ ମାଧ୍ୟମ ହେଉଛି 'ପ୍ରେମ' । ସେଥିପାଇଁ ଆମ ଭିତରୁ ଏଇ ଭିନ୍ନଭାବକୁ ମାରିବା ପାଇଁ ମା କହିଛନ୍ତି - Love, Love, Love as much as you can' ଯେତେ ପାରୁଛ ପ୍ରେମକର ସମସ୍ତଙ୍କୁ ।



## ୩୦-୬-୮୪

ମଣିଷ ବହୁମାତ୍ରାରେ ମନରେହିଁ ବଞ୍ଚେ । ସେଥିପାଇଁ ଆଖି ସାମ୍ନାରେ ବସ୍ତୁକୁ ସେ ଦେଖିପାରେ ନାହିଁ । ଦେଖିଲେ ବି ପୂର୍ଣ୍ଣମାତ୍ରାରେ ନୁହେଁ । ମନର ରଂଗରେ ରଂଜେଇ ଦେଖେ । ଧରାଯାଉ, ସେ ବନ୍ଧୁଘରକୁ ଯାଉଛି, ବାଟରେ ସୁନ୍ଦର ଗଛ, ଗଛରେ ଅନେକ ଫୁଲ, ଆକାଶରେ ମେଘ, ତାକୁ କିଛି ଦିଶେ ନାହିଁ । ସେ ବନ୍ଧୁକୁ ବିଭିନ୍ନ ରୂପରେ ଚିନ୍ତାକରି ଏଭଳି ସେଥିରେ ଆଚ୍ଛନ୍ନ ଥାଏ ଯେ ଆଖି ଉପରେ ପାରି ହୋଇ ଯାଉଥାଏ ବିବିଧ ମନୋହର ଦୃଶ୍ୟ, ଅଥଚ ସେ ଦେଖିପାରେ ନାହିଁ । ଏଥିରୁ ମୁକୁଳି ଆସିଲେ ପ୍ରତିଟି ଦୃଶ୍ୟ ଏକ ଛବିପରି ମନୋରମ । ସେଥିପାଇଁ ଗୋଟିଏ ସୁନ୍ଦର ବନ୍ଧେଇ ବା Frame ର କଳ୍ପନା କରାଯିବା ଦରକାର । ସବୁଦିନ ଯେଉଁ କୋଠା, ତା' ପାଖ ଦେବଦାରୁ ଗଛ ଏବଂ ଟେଲିଫୋନ୍ ତାର ପାଖଦେଇ ଜଣେ ଯାଉଥାଏ, ତାକୁ ସେମିତି Frame ରଖି ଦେଖିଲେ ସେ ଅପରୂପ ଦିଶେ । ଚିତ୍ରଟି Life size । ଘର ଘର ପରି ଗଛ ଗଛପରି ଯେଉଁ ଯେପରି ସେପରି ଅତି ସୁନ୍ଦର । ବସ୍ତୁଭଳି ମଣିଷଟିକୁ ମଧ୍ୟ ସେଇ Frame ଭିତରେ ଦେଖିଜାଣିଲେ ସେ ଚମତ୍କାର ଦେଖାଯାଏ । ଦେଖିବା ବେଳେ ମନକୁ ବକ୍‌ବାକି କରି ସବୁ ଇତସ୍ତତଃ କରି ନ ଦେବାକୁ, ଜଗିବା ଦରକାର । ଚିତ୍ରଟିଏ ତ ଦେଖୁଛ । ସେ ବିଷୟରେ ମନରେ କ'ଣ ସବୁ ଆଗରୁ ଲେଖାପଢ଼ି ଅଛି, ତା'ପାଇଁ ଏତେ ଚିନ୍ତା କାହିଁ କି ?

ଏଇ Frame କଥାଟି ସ୍ଥୂଳଭାବରେ ମଧ୍ୟ ପରୀକ୍ଷା କରାଯାଇ ପାରେ । ଗୋଟିଏ ଛୋଟିଆ ଫଟୋରୁ Frame ଟିକୁ ଅଲଗା କରିଦେଇ ତାକୁ ଆଖି ଆଗରେ ଟେକି ଧରିଲେ ତା ଭିତରକୁ ଆସି ଯାଉଥିବା ସବୁ ଦୃଶ୍ୟ ଅପୂର୍ବ ଦିଶିବ । ଅବଶ୍ୟ ଏଇଠି ଦୁଇଟି ଦୃଷ୍ଟିଭଙ୍ଗୀ ରହିଛି । ଗୋଟିଏ ହେଲା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ସେ ଯେଉଁ Frame ଟିକୁ ଧରିଥାଏ ତାକୁ ନିର୍ଦ୍ଦିଷ୍ଟ ସତ୍ୟବୋଲି ଭାବି ତା ଭିତରେ ଆକାଶର ଯେତିକି ଆସିଲା ସେତିକି କାଟିନେଇ ଅଲଗା ବୁଝିବସେ । ତା'ପାଇଁ ଦୃଶ୍ୟ ବଦଳି ପାରେ, କିନ୍ତୁ Frame ସ୍ଥିର । ଦୃଶ୍ୟ variable କିନ୍ତୁ Frame ଟି constant । କିନ୍ତୁ ଜଣେ କଳାକାର ଦୃଶ୍ୟକୁ ଅଧିକ ସମ୍ମାନ ଦିଏ, ଯଦି - ଏତେ ଉଚ୍ଚ ଦେବଦାରୁଟି ଛୋଟ ଫ୍ରେମ୍ ଭିତରେ ଆସିପାରୁନାହିଁ - Frame ଟିକୁ ବଦଳେଇ ଦେବାକୁହେବ । ତାକୁ ପାଖକୁ ନେଇ ଆସିଲେ Frame ଆପେ ବଢ଼ିଯିବ । ତା'ପାଇଁ Frame ଟି variable, କିନ୍ତୁ ଦୃଶ୍ୟ constant । ଜୀବନ ଏକ ଚିର ପ୍ରବହମାନ ଦୃଶ୍ୟ । ତାକୁ ଏ ଦୃଷ୍ଟିଭଙ୍ଗୀରେ ଦୁଇପ୍ରକାର ଦେଖାଯାଏ । କିନ୍ତୁ ମୋଟ ଉପରେ Frame ପକେଇ ଦେଖିବା ଏବଂ ମନର

ଖୋପ ଭିତରୁ ବାହାରି ଆସି ଇନ୍ଦ୍ରିୟ ଜଗତକୁ ପୂର୍ଣ୍ଣମାତ୍ରାରେ ଦେଖିବା ଉଭୟ ଚମତ୍କାର ଅନୁଭବ । ନୂଆକରି ଦେଖିବାର ଅନୁଭବ ।



## ୮-୭-୮୪

ଅତୀତକୁ ଫେରିଯିବା ପାଇଁ ଇଚ୍ଛା ବାର୍ଦ୍ଧକ୍ୟର ଲକ୍ଷଣ, ଉଭୟ ବ୍ୟକ୍ତି ପାଇଁ ଏବଂ ଜାତି ପାଇଁ । ମହାର୍ଘ ମୁହୂର୍ତ୍ତଟିଏ ଆସିଥିଲା । ସେତିକିବେଳେ ହୁଏତ ତାକୁ ଯଥେଷ୍ଟ ମୂଲ୍ୟ ଦିଆଯାଇ ପାରି ନାହିଁ । ଅତି ସହଜ ଅଧିକାରରେତାକୁ ବ୍ୟବହାର କରାଯାଇଛି । କିନ୍ତୁ ଅନେକ ବର୍ଷ ପରେ ପଛକୁ ଫେରି ଚାହିଁଲେ ସ୍ମୃତିରେ ଲାଖି ରହିଯିବାକୁ ଇଚ୍ଛା ହେଉଛି । ଆଃ କେତେ ସୁନ୍ଦର ସତେ ଏ ପୃଥିବୀ କେତେ ସୁନ୍ଦର ଜୀବନ । କାଳର ପାଣି ସୁଅରେସେ ସମୟ ଯାହାସବୁ ଉତ୍ତାପ, ଜ୍ୱାଳା ସବୁ ଧୋଇହୋଇ ଯାଇଛି । ଯାହା ରହିଛି ତାହା ସୁଖମୟ, ପ୍ରୀତିମୟ, ସୁଷମାମୟ । ଅର୍ଥାତ୍ କାଳସ୍ରୋତରେ ମୃତ୍ୟୁ ଧୋଇହୋଇ ଯାଇଛି, ଯାହା ରହିଛି ତାହା କେବଳ ତା'ର ଅମୃତାଂଶ, ମଧୁର ଅମରଣଶୀଳ, ପ୍ରତିଟି ମୁହୂର୍ତ୍ତରେ ସେଇ ଅମୃତାଂଶ ଲୁଚି ରହିଛି । କିନ୍ତୁ ସ୍ୱାଭାବିକ ଭାବରେ ତା' ଉପରେ କାଳ ପ୍ରବାହିତ ହୋଇ ନଗଲେ ସେ ଆମର ଅନୁଭବକୁ ଆସିପାରୁନାହିଁ । ଏପରିକି ଯେଉଁ ବାର୍ଦ୍ଧକ୍ୟ ସ୍ମୃତି-ସର୍ବସ୍ୱ ହୋଇ ଅତୀତକୁ ଝୁରି ହେଉଥାଏ, ତା'ର ବର୍ତ୍ତମାନ ମୁହୂର୍ତ୍ତଗୁଡ଼ିକ ମଧ୍ୟ ଅତି ମଧୁର । ଏଥିରୁ ପ୍ରତିଟି ମୁହୂର୍ତ୍ତ ପୁଣି ଥରେ ବଞ୍ଚିବାକୁ ହୁଏତ ଆଉ ପାଞ୍ଚବର୍ଷ ପରେ ଇଚ୍ଛା ହୋଇପାରେ । ତେବେ ଅଜ୍ଞାନେନାବୃତଂ ଜ୍ଞାନମ୍ ଭଳି ମୃତ୍ୟୁର ଖୋଳପା ଭିତରେ ହିଁ ଅମୃତ ଲୁଚି ରହିଛି । ଆମେ ସେଇ ଖୋଳପାକୁ ନେଇ ଆୟୁ କ୍ଷୟ କରି ଚାଲିଛୁ । ଆଜିର ସଂକଟ, ଆକଣ୍ଠ ଜଳରାଶି ପରି ଘେରି ରହିଛି । ପ୍ରତି ପଲକ ପାତରେ ଉତ୍କଣ୍ଠା, ଉଦ୍‌ବେଗ, ଲଢ଼ିଯିବାର ହାରିଯିବାର ଉତ୍ତେଜନା ଏବଂ ଭୟ ଉଜାଣି ଟେକୁଛି, ଅଥୟ କରୁଛି । ପ୍ରାର୍ଥନା ଚାଲିଛି କେମିତି ଏଥିରୁ ପାରିହୋଇ ଯିବାକୁ । କିନ୍ତୁ କିଛି ବର୍ଷ ପରେ ଯେତେବେଳେ ଏ ସଂକଟ ସ୍ମୃତିରେ ଗଚ୍ଛିତ ରହିଯିବ, ଏ ସମସ୍ତ ଆବେଗ, ଦୁଶ୍ଚିନ୍ତା-ଅସ୍ଥିରତା ଚାଲି ଯାଇଥିବ, ମନେହେବ ସତେ କେତେ ବଡ଼ ବିପଦରୁ କେତେ ବଡ଼ ପ୍ରଭୁ ତ୍ରାଣ କରି ନେଇଥିଲେ । ଆମ ଅଜ୍ଞାତରେଏବଂ ଅଣାୟତ୍ତରେ ଇଚ୍ଛା ହେଉଥିବ, ଆଉ ଥରେ ଗ୍ରାହ ଧରନ୍ତା କି, କିନ୍ତୁ ଗ୍ରାହ ସତକୁ ସତ ଧରିଦେଲେ ପୁଣି ବିକଳ ଅବସ୍ଥା । ଏଣୁ ବ୍ୟକ୍ତି ହେଉ ବା ଜାତି ହେଉ, କେବଳ ସ୍ମୃତି ବିଧୁର ହୋଇ ନିଷ୍କ୍ରିୟ ହୋଇ ବସି ରହିବା ହେଉଛି ବାର୍ଦ୍ଧକ୍ୟର ଲକ୍ଷଣ । ଅତୀତ ତ ନିଶ୍ଚୟ ସୁନ୍ଦର ଥିଲା । କିନ୍ତୁ ଏଇ ବର୍ତ୍ତମାନଟା କେଉଁ ଗୁଣରେ ଅଳ୍ପ ସୁନ୍ଦର କି ? ଏ ମୁହୂର୍ତ୍ତକୁ ଗୁରୁତ୍ୱଦେବା ଅର୍ଥ ତାର ଅମୃତକୁ ଚିହ୍ନିବା ଏବଂ ଆସ୍ୱାଦନ କରିବା । ସେଥିରେ ଉପସ୍ଥିତ ଦୁଃଖ ଅନେକ କମ୍ । ଏବଂ ଭବିଷ୍ୟତ ମନସ୍ତାପ ମଧ୍ୟ ଅନେକ କମ୍ । କାରଣ ଚିହ୍ନି ନ ପାରି ମୁହୂର୍ତ୍ତକୁ ବଞ୍ଚି ଜାଣିଲି ନାହିଁ ବୋଲି ଆଉ ପଶ୍ଚାତାପ ହେବନାହିଁ ।



କୌଣସି କାର୍ଯ୍ୟରେ ବିଘ୍ନ ଉପଜାତ ହେଲେ, ଉଦ୍‌ବିଗ୍ନ ଲାଗେ । କାର୍ଯ୍ୟକୁ ଭୁଲିଯାଇ କେବଳ ସେଇ ବାଧା-ବିଘ୍ନର ଚିନ୍ତାରେ ମନ ଲାଗିରହେ, ତଦ୍ୱାରା ସେସବୁ ଦୂର ହୁଏ ନାହିଁ । କୌଣସି ସମସ୍ୟାର ସମାଧାନ ମଧ୍ୟ ହୁଏନାହିଁ । ଏଣୁ ଶ୍ରୀମା କହିଛନ୍ତି - "ବିଘ୍ନ ଆଡ଼େ ଧ୍ୟାନ ଦିଅନାହିଁ, ତଦ୍ୱାରା ତା'ର ଶକ୍ତି ଆହୁରି ବଢ଼ିଯାଏ" । ଯିବା ବାଟରେ ଯଦି ବାଘ ହାବୁଡ଼ିଗଲା, ତେବେ ସେ ହିଁ ଚିନ୍ତା ଓ ଚେତନାକୁ ଆଚ୍ଛନ୍ନ କରିଯିବା ସ୍ୱାଭାବିକ । ଉପସ୍ଥିତ ସଂକଟରେ ମୂଳ ଲକ୍ଷ୍ୟର ଯାତ୍ରା ଭୁଲି ହୋଇଯିବା ସ୍ୱାଭାବିକ । ଏଇ କ୍ଷେତ୍ରରେ ବାଘକୁ ସଂପୂର୍ଣ୍ଣ ଅବଜ୍ଞା କରି ଅବହେଳାରେ ଚାଲିଯିବା ଆଦୌ ନିରାପଦ କିମ୍ବା ସମୀଚୀନ ନୁହେଁ । ସେକଥା ମଧ୍ୟ କୁହାଯାଇ ନାହିଁ । ବାଘ ଦେଖିଲେ ତା'ର ଉଚିତ୍ ପ୍ରତିକାର କର । କିନ୍ତୁ କେବଳ ସେଥିରେ ଧ୍ୟାନ ଦିଅନାହିଁ । ତଦ୍ୱାରା ଯେଉଁ ଉଦ୍‌ବେଗ ଏବଂ ଭୟ ଜାତହେବ, ତା'ର ସ୍ପନ୍ଦନ ବାଘ ଭିତରର ଜିଘାଂସା ଏବଂ କ୍ଷୁଧାର ସ୍ପନ୍ଦନକୁ ଆହୁରି ଉତ୍ତେଜିତ କରିବ । ଖୁବ୍ ସ୍ଥିର ରହି, ବାଘକୁ ବାଘ ସ୍ଥିତିରେ, ନିଜକୁ ନିଜ ସ୍ଥିତିରେ ରଖି ପ୍ରତିବିଧାନ କଲେ ବାଧା ଦୂର ହୋଇଯିବ ଏବଂ ଯାତ୍ରା ଜାରି ରହିବ । ସ୍ଥୂଳ ଜଗତରେ ଯେମିତି ଜଣେ ବୋଝ ଉଠେଇଲାବେଳେ ଆଉଜଣେ ହାତ ଲଗେଇ ଦେଲେ ତା'ର ଶକ୍ତି ବଢ଼ିଯାଏ, ସେହିପରି ସୂକ୍ଷ୍ମ ଜଗତରେ ମଧ୍ୟ ହୁଏ । ଅହରହ ଆମ ଭିତରେ ଅନେକ ଚିନ୍ତା ଏବଂ ଆବେଗର ମନ୍ଥନ ଚାଲିଛି । ଏହା କେବଳ ଏ ଶରୀର ଭିତରେ ଆବଦ୍ଧ ରହୁନାହିଁ । କାରଣ ପ୍ରାଣିକ ବା ମାନସିକ ଜଗତ ଏ ସ୍ଥୂଳ ଜଗତ ସହିତ ଓତପ୍ରୋତ ଭାବରେ ସହାବସ୍ଥିତ ଥିଲେ ମଧ୍ୟ, ସ୍ୱତନ୍ତ୍ର । ଏଣୁ ଅଦୃଶ୍ୟ ରେଡ଼ିଓ ତରଙ୍ଗ ପରି ପ୍ରାଣିକ ବା ମାନସିକ ସ୍ପନ୍ଦନ ସଂଚାରିତ ହୋଇ ଅନ୍ୟକ୍ଷେତ୍ରରେ ପ୍ରଭାବ ପକାଏ । ଜଣେ ରାଜା ଖୁବ୍ ପ୍ରଭାବଶାଳୀ ବ୍ୟକ୍ତିଙ୍କ ପାଖରେ ନୀରବ ବସିରହିଲେ ସୁଦ୍ଧା ମନ ଏବଂ ପ୍ରାଣରେ ଚାପ ଅନୁଭବ ହୁଏ । ଏପରିକି ସ୍ପନ୍ଦନ ଅତି ତୀବ୍ରହେଲେ ଗୋଟିଏ ମନର ଚିନ୍ତା ସିଧାସଳଖ ଅନ୍ୟ ମନରେ ପହଞ୍ଚିଯାଇପାରେ । ଏସବୁ ସ୍ପନ୍ଦନ ସୂକ୍ଷ୍ମଭୂମିରେ ବେଳେ ବେଳେ ମିଶି ଯାଆନ୍ତି । ଆଉ ବେଳେ ବେଳେ ନ ମିଶି ପରସ୍ପରର ବିରୋଧ କରନ୍ତି । ତା'ଭିତରୁ କେତେଗୁଡ଼ିଏ ଆପେକ୍ଷିକ ହୋଇଥିବାରୁ ପରସ୍ପରର ପରିପୂରକ ରୂପେ କାର୍ଯ୍ୟ କରିଥାନ୍ତି । ଜଣଙ୍କ ଭୟ ଏବଂ ଅନ୍ୟର କ୍ରୋଧ । ଏଣୁ ବାଘର କ୍ଷୁଧା ଆମର ଭୟ ଦ୍ୱାରା ପରିପୁଷ୍ଟ ହୁଏ । କିନ୍ତୁ ଏ ସମସ୍ତ ଏତେ ସୂକ୍ଷ୍ମ ଯେ ତାକୁ ସାଧାରଣ ଅନୁଭବକୁ ଆଣିହୁଏ ନାହିଁ । ଉଦାହରଣ ସ୍ୱରୂପ ଆମେ ଯେଉଁ ପ୍ରଶ୍ୱାସ ଗ୍ରହଣ କରୁଛୁ ସେଥିରେ ପୃଥିବୀରେ ଅଦ୍ୟାବଧି ବଞ୍ଚିଥିବା ସମସ୍ତ ପ୍ରାଣୀଙ୍କର ଶ୍ୱାସ ଭରି ରହିଛି । ଆମେ ଯେଉଁ ପୃଥିବୀ ଉପରେ ପାଦଦେଇ ଠିଆ ହୋଇଛୁ, ସେଇ ପୃଥିବୀ ପୃଷ୍ଠରେ ଲକ୍ଷ କୋଟି ଜୀବ ଠିଆ ହୋଇଛନ୍ତି । ଏ ଅନୁଭବରୁ ଏକ ପ୍ରକାର ବିସ୍ତାର ପ୍ରାପ୍ତହୁଏ । ଅତି ଉଦାର ସହାବସ୍ଥାନର ସଂପର୍କ ସ୍ଥାପନ ହୁଏ । ବିସ୍ମୃତି ସ୍ଥିରତା ଆଣିଦିଏ । ତ୍ରିକାଳ ଦୃଷ୍ଟି ଆଣିଦିଏ, ସେପରି ହେଲେ, ଉପସ୍ଥିତ ସଂକଟ ବା ବାଧାବିଘ୍ନକୁ ଧ୍ୟାନ ନ ଦେଇ ଯଥାବିଧି ପ୍ରତିକାର କଲେ ଲକ୍ଷ୍ୟପଥରେ ଚାଲିଯାଇ ହେବ । ସାଧାରଣ ଅଭ୍ୟାସ ପାଇଁ ବାଧାଦେଖି କୌଣସି ଉଦ୍‌ବେଗ କର ନାହିଁ । ଇଷ୍ଟ ସ୍ମରଣ କରି ସ୍ଥିର ରହ । ବାଧା ଆପେ ଆପେ ଦୂର ହୋଇଯିବ ।



ଛାଇଯୁଦ୍ଧ ବା Shadow fighting ଗୋଟାଏ ସମୟରେ ଅତି ଉତ୍କୃଷ୍ଟ ବ୍ୟାୟାମରୂପେ ଗୃହୀତ ହେଉଥିଲା । ସେଥିରେ ସୁବିଧା ହେଲା ଯେ ଯୁଦ୍ଧପାଇଁ ଆଉ ଜଣଙ୍କର ଆବଶ୍ୟକତା ନାହିଁ । ତା'ବାହାରେ ନିଜେ ଯେତେ ପ୍ରଖର ଗତିକରି ପାରିବ, ଛାଇ ତଦନୁରୂପ ପ୍ରଖର ହୋଇ ପାରିବ । ଏମିତି ସବୁ ଅନେକ କାରଣରୁ ସେ ବ୍ୟାୟାମ ଅନେକଙ୍କ ପାଇଁ ଖୁବ୍ ଆକର୍ଷଣୀୟ ହୋଇପାରିଥିଲା । ଏବେ କିନ୍ତୁ ତା'ର ସେଭଳି କିଛି ପ୍ରଚାର ନାହିଁ, ଅଥଚ ଆମେ ବାହାରେ ନ କରି ମନ ଭିତରେ Shadow fighting କରି ଚାଲିଛେ । ମଣିଷ ମନ ଭିତରେ ପ୍ରତ୍ୟେକ ଯୁଦ୍ଧ ଜନ୍ମ ନିଏ । ଆମେ ପ୍ରଥମେ ଶତ୍ରୁଟିକୁ ତିଆରି କରୁ । ଶତ୍ରୁ ଏଭଳି କ୍ରୁର, କଦାକାର, କୁତ୍ସିତ, ହିଂସ୍ର ହୋଇଥିବ, ତାକୁ ଦେଖିଲା ମାତ୍ରେ ଅରଣା ଜନ୍ତୁକୁ ସଂହାରକଲାପରି ନିର୍ବିଚାର ମାରିବା ହିଁ ଏକମାତ୍ର କର୍ତ୍ତବ୍ୟ । ତା'ନକଲେ ନିଜେ ମରିବାକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଅଥଚ ଯାହା ବିଷୟରେ ଏତେ କଳ୍ପନା କରାଯାଇ ଥାଏ, ସେ ବିଚାରା ଏସବୁ କିଛି ନୁହେଁ । ସେ ଖୁବ୍ ସାଧାରଣ ଏବଂ ଦୟନୀୟ ମଣିଷଟିଏ ହୁଏତ ତାକୁ ମନ ଭିତରେ ଏମିତି ଖଞ୍ଜାଖଞ୍ଜି କରି ଶତ୍ରୁ ରୂପ ଦିଆଯାଏ । ତା'ପରେ ସେଇ ଧାରଣାକୁ ନେଇ ବିରୋଧ ଏବଂ ଯୁଦ୍ଧ ହୁଏ । ଆମ ଶତ୍ରୁ ଯେପରି, ବନ୍ଧୁ ମଧ୍ୟ ସେପରି । ସେ ପ୍ରକୃତରେ କ'ଣ ଆମେ ପ୍ରାୟ ଜାଣୁନା । ଆମ ମନରେ ସେ ଯାହା, ଆମେ ତାକୁ ତାହାବୋଲି ଭାବିନେଉ । ତାକୁ ଠିକ୍ ଜାଣିବା କ'ଣ ଅସମ୍ଭବ ? – ନା, ଅସମ୍ଭବ ନ ହୋଇପାରେ । କିନ୍ତୁ ଆଶାତୀତଭାବରେ ଦୁରୁହ । ଧରାଯାଉ ଗୋଟାଏ ଘଟଣା ରାତ୍ରିଭୋଜନ ପରେ ଗୋଟାଏ ପରିବାର ଶୋଇବାକୁ ଗଲେ, ମା'ଙ୍କୁ କିଛି ସମୟ ନିଦ ହେଲା ନାହିଁ । କିନ୍ତୁ ସେହି ଅବସ୍ଥାରେ ସେ ଝିଅ ଶୋଇଥିବା ପାଖ ବଖରାରୁ ଖୁବ୍ ଅସ୍ପଷ୍ଟ କଥାବାର୍ତ୍ତା ଶୁଣିଲେବୋଲି ଭାବିଲେ । ସେ ଉଠି କାନେଇଲେ ଏବଂ ଆପଣା କୌତୂହଳ ସମ୍ଭାଳି ନ ପାରି ଝିଅର ଶୋଇବା ବଖରା ଯାଏ ଆସି କାନ ପାତିଲେ । ତାଙ୍କର ଧାରଣା ହେଉଥିଲା ଯେ ଝିଅ ନିଶ୍ଚୟ କୌଣସି ତରୁଣ ସହିତ ଗୋପନ ମିଳାମିଶା କରୁଛି । ସେ ହଠାତ୍ କବାଟ ଖୋଲି ପଶିଯାଇ ଯାହା ଦେଖିଲେ ସେଥିରେ ତାଙ୍କର ବାକ୍‌ରୁଦ୍ଧ ହୋଇଗଲା । ଝିଅ ପ୍ରକୃତରେ ଶୋଇବା ପୂର୍ବରୁ ଗାଲିଚାରେ ନତଜାନୁ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲା । ଏଥିରୁ ଜଣାଯାଏ ଯେ ଆଉ କାହାକୁ ଜାଣିବା କଷ୍ଟକର । ଆମେ କେବଳ Time space ରେ ତା'ର କେତେ ଗୁଡ଼ିଏ ସ୍ଥିର ଚିତ୍ରକୁ ମିଶେଇ ତା'ବିଷୟରେ ଧାରଣା କରିନେଉଛୁ । ଯେମିତି ବ୍ୟକ୍ତି ସେମିତି ବସ୍ତୁ, ସେମିତି ଅନୁଷ୍ଠାନ । ଆମେ ସବୁବେଳେ ମନରେ ଧାରଣାକରି ସେଇ ଅନୁସାରେ ସ୍ଥୂଳଜଗତରେ ଅନ୍ୟମାନଙ୍କ ସହିତ ମିଶି କାର୍ଯ୍ୟକରିବା କଥା । ତାହା ହିଁ ହୁଏ ଏବଂ ଆମେ ସବୁବେଳେ ପ୍ରତୀତି ଭିତରେ ରହିଥାଉ । ଏଥିରୁ ମୁକ୍ତ ହେବାର ଅର୍ଥ, ନିଜର ମାନବିକ ସ୍ୱଭାବରୁ ମୁକ୍ତହେବା ।



ଜାଣିଶୁଣି ଆଶାବାଦୀ ହୁଅ । Be a voluntary optimist । ତା'ର କାରଣ ବୋଧହୁଏ ଜୀବନର ନୈରାଶ୍ୟବୋଧ ଆଡ଼କୁ ନଇଁ ନ ଯିବାର ଏକ ସହଜ ସମ୍ଭାବନା । ଦୁଃଖମ୍ ସତ୍ୟମ୍ ଏକ ସିଦ୍ଧବାଣୀ । ଜୀବନରେ ପରିବ୍ୟାପ୍ତ ଦୁଃଖର ନାଟକରେ ସୁଖ ଏକ ସାମୟିକ ବ୍ୟତିକ୍ରମ । ଏମିତି ଅନେକ କଥା କୁହାଯାଇଛି । ପ୍ରତି ମୁହୂର୍ତ୍ତରେ 'ଅପର' ସହିତ ସଂଘର୍ଷ କରୁଥିବା ମଣିଷଟି ନିଜର ପରାଜୟର ତାଲିକା କରି ଚାଲିଥାଏ । ଅନାଗତ ପରାଜୟ ଏବଂ ବିପର୍ଯ୍ୟୟ ପାଇଁ ଉଦ୍‌ବିଗ୍ନ ହେଉଥାଏ । ଏଣୁ ତାକୁ ବିଷାଦ ଘାରି ରଖିବା ସ୍ୱାଭାବିକ । ଅବଶ୍ୟ ସୁଖ ଦୁଃଖର ବିଚାର ସହିତ ଆଶା ବା ନୈରାଶ୍ୟର ସିଧାସଳଖ କୌଣସି ସଂପର୍କ ନାହିଁ । ଦୁଃଖରେ ନିରାଶ ହୋଇ ପଡ଼ିବା ସ୍ୱାଭାବିକ୍ ଜଣାପଡୁଥିଲେ ସୁଦ୍ଧା ସେତିକିବେଳେ ହିଁ ମଣିଷ ଆଶାବାଦୀ ହୋଇଥାଏ । ନିଜର ଅସହାୟତା, ଏକାକୀପଣ, ଈଶ୍ୱରଙ୍କ ପ୍ରତି ଯେତିକି ଅନୁଗତ କରାଇବା କଥା, ତାଙ୍କର ଅପ୍ରତ୍ୟକ୍ଷତାକୁ ସେହି ପରିମାଣରେ ହତାଶ କରିପକାଏ । ଏସବୁ ଜାଣିଶୁଣି ଆଶାବାଦୀ ହେବାକୁ କୁହାଯାଇଛି । ନିଜ ଚାରିଆଡ଼େ ସମଗ୍ର ସଂସାର, ସମସ୍ତ ମୂଲ୍ୟବୋଧ, ସବୁ ଆକାଶ, ପୃଥ୍ୱୀ ଭୁଷୁଡ଼ି ପଡ଼ିବାବେଳେ, ଆଶାବାଦୀ ହେବା ପ୍ରାୟ ଅସମ୍ଭବ ସାଧନା । ଆମେ ସାଧାରଣତଃ ନିଜ ସାମର୍ଥ୍ୟ ଉପରେ, ବନ୍ଧୁପରିଜନଙ୍କ ସହଯୋଗ ଉପରେ, ସମାଜ, ରାଷ୍ଟ୍ରର ବିପୁଳତା ଉପରେ ଆସ୍ଥା ସ୍ଥାପନ କରୁ ଏବଂ ତାହାରି ପାଇଁ ଆମର ଆଶା ବଞ୍ଚିରହେ । କିନ୍ତୁ ଯେତେବେଳେ ଏ ସମସ୍ତ ପାଖରେ ନିରାଶ ହୋଇ ଫେରିବାକୁ ପଡ଼େ, ଅର୍ଥାତ୍ ଯେତେବେଳେ ଏମାନେ ସମସ୍ତେ ଆମର ଆଶାନୁରୂପ ଆଚରଣ କରନ୍ତି ନାହିଁ, ସେତେବେଳେ କାହାକୁ ସମ୍ବଳ କରି ଆଶାବାଦୀ ହେବା ? କେଉଁଠି ଆଶାର ଆଙ୍କୁଡ଼ା ଲଗେଇ ପାରିବା ? ନୈରାଶ୍ୟ ସାଗରରେ ଦୁଃଖର ଝଂଜା ବହୁଥିବା ବେଳେ ଜାହାଜ ଏକମାତ୍ର ଭରସାର ନଙ୍ଗର ପକାଏ । ହୁଏତ ନଙ୍ଗର ଝୁଲିରହେ ଅତଳ ଜଳରାଶି ଭିତରେ । ହୁଏତ ଅତି ନରମ, ଦୁର୍ବଳ, ବାଲିମାଟି ଭିତରେ ଆଙ୍କୁଡ଼ା ଲାଗିପାରେ ନାହିଁ । ଜାହାଜ ଅସହାୟ ଭାସି ଚାଲିଥାଏ । କିନ୍ତୁ ନଙ୍ଗର ଟେକେ ନାହିଁ । ଓହଳିଥିବା ନଙ୍ଗର ସ୍ୱୟଂ ଏକ ଶକ୍ତିରୂପେ ଜାହାଜକୁ କିଛିମାତ୍ରାରେ ରକ୍ଷାକରେ । ତାପରେ କିନ୍ତୁ ସେଇ ଅନ୍ଧାର ଭିତରେ ନଙ୍ଗର ଲାଗିଯାଏ, ଅନନ୍ତ କାଳରୁ ଅପେକ୍ଷା କରି ରହିଥିବା ପାହାଡ଼ ଦେହରେ । ତେଣିକି ପାହାଡ଼ ନଙ୍ଗରକୁ ଧରିରଖେ, ଏବଂ ଜାହାଜର ସମଗ୍ର ଦାୟିତ୍ୱ ଗ୍ରହଣ କରେ। ଆଶାଟି ଦୀପଶିଖା ପରି । ତାକୁ ଜାଳି ରଖିବାକୁ ହୁଏ । ତା ବିରୁଦ୍ଧରେ ସର୍ବଦା ପବନ ବହୁଛି, ତାକୁ ଲିଭେଇ ଦେବା ପାଇଁ । ପବନକୁ ଅସ୍ୱୀକାର କରିବାକୁ କୁହାଯାଉ ନାହିଁ । ବରଂ ପବନକୁ ସ୍ୱୀକାର କରି, ତା ସତ୍ତ୍ୱେ ଦୀପଶିଖାକୁ ଜାଣିଶୁଣି ବଞ୍ଚେଇ ରଖିବାକୁ କୁହାଯାଉଛି । ନୈରାଶ୍ୟରେ ଭାସି ଯାଉଥିବା ଜାହାଜ ଉପରେ ବୋଝେଇ ହୋଇଥିବା ନଙ୍ଗର ପରି ତା'ର ବିପଦମାତ୍ରା ବଢ଼େଇ ଦିଏ, ସବୁ ସମ୍ଭାବନା ଲୋପ କରିଦିଏ, ଦୁଃଖକୁ ଦୃଢ଼ୀଭୂତ କରେ, କିନ୍ତୁ ଜାଣିଶୁଣି ଆଶାବାଦୀ ହେଲେ ମୃତ୍ୟୁକୁ ସୁଦ୍ଧା ଆଗରେଦେଖି ମୁହଁରେ ହସ ଆଣିବା ସମ୍ଭବ ହୁଏ । ଆଶାବାଦୀ ହିଁ ଯୋଦ୍ଧା ଯୁଯୁତ୍ସୁ ଏବଂ ପରିଶେଷରେ ବିଜୟୀ ବୀର ପୁରୁଷ, କିନ୍ତୁ ନିରାଶାବାଦୀ ଏକ ପରାଜୟ-ପରାୟଣ, ଆତ୍ମଘାତୀ, ନିଜକୁ ନିଜେ ବିଡ଼ମ୍ବିତ କରୁଥିବା ନିର୍ବୋଧ ବ୍ୟକ୍ତି । ଏଣୁ କୁହାଯାଉଛି ଯେ ଜୀବନରେ ଦୁଃଖ ଅଛି, ଯାତନା ଅଛି, ପରାଜୟ ଅଛି, ନୈରାଶ୍ୟର ଅଶେଷ ଅବକାଶ ଅଛି । ତତ୍ ସତ୍ତ୍ୱେ ଆଶାବାଦୀ ହୁଅ । ଆଶାବାଦୀ ହେବା କେବଳ ସାଧନା ନୁହେଁ, ତାହା ହୋଇ ପାରିଲେ ଏକମାତ୍ର ସିଦ୍ଧିପ୍ରାପ୍ତି ସହଜ ହୋଇଯାଏ ବୋଲି କୁହାଯାଇପାରେ ।

## ୧୧-୧୦-୮୪

ଚୋରି ଅପରାଧରେ ହାତକାଟି ଦିଆଯାଉଥିଲା । ଯୁକ୍ତିହେଲା ଯେ ଯେଉଁ ହାତ ଚୋରି କରିଛି, ସେହି ହାତକୁ ଦଣ୍ଡ ଦିଆଯାଉ । କିନ୍ତୁ ଅପରାଧୀ କ'ଣ ହାତ ? ନା ସେ ପର୍ଯ୍ୟନ୍ତ ଶରୀରକୁ ତଥା ହାତକୁ ନେଇ ପହଞ୍ଚେଇବା ଗୋଡ଼ ନା କାର୍ଯ୍ୟ ବିଷୟରେ ନିଷ୍ପତ୍ତି ନେଉଥିବା ମନ ? କିଏ ଚୋରିକରେ ? ଏବଂ ଦଣ୍ଡପାଏ କିଏ ? କେବଳ ହାତଟିକୁ କାଟିଦେବା ପରେ ଅଧଘଣ୍ଟାଏ ଭିତରେ ତାହା କେବଳ ଜଡ଼ ପିଣ୍ଡରେ ପରିଣତ ହୋଇଯାଏ - ସେ ଦଣ୍ଡିତ ହୋଇ ପାରିବ ନାହିଁ । ମନ ତ ଅତି ସୂକ୍ଷ୍ମ । କୋଉଠି ଅଛି କୋଉଠି ନାହିଁ କହିବା କଠିନ । ବାକି ରହିଲା ଚେତନା ବା ଆତ୍ମା । ତାକୁ ଭଲା କିଏ ପ୍ରତୀକ୍ଷା କରିଛି ? ସେ କ'ଣ କୌଣସି ବିଚାରକର ଏଜଲାସ୍‌ରେ ହାଜିର ହେବା ସମ୍ଭବ ? ସେତ 'ନୈବକୁର୍ବନ୍ନ କାରୟନ' । ସେ ଚୋରି କରେ ନାହିଁ କିମ୍ବା ଦଣ୍ଡ ମଧ୍ୟ ପାଏ ନାହିଁ । ତେବେ ଏ ପ୍ରହସନ ଏପର୍ଯ୍ୟନ୍ତ କେମିତି ଚାଲିଛି ? ଚାଲିଛି ଗୋଟିଏ ଆପାତ ବିଚାରରେ । ଆମକୁ ଯାହା ଦିଶିଲା, ତାକୁ ହିଁ ସତ୍ୟବୋଲି ଗ୍ରହଣ କରି ନିଜ ବିଚାରରେ ଯାହା ନ୍ୟାୟବୋଲି ସ୍ଥିର କରୁ ତାହା ପ୍ରୟୋଗ କରିଚାଲିଛୁ । ଫିଟେଇ ଦେଖିଲେ କୌଣସି ବ୍ୟକ୍ତି, ବସ୍ତୁ ଅଥବା ଘଟଣାର ଆଦି ଅନ୍ତ ନାହିଁ । ଅତଏବ ଅପରାଧ ପରି ଦିଶୁଥିବା କର୍ମପାଇଁ ଅପରାଧୀ ପରି ଦିଶୁଥିବା ବ୍ୟକ୍ତିକୁ ଦଣ୍ଡପରି ଦିଶୁଥିବା ବିଧାନ କରାଯାଏ । ଏଣୁବୋଧହୁଏ କୁହାଯାଇଛି ଧ୍ୟାୟତୀବ ଲୀଳାୟତୀବ - ଧ୍ୟାନ କଲାପରି, ଲୀଳା କଲାପରି ।



## ୧୫-୧୦-୮୪

ଆଧ୍ୟାତ୍ମିକ ମାର୍ଗର ସାଧକ ଉପରେ ପ୍ରାୟତଃ ସାଂସାରିକ ବିପତ୍ତିମାନ ପଡ଼ିଥାଏ। ନିଷ୍ପାପର ସାଧକ ଉପରେ ସବୁଠାରୁ ଅଧିକ ବିପତ୍ତି । ଅନ୍ୟପକ୍ଷେ ଯଦି ନିଷ୍ଠା ଏବଂ ଆନ୍ତରିକାତ ପରିପକ୍ୱ ନୁହେଁ, ତା'ପାଇଁ ଧନମାନ ଯଶ ଆଦି ଅଯାଚିତ ଭାବରେ ଅଜାଡ଼ି ହୁଏ । ତାହାକୁ ଦିବ୍ୟ କୃପାବୋଲି ଭାବି ତାର ବିଶ୍ୱାସ ଦୃଢ଼ୀଭୂତ ହୁଏ, କିନ୍ତୁ ପରିଶେଷରେ ସେ ଅନୁଭବ କରେ ଯେ ସେ ଠକିଯାଇଛି । ଅତଏବ ଆଧ୍ୟାତ୍ମିକ ସାଧକ ଉପରେ ଅଚାନକ ବିପତ୍ତି ପଡ଼ିବା ଏକ ଶୁଭ ଲକ୍ଷଣ, କାରଣ ଏହା ତା'ର ଅଗ୍ରଗତିର ପରିଣାମ ଓ ପରିଚାୟକ । ଏ ସଂକ୍ରାନ୍ତରେ ଶ୍ରୀକୃଷ୍ଣଙ୍କୁ ଉଦ୍ଧବ ପ୍ରଶ୍ନ କରିଥିଲେ, ଆପଣଙ୍କ ମାୟା ଯେପରି ଅନିର୍ବଚନୀୟ, କୃପା ମଧ୍ୟ ସେପରି ଏକ ଦୁର୍ବିଜ୍ଞେୟ ତତ୍ତ୍ୱ । କାହାକୁ କେତେବେଳେ ଏବଂ କାହିଁକି ଆପଣ କୃପା କରନ୍ତି, ସେ କଥା ଆପଣଙ୍କୁ ହିଁ ଜଣା । କିନ୍ତୁ ଦୟାକରି କହିବେ କି ଆପଣଙ୍କ କୃପାଲାଭ କରିଥିବା ବ୍ୟକ୍ତିକୁ କିପରି ଏ ସଂସାରରେ ଚିହ୍ନି ହୋଇ ପାରିବ ? ତାର ଲକ୍ଷଣ କ'ଣ ? ଏ ପ୍ରଶ୍ନର ଉତ୍ତରରେ ଶ୍ରୀକୃଷ୍ଣ କହୁଛନ୍ତି - "କୃପାଯୋଗ୍ୟ ହେବାପାଇଁ ମୁଁ ତାକୁ ପ୍ରଥମେ ଦରିଦ୍ର ଏବଂ ଅକିଞ୍ଚନ କରିଦିଏ" । ବାଃ ଚମତ୍କାର ବିଚାର ! ଏମିତି ଯଦି ମୂଳରୁ ହିଁ କୋରଡ଼ାମାଡ଼ ପଡ଼େ, ଅଧିକାଂଶ ସାଧକ କୃପା ବିମୁଖ ହୋଇଯିବେ । ଏ ବିଷମ

ପରୀକ୍ଷା ଦେବା କିଛି ସହଜ ବ୍ୟାପାର ନୁହେଁ ।

ତେବେ କାହିଁକି ଏପରି ହୁଏ ? ଦୋଷୀକୁ ସିନା ଦଣ୍ଡବିଧାନ ହୁଏ । ସଂସାରରେ ଶରୀର ଧାରଣ କରି ଅନ୍ନ, ବସ୍ତ୍ର କଷ୍ଟ ସହିବା, ଦାରିଦ୍ର୍ୟର କଷାଘାତ ସହିବା ଘୋର ଯାତନା । କ'ଣ ଦୋଷ କରେ ବୋଲି ସେ ଏପ୍ରକାର ଦଣ୍ଡ ଭୋଗ କରେ ? ଏହା କଦାପି ଦଣ୍ଡ ବିଧାନ ହୋଇ ନ ପାରେ । ଦୁଇ ପ୍ରକାର ଏହାର ଅର୍ଥ କରାଯାଇ ପାରେ । ସଯତ୍ନ ଆମ୍ରଗଛରେ ଯଦି ଉଇ ଲାଗିଯାଇଛନ୍ତି, ସେମାନେ ଗଛର ଅଜ୍ଞାତସାରରେ ତାର ସର୍ବନାଶ କରିବା ପୂର୍ବରୁ ଗଛକୁ କଷ୍ଟ ହେଲେ ସୁଦ୍ଧା ନିର୍ମମ ପ୍ରହାରକରି ଉଇ ଝାଡ଼ିବାକୁ ପଡ଼େ, କିମ୍ବା ଭୂଇଁର ଯେତେ ନିକଟବର୍ତ୍ତୀ ହେବ, ଏ ମାଟି ଉପରେ ଘୁସୁରିବା ସେତିକି ସହଜ ହେବ । ସାପ ସକାଶେ ମାଧ୍ୟାକର୍ଷଣର ବିରୋଧ ନାହିଁ । ତା'ର ସେ ଅନୁଭବ ନାହିଁ । କିନ୍ତୁ ଯେ ଧରାପୃଷ୍ଠକୁ ଛାଡ଼ି ସାମାନ୍ୟ ଉଠିବାକୁ ଚେଷ୍ଟାକଲା, ସେଇ ଚେଷ୍ଟାର ପରିଣାମ ଏବଂ ପ୍ରତିକ୍ରିୟା ସ୍ୱରୂପ ମାଟି ତାକୁ ଟାଣି ନେବ । ସେ ଯେତେ ଉଚ୍ଚକୁ ଯିବ, ତା'ପାଇଁ ଏ ନିମ୍ନଶକ୍ତି ସେତିକି ପ୍ରବଳ । ସେଥିପାଇଁ ହୁଏତ ଯେତେ ବିପତ୍ତି ପଡ଼ିବ ତାହା ଆଧ୍ୟାତ୍ମିକ ପ୍ରଗତିର ସମାନୁପାତିକ ଲକ୍ଷଣ ଓ ପ୍ରମାଣ ।



## ୨୭-୧୦-୮୪

"ବୋଇଲା ଏଥେ ବିଜେ କର, ମୁଁ ଯେବେ ତୋର ପରିବାର" । ବଳରାମ ଦାସ ସମୁଦ୍ର ବାଲିରେ ତିନିଥର ଗାର କାଟି, ଏପରି ବାକ୍ୟ ଉଚ୍ଚାରଣ କରିଥିଲେ । ଏଥିରେ ଗୋଟାଏ ଯୁକ୍ତି ଅଛି । ଯୁକ୍ତି ଛଳରେ ଆଦେଶ ଅଛି । ଯଦି ତୁ ସ୍ୱୀକାର କରୁ ଯେ ମୁଁ ତୋର ପରିଚାରକ, ଅର୍ଥାତ୍ ଯଦି ତୋର ଏବଂ ମୋର ସଂପର୍କ ସ୍ଥିର ହୋଇଯାଏ, ତୋର ପ୍ରଭୁପଣ ଏବଂ ମୋର ସେବକପଣ ସ୍ଥିର ହୋଇଯାଏ, ତେଣିକି ମୋର କିଛି ଅଧିକାର ମାନିବାକୁ ତୁ ବାଧ୍ୟ । ଅଧିକାର ଭିତରେମାତ୍ର ଏତିକି ଯେ, ମୁଁ ମୋର ସାଧ୍ୟମତେ ତୋ ସକାଶେ ତୋର ଉପଯୁକ୍ତ ରଥ ପ୍ରସ୍ତୁତ କରିଛି । ତୁ ସେଇଠି ଆସି ବିଜେ ହୋଇଗଲେ ମୋର ଅଭିଳାଷ ମେଣ୍ଟିଯିବ । ଅନନ୍ତକୋଟି ବ୍ରହ୍ମାଣ୍ଡର ଅଧୀଶ୍ୱରକୁ ବାଲିରେ ଗାର କାଟିଥିବା ରଥଚିତ୍ରରେ ବିଜେ ହେବାକୁ କହିବା ଅଳିକ ଧୃଷ୍ଟତା ନୁହେଁ କି ? ନୀଳାଦ୍ରିନାଥଙ୍କୁ ରତ୍ନ ସିଂହାସନ ଛାଡ଼ି, ନନ୍ଦିଘୋଷକୁ ଅବଜ୍ଞା କରି ଏଇ ରେଖା ସୀମା ଭିତରେ ପ୍ରବେଶ କରିବାକୁ କହିବା ବାଚାଳତା ନୁହେଁ କି ? ତୋତେ ସେ ପରିଚାରକର ଅଧିକାର ଦେଲେ ବୋଲି ତାକୁ ଯେଉଁଠି ମନ ସେଇଠି ଆଣି ଠିଆ କରେଇ ଅପମାନ ଦେଇ ପାରିବୁ ? ଏସବୁ ଅତି ସାଧାରଣ ସଂସାରୀ ଚେତନାର ପ୍ରଶ୍ନ । ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଧିଶ୍ୱର ବୋଲି ତ ବାଲିରଥରେ ମଧ୍ୟ ପ୍ରକଟ ହେବେ । ବାଲି ରଥଟି ତ ବ୍ରହ୍ମାଣ୍ଡ ବାହାରେ ନୁହେଁ । ନୀଳାଦ୍ରିନାଥ ଯେଉଁଠି ବିଜେ ହେବେ ସେ ହୋଇଯିବ ରତ୍ନ ସିଂହାସନ । ମହତ ଜନମାନେ ଅଳ୍ପ କଥାକୁ ତାଙ୍କ ସଂପର୍କଦ୍ୱାରା ମହାନ୍ କରିଦିଅନ୍ତି । ବାଲିରଥରେ ବିଜେହେଲେ ଠାକୁରଙ୍କ ମହତ୍ ଊଣାହେବା ପ୍ରଶ୍ନ ଉଠୁନାହିଁ । ବରଂ ବାଲିରଥଟି ନନ୍ଦିଘୋଷ ପରି ଝଟକିବ । ପରିଚାରକ କେବଳ ଚାହେଁ ଯେ ପ୍ରଭୁ ତାକୁ ସର୍ବ ସମକ୍ଷରେ ଥରେ ସ୍ୱୀକାରି ନିଅନ୍ତୁ । ତାର ସେଥିରେ ଅତି

ସ୍ୱାଭାବିକ ଇଚ୍ଛାଟିଏ କାର୍ଯ୍ୟ କରୁଥାଏ । ସେ କହିବାକୁ ଚାହେଁ ଦେଖ, ଏତେ ବଡ଼ ପ୍ରଭୁ ମୋର ମାଲିକ, ସେ ତାଙ୍କ ଉଦାରପଣରେ ମୋ ବାଲିରଥକୁ ମଣ୍ଡନ କରିଛନ୍ତି । ମୁଁ ଜାଣେ ଯେ ମୋ ପାଖରେ ଗଜପତି ସାମର୍ଥ୍ୟ ନାହିଁ । ମୁଁ ସାତସହ ବିନ୍ଧାଣୀ ଲଗେଇ ନନ୍ଦିଘୋଷ, ତାଳଧ୍ୱଜ ଗଢ଼େଇ ପାରିବି ନାହିଁ । କିନ୍ତୁ ରଥଗଢ଼ିବା ପଶ୍ଚାତ୍‌ରେ ଯେଉଁ ଭାବଟି ଅଛି, ଯେଉଁ ବିଶ୍ୱାସ ଏବଂ ଶ୍ରଦ୍ଧା ଅଛି, ସେଥିରେ ଅଭାବ ନାହିଁ । ମୁଁ ଠାକୁରଙ୍କୁ ଆଜିପରା ପୁଣ୍ୟତିଥିରେ ରଥାରୂଢ଼ ଦେଖିବାକୁ ଚାହେଁ । ମୋର ଭାଗ୍ୟ ବିପର୍ଯ୍ୟୟରୁ ସେମାନେ ମୋତେ ବଡ଼ଦାଣ୍ଡରୁ ବହିଷ୍କାର କରିଦେଲେ । ମୁଁ ଏଇଠି ମୋ ଠାକୁରଙ୍କୁ ଧ୍ୟାୟୀ ବସିଛି । ସେ ଅବଶ୍ୟ ମୋ ଅର୍ଜି ଶୁଣିବେ । ମୁଁ କଟାଳ କରୁନାହିଁ । ମାତ୍ର ମୋ ଠାକୁର ମୋତେ ପରିହାର କରିବେ ନାହିଁ । ମୋ ସେବକପଣକୁ ଅସ୍ୱୀକାର କରିବ ନାହିଁ । ଏଥିରେ ମୋର ସନ୍ଦେହ ନାହିଁ ।



## ୨୮-୧୦-୮୪

ମୁଁ କରୁଛି ନା ସେ କରୁଛି ? ମଣିଷ ମନରେ ଏ ଅନନ୍ତକାଳର ଦ୍ୱନ୍ଦ୍ୱ ଏବେ ମଧ୍ୟ ଅସମାହିତ ରହିଛି । ବେଳେ ବେଳେ ମନେ ହେଉଛି ଯେ ବସ୍ତୁତଃ ମୁହିଁ ଦେଖୁଛି, ବିଚାର କରୁଛି, ଭାଙ୍ଗୁଛି, ଗଢୁଛି । ଯାହା କରୁଛି ତା'ର ସମସ୍ତ ବିକଳ୍ପ କାର୍ଯ୍ୟମଧ୍ୟ ମୁଁ କରିପାରିଥାନ୍ତି । କଞ୍ଚାମାଟି ପିଣ୍ଡପରି ଗୋଟିଏ ମାଧ୍ୟମ ନେଇ ମୁଁ ମୋର ରୁଚି ଅନୁସାରେ ମୋ ନିଜର ଖୁସିପାଇଁ, ଯେମିତି ଇଚ୍ଛା ସେମିତି ରୂପ ଦେଇପାରେ, ତାକୁ ରଖିପାରେ କିମ୍ବା ତା'ର ମୌଳିକ ଉପାଦାନର ଅବସ୍ଥାକୁ ଫେରାଇ ନେଇପାରେ । ଏଠି ଆଉ ଜଣେ କେହି ମୋତେ ଏବଂ ମୋର ପ୍ରାଣକୁନେଇ ସେଇ କଞ୍ଚାମାଟିପିଣ୍ଡ ପରି ଖେଳୁଛି ବୋଲି ଆଦୌ ବିଶ୍ୱାସ ହୁଏ ନାହିଁ । ନ ହେଲେ ବା' କ୍ଷତି କ'ଣ ? ନିଜ ସାମର୍ଥ୍ୟ ଅନୁସାରେ, ଅବୟବମାନଙ୍କ ସହଯୋଗରେ ଯାହା ସମ୍ଭବ ସେତିକି ଜଣେ କରି ସାରିଲା ପରେ ବା ନ କରି ହାରି ସାରିଲାପରେ, ସେ ବିଷୟରେ ଚିନ୍ତା ନ କରିବା ହିଁ ଭଲ । ଯାହା ହେଲା ହେଲା, ଯାହା ନାହିଁ ନାହିଁ । ଏମିତି ଏମିତି ହୋଇ କିଛିକାଳ ଏଇଠି ବିତିଯିବା ପରେସେ ଦିନେ ମରିଯିବ ଏବଂ ସେଇଠି କଥା ସରିଯିବ । ଏହା ହିଁ ଘଟିଛି, ଘଟିଚାଲିଛି ଏବଂ ଭବିଷ୍ୟତରେ ଏହା ହିଁ ଘଟୁଥିବ ।

ଆଉ ବେଳେ ବେଳେ କିନ୍ତୁ ମନେହୁଏ ଯେ ମଣିଷ ଗୋଟିଏ ରୂପ, ଛାଞ୍ଚ, ସାଧାରଣ ଆକୃତିଟିଏ । ସେ ଅନୁଭବ କରେ ଯେ ସେ ଯାହା ଚାହୁଁଛି ତା'କରିପାରୁ ନାହିଁ । ଏପରି କଞ୍ଚାମାଟି ପିଣ୍ଡଟି ସୁଦ୍ଧା ତା ଆୟତରେ ରୂପ ନେଉନାହିଁ । ସେ ଦେଖିପାରେ ଯେ ତା'ର ସାମର୍ଥ୍ୟ ସୀମିତ, ମାଟିପିଣ୍ଡର ସମ୍ଭାବନା ମଧ୍ୟ ସୀମିତ । ଖୁବ୍ ନିସ୍ତବ୍ଧ ବେଳାରେ ସେ ଏକୁଟିଆ ନିଜକୁ ନିଜେ ବୁଝିବାକୁ ଚେଷ୍ଟାକରେ । ଅବୟବମାନଙ୍କୁ, ଇନ୍ଦ୍ରିୟମାନଙ୍କୁ ସେ ତଟସ୍ଥରେ ଅନାଏ । ତା'ପରେ ହଠାତ୍ ଗୋଟାଏ ମୁହୂର୍ତ୍ତରେ ତା'ର ମନେହୁଏ ଯେ ଏ ସମଗ୍ର ଶରୀରଟି ଏକ ମାଟିପିଣ୍ଡ, କେବଳ ବସ୍ତୁସଂଘଟିଏ । ତାକୁ ଆରୁଢ଼ ହୋଇ ଆଉକେହି ହୁଏତ ଚଳାଉଛି । ଏହା କେବଳ ଗୋଟିଏ ବିକଳ୍ପ ଚିନ୍ତା, ଏକ ପ୍ରକାର ଆଶଙ୍କା । କିଛି କିଛି ଘଟଣା ଘଟି ତାକୁ ବିସ୍ମିତ କରାଏ ଏବଂସେ ଗୋଟାଏ ଅନୁଭବୀ ସତ୍ତା ବିଷୟରେ କ୍ରମଶଃ ଅବହିତ ହୁଏ । ତା'ପରେ ଦିନେ ହୁଏତ ସେ ଘୋଷଣାକରେ

ଯେ "ଏକୋ ଦେବୋ ସର୍ବଭୂତେଷୁ ଗୂଢ଼ଃ । ସେ ହିଁ କେବଳ ସର୍ବତ୍ର ସର୍ବଦା ବିରାଜିତ । ଯାହା ଦିଶୁଛି କେବଳ ସମୁଦ୍ରର ତରଙ୍ଗ । ସମୁଦ୍ରଟି ଏକମାତ୍ର ସତ୍ୟ ଏବଂ ଏକମାତ୍ର ସତ୍ତା । ସେ ସ୍ୱୟଂକ୍ରିୟ ହୁଏ, ଲୀଳାୟିତ ହୁଏ, ଏଣୁ "ଅବିଭକ୍ତଂ ଚ ଭୂତେଷୁ ବିଭକ୍ତଂ ଇବ ଚ ସ୍ଥିତମ୍" । ଏ ଦୁଇଟି ଅବସ୍ଥା, ଦୃଷ୍ଟିଭଙ୍ଗୀ ଏବଂ ଅବବୋଧ ସନ୍ତୁଳିତ ହୋଇ ରହିଥାଚି, ସମାହିତ ହୁଅନ୍ତି ନାହିଁ । ସେଥିପାଇଁ ମଣିଷର ଦୁଃଖ, ତା'ର ଜୀବନର ବିଡ଼ମ୍ବନା ଏବଂ ମହତ୍ତ୍ୱ ।



## ୭-୧୧-୮୪

ଯେତେ ଡାକିଲେ ସୁଦ୍ଧା ଈଶ୍ୱର ଶୁଣନ୍ତି ନାହିଁ ବୋଲି ସାଧାରଣତଃ ଅଭିଯୋଗ ହୁଏ । ଅନ୍ୟପକ୍ଷେ କେହି କେବେ ଦୃଢ଼ତାର ସହିତ କହିପାରେ ନାହିଁ ଯେ ସେ ଡାକିଲା ଏବଂ ଈଶ୍ୱର ଶୁଣିଲେ । ଏଣୁ ଏଭଳି କାର୍ଯ୍ୟ ଉପରେ କେତେଗୁଡ଼ିଏ ପ୍ରଶ୍ନ ମନ ଭିତରେ ଆନ୍ଦୋଳିତ ହୁଏ । ଯାହାକୁ ଆମେ ଏତେ ଡାକୁଛୁ, ସେ ଅଛନ୍ତି ତ ? ସେ ଅଛନ୍ତି ବୋଲି ପ୍ରମାଣ କ'ଣ ? ଯଦି କେଉଁଠି ସେ ଥାଆନ୍ତି, ତାଙ୍କ ପାଖରେଆମ ଆର୍ତ୍ତ ପ୍ରାର୍ଥନା ପହଞ୍ଚି ପାରୁଛି ତ ? ସେ କ'ଣ ଆମ ଦୁଃଖ ବୁଝନ୍ତି ? କୋଟି କୋଟି ଜୀବଙ୍କ ଭିତରେ ଆମେ ମାତ୍ର ଜଣେ । ସେ କ'ଣ ଏଇ ଜଣଙ୍କର ସମସ୍ୟା ସଂକଟ, ଦୁଃଖ ଯାତନାକୁ ଗୁରୁତ୍ୱ ଦିଅନ୍ତି ? ପ୍ରତି ମୁହୂର୍ତ୍ତରେ ଏପରି ହାହାକାର କରି ଜୀବମାନେ ମରୁଥିଲେ ସୁଦ୍ଧା, ସୃଷ୍ଟିର ବ୍ୟାପ୍ତି ଏବଂ ମୌଳିକ ଛନ୍ଦରେ କିଛିହେଲେ ପ୍ରଭାବ ପଡୁନଥିବାରୁ, ହୁଏତ ସେ ଆମକୁ ଖାତିର କରନ୍ତି ନାହିଁ । କଲେ ମଧ୍ୟ କେତେ କରିବେ ? ମଣିଷ ମାତ୍ରେ, କିଛିକ୍ଷଣ, କିଛି ନା କିଛି ଦୁଃଖରେ ପଡ଼ି ଡାକୁଥାଏ । ଯାହାକୁ ସେ ଈଶ୍ୱରବୋଲି ବିକଳରେ ଡାକପକାଏ, ତାକୁ ଚୋର ଡାକେ, ସାଧୁ ବି ଡାକେ । ହତ୍ୟାକାରୀ ବନ୍ଧୁକ ଧରି ଲୁଚିଥାଏ ପ୍ରାର୍ଥନା କରୁଥାଏ, ହତ୍ୟାକାଣ୍ଡ ପୂର୍ବରୁ ତାକୁ ଯେପରି କେହି ସନ୍ଦେହ ନ କରନ୍ତି । ଏହିପରି ଲଟେରୀ ଟଙ୍କାପାଇଁ, ତୋଷରପାତ ଟଙ୍କାପାଇଁ ପରସ୍ତ୍ରୀ ବଶୀଭୂତ ହେବାପାଇଁ, ପଡ଼ୋଶୀର ସର୍ବନାଶ ପାଇଁ, ଟ୍ରେନରେ ସିଟ୍ ପାଇଁ, ପରୀକ୍ଷାରେ କପି ଧରା ନ ପଡ଼ିବା ପାଇଁ... ଇତ୍ୟାଦି ଇତ୍ୟାଦି ବିଷୟରେ ପ୍ରାର୍ଥନାମାନ ଚାଲିଥାଏ ଏବଂ ଏସବୁ ଈଶ୍ୱର ଶୁଣିଲେ ନାହିଁବୋଲି ଅଭିଯୋଗ ହେଉଥାଏ ସେ ଶୁଣନ୍ତି ନାହିଁ ବୋଲି ତାଙ୍କ ଉପରେ ବିଶ୍ୱାସ ମଧ୍ୟ ତୁଟି ଚାଲିଥାଏ । ହାୟରେମଣିଷ ! କେତେ ଛୋଟ ତୋର ମନ, କେତେ ଦୁର୍ବଳ ତୋର ଆସ୍ଥା ! – ତୁ କ'ଣ ଏ ସମସ୍ତଠାର ସାମାନ୍ୟ ମୁକ୍ତହୋଇ କେବଳ ତାକୁ ଥରେ ଭାବି ପାରିବୁ ? କୌଣସି ଉଦ୍ଦେଶ୍ୟ ନାହିଁ, ଅଭିଳାଷ, କାମନା ନାହିଁ କେବଳ ଶୁଦ୍ଧ ନିର୍ମଳ ଭାବରେ ତାକୁ ସ୍ମରଣ କରି କହିବୁ – ପ୍ରଭୁ, ତୁମରି ଇଚ୍ଛା ପୂର୍ଣ୍ଣ ହେଉ । ଏତିକି କରି ପାରିଲେ ମଙ୍ଗଳମୟ ତୋର ଏ ତାପିତ ଜୀବନକୁ ଶାନ୍ତ, ସନ୍ତୁଷ୍ଟ ଏବଂ ପୁଷ୍ପିତ କରିଦେବେ । ତାହା ବଳେ ହୋଇଯିବ । ସେଇ ଆଶାରେ, ସେଇ ଅଭିସନ୍ଧିରେ ତାକୁ ଭାବିଲେ ସେ ପୁଣି ଶୁଣିବେ ନାହିଁ । ଏ ସାମାନ୍ୟ ସାଂସାରିକ ସ୍ଥୂଳ ବସ୍ତୁ ବାହାରେ କେବଳ ତାକୁ ଥରେ ଭାବିବା କଥା । ମୁଁ ଏସବୁ ହୁଏତ ଚାହେଁ – କିନ୍ତୁ ଏକଥା ଥାଉ । ପ୍ରଭୁ ମୁଁ ତୁମକୁ ଚାହେଁ । ତୁମେ ହିଁ ତ ସର୍ବମୟ । ଏଭଳି ଆନ୍ତରିକ ପ୍ରାର୍ଥନା ସେ ଶୁଣି ଆସିଛନ୍ତି ଏବଂ ଅବଶ୍ୟ ଶୁଣିବେ ଏଥିରେ ସନ୍ଦେହ ନାହିଁ ।



## ୮-୧୧-୮୪

ମୃତ୍ୟୁର ନିଶ୍ଚିତ ସୂଚନା ପାଇଲେ ମଣିଷର ମୌଳିକ ଆଚରଣ ଦେଖାଦେଇଥାଏ । ପରିସ୍ଥିତି ସବୁପ୍ରକାର ଲୋକଙ୍କ ପାଇଁ ଜରୁରୀ, କିନ୍ତୁ ତା'ର ପ୍ରଭାବ ଭିନ୍ନ ଭିନ୍ନ । ଅଧିକାଂଶଙ୍କ ପାଇଁ ତାହା ଭୟପ୍ରଦ, ସେମାନେ କାତର ହୋଇ ପଡ଼ନ୍ତି । ଭୟରେ ଦେବ ଦେବୀ ମନ୍ତ୍ର ଉପାସନାର ଆଶ୍ରୟ ନେଇଥାନ୍ତି । ଆଶା ତାଦ୍ୱାରା ସେ ମୃତ୍ୟୁକୁ ଆଉ କିଛି କାଳ ଟାଳିଦେଇ ପାରିବେ । ଆତ୍ମୀୟ ପରିଜନଙ୍କୁ ଡାକି ସାଂସାରିକ ଯୋଜନା କରିପକାନ୍ତି, ବିଫଳତା ହିଁ ତାକୁ ସେତେବେଳେ ନୈରାଶ୍ୟ ଏବଂ ଉତ୍କଟ ମନସ୍ତାପରେ ଘାଣ୍ଟି ପକାଏ । ଏହି ସନ୍ତାପର ପରିଣାମ ସେମାନଙ୍କର ମୋହ ଏବଂ ଅଜ୍ଞାନ ଉପରେ ନିର୍ଭର କରେ । ଅନ୍ଧାର ମାଡ଼ି ଆସେ ଚାରିଆଡ଼ୁ । ସେମାନେ ଅଣ୍ଡାଳି ହୁଅନ୍ତି ଏବଂ ଅର୍ଥହୀନ ପ୍ରଳାପ କରୁଥିବା ଅବସ୍ଥାରେ ସେମାନଙ୍କର ଦେହାବସାନ ହୁଏ । ଅନ୍ୟପକ୍ଷେ ସମର୍ପିତ ସାଧକ ପାଇଁ ତାହା ଚୂଡ଼ାନ୍ତ ପ୍ରସ୍ତୁତିର ଆହ୍ୱାନ । ସେ ସବୁ ଦିଗରୁ ମନକୁ ଓହରାଇ ଆଣି ଦୃଢ଼ ବିଶ୍ୱାସରେ ବିଭୁ ଚିନ୍ତନ କରେ । ତା'ପାଇଁ ଇହ-ପର ପାର୍ଥକ୍ୟ ନାହିଁ । ସେ ସ୍ୱୟଂ ଅଦେହୀ ବିଶ୍ୱାତ୍ମା । ଦେହ ଗୋଟାଏ ଛାଇ-ଗୋଟାଏ ସାମୟିକ ଆବରଣ । ସେ ସ୍ଥିର ଏବଂ ଏକାଗ୍ର ହୋଇଯାଏ । ମୃତ୍ୟୁ ପାଇଁ ତା'ର କୌଣସି ଭୟ ନଥାଏ । କାରଣ ତା ସହିତ ସେ ଆଜୀବନ ପରିଚିତ । ମୃତ୍ୟୁ ପ୍ରତ୍ୟେକ ଶ୍ୱାସପତନରେ ଲୁଚି ରହିଥାଏ । ଶରୀର ଯାତ୍ରାର ବିଭିନ୍ନ ମୋଡ଼ରେ ତାକୁ ସେ ଦେଖି ଚିହ୍ନି ରଖିଥାଏ । ଏଣୁ ସେଥିରେ ସେ ଚକିତ କିମ୍ବା ଭୟଭୀତ ହୁଏନାହିଁ । ସଂସାର ମୋହକୁ ଯଥାସାଧ୍ୟ ନିଜଠାରୁ ପୃଥକ୍ ରଖିବାର ଜୀବନବ୍ୟାପୀ ସାଧନାର ଫଳ ସେ ଏହି ଶେଷ ଅବସ୍ଥାରେ ପ୍ରାପ୍ତ ହୁଏ । ତା'ର ଆଉ କୌଣସି ବିକ୍ଷୋଭ ହୁଏନାହିଁ । କୂଳରୁ ହଂସ ପାଣିକୁ ଅନାୟାସରେ ଓହ୍ଲେଇଗଲା ପରି ସେ ଶରୀରରୁ ନିର୍ଗତ ହୋଇଯାଏ । ସଂସାରର ମେଘ ଜାଲ ଭେଦକରି ଯେ କେବଳ ମୁହୂର୍ତ୍ତକ ପାଇଁ ଝଲସି ଉଠୁଥିଲେ, ସେ ଆସି ପ୍ରାଞ୍ଜଳ ସ୍ପଷ୍ଟ ଜାଜ୍ୱଲ୍ୟମାନ ପ୍ରକଟିତ ହୁଅନ୍ତି । ହିରଣ୍ମୟ ପାତ୍ର ଅପସରି ଯାଏ ଏବଂ ଚୂଡ଼ାନ୍ତ ମୁହୂର୍ତ୍ତରେ ସାଧକ ସେଇ କଲ୍ୟାଣତମ ରୂପକୁ ଦର୍ଶନ କରେ । ମୃତ୍ୟୁ ଏକ କଷଟି, ମୃତ୍ୟୁ ଏକ ସୁଯୋଗ, ଭାରି ନିର୍ମମ, କଠିନ ପରୀକ୍ଷା । ସେଇଠି ଯୋଗ୍ୟତା ଲାଭ କରିବା ସକାଶେ ଆଜୀବନ ସାଧନା କରାଯାଏ । ମୃତ୍ୟୁ ହେଉଛି ଅମୃତର ଦ୍ୱାର, ଏବଂ ସେଇ ରୂପରେ ଜଗତ୍‌କର୍ତ୍ତା ସ୍ୱୟଂ ଦେହାନ୍ତର କରନ୍ତି ବା କରାନ୍ତି । ମୃତ୍ୟୁ ସର୍ବ ହରଶ୍ଚାହଂ । ତେବେ ଭୟ କ'ଣ ? କାହିଁକି ? କାହାକୁ ?



## ୯-୧୧-୮୪

ସତ୍ୟକାମ ଜାବାଳଙ୍କ ଉପାଖ୍ୟାନ ଚେତନାର ବିସ୍ତାରଦୃଷ୍ଟିରୁ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ, ଏଣୁ ବିଚାରଣୀୟ । ସତ୍ୟକାମଙ୍କର ମୌଳିକ ବୈଶିଷ୍ଟ୍ୟ ହେଲା ଯେ ସେ ସରଳ, ନିର୍ଭୀକ ଏବଂ ସ୍ପଷ୍ଟ । ଗୁରୁ ଗୌତମ ତାହା ଲକ୍ଷ୍ୟକରି ତାକୁ ଶିଷ୍ୟରୂପେ ଗ୍ରହଣ କଲେ । ତାପରେ ତାକୁ ଚାରିଶହ ଶୀର୍ଣ୍ଣ ଗୋରୁ ଅର୍ପଣ କରି ଦାୟିତ୍ୱ

ଦେଲେ ଯେ ନିଜ ପ୍ରୟାସରେ ତାଙ୍କୁ ରକ୍ଷା କରିବେ ଏବଂ ଏକ ସହସ୍ର ନ ହେବାଯାଏଁ ଫେରିବେ ନାହିଁ । ସତ୍ୟକାମ ନିଷ୍ଠାର ସହିତ ଗୋ ରକ୍ଷା କଲେ । ଗୋ ଗୋଷ୍ଠ ଅନେକଗୁଣ ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ସତ୍ୟକାମଙ୍କ ଶାରୀରିକ ଏବଂ ମାନସିକ ସାମର୍ଥ୍ୟ ମଧ୍ୟ ଅନେକଗୁଣ ବୃଦ୍ଧି ପାଇଲା । ସେ ତେଣିକି ଜ୍ଞାନ-ସମର୍ଥ ହେଲେ । ଏଭଳି ଅଭିବୃଦ୍ଧିରେ ଯେଉଁ ଶକ୍ତି କାର୍ଯ୍ୟକରିଥିଲା, ତାର ପ୍ରତୀକସ୍ୱରୂପ ବୃଷଭ ତାଙ୍କୁ ପ୍ରଥମେ ଜ୍ଞାନ ଦେବାପାଇଁ ଆଗ୍ରହ ପ୍ରକାଶ କଲା । ସତ୍ୟକାମ ସମ୍ମତ ହେବାରୁ ସେ କହିଲା – "ବ୍ରହ୍ମର ଏଇ ଗୋଟିଏ ପାଦକୁ ଅବଲୋକନ କର । ଏହା ଚତୁଷ୍କଳ ଏବଂ ପ୍ରକାଶବାନ୍ । ଏହାର ଚାରୋଟି କଳା ହେଲା, ପୂର୍ବଦିକ୍ କଳା, ପଶ୍ଚିମଦିକ୍ କଳା, ଉତ୍ତର ଏବଂ ଦକ୍ଷିଣ ଦିକ୍ କଳା । ଯା ପରେ ତୁମକୁ ଅଗ୍ନି ଉପଦେଶ ଦେବେ । ଏଇ ପ୍ରଥମ ପାଦଟି ହେଉଛି ଭୂମି ବିସ୍ତାର ବିଷୟରେ ସଚେତନତା । ସତ୍ୟକାମ ଗୋ ଅଗୋଷ୍ଠକୁ ଅରଣ୍ୟରୁ ଅରଣ୍ୟକୁ ନେଉଥିବା ବେଳେ ଅନେକ ଅଂଚଳ ଭ୍ରମିଥିବେ । ହଠାତ୍ ଦିନେ କୌଣସି ଗୋଟିଏ ଦିଗକୁ ଚାହିଁ ସେ ସ୍ୱତିଚାରଣ କରିଥିବେ । ଦିଗବଳୟକୁ ଅତିକ୍ରମ କରି ଆଉ ଏକ ବିସ୍ତାର ତାଙ୍କୁ, ଦିଶିଥିବ । ସେ ଆଶ୍ଚର୍ଯ୍ୟହୋଇ ଅନ୍ୟ ଦିଗମାନଙ୍କୁ ସେଭଳି ଚାହିଁଥିବେ । ପୃଥିବୀ ପୃଷ୍ଠରେ ଭୂମି ବିସ୍ତୃତ ହୋଇ ଯାଇଥିବ । ତାଙ୍କ ଚେତନାରେ ଦେଶାନ୍ତର ଏବଂ କାଳାନ୍ତରରେ ସେ ପ୍ରବେଶ କରିଥିବେ । ଏହା ହିଁ ତାଙ୍କ ପାଇଁ ବ୍ରହ୍ମର ପ୍ରଥମ ପାଦ, ଜ୍ଞାନର ପ୍ରଥମ ପାଦ । ସେ ଯେତେବେଳେ ସଚେତନ ହୋଇ ତାତ୍କାଳିକତାକୁ ଫେରିଥିବେ, ଅର୍ଥାତ୍ Here and now କୁ ଫେରିଥିବେ, ତାଙ୍କ ଆଗରେ ହୁଏତ ସେଇ ବୃଷଭ ଠିଆ ହୋଇଥିବେ ଯେ ତାଙ୍କ ଗୋଷ୍ଠ ବୃଦ୍ଧି କରିବାରେ ସାହାଯ୍ୟ କରିଛି । ସେ ଜ୍ଞାନ ତା'ହେଲେ ବୃଷଭ ପ୍ରଦାନ କଲାକି ? ତାକୁ ଲାଗିଥିବ, ବୃଷଭ କହୁଛି – 'ସତ୍ୟକାମ', ସେ ସଂଭ୍ରମରେ ଉତ୍ତର ଦେଇଥିବେ – "ଭଗବାନ୍" । ସତ୍ୟକାମଙ୍କର ଚେତନାର ଏହା ହିଁ Horizontal ବିସ୍ତାର ।

ତା'ପରଦିନ, ରାତ୍ରିର ପ୍ରଥମପାଦରେ ସେ ଅଗ୍ନିଜାଳି ପୂର୍ବଦିଗକୁ ମୁହଁକରି ବସିଥିବେ । ପ୍ରଜ୍ୱଳିତ ଅଗ୍ନି ତାଙ୍କୁ ସେହିପରି କହିବାର ସେ ଅନୁଭବ କରିଥିବେ – "ବ୍ରହ୍ମର ଦ୍ୱିତୀୟ ପାଦକୁ ଅବଲୋକନ କର । ତାହା ଚତୁଷ୍କଳ । ତାହା ଅନନ୍ତବାନ୍" ତାର ଚାରୋଟି କଳା ହେଲା – ପୃଥିବୀ, ସମୁଦ୍ର, ଦ୍ୟାବା ଏବଂ ଅନ୍ତରୀକ୍ଷ । ପୃଥିବୀର Horizontal ବ୍ୟାପ୍ତି ଯଥେଷ୍ଟ ନୁହେଁ, ସେଥିରେ ମିଶୁଛି ମହା ସମୁଦ୍ରର ବ୍ୟାପ୍ତି । ତାପରେ ସେହି ବ୍ୟାପ୍ତିର ଉତ୍‌ଥାନ ଘଟୁଛି । ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଦ୍ୟାବା ଏବଂ ଅନ୍ତରୀକ୍ଷ । କାହିଁ କେଉଁଆଡ଼େ ଯାଇ ଲୀନ ହେଉଛି, ଜଣା ପଡୁନାହିଁ । ତା'ର ଅନ୍ତ ନାହିଁ । ଏଣୁ ଏହି ପାଦ ହେଉଛି ଅନନ୍ତବାନ୍ । Infinity ବିଷୟରେ ସଚେତନ ହୋଇଛନ୍ତି ସତ୍ୟକାମ । Time space ଅର୍ଗଳିକୁ ସେ ଅତିକ୍ରମ କରିଛନ୍ତି । ତାଙ୍କ ଚେତନାର ସୁବିପୁଳ ବ୍ୟାପ୍ତି ଘଟିଛି ।

ବ୍ରହ୍ମର ତୃତୀୟ ପାଦ ବିଷୟରେ କହୁଛନ୍ତି ହଂସ – "ଏହା ତୃତୀୟ ପାଦ । ଏହା ଜ୍ୟୋତିଷ୍ମାନ" । ଏହାର ଚାରି କଳା ହେଲା, ସୂର୍ଯ୍ୟ, ଚନ୍ଦ୍ରମା, ଅଗ୍ନି ଏବଂ ବିଦ୍ୟୁତ୍ । ଆଗରୁ ଯେଉଁ ବିପୁଳ ବିସ୍ତାର ବିଷୟରେ ସତ୍ୟକାମ ସଚେତନ ହୋଇଛନ୍ତି ତାହା ଜଡ଼ବିସ୍ତାର ମାତ୍ର । ସେଥିରେ ଆଲୋକ ଏବଂ ଉତ୍ତାପ ନ ଆସିଲେ ପ୍ରାଣସଂଚାର ହୋଇପାରିବ ନାହିଁ । ଜ୍ୟୋତିଷ୍ମାନ ପାଦର ଯେଉଁ ଚାରୋଟି କଳା ବିଷୟରେ ହଂସ ଉପଦେଶ ଦେଉଛି, ତାହା ଚିରକାଳ ଆଲୋକର ଉତ୍ସ । ହୁଏତ ତାହା ସୂର୍ଯ୍ୟ, ସ୍ୱୟଂ ଇନ୍ଧନ ରୂପେ ପ୍ରଜ୍ୱଳିତ ହେଉଥିବା ଉତ୍ତପ୍ତ ପିଣ୍ଡ । କିମ୍ବା ତାହା ଏକ ପ୍ରତିଫଳନ, ଚନ୍ଦ୍ର ପରି କିମ୍ବା ଅଗ୍ନି ପରି କିମ୍ବା ବିଦ୍ୟୁତ ପରି । ଏବେ ମଧ୍ୟ

ଏହି ଚାରୋଟି ଆଲୋକ ଉସକୁ ଆମେ ଅତିକ୍ରମ କରିନାହୁଁ, ଯଦି କରିଥାଉ ତେବେ ତାହା ଏଇ ମୌଳିକ ଉସର ସାମାନ୍ୟ ରୂପାନ୍ତର ହୋଇଥିବ । ସର୍ବପ୍ରଥମେ ଅନ୍ଧାର ଥିଲା, ତା'ପରେ ଆସିଲା କାଳ ସମୁଦ୍ର ଏବଂ ସେହି ଲହରିରୁ ସୃଷ୍ଟି ହେଲା ସମ୍ବତ୍ସର ଏବଂ ଅହୋରାତ୍ର । ତା' ଉତ୍ତାରୁ ହିଁ, ସୂର୍ଯ୍ୟଚନ୍ଦ୍ରାଦି ପୂର୍ବନିର୍ଦ୍ଧାରିତ ଅନୁସାରେ ସୃଷ୍ଟି ହେଲେ, ଆଲୋକହୀନ ବିଶ୍ୱ ଏବଂ ଅନ୍ଧ ବିଶ୍ୱ । ଜ୍ୟୋତି ବିଷୟକ ସଚେତନତା ଅନନ୍ତବ୍ୟାପ୍ତିକୁ ତାତ୍ପର୍ଯ୍ୟପୂର୍ଣ୍ଣ କରିଦେଲା ।

ଚତୁର୍ଥ ପାଦ, ଗୋଟିଏ ଜଳଚର ପକ୍ଷୀ ଉପଦେଶ ଦେଲା, "ସତ୍ୟକାମ, ଏଇ ଚତୁର୍ଥ ପାଦକୁ ଦେଖ, ଏଥିରେ ଚାରୋଟି କଳା ଏବଂ ଏହା ଆୟତନବାନ୍ । ଏହାର କଳା ହେଲା; ପ୍ରାଣ, ଚକ୍ଷୁ, କର୍ମ ଏବଂ ମନ ।" ପରିବ୍ୟାପ୍ତ ବିଶ୍ୱକୁ ଦୃଶ୍ୟଭାଗରେ ରଖି ସେ ଦ୍ରଷ୍ଟାଭାଗକୁ ଆସିଲେ । ଏ ସମସ୍ତ ଜ୍ଞାନର ଜ୍ଞାତା ପୁଣି କିଏ ? ଏଣୁ ଏଇ ଶେଷପାଦ ଆୟତନ ନିର୍ଦ୍ଦେଶ କରୁଛି । ସେ ପ୍ରଥମେ ପ୍ରାଣୀ ହୋଇଥିବେ, ଜଡ଼ ନୁହେଁ, ତା'ର ଚକ୍ଷୁକର୍ଣ୍ଣ ସକ୍ରିୟ ରହିଥିବେ ଏବଂ ତାକୁ ବିନିଯୋଗ କରିବାକୁ ସମୃଦ୍ଧ ଏବଂ ସମର୍ଥ ମନଟି ଥିବ । ଏହା ନ ହେଲେ ଅନନ୍ତର ଅନୁଭବ, ବ୍ୟାପ୍ତିର ଅନୁଭବ କିଏ ଗ୍ରହଣ କରିବ । ଏ ଚାରିପାଦକୁ ଏକାଠି କରି ପାରିଲେ ଯେଉଁ ସମାହାରହେବ ତାହା ଦୃଶ୍ୟ କି ଦ୍ରଷ୍ଟା ନୁହେଁ । ତାହା କିମ୍ଭୂତ ତାହା ହିଁ ବ୍ରହ୍ମ ।



## ୧୮-୧୨-୮୪

ସାହିତ୍ୟ ସାଧନା ଆଧ୍ୟାତ୍ମିକ ସାଧନାରେ ସହାୟକ ନା ବାଧକ ? ଯେ କୌଣସି ନିଷ୍ଠାପର ସାଧନା ଯେଉଁଥିରେ ସଂକୀର୍ଣ୍ଣ ସ୍ୱାର୍ଥ ବା ଅମଙ୍ଗଳର ଯୋଜନା ନାହିଁ, ତାହା ଆଧ୍ୟାତ୍ମିକତାର ସହାୟକ । ସେଥିରେ ଯେଉଁ ଶୃଙ୍ଖଳା, ଏକାଗ୍ରତା ଏବଂ ଅଧ୍ୟବସାୟ ଅର୍ଜନ କରାଯାଏ, ତା'ର ଆଧ୍ୟାତ୍ମିକ ମୂଲ୍ୟ ଖୁବ୍ ବେଶୀ । ତେବେ ସାହିତ୍ୟ ସାଧନାରେ ସାମାନ୍ୟ ବିପଦ ନିଶ୍ଚୟ ଅଛି । ଧରାଯାଉ ଜଣେ ଗଳ୍ପ ଲେଖନ୍ତି । ସେ କିଛି କିଛି ଘଟିଥିବା ଘଟଣାକୁ ଆଣି ଘଟି ନଥିବା କିନ୍ତୁ ଘଟିବାର ସମ୍ଭାବନାଥିବା ଘଟଣା ସହିତ ଯୋଡ଼ି ଗଳ୍ପ ସୃଷ୍ଟି କରନ୍ତି । ଏଣୁ କୁହାଯାଏ ଯେ ସେ ସତ ମିଛ ମିଶାଇ କଥା କହନ୍ତି । କଳ୍ପନାରେ ସତ କ'ଣ, ମିଛ ପୁଣି କ'ଣ ? ସାହିତ୍ୟରେ ସବୁ ମିଛ, କିନ୍ତୁ ଅନ୍ୟ ପ୍ରକାରେ ସବୁ ପୁଣି ସତ । ସାହିତ୍ୟ ମାଧ୍ୟମରେ ଅନେକ ଦାର୍ଶନିକ ସତ୍ୟ ଉଦ୍‌ଘାଟିତ ହୁଏ । ଅନେକ ଗଭୀର ଦୃଷ୍ଟି ମିଳେ ଜଗତ୍‌କୁ ଜୀବନକୁ ଦେଖିବା ପାଇଁ । ପ୍ରାର୍ଥନା ମନ୍ତ୍ରାଦି ସାହିତ୍ୟର ପରିପ୍ରକାଶ । ତେବେ ତ' ସାହିତ୍ୟ ସଂପୂର୍ଣ୍ଣ ଆଧ୍ୟାତ୍ମିକ ବ୍ୟାପାର । ତା'ହୁଏତ ଠିକ୍, କିନ୍ତୁ ଗୋଟିଏ ସୀମା ପର୍ଯ୍ୟନ୍ତ । ସାହିତ୍ୟ ଏକ ସୃଷ୍ଟି । ସୃଷ୍ଟି ମାତ୍ରେ ସମ୍ଭୋଗ - ଗୋଟିଏ ସମ୍ଭୋଗୀ ମନ ମାଧ୍ୟମରେ ନାୟକନାୟିକାକୁ କେନ୍ଦ୍ର କରି ଯେଉଁ ପ୍ରାଣ ଭୂମିରେ ବିଳାସ କରାଯାଏ, ଯେଉଁ ବିକ୍ଷୋଭ, ବିରହ, ମିଳନ ବିଚ୍ଛେଦାଦି କଳ୍ପନା କରାଯାଏ, ତାହା ସ୍ରଷ୍ଟା ସ୍ୱୟଂ ଭୋଗକରେ । ଅନେକ ସମୟରେ ମାନସିକ ସମ୍ଭୋଗ ତୀବ୍ର ହେଲେ, ତାର ଶାରୀରିକ ବିକାର ମଧ୍ୟ ପ୍ରକାଶିତ ହୁଏ । ଶୃଙ୍ଗାରଧର୍ମୀ ସାହିତ୍ୟର ଦୃଷ୍ଟାନ୍ତ ଏ କ୍ଷେତ୍ରରେ ବିଶେଷ ଅର୍ଥପୂର୍ଣ୍ଣ । ସାହିତ୍ୟ ସାଧନା ଏବଂ ସୃଷ୍ଟି ଏହି କାରଣରୁ ମୋହାବିଷ୍ଟ କରିପାରେ । ସାଧାରଣ

ଶାରୀରିକ ଜୀବନରେ ସମ୍ଭୋଗ କ୍ରମଶଃ ଅପସାରିତ ହୋଇଗଲା ପରି ମାନସ ଜଗତରୁ ମଧ୍ୟ ତାହା ଦୂର ହୋଇଯାଏ । ଏଣୁ ସାହିତ୍ୟ ସାଧନାର ବାବଦୂକତା, କଳ୍ପନା ବିଳାସ, ମାନସ ସମ୍ଭୋଗାଦି କ୍ରମଶଃ ଶାନ୍ତ ନୀରବ ହୋଇଯିବା କଥା । ଯେ ସ୍ୱତଃ ନୀରବ ହୋଇ ପାରିନାହିଁ ସେ ପ୍ରକୃତରେ ସେପରି ଉଲ୍ଲେଖନୀୟ କଥା ବି କହିନାହିଁ ବୋଲି ଭାବିବାକୁ ହେବ । ସାହିତ୍ୟରୁ ଅପସରିଯିବା, କୌଣସି ବିମୁଖତା, ବ୍ୟର୍ଥତା କିମ୍ବା ଅପାରଗତା ନୁହେଁ । ସେଇଟା ଗୋଟାଏ ପ୍ରକାର ତୃପ୍ତି, ବିରତି, ଉପରତି । ସାର୍ଥକ ଶୃଙ୍ଗାରର ସନ୍ତୁଷ୍ଟି, ନିଃଶେଷତା, କ୍ଳାନ୍ତିପରି ସାହିତ୍ୟରେ ନୀରବତା ଆସେ ଏକ ସ୍ୱାଭାବିକ କ୍ରମ ପରିଣାମର ଅନିବାର୍ଯ୍ୟତା ନେଇ । ସାହିତ୍ୟ ସୃଷ୍ଟିର ମୋହ, ସମ୍ଭୋଗ ଯଶଲିପ୍‌ସା, ତୀବ୍ର ଉତପ୍ତ ଅଭିଳାଷରୁ ମୁକ୍ତ ହୋଇ ନ ପାରିଲେ ଆଧ୍ୟାତ୍ମିକ ସାଧନା ନିଶ୍ଚୟ ବ୍ୟାହତ ହେବ । ଏପରିକି ଶୁଦ୍ଧ ପ୍ରାର୍ଥନା ମନ୍ତ୍ରାଦି ସାହିତ୍ୟର ପ୍ରାୟ ଆଧ୍ୟାତ୍ମିକ ଶୁଦ୍ଧରୂପ ହୋଇଥିଲେ ସୁଦ୍ଧା, ତାହା ମଧ୍ୟ, ପରିହାର କରିବାକୁହେବ, ଅତିକ୍ରମ କରିଯିବାକୁ ହେବ । ମନେରଖିବାକୁ ହେବ ଯେ, ସତ୍ୟ କଦାପି ବାଙ୍ମୟ ହୋଇପାରେ ନାହିଁ । ବାକ୍‌ବିଳାସ ଯାହାହେଲେ ମଧ୍ୟ ଶୁଦ୍ଧାନୁଭବର ଏକ ବିକୃତ ରୂପ । ବାକ୍ ଦ୍ୱୈତ ସଂପର୍କରେ ପ୍ରୟୋଜନ, ଶ୍ରୋତାବକ୍ତାର ସଂପର୍କ ଉପରେ ନିର୍ଭରଶୀଳ । ଗଭୀର ଆଧ୍ୟାତ୍ମିକ ଜ୍ଞାନ, ଆଧ୍ୟାତ୍ମିକ ଅନୁଭୂତି, ବାକ୍‌ରେ ପ୍ରକାଶିତ ହୋଇ ପାରିବ ନାହିଁ । ସେଥିପାଇଁ ମୌନ ହିଁ ଏକମାତ୍ର ଲକ୍ଷଣ, ନୀରବତା ଏକମାତ୍ର ସାଧନା । ସାହିତ୍ୟ ଗୋଟାଏ ପର୍ଯ୍ୟାୟରେ ଆଧ୍ୟାତ୍ମିକ ସାଧକ ପାଇଁ ନୀରବ ହୋଇଯିବାକୁ ବାଧ୍ୟ । କାରଣ ତେଣିକି ତାହା ଆଗକୁ ଯାଇ ପାରିବ ନାହିଁ । ସେ ପରାସ୍ତ ହୋଇଯାଏ । ଶବ୍ଦତରଙ୍ଗ, ପୃଥିବୀର ବାତାବରଣ ଭେଦି, ମହାଶୂନ୍ୟକୁ ଯାଇ ନ ପାରିଲା ପରି ସେ ତା'ର ସୀମା ପାଖରେ ସ୍ତବ୍ଧ ହୋଇଯାଏ । ଗୋଟାଏ ଦୃଷ୍ଟିରୁ କିଛିବାଟ ପର୍ଯ୍ୟନ୍ତ ସାହିତ୍ୟ ସହାୟକ । ତା'ପରେ କିନ୍ତୁ ନିଷ୍ପ୍ରୟୋଜନ, ଅପର୍ଯ୍ୟାପ୍ତ ଅସମର୍ଥ ।



**୧୪-୧-୮୫**

'ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା' - ପ୍ରାପତ ହୁଏ କି ? ପ୍ରାୟ ହୁଏନାହିଁ । ତା'ର କାରଣ ହେଲା, ସାଧାରଣ ମନଟିର ବାଳୁତ ସ୍ୱଭାବ ହେତୁ ସେ ନ ବୁଝି ନ ଶୁଝି ଆକାଶର ଚାନ୍ଦକୁ ହାତ ବଢ଼ାଉଥାଏ । ତାହା କଦାପି ମିଳେ ନାହିଁ । ନ ମିଳିଲେ ବି ତା'ପଛରେ ଚିରକାଳ ଗୋଡ଼େଇବାକୁ ସେ ପ୍ରସ୍ତୁତ । ବେଳେ ବେଳେ ମନଟି ବିଚାରଶୀଳ ଏବଂ ପ୍ରୌଢ଼ । ଅତଏବ ଭାବିଲାବେଳେ, ସେ ଆଉ ସେମିତି ଲଗାମ ଛାଡ଼ିଦିଏ ନାହିଁ । ଯାହା ଭାବେ ତାହା ମିଳିବାର ସମ୍ଭାବନା ଭିତରେ ଥାଏ । ତଥାପି ତାକୁ ତାହା ଷୋଳଅଣା ମିଳେନାହିଁ, ଅଂଶେକ ମିଳେ ଆଉ ଅଂଶେ ମିଳେ ନାହିଁ । ଗୋଟାଏ ଅଭାବବୋଧ ରହିଯାଏ । ମନର ଏ ଖାଲି ସ୍ଥାନଟି ହେଉଛି - କାମନାକେନ୍ଦ୍ର, ସେଇଠି ଗୋଟାଏ ପ୍ରକାର ନିଆଁ ଜଳୁଥାଏ । ତା'ର ଜ୍ୱାଳା ଏକ ଆବାହନ, ଏକ ଶକ୍ତି । ସେଇଠି ଯେଉଁ ସମିଧମାନେ ନିକ୍ଷିପ୍ତ ହୁଅନ୍ତି ସେମାନେ ସବୁ ପାଇଥିବା ବସ୍ତୁ । ସେରେ ପାଇଲେ ଯଦି ଘଟ ପୁରି ସେ ପୁରିଯାଆନ୍ତା, ତେବେ ଅସୁବିଧା ନଥିଲା କିନ୍ତୁ ତା' ନହୋଇ

ଅନ୍ୟପ୍ରକାରରେ ହୁଏ । ମିଳିବା ବସ୍ତୁଟି ସେ କେନ୍ଦ୍ରର ନିଆଁକୁ ଆହୁରି ପ୍ରଜ୍ଜ୍ୱଳିତ କରିଦିଏ ଏବଂ ତାକୁ ତୃପ୍ତ କରିବାକୁ ମଣିଷ ଅହରହ ଚେଷ୍ଟା କରୁଥାଏ । ସେ ଅଗ୍ନି ହିଁ ତାକୁ ପ୍ରେରିତ କରେ, ପ୍ରଯୋଜିତ କରେ, ଶକ୍ତି ଯୋଗାଇଦିଏ ।



## ୧୫-୩-୮୫

ଶେଷ ସମୟ ଆସିଗଲାବୋଲି ଜାଣି ପାରିଲେ କ'ଣ କରାଯାଇ ପାରେ ? ସେତେବେଳେ ଜୀବନରେ ସ୍ମୃତିଭାର ମନ୍ଥେଇ ହୋଇଥାଏ । କେତେ ସଂପର୍କ, କେତେ ଅପୂର୍ଣ୍ଣ ଇଚ୍ଛା, କେତେ ଅବଶୋଷ ରହିଥାଏ । ସେମାନେ ଆଚ୍ଛନ୍ନକରି ରଖିଥାନ୍ତି ମନ ଏବଂ ଚେତନାକୁ । ଛଟପଟ ହେବା ସ୍ୱାଭାବିକ । ଅସ୍ଥିରତା ଆସିବା ସ୍ୱାଭାବିକ । ଯୋଗୀଜନ ନ ହେଲେ ଶେଷ ସମୟରେ ସ୍ଥିର ରହିବା ସହଜ ନୁହେଁ । ତେବେ ପ୍ରଥମେ ସ୍ଥିର ରହିବାକୁ ଚେଷ୍ଟା କରାଯାଇ ପାରେ । ମନକୁ ବୁଝାଇବାର ଯୁକ୍ତିହେଲା – ଯେ ଅନନ୍ତକୋଟି ଜୀବଜଗତ, ଯେ ଆସିଛନ୍ତି, ଆସୁଛନ୍ତି ଏବଂ ଆସିବେ ସମସ୍ତେ ମରିଛନ୍ତି, ମରୁଛନ୍ତି ବା ମରିବେ । ଏହା ଅନିବାର୍ଯ୍ୟ-"ତସ୍ମାତ୍ ଅପରିହାର୍ଯ୍ୟାର୍ଥେ ନୈବ ଶୋଚି ତୁମର୍ହସି" । ଦ୍ୱିତୀୟ କଥାହେଲା ଯେ ମରିବା ପାଇଁ କୌଣସି ସୁବିଧାଜନକ ସମୟ ନାହିଁ । ଯେତେବେଳେ ହେଲେ ବି ଅପୂର୍ଣ୍ଣବାସନା କିଛି ନା କିଛି ରହିବ । ଅଧୁରାକାମ କିଛି ରହିଯିବ, ଏଥିରେ ସନ୍ଦେହ ନାହିଁ । ଏଇଠି ମନେରଖିବାକୁ ହେବ ଯେ କେହିହେଲେ ଏ ଜଗତ୍ ପାଇଁ ଅପରିହାର୍ଯ୍ୟ ନୁହେଁ । ଜଣେ ମରିଗଲେ ଯେ ସୃଷ୍ଟି ଗୋଡ଼ିମାଟି ହୋଇଯିବ – ଏହା କଦାପି ନୁହେଁ । ଶୀର୍ଷସ୍ଥାନୀୟ ପୁରୁଷମାନେ ଚାଲିଗଲାବେଳେ, କେତେ କୋଟି ମଣିଷ ମାନଙ୍କର ଭାଗ୍ୟ ଅନିଶ୍ଚିତ ହୋଇ ଝୁଲି ରହିଲାପରି ଲାଗେ । କିନ୍ତୁ କ'ଣ ହୁଏ ? ଜୀବନର ମହାପ୍ରବାହ ଗଡ଼ିଚାଲେ, କାହାକୁ ଖାତିର୍ କରେ ନାହିଁ । ଅତଏବ ସାଧାରଣ ମଣିଷଟିଏ, ତା'ର ସାଧାରଣ ସମସ୍ୟା, ହୁଏତ ପାରିବାରିକ । ତାକୁ ସମାଧାନ କରିବାକୁ କ'ଣ ମରଣ ଅପେକ୍ଷା କରିବ ? ସେ ଆସିବ ତାର ଉଦ୍ଧତ ସାମୁଦ୍ରିକ ଭଙ୍ଗୀରେ ଏବଂ ମାଡ଼ିଯିବ । ଯେଉଁମାନେ ରହିଯିବେ, ତାଙ୍କ ପାଇଁ ଅନ୍ୟସୂତ୍ରରେ ଜୀବନ ଗଡ଼ିଚାଲିବ, ସେମାନେ ନିଜ ନିଜ ଢ଼ଙ୍ଗରେ ସୁଖଦୁଃଖ ଭୋଗକରିବେ । ଏଣୁ ଯାହାହେଲା, ସେତିକି ହିଁ ହେବାର ଥିଲା । ଅପୂର୍ଣ୍ଣ ହୋଇଥିଲେ ସୁଦ୍ଧା, ତାହା ହିଁ ପୂର୍ଣ୍ଣ ଜୀବନ । ମାଣକ ସେଇଠି ପୁରିଲାବୋଲି ଭାବିଲେ ମନଟା କିଛି ମାତ୍ରାରେ ସ୍ଥିର ହୋଇଯାଇପାରେ ।

ସ୍ଥିର ମନରେ ଇଷ୍ଟ ମନ୍ତ୍ର ଜପକରି ପାରିଲେ ଶେଷ ମୁହୂର୍ତ୍ତ କଷ୍ଟଦାୟକ ହେବନାହିଁ । ସବୁ ତନ୍ତୁ ସଂକଳିତ, କାମନା ସଂଯତ, ମନ ଆୟତ୍ତରେ ରହିଲେ, ମୃତ୍ୟୁର ସଂକୀର୍ଣ୍ଣ ପଥ ଭିତରେ ଆପେକ୍ଷିକ ସହଜଭାବରେ ପାରି ହୋଇଯାଇ ହେବ । ସେତେବେଳେ ଯେ ତା'ର ଚେତନାରେ ଯେତେ ପରିମାଣରେ ଅସ୍ଥିର ଏବଂ ଶାଖାୟିତ, ଯେତେ ପରିମାଣରେ ଜଡ଼ିତ ଏବଂ ମୋହଗ୍ରସ୍ତ, ତା'ର ମରଣକାଳ ସେତେ ପରିମାଣରେ ସନ୍ତାପିତ । ଇଷ୍ଟ ମନ୍ତ୍ରଜପ ବେଳେ ଇଷ୍ଟଦେବ ଅଥବା ଗୁରୁସ୍ମରଣ ଅନେକ ସାହାଯ୍ୟ କରେ । ଅଥବା କହିବାର ତାତ୍ପର୍ଯ୍ୟ ହେଲା ଯେ ହୁଏତ ଦ୍ୱିଧା ଥାଇପାରେ ଯେ କାହାକୁ ସ୍ମରଣ କରିବ, ଉପାସ୍ୟ ଦେବତାଙ୍କୁ ନା ଗୁରୁଙ୍କୁ ? – ଗୁରୁ ତ ମାନବଦେହୀ, ସେ ଅଛନ୍ତି ବା ନାହାନ୍ତି, ସେ ମଧ୍ୟ ମୃତ୍ୟୁକୁ ଅତିକ୍ରମ କରିନାହାନ୍ତି ।

ସେ କ'ଣ କରି ପାରିବେ ? ଆଉ ଦେବତା – ସେତ ଜୀବନରେ ଥରେ ହେଲେ ଆବିର୍ଭୂତ ହୋଇନାହାନ୍ତି । ସେ ଅଛନ୍ତି ନା ନାହାନ୍ତି ? ସେ କଣ ଏବେ କରି ପାରିବେ ? – ମହାକାଳର ପ୍ରବାହରେ ଅନନ୍ତ ବ୍ରହ୍ମାଣ୍ଡ ପ୍ରଭାବିତ ହେଉଛି । ଗୋଟିଏ ନିୟମ, ଗୋଟିଏ ପ୍ରଶାସନ । 'ଜାତସ୍ୟ ହିଁ ଧ୍ରୁବୋ ମୃତ୍ୟୁଃ... ଯେ ଉଦୟ ହେଲା ସେ ଅବଶ୍ୟ ଅସ୍ତଯିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏଣୁ ସ୍ଥିର ଭାବରେ ଦୃଢ଼ଭାବରେ ଏକାଗ୍ର ହୋଇ ଏ ମୁହୂର୍ତ୍ତକୁ ପାରିହେବାକୁ ହେବ । ତା'ପରେ ଆଉ କ'ଣ ଅଛି ବା ନାହିଁ ସେଥିରେ ମଧ୍ୟ ଚିନ୍ତିତ ହେବାର କିଛି ନାହିଁ । ଧରିନେବାକୁ ହେବ କିଛି ନାହିଁ । ଯେଉଁ ପଞ୍ଚମହାଭୂତରେ ଗଠିତ ହୋଇଥିଲା ଶରୀର, ସେ ସେଇ ପଞ୍ଚମହାଭୂତକୁ ଫେରିଗଲା । ଯେଉଁ ଚେତନାର ସ୍ଫୁଲିଙ୍ଗ ଏ ଦେହ ପଞ୍ଜୁରୀରେ ଆବଦ୍ଧ ଥିଲା, ସେ ଚେତନାର ମହାହୁତାଶନରେ ଲୀନ ହେଲା । ତେଣିକି ସ୍ୱତନ୍ତ୍ର ବ୍ୟକ୍ତିଟିଏ ହୋଇ ରହିବା, ନ ରହିବା ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏ ପ୍ରକାଣ୍ଡ ବିଶ୍ୱର ମୁଁ ଅଂଶ ବିଶେଷ ଥିଲି, ମୃତ୍ୟୁପରେ ମଧ୍ୟ ରହିବି । ମୋର ଶରୀରର ଗୋଟିଏ ହେଲେ ଅଣୁ ମଧ୍ୟ ଏ ବ୍ରହ୍ମାଣ୍ଡରୁ ବହିର୍ଭୂତ ହୋଇଯିବ ନାହିଁ । ନଦୀର ତରଙ୍ଗ ଉଠିଥିଲା । ନଇଁଗଲା ସେଇ ସ୍ରୋତକୁ ଯେଉଁଠୁ ସେ ଉଠିଥିଲା, ତା'ର ପ୍ରତ୍ୟେକ ଜଳବିନ୍ଦୁ ସେହି ପ୍ରବାହରେ ହିଁ ରହିଗଲା ।

ବାକି ଚେତନାର ଏଇ ସ୍ତରରେ ଯେଉଁ ଜଗତକୁ ଏବଂ ତା'ଭିତରେ ଆଉ କେତେକ ବ୍ୟକ୍ତିଙ୍କୁ ମୁଁ ପାଇଥିଲି, ସେମାନଙ୍କ କଥା । ତାଙ୍କୁ ସେତେବେଳେ କହିବାକୁ ହେବ – "ଦେଖ ପିଲାଏ – ମୋ ଇଚ୍ଛାରେ ମୁଁ ଯାଉନାହିଁ । ତୁମପାଇଁ ଯାହା ସାମାଜିକ ଦାୟିତ୍ୱ ତୁଲାଇବା କଥା, ତାହା ତୁଲାଇ ନ ପାରି ଯାଉଛି, ନ ଯାଇ ଉପାୟ ନାହିଁ । କୌଣସି ଚିନ୍ତା କରିବ ନାହିଁ । ଯେଉଁ ମହା ନିୟମରେ ଆମେ ଏକାଠି ହୋଇଥିଲେ, ସେଇ ନିୟମରେ ତୁମେ ମୋଠୁଁ ବିଚ୍ଛିନ୍ନ ହେଉଛ । ଏଣିକି ଅନ୍ୟ ସହିତ ସଂପୃକ୍ତ ହେବ । ତୁମ ଜୀବନର ଧାରା ଅନ୍ୟ ପ୍ରକାରରେ ନିୟନ୍ତ୍ରିତ ହେବ, ଦୁଃଖହେବ ନିଶ୍ଚୟ । ମମତାର ଡୋର ଛିଣ୍ଡିଲେ ରକ୍ତସ୍ରାବ ହୁଏ, ଲୋତକ ସ୍ରାବହୁଏ ତାକୁ ଜୀବନରେ ଅଂଗବୋଲି ଧରିନେବ । ଯେତେ ଚେଷ୍ଟା କଲେ ବି, ଯେତେ ଆଦର କଲେ ବି ତୁମ ଭିତରୁ କେହିହେଲେ ଆଉ ପାହୁଣ୍ଡେ ମୋ ସହିତ ଆଗେଇ ପାରିବ ନାହିଁ । କେହି ମୋ ସହିତ ଆସିବ ନାହିଁ । ମୁଁ ଏକା ଆସିଛି, ଏକା ଯିବି – ମଝିରେ ଏ ସବୁ ତନ୍ତୁଜାଲ । ଚାରିଆଡ଼କୁ ଚାହଁ । ଜୀବନର ଏ ସଂକଟର ମୁକାବିଲା କର । ଯେମିତି ପାରୁଛ ସଂଗ୍ରାମ କର ।" ଆଉ ବନ୍ଧୁମାନେ... "ମୋର ସହଚାରୀ, ସମଧର୍ମୀ ସୁହୃଦ୍‌ମାନେ । ରହିଥାଅ ଏଠି, ଆଉ କିଛି କାଳ । ମୁଁ ଚାଲିଗଲେ କିଛି ଅଟକିଯିବ ନାହିଁ । ମୁଁ ଯାହା କରୁଥିଲି, ତାକୁ ଆହୁରି ଭଲଭାବରେ କରିପାରୁଥିବା ଅନେକ ବଳିଷ୍ଠ ବ୍ୟକ୍ତି ଆସିବେ । ଆହୁରି ସୁନ୍ଦର କଥା କହିବେ, ଲେଖିବେ, ଆଙ୍କିବେ । ମୁଁ ଭିନ୍ନ ଭିନ୍ନ ସ୍ମୃତିରେ ଭିନ୍ନ ଭିନ୍ନ ରୂପରେ, କିଛି କାଳ ରହିବି ହୁଏତ' । ତା'ପରେ, ଢେଉ ଉପରେ ଢେଉ ମଡ଼େଇ ହୋଇଯିବ । ପଦ୍ମଚିହ୍ନ ଲିଭିଯିବ ବେଳାଭୂମିରୁ ।" ରେ ଜଗତ୍ । ତୋର କ'ଣ ଯାଏ ମୁଁ ଗଲେ ବା ରହିଲେ ? ତୁ ଯେମିତି ଥିଲୁ ସେମିତି ରହିବୁ । ଚାଲିଥିବ ତୋର ଅଖଣ୍ଡ ପ୍ରବାହ । ମୁଁ ବୁଦ୍‌ବୁଦ୍, ଆସିଲି ଏବଂ ଗଲି । କିନ୍ତୁ ଥିବାଭିତରେ ତୋତେ ଦେଖିଛି, ଭଲପାଇଛି, ବୁଝିପାରି ନାହିଁ ହୁଏତ ।"

ଏହିପରି ସମସ୍ତ ବଂଧନକୁ ହୁଗୁଳେଇ ଆଣି, ଚିତ୍ତ ଶାନ୍ତ କରି କେବଳ ଅପେକ୍ଷା କରିବାକୁ ହେବ । "ହେ ଗୁରୁ । ମୋତେ ଶକ୍ତି ଦିଅ, ସ୍ଥିର ରହିବାକୁ । ହେ ଇଷ୍ଟମନ୍ତ୍ର, ମୋ ରସନାରେ ଲାଗି ରୁହ, ଚିତ୍ତରେ ଲାଗିରୁହ, ଅଧିକାର ମାଡ଼ିଯିବା ପର୍ଯ୍ୟନ୍ତ ।... ତାପରେ କ'ଣ ହେବ, ତା' କେହି କହି ପାରିବେ ନାହିଁ । ତାହା

ସମସ୍ତଙ୍କ ପାଇଁ ସ୍ୱତନ୍ତ୍ର ଅନୁଭବର ବିଷୟ । କେହି ସେ ଅନୁଭବ ପାଇ ସାରିଲା ପରେ ଫେରିଆସି ବର୍ଣ୍ଣନା କରି ପାରିବ ନାହିଁ । ଯେତେସବୁ Near death ବା ମୃତ୍ୟୁ ସମୀପବର୍ତ୍ତୀ ଅନୁଭବ କଥା କୁହାଯାଉଛି ସେଥିରେ ନିର୍ଭର କରି ହେଉନାହିଁ । ତେବେ ଅଂଧକାର ପରିବର୍ତ୍ତେ ଆଲୋକକୁ, ଏକ ଶୀତଳ ସ୍ୱଚ୍ଛ ଅବତରଣ କରୁଥିବା ଜଳଧାରକୁ, ହୃଦ୍‌କେନ୍ଦ୍ରରେ ଏକ ଜ୍ୟୋତି ପୁଞ୍ଜକୁ ଧ୍ୟାନକରି, ମନ୍ତ୍ର ଜପ କରି କରି, ଶରୀର ତ୍ୟାଗ କରାଯାଇ ପାରେ, ଓଁ ଏତତ୍ ବୈତତ୍ ।



## ୯-୪-୮୫

ମନ ଭିତରଟା ହାଟ ଭଳି । ସେଠି ଅସଂଖ୍ୟ ରୂପ, ଘୋର କୋଳାହଳ । କିନ୍ତୁ ବିଡ଼ମ୍ବନା ହେଲା ଯେ ସେଇଠି ବ୍ରହ୍ମଜ୍ଞାନ ଖୋଜିବାକୁ ହେବ ଏବଂ ତା'ର କୌଣସି ବିକଳ୍ପ ନାହିଁ । ବେଳେ ବେଳେ ଅନୁଭବ ହୁଏ ଯେ ସେ ଭିତରେ ପ୍ରବଳ ଝଡ଼ ବହୁଛି । ଗୋଟିଏ ମୁହୂର୍ତ୍ତ ମଧ୍ୟ ମନକୁ ସ୍ଥିର ରଖିବା ସମ୍ଭବ ନୁହେଁ । ଏପରିକି ମନ୍ତ୍ରଜପ ଏବଂ ଗୁରୁନାମ ସ୍ମରଣ କଲେ ମଧ୍ୟ କୌଣସି ଫଳ ହୁଏନାହିଁ । ଘୋର ଗର୍ଜନ କରି ବାତ୍ୟା ବହୁଥିବା ବେଳେ ତାକୁ ରୋଧିବା ସମ୍ଭବ ନୁହେଁ । ଆଖି ବୁଜିଲାମାତ୍ରେ ଅନେକ ଅସ୍ଥିର ଚିତ୍ରର ପ୍ରବାହ । ମନେହୁଏ ସେତେବେଳେଚେତନା ନିଦ୍ରା ପ୍ରବଣ ଥାଏ ଏବଂ ମନଥାଏ ସ୍ୱପ୍ନ ପ୍ରବଣ । ଏଣୁ ଅଗାଧ ସ୍ମୃତି ଏବଂ ଅବଚେତନ ଏବଂସେ ବାୟୁରୂପମାନଙ୍କର ଅସଂଖ୍ୟ ବିକୃତି ମାନସ ପଟକୁ ଆଚ୍ଛନ୍ନ କରେ । ଆଖିବୁଜିଲେ ହିଁ ବିପଦ । ବରଂ ଆଖି ଖୋଲି ଏକ ସ୍ଥୂଳ ବସ୍ତୁନିଷ୍ଠ ଜଗତର ଆପାତ ସ୍ଥିରରୂପ ଦେଖିଲେ ଗୋଟାଏ ପ୍ରକାର ରକ୍ଷା ମିଳିଯାଏ । ଧ୍ୟାନ ବରଂ ନ ହେଲା ନାହିଁ, ଅନ୍ତତଃ ବୁଡ଼ିଯିବାରୁ ତ ତ୍ରାହି ମିଳିଯିବ । ପୁଣି ମନେହୁଏ ଯେ ଧ୍ୟାନ ଏବଂ ସାଧନାର ସ୍ୱଳ୍ପତା ହେତୁ ମନ ଏବଂ ଚେତନା ଜଡ଼ନିଦ୍ରାରେ ଆଚ୍ଛନ୍ନ ହୋଇଯାଏ । ଏଣୁ ବୋଧହୁଏ ତା'ର ଯୋଗସାମର୍ଥ୍ୟ ରହେ ନାହିଁ । ସେ ଯୋଗଭ୍ରଷ୍ଟ ହୋଇ ମହତୀ ବିନଷ୍ଟିରେ ପଡ଼ିଯାଏ । ମନକୁ ଧ୍ୟାନାଭିମୁଖୀ କରିବାକୁ ଗୁରୁକୃପା ଛଡ଼ା ଉପାୟ ଦିଶେ ନାହିଁ । କାରଣ ଦିବ୍ୟ ଶକ୍ତି ହିଁ - ଅଘଟନ ଘଟନ ପଟୀୟସୀ । ଅସମ୍ଭବକୁ ସମ୍ଭବ କରିପାରୁଥିବା ଏ ଶକ୍ତିପାଇଁ ପ୍ରବଳବାତ୍ୟାକୁ ରୋଧି ମନୋଭୂମିରେ ସ୍ଥିରତା, ଶାନ୍ତି ଏବଂ ଧ୍ୟାନୋପଯୋଗୀ ପରିବେଶ ସୃଷ୍ଟି କରିଦେବା କିଛି ବିଚିତ୍ର କଥା ନୁହେଁ । କିନ୍ତୁ ଯେଉଁ ବିପର୍ଯ୍ୟୟର କଥା କୁହାଯାଉଛି, ସେତେବେଳ ବିଷ୍ଣୁକୃପା ଏବଂ ଗୁରୁ କୃପାରେ ମଧ୍ୟ କାର୍ପଣ୍ୟ ଦେଖାଦିଏ । ତାର କାରଣ ହୁଏତ ଏଇ ମନ ଏବଂ ଏଇ ଚେତନା । ସେ କୃପାକୁ ପ୍ରତ୍ୟାଖ୍ୟାନ କରୁଥାଏ । ଆଲୋକରୁ ଏବଂ ପ୍ରଶାନ୍ତିରୁ, ବ୍ୟାପ୍ତିରୁ ଶୀତଳତାରୁ ମୁହଁ ଫେରେଇ ତାର ବିପରୀତକୁ ଆବାହନ କରୁଥାଏ । ଏ ଜଟିଳ ପରିସ୍ଥିତିରୁ କେମିତି ନିଷ୍କୃତି ମିଳିବ ? ବୋଧହୁଏ ଅପେକ୍ଷା କରିବାକୁ ହେବ ଏଇ ବିଶ୍ୱାସରେ ଯେ, ଜଗତର ମୌଳିକ ନିୟମରେ ଯାହା ଆସିଛି ତାହା ଅବଶ୍ୟ ଯିବ । ତେଣୁ ଏ ବିପର୍ଯ୍ୟୟର ଅବସାନ ଅବଶ୍ୟମ୍ଭାବୀ । କେବେ ତାହା ହେବ ଏବଂ କିପରି ହେବ ସେଥିପାଇଁ ଦିବ୍ୟ ଜନନୀଙ୍କ ଇଚ୍ଛା ଉପରେ ନିର୍ଭର କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ଉଦ୍‌ବେଗ ଏକ ପ୍ରକାର ମନ୍ଥନ ଯାହା ଫଳରେ ମନପ୍ରାଣ ଅତିମାତ୍ରାରେ ଅସ୍ଥିର ହୋଇଯାଆନ୍ତି, ଫେନାୟିତ ସମୁଦ୍ର ପରି, ବାତ୍ୟା ତାଡ଼ିତ ବନାନୀ ପରି ସେଥିରେ କାମନା, ବାସନା, ଯୋଜନାଦି ବେଗ ମିଶିଯାଏ, ଫଳତଃ "ବାୟୋର୍ନାବ ମିବାମ୍ଭସି ।" ସେତେବେଳେ ଧ୍ୟାନ ଧାରଣା ସମ୍ଭବ ନୁହେଁ। ଜପ ପ୍ରାର୍ଥନା ମଧ୍ୟ ଫଳପ୍ରଦ ନୁହେଁ । ତାତିଲା ପଥର ଚଟାଣ ଉପରେ ଟୋପାଏ ଶୀତଳ ବର୍ଷା ବିନ୍ଦୁ ପରି ତାହା ମନରୁ ତତ୍‌କ୍ଷଣାତ୍ ଉଭେଇଯାଏ । ଟିକିଏ ତଟସ୍ଥ ହୋଇ ଚାହିଁବାକୁ ଚେଷ୍ଟାକଲେ ପ୍ରଖର ପ୍ରବଳ ବନ୍ୟା ସ୍ରୋତ ଆସି ଉସେଇ ନେଇଯାଏ । ଏପରି ଦୁରାବସ୍ଥା ଜଣାଯାଏ କି ଅତି ଦୁସ୍ତର । କିନ୍ତୁ ବେଳେ ବେଳେ ଅଯାଚିତ କୃପା ଆସି ସମସ୍ତ ସଜାଡ଼ି ଦିଏ । ଜଣାଯାଏ ଯେ ଗୋଟିଏ ଅତି କୋମଳ ଶାନ୍ତ ପରିବ୍ୟାପ୍ତ ଶୀତଳତା ଚାରିଆଡୁ ଆମକୁ ଆବୃତ କରି ରଖେ । ଫଳରେ ଆମେ ସ୍ଥିର ହୋଇଯାଉ । ଉଦ୍‌ବେଗ ଭୟ ଆଦି ଛୋଟ ଛୋଟ ପାଣିଫୋଟକାର ଅବସାନ ହେଲାପରି ଜଣାଯାଏ । ସେଥିପାଇଁ କୃତଜ୍ଞତା ଛଡ଼ା ଆଉ କିଛି ସମୀଚୀନ ନୁହେଁ । ଜଣାଯାଉଛି ଯେ ଅସୁସ୍ଥ ପିଲାଟିକୁ ମା ନିଜ କୋଳରେ ଧରି ନେଉଛନ୍ତି, ତାଙ୍କ ସ୍ପର୍ଶରେ ସେ ସୁସ୍ଥ ବୋଧ କରୁଛି । ଏହି ପରି ଚାଲିଛି ।



୧-୫-୮୫

ବିପଦ ଆପଦରେ ଡାକିଲେ ସେ ଶୁଣନ୍ତି ବୋଲି ବହୁକାଳୁ ମଣିଷର ବିଶ୍ୱାସ ଅଛି । ଆଉ କେହି ନ ଥାନ୍ତୁ ସେ ଚି... ଜାଗ୍ରତ ରହି ସହାୟ ହୁଅନ୍ତି । ତାଙ୍କୁ ଆଶ୍ରିତ ହେବାର ସଂକଳ୍ପ ଏବଂ ସାଧନା ଆରମ୍ଭ ହେବା ପରେ ଜଗତ୍ ହୋଇଯାଏ ଅନ୍ୟପକ୍ଷ । ସଂସାର କିମ୍ବା ସାଂସାରିକ ମୂଲ୍ୟକୁ ସ୍ୱୀକାର କରୁଥିବା, ଆଉରି ସ୍ପଷ୍ଟ ଭାବରେକହିଲେ, ଲାଭ କ୍ଷତି ବିଷୟ ବା ଖଟ ମିଛରେ ଚଳୁଥିବା, ସ୍ୱାର୍ଥକୁ ଶ୍ରେଷ୍ଠ ମାନୁଥିବା, ସଂସାରୀ ମଣିଷମାନେ କଦାପି ଈଶ୍ୱର ସାଧନାରେ ସହାୟକ ନୁହଁନ୍ତି । ସେ ଦୃଷ୍ଟିରୁ ସାଧକ ବିଚରା ଖୁବ୍ ଏକାକୀ । ତା'ର କିନ୍ତୁ ଭରସା ଥାଏ ଯେ ଏମାନଙ୍କଠାରୁ ବଳି ଆଉ ଜଣେ ଅଛନ୍ତି ଯେ ତାକୁ ଆବୋରି ରହିଛନ୍ତି । ଡାକିଦେଲେ ଖମ୍ଭ ଭିତରୁ ବାହାରି ଆସିବେ । କିନ୍ତୁ ପ୍ରକୃତପକ୍ଷେ, ଏହା ପ୍ରମାଣିତ ହୋଇପାରେ ନାହିଁ । ବିପଦ ବେଳେ ମଣିଷ ଦୂରେଇଯାଏ ବୋଲି ଦୁଃଖନାହିଁ । ସେ ବିଚରା ବା କଣ କରିପାରନ୍ତା । କିନ୍ତୁ ସେତେବେଳେ ଯଦି Divine ଛାଡ଼ିଦିଏ, ଏ ବଞ୍ଚିବ କେମିତି ? ଶ୍ରୀ ଅରବିନ୍ଦ କହୁଛନ୍ତି, "ପଚାର ସେମାନଙ୍କୁ ଯେଉଁମାନେ ଈଶ୍ୱରଙ୍କ ବରପୁତ୍ର ବୋଲି ଆଖ୍ୟାତ । ଯେଉଁମାନେ ପରମ ଯୋଗୀ, ମହାପୁରୁଷ, ସେମାନେ କହିବେ Divine କେମିତି ତାଙ୍କୁ ନିରାଶା କରିଛି ଏବଂ କରିଚାଲିଛି ।" Don't Forsake me ! ଏହା ଥିଲା ଯିଶୁଖ୍ରୀଷ୍ଟଙ୍କର ବାଣୀ । ସେଇ ଚରମ ମୁହୂର୍ତ୍ତରେ ସୁଦ୍ଧା ସେ Divine କୁ ପାଇପାରୁ ନାହାନ୍ତି । ଏକାକୀ ଲଢ଼ିବାକୁ ପଡ଼ିବ ନା Divine ନା ମଣିଷ କେହି ସାହାଯ୍ୟ କରିବେ ନାହିଁ । ତୁମ ଦୁଃଖ ତୁମର, ତୁମର ଏ ସମସ୍ୟା ସଂକଟ, ତୁମ ବିପଦ ଆପଦ ଆଉ କେହି ବୁଝିବେ ନାହିଁ । ଯେ ସବୁଠି ଥାଏ, ସେହି କେଉଁଠି ହେଲେ ନଥାଏ । ତାକୁ ଭାବି ଲାଭ ନାହିଁ । ଯେଉଁ ଦୁର୍ଗମ ମାର୍ଗ ବାଛି ନେଇଛ ସେଇଠି ଦାରିଦ୍ର୍ୟ, ଦୁଃଖ, ଲଜ୍ଜା,

ଅପମାନ ପରାଜୟ ତୁମର ଭାଗ୍ୟଲିପି । କିନ୍ତୁ ପୁଣି କହୁଛନ୍ତି ଯେ, "Ultimate Victory is yours" ସେ Ultimate କେବେ ? କେଉଁଠି ? ଏଣୁ ଘଟଣା ଏଇଆ ! ସାଧୁ ସାବଧାନ ।



## ୨୮-୫-୮୫

ସଂକଟରେ ପଡ଼ି ବିବ୍ରତ ଅବସ୍ଥାରେ ଆମେ ପଞ୍ଚାକ୍ଷର ଜପକରୁ । 'କ'ଣ କରିବି' - ଏଥିରେ ତିନୋଟି ଧାରଣା ବୁଡ଼ି ରହିଛି । ପ୍ରଥମେ, ମୁଁ କିଛି କରିବାର ଦାୟିତ୍ୱ ଏବଂ ଅଧିକାର ସ୍ୱୀକାର କରୁଛି, ଦ୍ୱିତୀୟରେଦେଶ ଏବଂ କାଳକୁ ସ୍ୱୀକାର କରୁଛି । ତୃତୀୟରେ କାର୍ଯ୍ୟର ନିର୍ଦ୍ଦିଷ୍ଟତାକୁ ସ୍ୱୀକାର କରୁଛି । କିଛି କରିବାର ପ୍ରବଳ ଆବେଗ, ଅଥଚ କିଛି କରିପାରୁ ନଥିବାର ବ୍ୟର୍ଥତାବୋଧ ମନ ଭିତରେ ତୁମୁଳ ସଂଘର୍ଷ ସୃଷ୍ଟି କରୁଛି । ତା'ପରେ କିନ୍ତୁ କିଛି ନିଜକୁ, ନିଜର ପରିବେଶକୁ ଏବଂ ପ୍ରତି ମୁହୂର୍ତ୍ତରେଘଟି ଯାଉଥିବା ଘଟଣା ପ୍ରବାହକୁ ଅନୁଧ୍ୟାନ କଲେ ଜଣାପଡୁଛି ଯେ ପଞ୍ଚାକ୍ଷର ପରିବର୍ତ୍ତେ ବରଂ ଚତୁରାକ୍ଷର ହିଁ ଜପ କରିବା ସମୀଚୀନ । ମୁଁ ଲେଖୁଛି, ଆପଣ ପଢୁଛନ୍ତି । ଏ ଦୁଇଟି ବ୍ୟକ୍ତି ବିଭିନ୍ନ ଯୁକ୍ତି ତରଙ୍ଗରେ ଉପସ୍ଥିତ ପରିସ୍ଥିତିରେ ପହଞ୍ଚିଛନ୍ତି ସ୍ୱେଚ୍ଛାରେ । ନିଜକୁ ନିୟୋଜିତ କରି ଏଭଳି ପରିସ୍ଥିତିଟିଏ ଆମେ ସୃଷ୍ଟି କରିନାହୁଁ । ଅର୍ଥାତ୍ ଯାହା ପ୍ରତି ମୁହୂର୍ତ୍ତରେ ଘଟୁଛି, ତାହା ଆମ ଆୟତ୍ତରେ ନାହିଁ । ସେଥିପାଇଁ ଅସଂଖ୍ୟ ଦୃଶ୍ୟାଦୃଶ୍ୟ ଶକ୍ତି ନିଶ୍ଚୟ ଦାୟୀ । ଅତଏବ 'କ'ଣ କରିବି' ନ କହି 'କ'ଣ ହେବ ?' କହିବା ବେଶୀ ବାଞ୍ଛନୀୟ, କାରଣ ସେଥିରେ ଅନ୍ତତଃ ନିଜ କର୍ତ୍ତୃତ୍ୱର ଅଶାନ୍ତି ନାହିଁ । କ'ଣ ହେବା ଏକ ଅଣାୟତ୍ତ ଘଟଣା -

ତା'ପରେ ଆସ୍ତେ ସବୁ ବିଷୟ ବୁଝା ପଡ଼ିଗଲା ପରି ଲାଗିବାକୁ ଆରମ୍ଭ କରେ, ଏଣୁ କେବଳ ପ୍ରଶ୍ନ । କ'ଣ ? କିଏ ? କେଉଁଠି ? ଅର୍ଥାତ୍ ଚାରିଅକ୍ଷର ପରିବର୍ତ୍ତେ କେବଳ ଦୁଇଟି ଅକ୍ଷରରେ ପ୍ରକାଶିତ ହୁଏ ଏକ ପ୍ରାଞ୍ଜ କୌତୂହଳ । ଏଥିରେ ଦେଶ କାଳ ନାହିଁ କେବଳ Here and now ଟି ସଂପୂର୍ଣ୍ଣ ବର୍ତ୍ତୁଳ ସ୍ଥିତି - ଯା'ପରେ ନୀରବତା -



## ୩୦-୬-୮୫

(୧) ସୂର୍ଯ୍ୟ ସବୁବେଳେ ଆକାଶରେ ଥାଏ । କିନ୍ତୁ ମାଟି ଉପରେ ଠିଆହୋଇ ରହିଥିବା ମଣିଷର ଅଣାୟତ୍ତରେ ଆକାଶ ମେଘାଚ୍ଛନ୍ନ ହୋଇଯାଏ । ସେପରି ଅବସ୍ଥାରେ ସେ ଆଉ ପ୍ରତ୍ୟକ୍ଷ ପ୍ରମାଣ ନ ପାଇ କେବଳ ଅନୁମାନ ଯୁକ୍ତିରେ ସୂର୍ଯ୍ୟର ଉପସ୍ଥିତି ସ୍ୱୀକାର କରେ । ସେଥିପାଇଁ ତାକୁ ପ୍ରୟାସ କରିବାକୁ ପଡ଼େ । ସୂର୍ଯ୍ୟାଲୋକିତ ସ୍ମୃତିରେ ଆଶ୍ରୟ ନେବାକୁ ପଡ଼େ । ବେଳେ ବେଳେ ଘନଘୋର ବର୍ଷା ହେଉଥାଏ । ସୂର୍ଯ୍ୟ

କଥା ଚିନ୍ତା କରିବା ମଧ୍ୟ ସମ୍ଭବ ହୁଏନାହିଁ । ଏ ମେଘାବରଣ ଭେଦକରି ତା ଊର୍ଦ୍ଧ୍ୱକୁ ଉଠିଯିବାର ସାମର୍ଥ୍ୟ ଥିଲେ ଚିରନ୍ତନ ସୂର୍ଯ୍ୟାଲୋକ ପାଇବା ସମ୍ଭବ କିମ୍ବା ହିମାଳୟ ପରି ଅତି ବିଶାଳ ଚେତନା ହେଲେ, ମୂଳ ପୃଥିବୀ ଉପରେ ଛାୟାଲୋକ ଥିଲେ ସୁଦ୍ଧା ଚୂଳରେ ସର୍ବଦା ଆଲୋକର ବର୍ଷାହେବା ସମ୍ଭବ । କିନ୍ତୁ ସେଭଳି ଅସାଧାରଣ ସାମର୍ଥ୍ୟ ଏ ମଣିଷର କାହିଁ ? ଜୀବନରେମେଘ ଭଳି ବିପଦ ସଂକଟ ଏବଂ ସଂଶୟ ଆସି ଆକାଶକୁ ଆଚ୍ଛନ୍ନ କରିଦେଲେ ବିଶ୍ୱାସ ଉପରେ ଆଘାତ ଆସେ । କାହିଁ ସେଇ ସର୍ବବ୍ୟାପୀ କରୁଣାର ହିରଣ୍ମୟ ରୂପ ? ମେଘ କିନ୍ତୁ ଯଥାସମୟରେ ଅପସରି ଯାଏ । ଆଖି ଟେକି ଚାହିଁଲା ବେଳକୁ ସୂର୍ଯ୍ୟ ହସୁଥାଏ । ଘୋର ଜଞ୍ଜାଳ ଭିତରେ ଥାଇ Divine କୁ ସମ୍ପୂର୍ଣ୍ଣ ଭୁଲି ଯାଇଥିଲା ବେଳେ ଅଚାନକ କେହି ଜଣେ ଆସି ତାଙ୍କରି କଥା ପକାଇ ଦିଅନ୍ତି । ରୁଦ୍ଧଦ୍ୱାର ଭିତର ଦେଇ ନିର୍ମଳ ପବନ ଝଲକାଏ ପରି Divine ପଶିଆସେ ଚେତନା ଭିତରକୁ । ବର୍ଷାକାଳରେ ସୁଦ୍ଧା ମେଘ ଘୁଞ୍ଚିଯାଇ ମୁହୂର୍ତ୍ତେ ପାଇଁ ସୂର୍ଯ୍ୟ ଦିଶିଯାଏ । ଭାରି ଭଲଲାଗେ । "ମୁଁ ଅଛି, ଚିରଜାଗ୍ରତ ତୋ ପାଖେ ପାଖେ ଅଛି । ତୋର ଚିନ୍ତା କରିବାର କିଛି ନାହିଁ । ଏ ସମସ୍ତ ସମସ୍ୟା ମୋର, ସଂକଟ, ସଂଗ୍ରାମ ସବୁ ମୁଁ ସମାଧାନ କରିବି । ତୁ ଧୈର୍ଯ୍ୟ ହାରି ନିରାଶ ହୁଅନା । ବିଶ୍ୱାସ ରଖ, ମୁଁ ଯଥା ସମୟରେ ସବୁ ଠିକ୍ କରିଦେବି । ଏହିଭଳି କିଛି ପ୍ରତିଶ୍ରୁତି ସେ କୋଟୋଟି ମୁହୂର୍ତ୍ତରୁ ଝରିଆସେ । ସନ୍ତପ୍ତ ପ୍ରାଣ ଶୀତଳ ହୋଇଯାଏ । ତା'ପର ମୁହୂର୍ତ୍ତରେ କିନ୍ତୁ ଗର୍ଜି ଉଠେ ସଂସାର, ଚାରିଆଡୁ ଡ଼ାକିଆସେ ସଂକଟ । 'କ'ଣ କରିବି 'ମା' ମୋର ସେତେବେଳେ ଆଉ ଧୈର୍ଯ୍ୟ ରହେ ନାହିଁ । ଟେକି ଧରିବାକୁ ତୁ ବାହୁ ପ୍ରସାରି ନ ଦେଲେ ସରିଯିବ ସବୁଖେଳ । ମୁଁ ଏକାକୀ ସମ୍ଭାଳି ପାରୁନାହିଁ' ଏଇଭଳି ନିବେଦିତ ହୋଇଥାଏ, ପରମା ଶକ୍ତି ପାଖରେ। ତେଣିକି ସେ ଅବଶ୍ୟ ଟେକିନେବ, ଏଥିରେ ସନ୍ଦେହ ନାହିଁ ।

(୨) ବିବର୍ତ୍ତନ ଏକ ନଦୀଧାର ପରି । ଅନେକ ସମୟରେ କିଛି ଅଂଶ ବାଟରେ ଅଟକିଯାଏ, ଛୋଟ ସ୍ରୋତଟିଏ ଆଗେଇଯାଏ । ସେଭଳି ଜୀବଜଗତ ସୃଷ୍ଟି ହେଲା ପରେ ସବୁ ପ୍ରାଣୀଙ୍କର ଯେ ବିବର୍ତ୍ତନ ହୋଇଚାଲିଛି, ତା'ନୁହେଁ । ଏକପ୍ରକାର ସରିସୃପ ଗତ ପଚାଶ ଲକ୍ଷ ବର୍ଷଧରି ଆଦୌ ବଦଳି ନାହାନ୍ତି । ସବୁ ବଣମଣିଷ ମଣିଷ ହୋଇ ନାହାନ୍ତି - ବାଟରେ ଏମିତି ସମସ୍ତଙ୍କୁ ଛାଡ଼ି ଛାଡ଼ି ବିବର୍ତ୍ତନର ମୁଖ୍ୟ ଅଥଚ ସୂକ୍ଷ୍ମଧାର ଏବେ କେବଳ ମଣିଷକୁ ଟେକିନେଇ ଚାଲିଛି । ବିବର୍ତ୍ତନ ଏଣିକି ହେଲେ, କେବଳ ମଣିଷର ହିଁ ହେବ । ବାକି ସବୁ ଅଟକି ଯାଇଛନ୍ତି । ସେଠି ସ୍ରୋତ ନାହିଁ, ପାଣି ଅଛି । ତେବେ ମଣିଷ ବିବର୍ତ୍ତିତ ହେଲେ ରୂପାନ୍ତରିତ ହେବ । ଏଇଠି ବି ବହୁ କୋଟି ମଣିଷ ହୋଇ ରହିଯିବେ । ମାତ୍ର ଅଳ୍ପ କେତେଜଣ ବଦଳିଯିବେ ବିବର୍ତ୍ତନର ଧାରାରେ । ଏ ଶରୀରରେ ଯେଉଁ କଣିକାଗୁଡ଼ିକ ପୁନର୍ଗଠନ କରନ୍ତି, ଯାହା କ୍ଷୟ ହୋଇଗଲା ତାକୁ ପୁଣି ଗଢ଼ି ଦିଅନ୍ତି, ମଣିଷ ମରିଯିବା ପୂର୍ବରୁ ତା'ର ଶୁକ୍ରାଣୁରେ ଅନ୍ୟତ୍ର ରୂପଗଠନ ହୋଇଥାଏ - ସେଗୁଡ଼ିକ ଅମର କଣିକା । ଜୀବନର ମୂଳ ତତ୍ତ୍ୱ ସେଇଠି ନିହିତ ରହିଛି । ସେଇଠି ମୃତ୍ୟୁକୁ ପରାସ୍ତ କରାଯାଏ । ସେଇ ଅମୃତ କଣିକା ବିବର୍ତ୍ତିତ ମଣିଷର ଶରୀରକୁ ଅହରହ ନବୀକରଣ କରି ଚାଲିଥିବ । ନିତ୍ୟ ନୂତନ ହେଉଥିବ ଏଇ ଶରୀର, ରୂପାନ୍ତରିତ ହୋଇ ଚାଲିଥିବ । ଯେମିତି ମଣିଷର ମସ୍ତିଷ୍କ ତା'ର କୋଟି କୋଟି ତନ୍ତୁ ଛିଣ୍ଡିଥାଏ ପ୍ରତିଦିନ, ପୁଣି ତିଆରି ହୋଇଥାଏ । ଫଳରେ ତିନିମାସ ଭିତରେ ଗୋଟିଏ ସଂପୂର୍ଣ୍ଣ ନୂଆ ମସ୍ତିଷ୍କ ତିଆରି ହୋଇଥାଏ । ସେଇପରି ଏ ସମସ୍ତ ଶରୀରର ନବୀକରଣ ଅହରହ ଲାଗିରହିବା ଦ୍ୱାରା ମୃତ୍ୟୁକୁ ଉଲ୍ଲଙ୍ଘନ କରାଯାଇଥାଏ । ଶ୍ରୀ ଅରବିନ୍ଦଙ୍କ ଦୃଷ୍ଟିରେ ଏହା ଏକ ନିର୍ଦ୍ଧାରିତ ସତ୍ୟ, ଅବଶ୍ୟମ୍ଭାବୀ ପରିଣାମ । ଏହା

ପରମାଣଶକ୍ତିଙ୍କର ନିଷ୍ପତ୍ତି । ଏଥିରେ ଯୁକ୍ତହେବା କିମ୍ବା ନ ହେବା ବିବେକୀ, ମନସ୍କ ଏବଂ ଚେତନ ମଣିଷର ଇଚ୍ଛା । ସେ ଚାହିଁଲେ ସ୍ୱୀକୃତି ଦେବ, ନ ଚାହିଁଲେ ନାହିଁ ।



## ୧୮-୭-୮୫

Understanding କହିଲେ କ'ଣ ବୁଝାଏ ? ଏହା ଅନ୍ତତଃ ଏକ କ୍ରିୟା । ଏ ବ୍ୟାପାରରେ ଅନ୍ୟୂନ ଦୁଇଟି ସତ୍ତାର ପ୍ରୟୋଜନ । ଗୋଟିଏ ଅନ୍ୟଟିର ଦିଗ୍‌ବଳୟରେ ଉଦୟ ନ ହେବା ଯାଏଁ ବୁଝାମଣା ବା ଅବୁଝାମଣାର ପ୍ରଶ୍ନ ଉଠୁନାହିଁ । ଥରେ ଉଦୟ ହେଲେ ସଂପର୍କର ସୂତ୍ରପାତ ହୁଏ । ଏଣୁ ଦୁହେଁ ପ୍ରଥମେ ଯେକୌଣସି ସାଧାରଣ ଭୂମିରେ ଠିଆହେଲେ ତେଣିକି ପରସ୍ପରକୁ ବୁଝିବାକୁ ଚେଷ୍ଟା କରନ୍ତି । ଅର୍ଥାତ୍ ତାଙ୍କ ଭିତରେ ସାମ୍ୟ କେତେ, ବୈଷମ୍ୟ କେତେ କଳନା କରିବାର ସୁଯୋଗ ପାଇଥାନ୍ତି । ନିଜର ମାନଦଣ୍ଡରେ ଅନ୍ୟର କେତେ ଅଂଶ ପରିମେୟ ତାହା ସେ ଜାଣିବାକୁ ଯତ୍ନ କରନ୍ତି । ତେବେ ସେଥିରେ ଅନେକ ଅସୁବିଧା ରହିଛି । ଯେତେବେଳେ ଦୁଇଟି ବ୍ୟକ୍ତି ପରସ୍ପରକୁ ପ୍ରତ୍ୟକ୍ଷ କରନ୍ତି, ସେମାନେ ଯାହା ଇନ୍ଦ୍ରିୟଗ୍ରାହ୍ୟ ତାହା ହିଁ ଗ୍ରହଣ କରି ନିଅନ୍ତି । କିନ୍ତୁ ଯେ ବୁଝିବାକୁ ଚେଷ୍ଟାକରେ, ସେ ପରମୁହୂର୍ତ୍ତରେ ବଦଳିଯାଏ । ଜଗତ୍‌ର ସଂଘାତରେ ସେ ଆଉ ତାର ପୂର୍ବପରି ରହିପାରେ ନାହିଁ । ମୁହୂର୍ତ୍ତରୁ ମୁହୂର୍ତ୍ତକୁ ପରିବର୍ତ୍ତିତ ହେଉଥିବା ଦୁଇଟି ବ୍ୟକ୍ତି ଦୁଇଟି ବହ୍ନିମାନ ଅଗ୍ନିଶିଖା ପରି : ଯେ କି ପରସ୍ପରକୁ ସ୍ୱୀୟ ଆଲୋକରେ କଳନା କରିବାକୁ ଚେଷ୍ଟା କରନ୍ତି । ତା'ବାହାରେ ଚେତନା ମଣିଷର ଅକଳନୀୟ ସ୍ତର ଭିତରେ ଅସଂଖ୍ୟ ପୂର୍ବପୁରୁଷ ପ୍ରତ୍ୟେକଟି ରକ୍ତକଣିକା, ତନ୍ତ ସତ୍ତାରୂପେ ଏ କର୍ମରେ ଯୋଗ ଦିଅନ୍ତି । ଜଣେ ଯେତେବେଳେ ଦେଖେ, ସେତେବେଳେ ତା'ର ନିଶ୍ଚେତନ ଅବଚେତନ ଭିତରୁ ତା'ର ଅସଂଖ୍ୟ ପିତୃପୁରୁଷ ଦେଖୁଥାନ୍ତି । ତା'ର ଅତୀତ ଜୀବନର ସମସ୍ତ ଇତିହାସ ଏବଂ ଭୂଗୋଳ ସେଥିରେ ଜଡ଼ିତ ଥାଏ । ତେବେ କିଏ ବୁଝିବ ? କେତେବେଳେ ବୁଝିବ ? କିପରି ବୁଝିବ ? ବୁଦ୍ଧି, ସ୍ମୃତି, ଆବେଗ ସବୁ ମିଶି ବୁଝିବା କ୍ରିୟାଟି ଚାଲେ । ଏ ସମସ୍ତରୁ କୌଣସିଟି ସ୍ଥିର ନୁହେଁ । ବେଳେ ବେଳେ ଦୁଇଟି ଚେତନା ସତ୍ତା ପରସ୍ପରକୁ ବୁଝିବାକୁ ଚେଷ୍ଟା ନ କରିବାକୁ ତାହା ଏକପାକ୍ଷିକ ହୋଇଥାଏ । ଯଥା - ଗୋଟିଏ ଅଣୁକୁ ବିଜ୍ଞାନୀ ମଣିଷଟିଏ ବୁଝୁଛି । ସେଥିରେ ଅଣୁ ତାକୁ ବୁଝୁଛି ନା ନାହିଁ କହିବା କଠିନ, କାରଣ ସେଇଠି ବୁଝିବାର ସଜ୍ଞା ଅନ୍ୟ ପ୍ରକାର ହୋଇଯିବ । ତେବେ ମନସ୍କ ପ୍ରାଣୀଟିଏ ହୋଇଥିବାରୁ ମଣିଷ ତା'ର ମନ ଏବଂ ବୁଦ୍ଧିବଳରେ ଅନ୍ୟ ବ୍ୟକ୍ତିମାନଙ୍କୁ ବୁଝିବାକୁ ଚେଷ୍ଟା କରୁଥାଏ । ସବୁଗୁଡ଼ିକ ଅସ୍ଥିର ଚଳଚ୍ଚିତ୍ର କେବଳ । ତେବେ ବୁଝାମଣା କ'ଣ ଆଦୌ ସମ୍ଭବ ନୁହେଁ ? ସମ୍ଭବ । ସିନେମା ଦେଖିଲାବେଳେ ଅସଂଖ୍ୟ ସ୍ୱତନ୍ତ୍ର ଚିତ୍ର ଗୋଟିକ ପରେ ଗୋଟିଏ ଦେଖାଇ ଦିଆଯାଏ । କିନ୍ତୁ ଆଖିର Retina ନାମକ ଏକ ଅଂଶ ବା ଗୁଣ, ତାକୁ ସ୍ୱତନ୍ତ୍ରରୂପେ ନ ଦେଖି ଯୋଡ଼ିଦିଏ । ଅର୍ଥାତ୍ ଯାହା ଚାଲିଗଲାଣି ତାକୁ ତା'ପରେ ଆଉ କିଛିକାଳ ଧରି ରଖିବାର ଅସାଧାରଣ ଶକ୍ତି, ସେଇଠି ଥାଏ ବୋଲି ଆମେ ଗୋଟିଏ ଚିତ୍ର ପ୍ରବାହ ଦେଖିବାକୁ ପାଉ । ଠିକ୍ ଏଇଭଳି ସ୍ମୃତି । ନିଜର ଏବଂ ସାମୟିକଭାବରେ ମଣିଷ ଜାତିର । ଏ ପୃଥିବୀ

ଏବଂ ଏ ଅନନ୍ତାବସ୍ଥାରେ ଅତୀତକୁ ସୂକ୍ଷ୍ମରୂପେ ଧାରଣ କରିବାର ଅସମ୍ଭବ ଶକ୍ତି ଏ ସ୍ମୃତିର ରହିଛି । ଏ ଜଗତ୍‌ରେ ଅହରହ ଲିଭି ଆସୁଥିବା ଚିତ୍ର ସମୂହକୁ ସତେ ବା ସେ ଅସ୍ୱୀକାର କରେ, ମୃତ୍ୟୁକୁ ଅସ୍ୱୀକାର କରେ । ସେ ନିଜେ ସଚେତ ଏବଂ ଅମୃତ ରସାୟନ । ମୃତ ପିତୃପୁରୁଷଙ୍କୁ ଯେତେବେଳେ ଇଚ୍ଛା, ସେତେବେଳେ ଆଣି ମାନସପଟରେ ଠିଆ କରିଦେଇ ପାରେ ।

ଯଦି understanding ସମ୍ଭବ, ତେବେ ତାହା ଏହି ସ୍ମୃତି ଅଥବା ଅମୃତ ରସାୟନ ଦ୍ୱାରା ହିଁ ସମ୍ଭବ । ନଚେତ୍ ନିଜେ ଅପସରି ଯାଉଥିବା ଗୋଟିଏ ଧାରା, ଅନ୍ୟ ଅପସୃୟମାନ ଧାରାକୁ କିପରି ବୁଝନ୍ତା ? ବୁଝାମଣାରେ ମନସ୍କତା ଅପେକ୍ଷା ଆବେଗ ପ୍ରବଣତା ବେଶୀ ସାହାଯ୍ୟ କରିଥାଏ । ଆବେଗ ଏକ ପ୍ଲାବନ ହୋଇପାରେ ଅଂଧପ୍ଲାବନ । ସେଥିରେ ସବୁ ବୈଷମ୍ୟ ବୁଡ଼ିଯାଇ ଏକାକାର ଦେଖାଯାଏ । ଅବଶ୍ୟ ତାହା ପ୍ରକୃତରେ ବୁଝାମଣା କି ନୁହେଁ ବିଚାର ସାପେକ୍ଷ୍ୟ । ତେବେ କେବଳ ଇନ୍ଦ୍ରିୟରେ ପ୍ରତ୍ୟକ୍ଷ କରି ମନରେ ଚିନ୍ତାପୂର୍ବକ ବୁଝାଯାଏ ନାହିଁ । ସେଥିପାଇଁ ସଂସ୍କୃତରେ 'ବିଦ୍ ଶବ୍ଦ'ର ପ୍ରୟୋଗ ଅଛି । "ତତ୍ ବିଦ୍ଧି" ଏହା ଜାଣିରଖ । ଏହା କେବଳ ଜ୍ଞାନ ନୁହେଁ, ଜ୍ଞାନଠାରୁ ଭିନ୍ନ ଏବଂ ଅଧିକ ଆଉକିଛି କେତେକଙ୍କ ଧାରଣା ସେ ପ୍ରଥମେ ନ ଜାଣିଲେ ବିଶ୍ୱାସ କରିହେବ ନାହିଁ ।ଆଉ କେତେକଙ୍କ ମତରେ ବିଶ୍ୱାସ ନ କଲେ ଜାଣିହେବ ନାହିଁ । ପ୍ରଥମେ ଜ୍ଞାନ ନା ପ୍ରଥମେ ବିଶ୍ୱାସ । ଏଥିରେ ଜ୍ଞାନମାର୍ଗ ଏବଂ ଭକ୍ତି ବା ପ୍ରେମ ମାର୍ଗ ସ୍ଥିରୀକୃତ ହୋଇଯାଏ ।

ତେବେ Understanding ସମ୍ଭବ ନା ନୁହେଁ ? ବୁଝିହେବ ନା ନାହିଁ ? ହେବ, କାରଣ ତାହା ଏକ ଅଖଣ୍ଡ ପ୍ରୟାସ, ଏକ ସାଧନା । ଅଧିକରୁ ଅଧିକ ପ୍ରଯତ୍ନରେ ଅଧିକରୁ ଅଧିକ ବୁଝିହେଉଥିବ । ତାହେଲେ ଦିନେ ସଂପୂର୍ଣ୍ଣ ବୁଝିହେବ କି ? ନା ସଂପୂର୍ଣ୍ଣ ବୁଝିଗଲେ ବା ସଂପୂର୍ଣ୍ଣ ଜାଣିଗଲେ ତାହା ଆଉ ବୁଝିବା ପଦବାଚ୍ୟ ନୁହେଁ । ବୁଝିବା ପାଇଁ ଯେଉଁ ଦୁଇଟା ପକ୍ଷର ପ୍ରୟୋଜନ, ତାହା ସେ ପର୍ଯ୍ୟାୟରେ ଲୋପ ପାଇଯାଏ । ବ୍ରହ୍ମବିଦ୍ ବ୍ରହ୍ମୈବଭବତି, ବ୍ରହ୍ମକୁ ବୁଝିଗଲେ ବ୍ରହ୍ମ ହୋଇଯିବାକୁ ହୁଏ । ଦୁଇଟି ସମାନ୍ତର ରେଖା ପରସ୍ପରକୁ ସମଦୂର ହୋଇ ଅନନ୍ତରେ ମିଳିତ ହେଲାପରି ଏ ବ୍ୟବସ୍ଥା । ସେଠି ସେ ମିଳିତ ହୁଅନ୍ତି, କି ତଥାପି ଦୁଇହୋଇ ଏକ ଅସାଧାରଣ ଅନନ୍ୟତାରେ ପହଞ୍ଚନ୍ତି, ତାହା ବୁଝିବା ଗଭୀର ଅନୁଭବ ସାପେକ୍ଷ୍ୟ ।



## ୨୯-୯-୮୫

ବେଳେ ବେଳେ ଅତି ଅପ୍ରତ୍ୟାଶିତ ଭାବରେ ପରାଭବ ସହିବାକୁ ପଡ଼ିଥାଏ । ଅନ୍ୟର ବିରୋଧ ନ କରି ଯଥାସମ୍ଭବ ନିଜର କର୍ମକରି ଚାଲିଥିଲାବେଳେ, ଅଚାନକ ରାସ୍ତା ଉପରେ କେହି ଜଣେ ଉଠିଆସି ମୁହଁକୁ ଛେପ ପକେଇ ଦେବା ଯେତିକି ଅପମାନସୂଚକ, ସେତିକି ବିସ୍ମୟକର । କାହିଁକି ଏପରି ହେବ ? ମୁଁ ତା'ର କ'ଣ ଅନିଷ୍ଟ କରିଥିଲି ? ତାକୁ ତ' ମୁଁ ଜାଣେ ନାହିଁ । ସେ ମୋ ପ୍ରତି ଏତେ ଘୃଣା, ଏତେ ବିଦ୍ୱେଷ, ଏତେ ଅବଜ୍ଞା ପ୍ରକାଶ କରିବାର କାରଣ କ'ଣ ? ପରାଭବଟି ଯେହେତୁ ସତ୍ୟ, ତା'ର ସାଧାରଣ କାରଣ କିଛି ଦିଶୁ ନଥିଲେ

ସୁଦ୍ଧା କାରଣ ନିଶ୍ଚୟ ଅଛି । ହୋଇପାରେ ମୁଁ ମୋର ଅଜ୍ଞାତରେ ତାକୁ ଆହତ ଉତ୍ତେଜିତ, ପ୍ରତିଶୋଧ ପରାୟଣ କରିଛି । ସେଭଳି କିଛି ମୋର ଉଦ୍ଦେଶ୍ୟ ନଥିଲେ ସୁଦ୍ଧା ମୁଁ ମୋର ସ୍ୱାଭାବିକ ସ୍ଥିତିରେ ହିଁ ତା'ର ବିରୋଧ କରିଛି । ଯେମିତି ଭୂଇଁରୁ ରସଟାଣି ସୂର୍ଯ୍ୟାଭିମୁଖୀ ଏକ ମହୀରୁହ ଊର୍ଦ୍ଧ୍ୱକୁ ବଢ଼ିଚାଲିଛି । କିନ୍ତୁ ତା'ର ଅଜାଣତରେ ଶୀତ ଦିନେ ଖରା ପୁଆଉଁଥିବା ନିଷାଦର ଅଗଣାକୁ ଛାୟାଛନ୍ନ କରିଦେଇଛି । ସେ ଅବଶ୍ୟ କୁଠାର ନେଇ ଗଛଟିର ଶିଖଡ଼ାଳକୁ ହାଣିଦେବ । ଆଉ ଗୋଟିଏ ବିକଳ୍ପ ହୋଇପାରେ । କେତେକଙ୍କର ଚେତନା ଏପରି ଯେ ସେମାନେ ସ୍ୱତଃ ସୁନ୍ଦର ଜ୍ୟୋତିଷ୍ମାନ ଶୁଦ୍ଧିର ବିରୋଧ କରନ୍ତି । ମୋଟେ ସହି ପାରନ୍ତି ନାହିଁ । ସତେ ବା ସେଗୁଡ଼ିକ Antidivine । ଯେଉଁଠି ଦିବ୍ୟତ୍ୱ ସାମାନ୍ୟ ଦିଶିଗଲା, ସେଇଠି ସେମାନେ ପହଞ୍ଚିଗଲେ ପରାଭବ ଦେବାପାଇଁ । ଅତଏବ ଏଭଳି ଅପ୍ରତ୍ୟାଶିତ ପରାଭବ ଦେଇଥିବା ବ୍ୟକ୍ତି ବା ଶକ୍ତିଟି ହୁଏତ ମୋର ଅଜ୍ଞାତସାରରେ ଚକଟି ଦେଇଥିବା ସାପ ପରି ଏକ ଅଜ୍ଞାତ ଶତ୍ରୁ କିବା ଅସହିଷ୍ଣୁ, ଅସୂୟାପରାୟଣ କ୍ଷୁଦ୍ରଚେତା ଖର୍ବପୁରୁଷଟିଏ । ଏ ପରାଭବଟି ଏପରି ଯେ ତା'ର ପ୍ରତିକାର ମଧ୍ୟ କରାଯାଇ ପାରିବ ନାହିଁ । କ'ଣ କରିହେବ, ଗୋଡ଼କୁ କାମୁଡ଼ି ଦେଇଥିବା କୁକୁରକୁ ଗୋଡ଼େଇ ? ତା ଗୋଡ଼କୁ କାମୁଡ଼ିବା ଯେପରି ହାସ୍ୟାସ୍ପଦ, ସେପରି ତାକୁ ବିରୋଧ କରି ପାଟି ଫିଟେଇବା ଏକ ସର୍ବୋତୋ ଭାବେ ଅସମୀଚୀନ କ୍ରିୟା । ତେବେ କାମୁଡ଼ିଥିବା କୁକୁରକୁ ଫୋପଡ଼ ମାରିଲେ ଅନ୍ତତଃ ସେ ଆଉଥରେ କାମୁଡ଼ନ୍ତା ନାହିଁ । ଯୁକ୍ତି ମନ୍ଦ ନୁହେଁ । କାରଣ କାମୁଡ଼ାଖାଇ ତାକୁ ଆଦୌ ସ୍ୱୀକାର ନ କରିବା ଭଳି ସାଧନାର ସ୍ଥିରତା ଯେହେତୁ ନାହିଁ, ତାକୁ ସହିଯିବା ଏକ ଭୀରୁତା, ନିଷ୍କ୍ରିୟତା ଏବଂ କ୍ଲୀବତା । ତେବେ କ'ଣ କରିବା ? ଏଇଠି ସ୍ଥିର ଚିତ୍ତରେ ଚିନ୍ତା କରାଯାଉ । ସେ ସତକୁସତ ସେପରି ପରାଭବ ଦେଇଛି ନା ପରାଭବ ପାଇଲି ବୋଲି ମୁଁ ଭାବୁଛି । ସେ ଅଜଣା ଲୋକଟି କୌଣସି ଉଦ୍ଦେଶ୍ୟ ନ ରଖି ମୋର ଆସିବାକୁ ଅନୁମାନ କରି ନ ପାରି ସେଇ ଦିଗକୁ ଢେପ ପକାଉ ଥିଲା କି ? ତା'ହେଲେ ତ ସେ ସେଥିପାଇଁ ଦୁଃଖପ୍ରକାଶ କରିବା ଉଚିତ । ଓଃ, ସେ ବୋଧେ କ'ଣ ଘଟିଗଲା, ସେ ବିଷୟରେ ସଚେତନ ନୁହେଁ । ଏସବୁ ବିଚାର କଲାପରେ ହୁଏତ କର୍ତ୍ତବ୍ୟ ସ୍ଥିର କରାଯାଇପାରେ । ବିଚଳିତ ହେବାର କିଛି ନାହିଁ । ପରୀକ୍ଷିତ ରାଜା ମଲା ସାପଟିକୁ ଧ୍ୟାନସ୍ଥ ଋଷି ବେକରେ ଲମ୍ବାଇଦେଲା ପରେ ତାଙ୍କର କିଛି ବିକ୍ରିୟା ହୋଇନାହିଁ । ସେ ପରାଭବକାରୀ ଏବଂ ପରାଭବ, ଏ ଉଭୟକୁ ଅସ୍ୱୀକାର କରିଛନ୍ତି । କିନ୍ତୁ ଅନ୍ୟତ୍ର କ୍ରୋଧାଗ୍ନି ଜଳି ଉଠିଛି ଏବଂ ରାଜା ପରୀକ୍ଷିତ ଦୁର୍ନିବାର ବ୍ରହ୍ମ ଅଭିଶାପରେ ପୀଡ଼ିତ ହୋଇଛନ୍ତି । ସେହିପରି ବିନା କାରଣରେ ଜଣେ ଯଦି ମୋତେ ପରାଭବ ଦେଲା, ମୁଁ ଉଭୟଙ୍କୁ ଅସ୍ୱୀକାର କରିବି । ଏଥିରେ ଯଦି ବ୍ରହ୍ମରେ ଆଘାତ ହେଲାଏବଂ ସେ ତା'ର ପ୍ରତିକାର କଲା ତ ଭଲକଥା, ନ କଲା ନାହିଁ । ମୋ ବେକରେ ମଲାସାପ ଓହଳି ଥାଉ । ଜଗତ୍‌ଜନେ ଦେଖୁଥାନ୍ତୁ ଏବଂ ସର୍ବତଃ ପାଣିପଦଂ ତତ୍ ସର୍ବତୋକ୍ଷି" ତାକୁ ଦେଖୁଥାଉ । ମୋର କ'ଣ ଥାଏ ?



## ୧-୧-୮୬

ଆଜି ନୂତନ ବର୍ଷର ପ୍ରଥମ ଦିନ । ଏହିପରି ଆସିବ ୮୮, ୮୯... ଏବଂ ୨୦୦୦ । କିଏ ରହିବ, କିଏ ଯିବ ସେଇଟା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ଏବଂ ସେଇ କାରଣରୁ ବିଚାରଣୀୟ ନୁହେଁ ମଧ୍ୟ । କିନ୍ତୁ ଜାନୁୟାରୀ ପହିଲା ତାରିଖଟି ସମୟଚକ୍ରରେ ବାରମ୍ବାର ଆସୁଥିବ, ପୃଥିବୀ କକ୍ଷଚ୍ୟୁତ ନ ହେବା ଯାଏ କିମ୍ବା ମହାକାଶରେ ବ୍ୟାଘାତ ଘଟି, ଅତି ନିରୀହ ମଣିଷଟିକୁ ନିଶ୍ଚିହ୍ନ ନ କରିବା ଯାଏ । ସମୟଭାବଟି ନ ଆସିବା ଯାଏଁ ବ୍ୟାପ୍ତିଭାବରେ ପୂର୍ତ୍ତି ହୁଏନାହିଁ । ଏ ବିପୁଳ ବିଶ୍ୱର ବିସ୍ତାର ଏବଂବୈଚିତ୍ର୍ୟ ବିମୂଢ଼ କରିଦିଏ । ସେଇଟା କେବଳ ସ୍ଥିତି । କେବଳ ତାକୁ ଉପଲବ୍ଧିକଲେ କିଛି ଜାଣିହୁଏ ନାହିଁ । ଏଣୁ ଅତି ବୈଚିତ୍ର୍ୟମୟ ସୁବିପୁଳ ବିଶ୍ୱରୂପ ଦର୍ଶନ କଲା ପରେ ଅର୍ଜୁନ ମୁହ୍ୟମାନ ହୋଇ ପଚାରିଛନ୍ତି - ଆପଣ କିଏ ? ଏବଂ ଉତ୍ତର ମିଳିଛି - 'କାଲୋଽସ୍ମି', ମୁଁ କାଳ । ସ୍ଥିତିରୁ ଗତିକୁ ଦୃଷ୍ଟି ଆକର୍ଷଣ କରିଛନ୍ତି । Statics ରୁ Dynamics କୁ Space ରୁ time କୁ । ତେବେ ଯାଇ କଥାଟା କିଛି କିଛି ବୁଝାପଡୁଛି । ସମୟର ପ୍ରବହମାନତା, ସ୍ଥିତିର ଉଦୟ ଏବଂ ବିଲୟକୁ ଏତେ ସୂକ୍ଷ୍ମ ଏବଂ ପ୍ରାଞ୍ଜଳ କରି ଦେଉଛି ଯେ ତାହା ହିଁ ସମୟ ବୋଲି ଧାରଣା ହେଉଛି । କିନ୍ତୁ ସମୟ ଅଲକ୍ଷ୍ୟ, ଅପରିମେୟ । ତାକୁ ଇନ୍ଦ୍ରିୟ କିମ୍ବା ମନରେ ଧାରଣା କରିହେବ ନାହିଁ । ତାହା ଏକ Abstraction । ଯାହା ଦିଶୁଛି, ତାହା କେବଳ ଏକ ସୂଚକ, ଏକ ଲକ୍ଷଣ, ଏକ ପରିଣାମ । ବସ୍ତୁ ବା ବ୍ୟକ୍ତି ଅଜ୍ଞାତରୁ ଆସିଲା ଏବଂ ଅଜ୍ଞାତରେ ବିଲୀନ ହୋଇଗଲା । ସ୍ଥାନାନ୍ତରିତ ହେଲା, ତା ସାଙ୍ଗେ ସାଙ୍ଗେ କାଳାନ୍ତରିତ ମଧ୍ୟ ହେଲା । ବସ୍ତୁଟିଏ ଘୁଞ୍ଚିବା କ'ଣ ସମୟ ? ସେ ପରି ପୃଥିବୀ ତା କକ୍ଷରେ ଘୁଞ୍ଚି ଯାଉଛି ଏବଂ ଋତୁଚକ୍ର ସୃଷ୍ଟି ହୋଇ ଯାଉଛି । ଏ ଘୁଞ୍ଚିବା କ'ଣ ସମୟ ? ନା ମହାକାଶ ପରି ସମୟ ଏକ ବ୍ୟାପ୍ତି, ଏ ଆକାଶ ହିଁ ସ୍ୱୟଂ ସମୟ । ଆଖିରେ ଦେଖିଲେ ଆକାଶ, ଦେଖି ଚାଲିଥିଲେ ସମୟ । ସେଥିରେ ସବୁ ଉଦୟ ହୁଅନ୍ତି, ଅସ୍ତ ବି ହୁଅନ୍ତି । ସ୍ଥିତି ଏବଂ ଗତି, ଉଭୟ ଉଭୟର ପରିପୂରକ । ସେ ଦୁଇ ନୁହନ୍ତି, ଏକ । ଏବଂ ସେଇ ଏକ ହେଉଛି ପରମ ରହସ୍ୟ ।



## ୨୭-୭-୮୬

"ଖୁଦା କି ଇନ୍‌ସାଫ ମେ ଦେର୍ ହେ ଅନ୍ଧେର୍ ନହିଁ ।" ଜୀବନରେ ଅନେକ ସମୟରେ ବିଡ଼ମ୍ବିତ ହେଲା ପରି ଲାଗେ - ମୁଁ ତ' ଜାଣିବାରେ କିଛି ଅନ୍ୟାୟ କରିନାହିଁ । କାହାରି ଅନିଷ୍ଟ କରିନାହିଁ । କାହିଁକି ମୋ ଜୀବନ ଏମିତି ସଂକଟମୟ, କାହିଁକି ବିପଦ ମାଡ଼ି ଆସୁଛି, କାହିଁକି ସାଧାରଣ ସମସ୍ୟାର ସମାଧାନ ହେଉନାହିଁ । ଅଥଚ ମୋ ଆଖିରେ ଅମୁକ ଲୋକ ସ୍ପଷ୍ଟ ଦିବାଲୋକରେ ସବୁପ୍ରକାର ଅନାଚାର କରି ପାରିହୋଇ ଯାଉଛି । ତା'ର ତ ଅନ୍ନବସ୍ତ୍ର କଷ୍ଟ ନାହିଁ । ତା'ର ପୁତ୍ରକନ୍ୟା ତ ବେଶ୍ ସୁବିଧାରେ ଅଛନ୍ତି । କାହିଁକି ଏପରି ହେଉଛି । ମୋ କଥା ମଣିଷଆଖିକୁ ସିନା ଦିଶୁନାହିଁ, ସମାଜରେ ମୁଁ ସିନା କାହା ପାଖରୁ ନ୍ୟାୟ ଆଶା କରିବି ନାହିଁ । ଆଉ

କିଏ କ'ଣ ଦେଖୁନାହିଁ ? ସର୍ବଦ୍ରଷ୍ଟା, କିଏ ଜଣେ ଅଛନ୍ତି ପରା ? ଏ ସୃଷ୍ଟିର ସମସ୍ତ ବ୍ୟବସ୍ଥା ପରା ତାଙ୍କରି ? ତାଙ୍କ ବିନା ନିର୍ଦ୍ଦେଶରେ ଗଛରେ ପତ୍ରଟିଏ ସୁଦ୍ଧା ହଲୁନାହିଁ । ତେବେ ଏକଥା କ'ଣ ? ତେବେ କ'ଣ ବୁଝିବାକୁ ହେବ ଯେ ପ୍ରବଳ ବଢ଼ିପାଣି ପରି ସେ ଅନ୍ଧଶକ୍ତି କାହାକୁ ମାରିବ, କାହାକୁ ତାରିବ । ତାକୁ କହି କିଛି ଲାଭ ନାହିଁ । ତାକୁ ଅବରୋଧ କରିବାର ଶକ୍ତି ନାହିଁ - ଏ କ'ଣ ସେଇୟା । ଏଭଳି ଯୁକ୍ତି ମନ ଭିତରେ ଆନ୍ଦୋଳିତ ହେବାର ଦୃଷ୍ଟାନ୍ତ ଅନେକ । ଏ ପ୍ରଶ୍ନର ଉତ୍ତର ସ୍ୱରୂପ କୁହାଯାଉଛି ଯେ, ଧୈର୍ଯ୍ୟ ଧର, ତୁମକୁ ନ୍ୟାୟ ଅବଶ୍ୟ ମିଳିବ । ତୁମର ଆତୁରତା ପାଇଁ ତାହା ବିଳମ୍ବିତ ହେଲାପରି ଲାଗୁଛି । କିନ୍ତୁ ଯଥା ସମୟରେ ସେ ନିୟନ୍ତା ପୁରୁଷ ଅବଶ୍ୟ ନ୍ୟାୟ ବିଧାନ କରିବେ । ଏତିକିରେ ରାଜିହୋଇ ମୁଣ୍ଡପୋତି ଅପେକ୍ଷା କରି ରହିବା କିଛି ସହଜ ବ୍ୟାପାର ନୁହେଁ । ଭିତରୁ ବିଦ୍ରୋହ ଗୁମୁରିବ । ଅବିଶ୍ୱାସ ସଂଶୟ ଅପଶକ୍ତିର ପ୍ରଲୋଭନ, ଧର୍ମ ଲଂଘିଯିବାର ଗୁପ୍ତ ଇଚ୍ଛା । ସବୁ ତୁମୁଳ କୋଳାହଳ କରି ଉଠିବେ । ଗୋଟିଏ ତରୁଣକୁ ନ୍ୟାୟଦେବା ନାଁରେ ବିଳମ୍ବରେ ହେଲେ ସୁଦ୍ଧ ଯଥାସମୟରେ କହି କହି, ଅଠଶଠି ବର୍ଷ ବେଳକୁ ବିବାହର ସୁଯୋଗ ଦେଲେ ଯାହାହୁଏ, ତାହାର କିଛି ଅର୍ଥ ନାହିଁ । ନ୍ୟାୟ ବିଳମ୍ବିତ ହୋଇଗଲେ ତାହା ନ୍ୟାୟ ନୁହେଁ । ଜୀବନ ସାରା କଷ୍ଟ ସହି ସହି ମରିଗଲା ପରେ ତା' ସପକ୍ଷରେ ବିଚାର ହୋଇ ସାମ୍ରାଜ୍ୟ ଅଜାଡ଼ି ଦେଲେ କ'ଣ ତାର ଅର୍ଥ । ଏଣୁ ଅନ୍ୟପକ୍ଷେ କୁହାଯାଉଛି - "Justice delayed is justice denied" - ହେ ଅନ୍ତର୍ଯ୍ୟାମୀ । ନିୟନ୍ତା ପୁରୁଷ । ତୁମକୁ ଆଉ ବେଶୀ କହିବାର ପ୍ରୟୋଜନ ଅଛି କି ? ଉତ୍ତାପ ଉତ୍ତେଜନା ଆବେଗ ଆଦି ସବୁ ଗୋଟାଏ ପ୍ରକାର ଉପଶମ ହୋଇଗଲେ ଯାହା ଦେଖାଦିଏ ତାହା ହୁଏତ ଘୋର ବିଷାଦ, ନୈରାଶ୍ୟ, କିନ୍ତୁ ସେଥିରୁ ମଧ୍ୟ ଉତ୍ତାପ ଚାଲିଗଲେ, ତାହା ଗୋଟାଏ ପ୍ରକାର ସମଭାବ, ଏକପ୍ରକାର Registration ରେ ସ୍ଥିର ହୋଇଯାଏ - ତେଣିକି ଈଶ୍ୱରେଚ୍ଛା, କାର୍ଯ୍ୟକାରୀ ହେବାକୁ ଉପଯୁକ୍ତ ଭୂମି ପ୍ରସ୍ତୁତ ହୁଏ । ବିଳମ୍ବିତ ନ୍ୟାୟ ନିକଟତର ହୁଏ । ଆଶ୍ଚର୍ଯ୍ୟବତ୍ ସଂକଟ ଦୂର ହୋଇଯାଏ, ଅନ୍ଧାର ତିରୋହିତ ହୋଇଯାଏ । ଏହା ପ୍ରତ୍ୟେକ ଜୀବର ଅନୁଭବ ସାପେକ୍ଷ ପ୍ରମାଣ - ସାପେକ୍ଷ୍ୟ ।



୨୮-୭-୮୬

ମନ ହିଁ ମୃତ୍ୟୁ ବିରୁଦ୍ଧରେ ପ୍ରଥମ ଅଭିଯାନ ଏବଂ ସର୍ବପ୍ରଥମ ବିଜୟ । ଇନ୍ଦ୍ରିୟ ଶରୀରାଶ୍ରୟୀ । ତାହା କେବଳ ବର୍ତ୍ତମାନକୁ ଏବଂ ଉପସ୍ଥିତକୁ ଗ୍ରହଣ କରିପାରେ । ଅବର୍ତ୍ତମାନ ଏବଂ ଅନୁପସ୍ଥିତ କେବଳ ମନଯୋଗ୍ୟ । ମନ କାଳକୁ ଲଂଘନ କରେ । ମନ ଧାରଣକ୍ଷମ ହୋଇଥିବାରୁ, ଯାହା କ୍ଷୟଶୀଳ ଏବଂ ଅତୀତ ତାକୁ ସ୍ମୃତିରୂପେ ଧରିରଖେ । ଯାହା ଅନାଗତ, ତାକୁ ବିଚାର ଏବଂ କଳ୍ପନାରେ ମୂର୍ତ୍ତ କରିଦିଏ । ମନ କାଳଜୟୀ, ଏଣୁ ଆଂଶିକ ଅର୍ଥରେ ମୃତ୍ୟୁଞ୍ଜୟୀ । ଅହନାହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ । ଦେଖିଲା ପରେ ମନ ତାକୁ ବିଶ୍ଳେଷଣ କରୁଛି । ଅପରିହାର୍ଯ୍ୟ ବୋଲି ଗ୍ରହଣ କରୁଛି, କିନ୍ତୁ ଅଜୋନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ଗୋଟିଏ ଅବିଚଳିତ ସତ୍ୟକୁ ନିର୍ଦ୍ଦେଶ ମଧ୍ୟ କରୁଛି । ଅମରତ୍ୱର ଧାରଣା, ଅମରତ୍ୱର ଭାବ ମନର ସୃଷ୍ଟି ମନ ମୃତ୍ୟୁକୁ

ଗୌଣ ଏବଂ ପରାସ୍ତ କରି ତା'ର ବିପରୀତ ସତ୍ୟକୁ ଅବଲୋକନ କରୁଛି । ତାର ସ୍ୱାର୍ଥ-ଚିନ୍ତା ଏକ ଉତ୍ତରଣ । 'Here and now' ରେ ଥାଇସୁଦ୍ଧା ମନ ସେ ସୀମାକୁ ଚିରକାଳ ଉଲ୍ଲଙ୍ଘନ କରୁଛି । ଇନ୍ଦ୍ରିୟ ମାଧ୍ୟମରେ ଉପସ୍ଥିତିଟିକୁ ସ୍ପର୍ଶକରି ମନ ଅନୁପସ୍ଥିତିରେ ମଜ୍ଜି ଯାଉଛି । ଇନ୍ଦ୍ରିୟାତୀତକୁ ଆହରଣ କରୁଛି । ମନକୁ ଇନ୍ଦ୍ରିୟମାନଙ୍କ ସୂକ୍ଷ୍ମ ରୂପ ଭାବିବା ଏକ ପ୍ରମାଦ । ମନକୁ ଏକ ଚଳମାନ ଶକ୍ତି ଭାବିବା ମଧ୍ୟ ପ୍ରମାଦ । ମନ ବିଶାଳ ଅକାଶ ପରି ପରିବ୍ୟାପ୍ତ ଏବଂ ସ୍ଥିର । ଚିନ୍ତାଗୁଡ଼ିକ ଦଳ ଦଳ ପକ୍ଷୀ ପରି ଦିଗ୍‌ବଳୟରୁ ଦିଗ୍‌ବଳୟକୁ ଉଡ଼ିଯିବା ତା'ର ଏକ ଆଚରଣ, ଏକ ସ୍ଥୂଳ ଲକ୍ଷଣ । ମନର ଦ୍ୱନ୍ଦ୍ୱ ବିମୁକ୍ତ ଅବସ୍ଥାରେ ମୃତ୍ୟୁ ପରାସ୍ତ । କାଳ ପ୍ରବାହ ସଂପୂର୍ଣ୍ଣ ସମାହିତ, ତ୍ରିକାଳ ଦ୍ରଷ୍ଟା ପୁରୁଷଙ୍କ ମନ ହିଁ ତାର ମୂଳ ରୂପ । ସେଇଠି ଜଗତ୍ ପ୍ରପଞ୍ଚର କୁକ୍ଷି ଭିତରେ ଉଦୟ ଅସ୍ତ ପରି ଜନ୍ମ ମୃତ୍ୟୁ ସବୁ ଅତି ଗୌଣ ଏବଂ ଅର୍ଥହୀନ ।



## ୨୯-୭-୮୬

Every placement has a relevance ପ୍ରତ୍ୟେକ ଅବସ୍ଥିତିର ଯଥାର୍ଥ୍ୟ ରହିଛି । ଆମ ଜୀବନର ଅସଂଖ୍ୟ ଘଟଣା ପରିସ୍ଥିତିରେ ଆମେ ସନ୍ତୁଷ୍ଟ ରହିପାରୁ ନାହିଁ । ଏପରି ନ ହୋଇ ଆଉ ପ୍ରକାରେ ହୋଇଥିଲେ, ହୁଏତ ଭଲ ହୋଇଥାନ୍ତା ବୋଲି ବିକଳ୍ପ ଚିନ୍ତା କରୁଥାଉ । ଆଶ୍ଚର୍ଯ୍ୟ ହୋଇଥାଉ ଯେ, ଆମେ ଯେଉଁ କଥାଟି ଏତେ ସହଜରେ ସୁଧାରିଦେଇ ପାରୁଛୁ ଆମ ବୁଦ୍ଧିରେ, ଭଗବାନ କେମିତି ତାକୁ ବୁଝିପାରୁ ନାହାନ୍ତି ଏବଂ ଆମ ମନକୁ ନ ଆଉଥିବା ଅସଂଖ୍ୟ ଭୁଲକରି ଚାଲିଛନ୍ତି । ତାଙ୍କ ରଚନାରେ ପାଦଟୀକା ଏବଂ ସଂଶୋଧନ ଟିପ୍‌ପଣୀ ଦେଇ ଚାଲିଥାଉ । କିନ୍ତୁ ବେଳେବେଳେ ସମଗ୍ର ଜିନିଷଟି ଅନ୍ୟ ପ୍ରକାରେ ଦେଖାଦିଏ । ଦେଶକାଳର କୌଣସି ଗୋଟିଏ ବିନ୍ଦୁକୁ ଏପାଖ ସେପାଖ କରିଦେଲେ ସେଇ ପରିମାଣରେ ସାରା ବିଶ୍ୱ ବଦଳିଯାଏ । ଜଣେ ବ୍ୟକ୍ତିର ଆଚରଣ, ଚରିତ୍ର, ମାନସିକତା, ସବୁ ଗୋଟିଏ ମାତ୍ର ଘଟଣା ଉପରେ ବଦଳି ଯାଇପାରେ । ଧରାଯାଉ ଗୋଟିଏ ଶିଶୁ ଜନ୍ମ ହେଲାବେଳକୁ ବାପ ମା ବର୍ଲିନ ସହରରେ ରହୁଛନ୍ତି । ସେଇ ଦେଶକାଳର ପ୍ରଭାବ ତା'ଉପରେ ପଡ଼ିବାକୁ ବାଧ୍ୟ ଏବଂ ସେଇ ପରିମାଣରେ ତା'ଜୀବନକୁ ସାମାନ୍ୟ ଅଲଗା ମୋଡ଼ ଦେବାକୁ ବାଧ୍ୟ । ଏଣୁ ଯାହା ଯେଉଁଠି ଅଛି ସେଇଠି ତାହା ଏକ ମୂଲ୍ୟ ବହନ କରେ । ତାକୁ ସ୍ୱୀକାର କରିବା ଉଚିତ୍ ।



## ୩୧-୭-୮୬

ମାଙ୍କଡ଼ଟିଏ ଅନାୟାସରେ ଡାଳରୁ ଡାଳକୁ ଡେଇଁ ଚାଲିଗଲା ବେଳେ ଆମେ ତାକୁ ଆଦୌ ଈର୍ଷାକରୁ ନାହୁଁ । କିନ୍ତୁ ଜଣେ ଚତୁର ମଣିଷ ତା ବୁଦ୍ଧିବଳରେ ପାହ୍ୟାରୁ ପାହ୍ୟାକୁ, ପଦବୀରୁ ପଦବୀକୁ ଉଠିଗଲା

ବେଳେ ଆମେ ତା ବିରୁଦ୍ଧରେ ମୁଖରହୋଇ ଉଠୁ । ସେ ତଦ୍ୱାରା, ଯାହା ଧନ, ମାନ, ଯଶ ଲାଭକଲା ସେ ସମସ୍ତ ଆମର ପ୍ରାପ୍ୟ ବୋଲି ଜଗତ ବ୍ୟବସ୍ଥାରେ ଅନାସ୍ଥାପ୍ରକାଶ କରୁ । ବିଧି ନିନ୍ଦାକରୁ । ଏପରି ହେବାର କାରଣ ହେଲା ଯେ ପଦ ପଦବୀର ମୋହ ଆମର ଅଛି । କିନ୍ତୁ ସେଇଠି ପହଞ୍ଚି ପାରିବାର ସାମର୍ଥ୍ୟ ଆମର ନାହିଁ । ଖଚ ମିଛ କହି ବିଭିନ୍ନ ଲୋକଙ୍କୁ ବିଭିନ୍ନ ଉପାୟରେ ସନ୍ତୁଷ୍ଟ କରିପାରିଲେ ଯଦି ତାହା ମିଳୁଥାଏ, ସେଥିପାଇଁ ତାହା ଏକ ସାମର୍ଥ୍ୟ - ଆମେ ସେଥିରେ ଅଧିକାରୀ ନୋହୁଁ । ଏଣୁ ମାଙ୍କଡ଼ର ଭଙ୍ଗଡାଳରେ ବସିବାର ଗୌରବକୁ ଯେଉଁଭଳି ଆମେ ଅଯୋଗ୍ୟ, ଅବାନ୍ତର ଜ୍ଞାନ କରି ଅବହେଳା କରୁ, ସେଭଳିକି ଚତୁର ମଣିଷମାନଙ୍କର ଧନମାନକୁ କୌଣସି ମୂଲ୍ୟ ନ ଦେଇ ସ୍ଥିର ରହିବାକୁ ହେବ, ନ ହେଲେ ଅନେକ ଜ୍ୱାଳା ଯନ୍ତ୍ରଣା ଭୋଗିବା ଅନିବାର୍ଯ୍ୟ । ଅତି ପ୍ରାଞ୍ଜଳଭାବରେ ମାନିନେବାକୁ ହେବ ଯେ, ସେ ପ୍ରକାର ଯୋଗ୍ୟତା ଆମର ନାହିଁ । ଏଣୁ ସେ ପ୍ରକାର ଫଳ ପ୍ରାପ୍ତି ପାଇଁ ବୃଥା ମୋହ ପ୍ରକାଶ କରିବା ଅବାନ୍ତର ।



## ୨୮-୮-୮୬

ବିରୋଧ ବୋଲି ବାହାରେ କିଛି ନାହିଁ । ବାହାର ଜଗତ୍‌ଟା ତ ଖୁବ୍ ମୁକ୍ତ, ଖୋଲା । ଆପାତଦୃଷ୍ଟିରୁ ଅସଂପୃକ୍ତ । ସେଠି ଯେ ଯାହାର ଗତି ପଥ ଧରି ଚାଲିଥାନ୍ତି । ଦୁଇଟି ବସ୍ତୁ ବା ବ୍ୟକ୍ତି ଏକାଠି ରହିବାର ପ୍ରୟାସରେ ନିଜ ନିଜର ସ୍ୱତନ୍ତ୍ରତାକୁ ବିଲୀନ କରି ପାରନ୍ତି ନାହିଁ । ସେଥିପାଇଁ ଶେଷ ପର୍ଯ୍ୟନ୍ତ ସେମାନେ ପୃଥକ୍ ରହିବାକୁ ବାଧ୍ୟ । ତାଙ୍କ ଭିତରେ ପ୍ରବାହ ତାଙ୍କୁ ଅନ୍ୟ ଦିଗରେ ଭସାଇ ନେଇଯିବାକୁ ସତତ ଚେଷ୍ଟିତ । ଅତଏବ ପ୍ରକୃତ ବିରୋଧ ହୁଏ କେବଳ ଭିତରୁ, ନିଜର ସତ୍ତାଟି ବିଭାଜିତ ହୋଇ ପକ୍ଷ ସୃଷ୍ଟି କରେ । ସପକ୍ଷ ବିପକ୍ଷରେ କୁରୁ ପାଣ୍ଡବ ଯୁଦ୍ଧ ଚାଲିଥାଏ, ଚିରକାଳ । କେବଳ ଏତିକି ସାନ୍ତ୍ୱନା ଯେ ରଣଭୂମିର ଅସଂଖ୍ୟ ଯୋଦ୍ଧାଙ୍କ ଭିତରେ କେଉଁଠି ହୁଏତ କୌଣସି ଏକ ରଥର ସାରଥୀ ଜଣକ ଅନନ୍ୟ, ଅନେକ ଆବର୍ତ୍ତ ପ୍ରପାତ ଏବଂ କୁମ୍ଭୀର ମକର ଦ୍ୱାରା ଅଧ୍ୟୁଷିତ ନଦୀ ଭିତର ଦେଇ କୁଶଳୀ କାଣ୍ଡାରୀ ନାଆ ପାରି କଲାପରି ନିଜ ଭିତରର ବିରୋଧ ଭିତର ଦେଇ ପାଣ୍ଡବଙ୍କୁ କେହି ଜଣେ ପାରିକରି ଦେଉଥିବା ହିଁ ସାନ୍ତ୍ୱନା । ଅତଏବ ଯେଉଁଠି ସପକ୍ଷ, ସେଇ ଗୋଟିଏ ଭୂମି ଉପରେ ହିଁ ବିପକ୍ଷ ଠିଆ ହୋଇଥାଏ, ରେ ରେ କାର କରୁଥାଏ, ପରାସ୍ତ କରୁଥାଏ, ଉତ୍ତେଜିତ ପ୍ରତିଷ୍ଠିତ ବି କରୁଥାଏ । ବିପକ୍ଷଟି ବ୍ୟକ୍ତି ସତ୍ତାର ଅଂଶ - ଅବିଚ୍ଛେଦ୍ୟ ଏବଂ ଅନିବାର୍ଯ୍ୟ । ସେ କ୍ଷତ ବିକ୍ଷତ କରୁଥାଏ, ଆଘାତ କରୁଥାଏ । ତାଙ୍କୁ ନିଷ୍କ୍ରିୟ ବି କରିଦେଇ ପାରେ । ନିଜେ ନିଜ ଜଟିଳତାରେ ବଣଜନ୍ତୁ ପରି ଜୀବନ ବ୍ୟର୍ଥ ବି ହୋଇପାରେ । ସେଥିପାଇଁ ଶରଣାପନ୍ନ ହେବାକୁ ପଡ଼େ । ସବୁ ଯୁଦ୍ଧରେ ତ ସେ ସାରଥୀ ହେବାର ପ୍ରମାଣ ନାହିଁ । ନିର୍ଭରକରି ଶିଖିଲେ, ଧର୍ମ ପକ୍ଷକୁ କେବଳ ଆଶ୍ରୟ କଲେ, ଧାର୍ମିକ ପାଇଁ ନ ହେଲେ ସୁଦ୍ଧା ଧର୍ମ ରକ୍ଷାପାଇଁ ସେ ନିର୍ଦ୍ଦିଷ୍ଟ ଭୂମିକା ଗ୍ରହଣ କରନ୍ତି ଏବଂ ନିର୍ଦ୍ଦିଷ୍ଟ ଶକ୍ତି କାର୍ଯ୍ୟକରେ ସପକ୍ଷ ବିପକ୍ଷର ଊର୍ଦ୍ଧ୍ୱରେ, ଉଭୟକୁ ଧାରଣ କରି ।



ନରେନ୍ ପଚାରିଲେ - 'ଆପଣ ଈଶ୍ୱରଙ୍କୁ ଦେଖିଛନ୍ତି' ? ରାମକୃଷ୍ଣ ଉତ୍ତର ଦେଲେ, "ହଁ ଦେଖିଛି" । ଉତ୍ତରରେ ଦ୍ୱିଧା ନାହିଁ, ସଙ୍କୋଚ ନାହିଁ, ସ୍ପର୍ଦ୍ଧା ନାହିଁ, ଅତି ସାଧାରଣ, ସାମାନ୍ୟ ନିରୁଦ୍‌ବିଗ୍ନ ଉତ୍ତର । କିନ୍ତୁ ଜଗତ୍‌ବାସୀଙ୍କୁ ଚମକୃତ କଲା ଭଳି ବିସ୍ମୟ ବିମୂଢ଼ ଏବଂ ଅଧିକାଂଶ କ୍ଷେତ୍ରରେ ସଂଶୟ ଓ ଅବିଶ୍ୱାସରେ ତାକୁ ଅଗ୍ରାହ୍ୟ କଲା ଭଳି ଉତ୍ତର । ଆଚ୍ଛା, ସେ ଯଦି ଈଶ୍ୱରଙ୍କୁ ଦେଖିଛନ୍ତି, କେମିତି ଦେଖିଛନ୍ତି ? ଏଇ ଆଖିରେ ଆମେ ତୁମେ ଦେଖିଲା ପରି, ନା ଆଉ କେମିତି ଅନ୍ୟ ପ୍ରକାର ଦେଖିଛନ୍ତି ? ସେ କ'ଣ ତାହେଲେ ଦର୍ଶନେନ୍ଦ୍ରିୟର ବିଷୟୀଭୂତ । ଏଣୁ ଗୁଣ ଏବଂ ରୂପାକୃତି ବିଶିଷ୍ଟ ? - ସେ କେମିତି ଦେଖିବାକୁ ? ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରୀ, ପଦ୍ମ ପଲାଶ ନେତ୍ର ହାର କେୟୁର ମଣ୍ଡିତ ନବନିରଦକାନ୍ତି, ନା ଆଉ କେମିତି ? ଅତି ସହଜ, ସରଳ ଅନାୟାସ ଉତ୍ତରଟିଏ ଦେଲେ ପରମହଂସ, କିନ୍ତୁ ଆମେ ପଡ଼ିଲୁ ହଇରାଣରେ । ଆମ ଭିତରେ କଥା ପଡ଼ିଲା, ଆଚ୍ଛା ଭାଇ ଏ ଯେଉଁ ଅକଳ୍ପନୀୟ ମହାକାଶ ଗର୍ଭରେ କୋଟି କୋଟି ତାରକା ପିଣ୍ଡ ଆମ ଆଖିକୁ ଦେଖାଯାଉଛି ଏହାର ସ୍ରଷ୍ଟା କ'ଣ ପୃଥିବୀରେ ମଣିଷ ନାମକ ଏକ ପାର୍ଥିବ କ୍ଷଣସ୍ଥାୟୀ ଜୀବର ଆଖିରେ ଦିଶିବା ଏବଂ ଅବଧାରଣ କଲାଭଳି ରୂପ ପରିଗ୍ରହ କରିପାରନ୍ତି ? ଯଦି ସେ ଏଇଠି ପରମହଂସଙ୍କୁ ଦେଖା ଦେଉଛନ୍ତି ଏବଂ ସେଇ କାରଣୁ ଉପସ୍ଥିତ ଅଛନ୍ତି, ତା'ହେଲେ ଏତେବଡ଼ ବିଶ୍ୱରେ ସେ କ'ଣ କେବଳ କେତେକ୍ଷଣ ଅନୁପସ୍ଥିତ ରହୁଛନ୍ତି ? ବୋଧହୁଏ କଥାଟା ଅନ୍ୟପ୍ରକାର । ସେ ଆଦୌ ଏ ଦୃଶ୍ୟମାନ ସତ୍ତାଠାରୁ ଭିନ୍ନ ନୁହଁନ୍ତି । ସେ ହିଁ ନିଜକୁ ନିଜେ ଏପରି ବିପୁଳ ଆୟତନରେ ଗଢ଼ିଛନ୍ତି, ବିକୀର୍ଣ୍ଣ ହୋଇ ପଡ଼ିଛନ୍ତି । ଇଚ୍ଛାରୁ ଶକ୍ତି, ଶକ୍ତିରୁ ରୂପ ସକଳ ଉତ୍ପନ୍ନ ହୋଇ ସେଇ ଶକ୍ତି ବଳରେ ଜଗତ୍ ପ୍ରବାହରେ ଏ ସମସ୍ତ ଉଦୟ ଅସ୍ତ ହେଉଛନ୍ତି । ସେ ସ୍ୱୟଂ ନିମିତ୍ତ ଏବଂ ଉପାଦାନ କାରଣ । ଏପରି ଶାସ୍ତ୍ରେ, କହୁଛନ୍ତି, ଋଷି କହୁଛନ୍ତି । ରେଣୁ ରେଣୁରେ ସେ ହିଁ ବିଦ୍ୟମାନ । କିନ୍ତୁ ତାକୁ ଅନୁଭବ କରି ହେଉନାହିଁ ତ' । ଆମେ ଚାହୁଁଛୁ ପ୍ରତ୍ୟକ୍ଷ କରିବାକୁ, ଆମ ବିଚାର ଆୟତନ ଭିତରେ ଧରା ଦେବାକୁ । ମୋଟ ଉପରେ ଆମେ ଅପ୍ରମେୟର ପ୍ରମାଣ ଚାହୁଁଛୁ । ସେ କେଉଁ ଗୁମ୍ଫା ଭିତରେ ଉତ୍ତମ ରହସ୍ୟ ରୂପେ ଲୁଚି ରହିଛନ୍ତି ବୋଲି କହିଲେ ସୁଦ୍ଧା ଖୋଜିବା ଛାଡ଼ି ପାରୁନାହୁଁ । କେମିତି ଟିକେ ଈଶ୍ୱରଙ୍କୁ ଦେଖି ଦିଅନ୍ତେ କି ? ଦୁଇଟି ବ୍ୟକ୍ତିଙ୍କ କଥା ଏଠି କୁହାଯାଉ - ଜଣେ ପଚାରୁଛି - ହେଲା, ଜଳ, ସ୍ଥଳ, ଆକାଶ ତୁମେ ହିଁ ପରିପୂର୍ଣ୍ଣ ହୋଇ ରହିଛ । ମୋ ଭିତରେ ବାହାରେ ରକ୍ତକଣିକା, ରକ୍ତପ୍ରବାହ, ଚିନ୍ତା କଳ୍ପନା ସମସ୍ତଙ୍କୁ ଆଚ୍ଛନ୍ନକରି ତୁମେ ହିଁ ବିଦ୍ୟମାନ । ତଥାପି ମୋତେ ପୁଣି ସ୍ୱତନ୍ତ୍ର ସତ୍ତାଟିଏ ଦେଇ ତଦ୍‌ବିଷୟକ ବୁଦ୍ଧି ମଧ୍ୟ ଦାନ କରିଛ । ମୁଁ ଚିନ୍ତା କରି ପାରୁଛି । ମୋର ଚିନ୍ତନୀୟ ସହସ୍ରେ ବିଷୟ ଭିତରେ ତୁମେ ହୁଏତ ଏକ । ଏ ସହସ୍ରେ ମଧ୍ୟ ତୁମେ, ତଥାପି ମୁଁ ତ ଆଉ ଏତେ ସ୍ଥିରଚେତା ନୁହେଁ ଯେ ସମସ୍ତ ଭିତରେ ତୁମକୁ ଦେଖି ଦେଲା ପରେ ନୀରବ ହୋଇଯିବି । ମୁଁ ଚାହେଁ ସେଇଠି ପହଞ୍ଚିବାକୁ । ବାଟ କ'ଣ ? କେମିତି ତୁମକୁ ପ୍ରଥମେ ଚିନ୍ତା କରିବି ? "କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ ମୟା" । ତା'ର ଉତ୍ତରରେ ତାକୁ କେବଳ ଶୀର୍ଷବିନ୍ଦୁ ଗୁଡ଼ିକ ଦେଖେଇ ଦେଇଛନ୍ତି । ଶ୍ରେଷ୍ଠ ଭିତରେ ହିଁ ମୋତେ ଖୋଜ ବୋଲି ସୂଚନା ଦେଇଛନ୍ତି । ସେ ଖୋଜିଛି ଆମେ ବି ସହସ୍ର ବର୍ଷ ଧରି ଖୋଜୁଛୁ । ଶିଖ ଅସଂଖ୍ୟ, ଏଣୁ ରୂପ ଅନେକ । ତା ଭିତରେ ଅଖଣ୍ଡେକ ସତ୍ତାକୁଦେଖି ହେଉନାହିଁ । ଆଉ

ଜଣେ ପଚାରିଲେ – ହେ ଯାଜ୍ଞବଲ୍କ୍ୟ – ଈଶ୍ୱରଙ୍କ ପ୍ରମାଣ କ'ଣ, ସେ ଆକାଶକୁ ନିର୍ଦ୍ଦେଶ କରି କହୁଛନ୍ତି ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି । "ସୂର୍ଯ୍ୟା ଚନ୍ଦ୍ରମସୌ ବିଧୃତୋ ତିଷ୍ଠତଃ" । ପୁଣି ଧରିତ୍ରୀକୁ ଦେଖେଇ କହୁଛନ୍ତି – ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ପ୍ରାଚ୍ୟୋନ୍ୟାଃ ନଦ୍ୟଃ ସ୍ୟନ୍ଦନ୍ତେ" । ଏଇ ପ୍ରମାଣ । ମହାଶୂନ୍ୟରେ ବର୍ତ୍ତୁଳ ପିଣ୍ଡମାନେ ଝୁଲି ରହିଛନ୍ତି । ଗଂଗାଦି ସରିତ୍‌ମାନେ ନିମ୍ନମୁଖ ପ୍ରବାହିତ ହେଉଛନ୍ତି । ଅଗ୍ନି ଦାହ କରୁଛି, ପବନ ଶୀତଳ ବହୁଛି । ଯେ ଯାହା ଧର୍ମ ଆଚରଣ କରି ଚଳୁଛନ୍ତି । ପ୍ରତ୍ୟେକ ଗଛ ଅନ୍ୟ ଗଛଠାରୁ ଭିନ୍ନ । ପ୍ରତ୍ୟେକ ପତ୍ର ଫୁଲ, ଫଳ, ସ୍ୱତନ୍ତ୍ର ସ୍ୱାଦ, ରୂପ, ଆକାର ଭେଦରେ ଅନ୍ୟ ଠାରୁ ସ୍ୱତନ୍ତ୍ର । ସମସ୍ତଙ୍କୁ କିଏ ପ୍ରଶାସିତ କରୁଛି ? ଏ କିମ୍ଭୁତ ବିସ୍ମୟକର ବସ୍ତୁକୁ ଦେଖ ଏବଂ ଚେତନାର ଚକ୍ଷୁରେ ତାକୁ ବିଦ୍ୟୁତ୍ ଝଲକ ପରି ଆଉ ପ୍ରକାରେ ଗୋଟିଏ ମୁହୂର୍ତ୍ତେ ଦେଖ । ସେଇ ବୋଧହୁଏ ଈଶ୍ୱରଙ୍କୁ ଦେଖିବା ... ।



୨୯-୯-୮୬

ମଣିଷକୁ ବାଦ୍‌ଦେଲେ ଆମ ଚାରିପାଖେ ଗୁଡ଼ିଏ ପରିଚିତ ଅଥଚ ମୂକ ବସ୍ତୁ ବେଢ଼ି ରହିଥିବାର ଅନୁଭବ ହୁଏ । ଘର, ବାଡ଼ି, ରାସ୍ତାଘାଟ, ସହର ବଜାର, ମନ୍ଦିର, ନଦୀ ପର୍ବତ ଏବଂ ଫୁଲ ଫଳରେ ମଣ୍ଡିତ ହୋଇଥିବା ଗଛଲତା । ଆମେ ମଣିଷଙ୍କୁ ନେଇ, ତାଙ୍କ ସହିତ ସଂପର୍କକୁ ନେଇ ଏତେ ବ୍ୟସ୍ତ ରହିଥାଉ ଯେ ଏମାନଙ୍କୁ ସ୍ୱତନ୍ତ୍ରଭାବରେ ଦେଖିବାର ଅବସର ନଥାଏ । ସେମାନଙ୍କୁ ଦେଖିଲେ ଦୁଇପ୍ରକାର ଭାବନା ମନରେ ଆସେ । ଗୋଟିଏ ହେଲା ଯେ ସେମାନେ ସଂପୂର୍ଣ୍ଣ ଅସଂପୃକ୍ତ । ମୁଁ ଥିଲେ ନ ଥିଲେ ସେମାନଙ୍କର କିଛି ଯାଏ ଆସେ ନାହିଁ । ଏଇ ରାସ୍ତା ଏଇଭଳି ଉତ୍ତରରୁ ଦକ୍ଷିଣକୁ ବିସ୍ତୃତ ହୋଇ ରହିଥିବ । ବିଭିନ୍ନ ପ୍ରକାର ଯାନବାହନ, ମଣିଷ, ବୁଢ଼ା, ପିଲା ଏଇବାଟେ ଯାଉଥିବେ । ମୁଁ ଯେ ଅନୁପସ୍ଥିତ ତାହାକୌଣସି ପ୍ରକାରେ ଜଣାପଡୁ ନଥିବ । "ଯଖନ୍ ପଡ଼ବେନା' ମୋର ପାୟେର୍ ଚିହ୍ନ ଏହିବାଟେ ।" ଏ ଗଛ ସେମିତି ଥିବ । ଏ କୋଠାବାଡ଼ି, ବଗିଚା, ସବୁ ପଡ଼ି ରହିଥିବ । କେବଳ ମୁଁ ହିଁ ନଥିବି । ଛାଡ଼, ନଗଣ୍ୟ ମଣିଷଟିଏ ମୁଁ । କ'ଣ କାହାର ଯାଏ ଆସେ ମୁଁ ଥିଲେ ବା ନ ଥିଲେ ? ଅନ୍ୟ ପ୍ରକାର ଭାବନା ହେଲା ଯେ କେଡ଼େ ସୁନ୍ଦର ଏ ପୃଥିବୀ, ଏ ଗଛଲତା । ଯେମିତି "ପିତାର ଧନେ ଆମାର ପୂର୍ଣ୍ଣ ଅଧିକାର" ଏ ବସୁନ୍ଧରା ସତେ ଯେପରି ମୋତେ ଅତି ଆପଣାର କରିନେଇଛି । ଏ ସବୁ ଛାଡ଼ିଯିବାର ସମୟ ଆସିଗଲା ବୋଲି ଏମିତି ପ୍ରିୟ ଦେଖାଯାଉଛି ନା', ଆଉ କ'ଣ ଭିତରେ ହୁଏ ବୋଲି ଦୃଷ୍ଟିରେ ଅଞ୍ଜନ ବଦଳି ଯାଉଛି, କହି ହେଉନାହିଁ । ହୋଇପାରେ ଯେ, ଏପରି ଆପଣାର, ଏପରି ସୁନ୍ଦର, ମଧୁର ଦେଖାଗଲାବେଳେ, ଭିତରୁ ଏବଂ ବାହାରୁ କିଛି ପରଳ ଖସିବା ଫଳରେ, ଏ ଗୋଡ଼ିମାଟିରେ, ଗଛ ପତ୍ରରେ ପ୍ରିୟତମ ବିମ୍ବିତ ହୁଅନ୍ତି । ମୋଟ ଉପରେ ଭିତର ସତ୍ୟ, ବାହାର ସତ୍ୟକୁ ଆବିଷ୍କାର କରି ତା ସହିତ ଏକାକାର ହୋଇଯାଏ । ବହୁକାଳ ଧରି ଉପେକ୍ଷିତ ହୋଇ ପଡ଼ିଥିବା ପୃଥିବୀକୁ ମୋର ବୋଲି ଆଲିଙ୍ଗନ କଲାବେଳକୁ ହୁଏତ ଯବନିକା ପଡ଼ିଯିବା ପରି ଲାଗେ । ଏ ଭିତରେ ଏଇଠୁ ବିଦାୟ ନେବାକୁ ହୁଏ । ତାହା ହିଁ ବିଡ଼ମ୍ବନା । ଅପରିଚିତକୁ ଠିକ୍ ଚିହ୍ନି ଆସିଲା ବେଳକୁ

ବିଦାୟ । ଲୁଚକାଳି ଖେଳିବାର ଅଭ୍ୟାସ ଯେ କରିଛି ସେ ଇଷ୍ଟ ଧରା ହେବ ନାହିଁ । କାରଣ ସେଥିରେ ତା'ର ଖେଳ ଭଣ୍ଡୁର ହୋଇଯିବ । କିନ୍ତୁ ମଝିରେ ମଝିରେ ଏଠି ସେଠି ମୁହଁ ଗଳେଇ ଚାହିଁ ନ ଦେଲେ ମଧ୍ୟ ଖେଳ ଚାଲିପାରିବ ନାହିଁ । ତେଣୁ ଏ ବ୍ୟବସ୍ଥା ମନ୍ଦନୁହେଁ, ବ୍ୟବସ୍ଥା ତ ଆୟତ୍ତ ବାହାରେ । ତାର ନିୟନ୍ତ୍ରଣ ଆଉ କୋଉଠି । ଏଠି କିଛି ଭଲମନ୍ଦ କହିବାର ଅର୍ଥ ବି ନାହିଁ । ତେବେ ଚାରିଆଡ଼େ ଏମିତି ହସ ହସ ପୃଥିବୀକୁ ଚାହିଁରହି ସେ ପ୍ରବୀଣ ଖେଳାଳୀକୁ ଠଉରେଇବାର ଆନନ୍ଦ ଯେତେବେଶୀ କାଳ ରହିପାରିଲା, ଆମର ସୌଭାଗ୍ୟ ସେତେ ବେଶୀ ବୋଲି କହିବା ।



## ୩-୧୦-୮୬

### (ମହାଳୟା)

ପିତୃଲୋକ ଅଛି କି ନାହିଁ, ପିତୃପୁରୁଷ ଅଛନ୍ତି ନା ନାହାନ୍ତି ? – ଏହାର ନିର୍ଦ୍ଦିଷ୍ଟ ପ୍ରାମାଣିକ ଉତ୍ତର ଦେବା ଅନୁଭବୀ ପାଇଁ ସମ୍ଭବ ନୁହେଁ । ସ୍ଥାନ କାଳ ନିର୍ବିଶେଷରେ, ଧର୍ମ ବିଶ୍ୱାସ ଯାହା ହେଉନା କାହିଁକି, ଅରଣ୍ୟର ଆଦିବାସୀଠାରୁ ଆରମ୍ଭ କରି ଅତ୍ୟାଧୁନିକ ଶିକ୍ଷିତ ସମାଜ ପର୍ଯ୍ୟନ୍ତ ସର୍ବତ୍ର ସେଇ ଗୋଟିଏ ବିଶ୍ୱାସ ରହିଛି ଯେ, ମୃତ୍ୟୁ ପରେ କୌଣସି ଏକ ସତ୍ତା ବିନଷ୍ଟ ନ ହୋଇ ଉଦ୍‌ବୃତ୍ତ ରହିଯାଉଛି । ଅନେକଙ୍କର ସେ ବିଷୟରେ ପ୍ରତ୍ୟକ୍ଷ ଅନୁଭବ ମଧ୍ୟ ରହିଛି । ତେବେ କୌଣସି ଅନୁପସ୍ଥିତ ବ୍ୟକ୍ତିଙ୍କୁ ତାଙ୍କ ପରିବାରର ବ୍ୟକ୍ତିମାନେ ସ୍ମରଣକରି ଯେମିତି ଅନୁଭବ କରି ପାରନ୍ତି ଏବଂ ପ୍ରବାସରେ ସେ ନିଶ୍ଚିତଭାବେ ଅଛନ୍ତି ବୋଲି ବିଶ୍ୱାସ କରନ୍ତି, ସେପରି ହୁଏତ ତାଙ୍କର ପୋଷା କୁକୁର ବା ଶୁଆ ଅନୁଭବ କରିପାରିବ ନାହିଁ । ସେଥିପାଇଁ ଉନ୍ନତ ଚେତନା, ବିକଶିତ ମନ ଓ ବୁଦ୍ଧିର ପ୍ରୟୋଜନ, ସୂକ୍ଷ୍ମଗ୍ରାହିକା ଶକ୍ତିର ପ୍ରୟୋଜନ । ଆମ କାନକୁ ଶୁଣାଯାଉ ନଥିବା ଶବ୍ଦକୁ ସୂକ୍ଷ୍ମଯନ୍ତ୍ର ଶୁଣିପାରେ, ଦେଖାଯାଉ ନଥିବା ଆଲୋକ, ରଶ୍ମିକୁ ମଧ୍ୟ ଦେଖିପାରେ । ଏଣୁ କୌଣସି ସୂକ୍ଷ୍ମରାଜ୍ୟର ଅନୁଭବ ପାଇଁ ଗୋଟାଏ ପ୍ରକାର ସୂକ୍ଷ୍ମଚେତନାର ପ୍ରୟୋଜନ ରହିଛି । ସେଥିପାଇଁ ବୋଧହୁଏ ସମସ୍ତେ ପିତୃଲୋକ ବିଷୟରେ ପ୍ରତ୍ୟକ୍ଷ ଅନୁଭବ ପାଆନ୍ତି ନାହିଁ । ଧରାଯାଉ ପିତୃଲୋକ ଅଛି, ତେବେ କେଉଁଠି ଅଛି ? ଏଇଠି ଯାହା ଆମକୁ ଆମ ଇନ୍ଦ୍ରିୟ ମାଧ୍ୟମରେ ଦେଖାଯାଉଛି । ତାହା ହିଁ ତା'ର ଏକମାତ୍ର ରୂପ ନୁହେଁ । ଜନ୍ମାନ୍ଧ ପାଇଁ ଏ ଦୁନିଆ ସଂପୂର୍ଣ୍ଣ ଅନ୍ୟପ୍ରକାର । ସେପରି ଏ ଲୋକ ହିଁ, ଚେତନାର ତାରତମ୍ୟ ଘଟିଲେ, ବିଭିନ୍ନ ଲୋକରେ ପରିଣତ ହୋଇ ଅନୁଭୂତ ହୁଏ । ଦିବ୍ୟଲୋକ, ସତ୍ୟଲୋକ ମଧ୍ୟ ଏହି । ତାକୁ ପ୍ରତ୍ୟକ୍ଷ କରୁଥିବା ବ୍ୟକ୍ତି କହନ୍ତି 'ସର୍ବମ୍ ଖଦ୍ୱିଦମ୍ ବ୍ରହ୍ମମ୍' । ତାଙ୍କୁ କେବଳ ବ୍ରହ୍ମ ହିଁ ଦେଖାଯାଏ ସେହିପରି ପିତୃ ଅନୁସାରୀ, ପିତୃ ଅନୁକୂଳ ଚେତନା ଭିତରେ ପିତୃପୁରୁଷଙ୍କୁ ସାକ୍ଷାତ କରାଯାଇ ପାରେ । କାଳ ଏକ ପ୍ରତୀତି । ଯାହା ଅତୀତ ଏବଂ ଅନୁପସ୍ଥିତ ବୋଲି ଆମେ ଭାବୁ ତାହା ମଧ୍ୟ ଅଛି । କେବଳ ଯୋଗାଯୋଗ କଲେ ହେଲା । ମୃତ୍ୟୁ ଯଦି କୌଣସି ଘଟଣା ନ ହୋଇ ଏକ ଜୀବନ ପରିପୂରକ ଛନ୍ଦପ୍ରବାହ, ତେବେ ଆମେ ମରଣୋତ୍ତର ଜଗତରେ କ୍ରମଶଃ ପ୍ରବେଶ କରି ଚାଲିଥାଉ ଏବଂ ଗୋଟାଏ ବିନ୍ଦୁରେ ସଂପୂର୍ଣ୍ଣ ପ୍ରବେଶ କରିଯାଉ । ଠିକ୍ ଯେପରି ଗୋଟିଏ ପରସ୍ଥିତିରୁ ଆଉ ଗୋଟିଏ ପରିସ୍ଥିତିକୁ, ଗୋଟିଏ ପ୍ରକୋଷ୍ଠରୁ ଆଉ

ଗୋଟିଏ ପ୍ରକୋଷ୍ଠ ଭିତରକୁ ଗତିକଲା ବେଳେ ନୂତନ ପରିସ୍ଥିତି ବା ପ୍ରକୋଷ୍ଠ, ଆସିବା ପୂର୍ବରୁ ହିଁ ଆମେ ତା' ଭିତରେ କ୍ରମଶଃ ପ୍ରବେଶ କରି ଚାଲିଥାଉ । ଅନାଗତର ଛାୟାପାତ ହେଉଥାଏ, କ୍ରମଶଃ ଗାଢ଼ତର ହେଉଥାଏ ଏବଂ ପରିଶେଷରେ ତାହା ଆସିଥାଏ । ମଧ୍ୟାହ୍ନରେ ଥାଇସୁଦ୍ଧା କ୍ରମଶଃ ମୁହୂର୍ତ୍ତ ମୁହୂର୍ତ୍ତକର ବ୍ୟବଧାନରେ ରାତ୍ରି ପ୍ରବେଶ କରୁଥାଏ । ସୂର୍ଯ୍ୟ ମଳିନ ହୋଇ ଚାଲିଥାଏ ଏବଂ ଗୋଟାଏ ବିନ୍ଦୁରେ ସଂପୂର୍ଣ୍ଣ ରାତ୍ରି ବିରାଜମାନ କରେ । ତା'ଭିତରେ ଆଲୋକର ଆଦିସଂଚାର ହୁଏ, କ୍ରମେ ବଢ଼ି ବଢ଼ି ସୂର୍ଯ୍ୟୋଦୟ ହୁଏ । ମୋର ଅକଳନୀୟ ପିତୃପୁରୁଷଙ୍କୁ ମୁଁ ସ୍ୱୀକାର କରୁଛି । ଗୁରୁଯୁଗଳଙ୍କୁ ଶ୍ରୀମା ଶ୍ରୀଅରବିନ୍ଦଙ୍କୁ ପ୍ରତ୍ୟକ୍ଷବତ୍ ପ୍ରଣାମ କରୁଛି ।



## ୨୬-୧-୮୭

ସେ ଆମ ଗହଣରେ ରୂପ ପରିଗ୍ରହ କରିଥିବା ବେଳେ ଆମେ ତାଙ୍କୁ ଚିହ୍ନି ପାରୁନା । "ଅବଜାନନ୍ତି ମାଂ ମୂଢ଼ାଃ ମାନୁଷୀଂ ତନୁମାଶ୍ରିତମ୍ ।" ମଣିଷଟାଏ ତ, ଏ ଆଉ ପରମେଶ୍ୱର କିପରି ହୋଇ ପାରିବେ ? ଅତି ପାଖଲୋକ ମଧ୍ୟ ନ ଚିହ୍ନିବାର ଅପରାଧ କରନ୍ତି । "ସଖେତିମତ୍ୱା ପ୍ରସଭଂ ଯଦୁକ୍ତଂ ହେ କୃଷ୍ଣ, ହେ ଯାଦବ ହେ ସଖେତି, ଅଜାନତାମହିମାନଂ ତବେଦଂ ମୟା ପ୍ରମାଦାତ୍ ପ୍ରଣୟେନ ବାପି ।" କେହି କେହି ପ୍ରମାଣ ଦାବି କରନ୍ତି "ଯେବେ ତୁ ସତ୍ୟ ନାରାୟଣ, ଦେଖା ତୋ ଶଙ୍ଖଚକ୍ର ଚିହ୍ନ ।" ଏହିପରି ସେ ଆସନ୍ତି ଏବଂ ସ୍ୱମହିମାରେ କଲ୍ୟାଣ ସାଧନ କରି, ଧର୍ମ ସଂସ୍ଥାପନ କରି ଅଜ୍ଞାତ, ଅଚିହ୍ନିତ ଅସ୍ୱୀକୃତ ହୋଇ ଚାଲିଯାନ୍ତି । ତା'ପରେ ସେଇ କରୁଣାର ପ୍ରବାହରେ ଅତିଶିକ୍ତ ମାନବଚେତନା ସଜାଗ ହୋଇଉଠେ । ଏବଂ ପରମ ବିସ୍ମୟରେ ବ୍ରଜଧୂଳି ମୁଣ୍ଡରେ ମାରି ଅଶ୍ରୁସିକ୍ତ କଣ୍ଠରେ କହେ, "ସତେ କ'ଣ ପ୍ରଭୁ ଏଇଠି ସାକାର ବିଚରଣ କରୁଥିଲେ ? ଏ ସମସ୍ତ ଲୀଳାପ୍ରପଞ୍ଚ କବି କଳ୍ପନା ନୁହେଁ ତ ? 'ଆସିଛନ୍ତି, ଆସିଛନ୍ତି' ବୋଲି ପ୍ରତ୍ୟେକ ଧୂଳିକଣା ସାକ୍ଷ୍ୟପ୍ରମାଣ ଦେଉଥିଲେ ସୁଦ୍ଧା ଏଡ଼େ ବଡ଼ ସତ୍ୟକୁ ସତ୍ୟ ରୂପେ ଗ୍ରହଣ କରିବା ପାଇଁ କୁଣ୍ଠିତ ସଂକୀର୍ଣ୍ଣ ଚେତନା ପ୍ରସ୍ତୁତ ନଥାଏ । କିନ୍ତୁ "ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ୟତି ସିଦ୍ଧୟେ" । ସେହି ବିରଳ ସିଦ୍ଧ ପୁରୁଷମାନେ ଏ ଅବତାର - ସତ୍ୟକୁ ବିସ୍ମୟ ପୁଲକ ଏବଂ ପରମ ବିଶ୍ୱାସରେ ଗ୍ରହଣ କରନ୍ତି । ତାଙ୍କ ତୁଣ୍ଡରେକେବଳ ଉଚ୍ଚାରିତ ହେଉଥାଏ "କୃତାର୍ଥୋଽସ୍ମି ।" "କୃତାର୍ଥୋଽସ୍ମି ।" ଏ ମର୍ତ୍ତ୍ୟ ମଣ୍ଡଳକୁ କୃତାର୍ଥ କରିଛ । ପଦସ୍ପର୍ଶରେଏ ମୃଣ୍ମୟପିଣ୍ଡ ମହିମାମଣ୍ଡିତ ହୋଇଛି । ମାନବ ଶରୀରକୁ ସ୍ୱୀକାର କରି ଏ କ୍ଷେତ୍ରକୁ ଦେବାୟିତ କରିଛ । ଧନ୍ୟ ଏ ବସୁନ୍ଧରା, ତୁମକୁ କିଛିକାଳ ସାକାର ଧାରଣ କରିଛି, ଲାଳନ କରିଛି । ଧନ୍ୟ ସେ ପରିଜନମାନେ ସେବା ସୌଭାଗ୍ୟ ଲାଭ କରିଛନ୍ତି । ଧନ୍ୟ ସେମାନେ ଯେଉଁମାନେ ଦେଖି ଶୁଣି କୃତାର୍ଥ ହୋଇଛନ୍ତି । ପଣ୍ଡିଚେରୀ, ବ୍ରଜ ସାକେତ ପରି ପୁଣ୍ୟଭୂମି । ସେଇଠି ଯୁଗାବତାରୀ ପରମ ପୁରୁଷ ଶ୍ରୀ ଅରବିନ୍ଦ ଏବଂ ଜଗଜ୍ଜନନୀ ଶ୍ରୀମା ସଶରୀରରେ ଅବସ୍ଥାନ କରିଛନ୍ତି । ପରବର୍ତ୍ତୀ କାଳରେ ସମାଧି ଏବଂ ଫଟୋଚିତ୍ର । ସ୍ୱର ପାଇଁ ମା'ଙ୍କର କିଛି ଟେପ୍ ରେକର୍ଡ । ଆହା, ଶ୍ରୀ ଅରବିନ୍ଦଙ୍କ ସ୍ୱର ସେପରି ସଂରକ୍ଷିତ ହୋଇପାରିଥାନ୍ତା କି ? - କିଛି ସଂସର୍ଗ ବସ୍ତୁକୁ ନେଇ ଧ୍ୟାନସ୍ଥ ହେଲେ କିଛି ସ୍ପନ୍ଦନ ଅନୁଭବ ହୋଇପାରେ । କିନ୍ତୁ ସେତିକିରେ

ହିଁ ସନ୍ତୁଷ୍ଟ ରହିବାକୁ ହେବ । ଆଉ ସେଇଠି ଅଣ୍ଟାଳି ହେଲେ ସେ ଅପୂର୍ବ ସମ୍ପଦ ମିଳିବ ନାହିଁ, ସେ ଅମୂଲ୍ୟନିଧି ମିଳିବ ନାହିଁ । ପାଇଥିଲ, ଚିହ୍ନିଲ ନାହିଁ, ସେ ଚାଲିଗଲେ । ଏବେ ଦଶଦିଗ ଅଣ୍ଟାଳୁଛ, ସେ ମିଳୁ ନାହାନ୍ତି । ସେବେ ବିଶ୍ୱାସ କରି ପାରୁ ନଥିଲ । ଏବେ ବିଶ୍ୱାସ କରି ପାରୁ ନାହିଁ । ସେତେବେଳେ ସାଧାରଣରେ ଅସାଧାରଣ ଦେଖି ପାରିଲ ନାହିଁ । ଏବେ ଅସାଧାରଣରେ ସାଧାରଣ ବିଶ୍ୱାସ ହେଉନାହିଁ । ଉଭୟ କାଳରେ ନିଅଣ୍ଟ ହୋଇଯାଉଛ । କ'ଣ ଆଉ କରିବ ? ମା'ଙ୍କୁ ଡାକ ଏବଂ ଡାକିଚାଲିଥାଅ । ସେ ଯଦି କିଛି ବଳେଇ ନିଅନ୍ତି ତେବେ ପରମଭାଗ୍ୟ । ନହେଲେ ଏହା ହିଁ ଏ ଜୀବନର ବିଡ଼ମ୍ବନା ।



**୨୭-୧-୮୭**

ନିଜେ କର୍ତ୍ତାପଣ ନ ନେଲେ କିଛି ହୁଏ ନାହିଁ - ଏହି ବିଶ୍ୱାସରେ ମଣିଷ କର୍ମାରମ୍ଭ କରିଥାଏ । କିନ୍ତୁ ପରିସ୍ଥିତି ଭେଦରେସେ ଅନୁଭବ କରେ ଯେ ତା'ର କର୍ତ୍ତାପଣ କେବଳ ଏକ ମାଧ୍ୟମ । ତାକୁ ନେଇ ଅନେକ ଅଦୃଶ୍ୟ ଶକ୍ତି ଖେଳୁଥାନ୍ତି । ସେ ସମସ୍ତଙ୍କୁ ସେ ଗୋଟିଏ ଶବ୍ଦରେ ନାମିତ କରେ 'ଅଦୃଷ୍ଟ' - ଅର୍ଥାତ୍ ଯାହା ଦୃଷ୍ଟ ନୁହେଁ, ଦେଖା ଯାଇନାହିଁ, ଯାଏ ନାହିଁ ବା ଦେଖିବା ସମ୍ଭବ ନୁହେଁ । ସେ ସେମିତି ଅନ୍ଧାରରେ ଲୁଚି ରହିଥିବା ମହାଶକ୍ତି । ତାର ନିର୍ଦ୍ଦେଶ ଅନୁପେକ୍ଷ୍ୟ । ତାର ଗତି ଅନିବାର୍ଯ୍ୟ । ମୁଁ ଯାହା ପାରୁ ନାହିଁ ଅନ୍ୟ ଜଣେ ଅସମର୍ଥ ତାହା ସହଜରେ ପାରୁଛି, ଏବଂ ସବୁ ତା ସକାଶେ ସ୍ୱତଃ ଅନୁକୂଳ ହୋଇଯାଉଛି । ମୁଁ ଯଦି କୌଣସି ଅଶୁଭ ଅମଙ୍ଗଳ ଦ୍ରୋହକାରକ କର୍ମ କରୁଥାଏ ତେବେ ତା'ର ନିଷେଧ ଇଙ୍ଗିତ ମିଳିଲେ ତାର ଅର୍ଥବୁଝି ହେଉଛି । ମଙ୍ଗଳମୟ ଯୋଜନାର ବିପରୀତ ହୋଇଥିବାରୁ ତାହା ନିବାରଣ - ଯୋଗ୍ୟ । କିନ୍ତୁ ଶୁଭ କର୍ମଟିଏ କରିବାର ଯୋଜନା ନେଇ ବର୍ଷ ବର୍ଷ ଧରି ଚେଷ୍ଟା କରିବା ସତ୍ତ୍ୱେ ବିଫଳ ହେବାର ଅର୍ଥ ବୁଝି ହୁଏ ନାହିଁ । କେବଳ ପରାଜୟ ହିଁ ପରାଜୟ ଚାଲିଥାଏ । ଏଣୁ ମନଭାଙ୍ଗି ଯାଏ । ମୋର ପରାଜୟ ଅଦୃଷ୍ଟର ନିଷ୍ପତ୍ତି ନା ମାଲିକର ଇଚ୍ଛା ଏ କଥା ଜାଣିବା ଦୁଷ୍କର । ତାର ଇଚ୍ଛା ବ୍ୟତୀତ ଯଦି କିଛି ସମ୍ଭବ ନୁହେଁ, ତେବେ ଅଦୃଷ୍ଟ ମଧ୍ୟ ତାର ଇଚ୍ଛାଧୀନ, ଇଚ୍ଛାର ବହିର୍ଭୂତ ତ ନୁହେଁ । ତେବେ ଅଦୃଷ୍ଟର ଚକ ତଳେ ପେଷିବା ବେଳେ ତାର ସ୍ୱୀକୃତି ନିଶ୍ଚୟ ଅଛି । ଏହା କ'ଣ ସମ୍ଭବ ଯେ ମୋ ସତ୍ତାର କିଛି ଅଂଶ ଇଶ୍ୱରାର୍ପିତ ହୋଇପାରେ କିନ୍ତୁ ବୃହଦଂଶ ବୁଡ଼ି ରହିଥାଏ କର୍ଦ୍ଦମରେ ? ଏଥିପାଇଁ ଯାହା ଘଟେ ତାହା ହିଁ ଘଟିବା ଉଚିତ୍ । ନ୍ୟାୟଦଣ୍ଡ କେତେବେଳେ ମିଥ୍ୟାର ଆଶ୍ରୟ ନିଏ ନାହିଁ ।

ତା'ର ଇଚ୍ଛା ହିଁ ସର୍ବତ୍ର, ସବୁକାଳେ ସଂଘଟିତ ହୁଏ ଏବଂ ଶେଷରେ ତାର ବିଜୟ ସୁନିଶ୍ଚିତ । ଏ କଥାରେ ଅଗାଧ ବିଶ୍ୱାସ ରଖିବାକୁ ମା'ଙ୍କ ନିର୍ଦ୍ଦେଶ । ତେବେ କ'ଣ ମାନିବାକୁ ହେବ ଯେ ଇଶ୍ୱରେଚ୍ଛା ଭିନ୍ନ ତଦ୍ ବିପରୀତ ଆଉ ଗୋଟିଏ ଶକ୍ତି ଅଛି ଯାହା ସହିତ ସେ ସଂଗ୍ରାମ କରେ ଏବଂ ଶେଷରେ ବିଜୟୀ ହୁଏ । ଏ ସଦାସତ୍ ବିଭାଜନ, ମାନସିକ, ଶାରିରୀକ ସ୍ତରରେ ପରିଷ୍କାର ଜଣାପଡ଼େ । କିନ୍ତୁ ସର୍ବଶେଷ ଅନୁଭୂତି ତ 'ସର୍ବଂଖଲ୍ୱିଦଂ ବ୍ରହ୍ମ' । କିଏ ବା କ'ଣ ଆଉ ଅଛି ଯାହାକୁ ଯା ପରିସର ଭିତରକୁ ଆଣିହେବ ନାହିଁ । - ଯାହା

ଏହାର ବହିର୍ଭୂତ ? ସେପରି କିଛି ଯେହେତୁ ନାହିଁ, ଅଦୃଷ୍ଟ ମଧ୍ୟ କେବଳ ଈଶ୍ୱରେଚ୍ଛା । ଅନୁକୂଳ ପ୍ରତିକୂଳ ପରିସ୍ଥିତିରେ ବିଚଳିତ ନ ହେବା ହିଁ ସତ୍ୟପ୍ରତିଷ୍ଠ ଆତ୍ମାର ଲକ୍ଷଣ । ପୃଥିବୀ ପୃଷ୍ଠର ବକ୍ରତା ପାଇଁ ପୂର୍ବ ପଶ୍ଚିମ ଏବଂ ଉଦୟାସ୍ତ ଅନିବାର୍ଯ୍ୟ । ମହାକାଶରେ ଏହାର ଅର୍ଥ ନାହିଁ । ଯଦି ଉଭୟ ସୁଖଦୁଃଖରେ ଅବିଚଳିତ ରହିହେବ ତେବେ ଅବିକୃତ ଈଶ୍ୱରେଚ୍ଛାର ଅନୁଭବ ମିଳିବା ସମ୍ଭବ । କିନ୍ତୁ ଏହା ଅତି କଠିନ ଓ କଠୋର ସାଧନା-ସାପେକ୍ଷ ।

ବେଳେବେଳେ ବିସ୍ତୀର୍ଣ୍ଣ ପ୍ରାନ୍ତରରୁ ପ୍ରତିଧ୍ୱନି ଆସିଲା ପରି ପ୍ରାର୍ଥନାର ପ୍ରତିଧ୍ୱନି ସ୍ୱରୂପ ଈଶ୍ୱରଙ୍କ ଉତ୍ତର ମିଳିଥାଏ । ଠିକ୍ ଯେଉଁ ମୁହୂର୍ତ୍ତରେ ତାଙ୍କର ଅସ୍ତିତ୍ୱ ବିଷୟରେ ମନରେ ସନ୍ଦେହ, ଅବିଶ୍ୱାସ ଆସେ ସେତିକିବେଳେ ବିପରୀତ ମେରୁ କଂପିତ ହୁଏ ଏବଂ ସେ ଉତ୍ତର ଦିଅନ୍ତି । 'ମୁଁ ଅଛି, ମୁଁ ଅଛି, ମୁଁ ଅଛି' । ମା' ସ୍ୱୟଂ ଏ କଥା ଲିପିବଦ୍ଧ କରିଛନ୍ତି । ଘୋର ତମିସ୍ରା ଭିତରେ ହତାଶ ହୋଇ ମାନବାତ୍ମା ଗତିକରୁଥିବାବେଳେ, ଦୂର ଦିଗ୍‌ବଳୟରୁ ଆଶ୍ୱାସନାର ବାଣୀ ଶୁଭେ । ଅନ୍ଧାର ତରଙ୍ଗାୟିତ ହୁଏ ସ୍ପନ୍ଦିତ ହୁଏ ଏବଂ ଏହିପରି ଆଲୋକର ପ୍ରଥମ ବାର୍ତ୍ତା ଆସି ପହଂଚିଯାଏ । ବିଶ୍ୱାସ କରିବା ତେଣିକି ଅନିବାର୍ଯ୍ୟ । ନାହିଁ କରିହେବ ନାହିଁ । ଯେଉଁଆଡ଼େ ଚାହିଁଲେ ସେଆଡ଼େ ସେ ପରିପୂର୍ଣ୍ଣ ଥିଲାପରି ଜଣାଯାନ୍ତି । ଆକାଶବତ୍, ବାୟୁବତ୍ । ଆଃ,.... ଅତି ଅଦ୍ଭୁତ ସେ ପ୍ରତିଶ୍ରୁତି । ଅତି ପ୍ରଚଣ୍ଡ ତା'ର ଶକ୍ତି । ସମସ୍ତ ସଂଶୟ, ଦ୍ୱନ୍ଦ୍ୱ ହତାଶାର କୁହୁଡ଼ିକୁ ଅପସାରିତ କରି ସେ ଉଦିତ ହୁଅନ୍ତି । କରୁଣାର ବର୍ଷା ହୁଏ । ସେଥିରେ ଅତିସିକ୍ତ ହୋଇ କେବଳ ନତଜାନୁ ନିରବ ସମର୍ପଣ ବ୍ୟତିରେକ ଆଉ କ'ଣ ସେତେବେଳେ କରି ହେବ ?



## ୩୧-୧-୮୭

ପୂର୍ଣ୍ଣ କଶ୍ୟପ କହୁଥିଲେ ଯେ ପାପଫଳ କିମ୍ବା ପୁଣ୍ୟଫଳ କିଛି ନାହିଁ । କାଳସ୍ରୋତରେ ଦୁଇଟି ବିଚ୍ଛିନ୍ନ ଘଟଣାକୁ କାର୍ଯ୍ୟ-କାରଣ ସମ୍ପର୍କରେ ଛନ୍ଦିବା ଯୁକ୍ତିସଙ୍ଗତ ନୁହେଁ । ଚୋରି ଅପରାଧରେ ତତ୍‌କ୍ଷଣାତ୍ ଧରାପଡ଼ି ଦଣ୍ଡିତ ହେବା ଶାସନଗତ ନିୟମରେ ଗୋଟିଏ ଅନ୍ୟଟିର ହେତୁପରକ ହୋଇପାରେ । କିନ୍ତୁ ଅନ୍ଧାର ଭିତରେ ଅପରାଧକରି କୌଣସି ଅଦୃଶ୍ୟ ଶକ୍ତିର ନିୟନ୍ତ୍ରଣରେ ଜୀବଦ୍ଦଶାର ଶେଷଭାଗରେ ଦୁଃଖଭୋଗ କରିବା ଏକ ଅନ୍ଧବିଶ୍ୱାସ । ଏପରିକି ଅପରାଧ ଏବଂ ଦଣ୍ଡ ଦୁଇଟି ସ୍ୱତନ୍ତ୍ର କ୍ରିୟା । ତେବେ ଏ ଯୁକ୍ତି ଅନୁସାରେ ପାପାଚରଣ ବା ପୁଣ୍ୟାଚରଣ ପାଇଁ ଭୟ କିମ୍ବା ଉତ୍ସାହ ନ ରହିବା ସ୍ୱାଭାବିକ । ଯେ କୌଣସି କାର୍ଯ୍ୟ ପଶ୍ଚାତ୍‌ରେ ଦୁଇଟି ବିଚାର ରହିଥାଏ । ଗୋଟିଏ ଭୟ ଅନ୍ୟଟି ପୁରସ୍କାର । ଭୟ ହେତୁରୁ ନିବୃତ୍ତି ଏବଂ ପୁରସ୍କାର ହେତୁରୁ ପ୍ରବୃତ୍ତି ଜାଗ୍ରତ ହୁଏ । ଏଣୁ ପାପପୁଣ୍ୟ ବିଚାରରେ ଯଦି ଫଳ ପ୍ରାପ୍ତି ନାହିଁ ତେବେ ଯଥେଚ୍ଛାଚାରର ଆଶଙ୍କା ରହିଛି । ବିଷୟକୁ ଆଉ ଟିକିଏ ଅନୁଧ୍ୟାନ କରାଯାଉ । କୌଣସି ଗୋଟିଏ କ୍ରିୟା କେତେବେଳେ ଅପରାଧ ପଦବାଚ୍ୟ ? ଯେତେବେଳେ କୌଣସି ସଙ୍ଗଠିତ ସମାଜରେ ପାରସ୍ପରିକ ସମ୍ପର୍କ ଏବଂ ଆଚରଣ ନିୟମାବଦ୍ଧ କିମ୍ବା ପରମ୍ପରା ଅନୁମୋଦିତ ହୁଏ, ସେତିକିବେଳେ କେତେକ ଅହିତକର, ଅନିଷ୍ଟକାରୀ, ଅନ୍ୟକୁ ଦୁଃଖ କଷ୍ଟ-ଦାୟକ କ୍ରିୟାକୁ

ନିଷେଧ କରାଯାଏ । ତାହା ଅପରାଧ ରୂପେ ନିର୍ଦ୍ଧାରିତ ହୁଏ ଏବଂ ଦଣ୍ଡନୀୟ ହୁଏ । ଆଚରଣ ଲଙ୍ଘନରୁ ଅପରାଧ ହୋଇଥାଏ ଅଦଣ୍ଡିତ ଅପରାଧୀ ଅପରାଧବୋଧରୁ ମୁକ୍ତ ନୁହେଁ । ପୁରୁଷାନୁକ୍ରମେ ହତ୍ୟାକୁ ଅପରାଧ ରୂପେ ଗ୍ରହଣ କରୁଥିବା କୌଣସି ବ୍ୟକ୍ତି ସେପରି କାର୍ଯ୍ୟ କଳାପରେ ଚିହ୍ନିତ ଏବଂ ଦଣ୍ଡିତ ନ ହେଲେ ସୁଦ୍ଧା ତା' ନିଜ ଅଦାଲତରେଦୋଷୀ ସାବ୍ୟସ୍ତ ହୋଇ ଅପରାଧ-ବୋଧରେ ହିଁ ଦଣ୍ଡିତ ହେଉଥାଏ । ଅନେକ ସମୟରେ ତାହା ଏତେ ଦୁର୍ବହ ଏବଂ ଅସହ୍ୟ ହୁଏ ଯେ ସେ ଅପରାଧ ସ୍ୱୀକାର କରି ନ୍ୟାୟାଳୟରେ ଦଣ୍ଡିତ ହେବାକୁ ଶ୍ରେୟସ୍କର ବୋଲି ଭାବିଥାଏ । Murder will out.

କିନ୍ତୁ ପାପପୁଣ୍ୟ ବିଚାର ଅନ୍ୟ ପ୍ରକାର । ପାପ ଅପରାଧ ଅପେକ୍ଷା ସୂକ୍ଷ୍ମତର ଗଭୀରତର, ଏବଂ ଅତିରିକ୍ତ । ଚୋରି କରିବା ଅପରାଧ ଏବଂ ପରସ୍ୱାପହରଣ ହୋଇଥିବାରୁ ପାପ ମଧ୍ୟ । ଗୋହତ୍ୟା ଅପରାଧ ନ ହୋଇପାରେ କିନ୍ତୁ କେତେକଙ୍କ ପାଇଁ ପାପ । ପରସ୍ତ୍ରୀଗମନ ପାପ । ଯୌନକ୍ରିୟା ହିଁ କେତେକଙ୍କ ମତରେ ପାପ । କିନ୍ତୁ ସ୍ଥାନକାଳ ବିଶେଷରେ ତାହା ପାପ ନ ହୋଇପାରେ । ମନେହୁଏ ପାପ ବୋଧହୁଏ ସତରେ ଭୌଗଳିକ । Sin is geographical ସେଥିପାଇଁ ପାପବିଚାର ମଧ୍ୟ ଭୌଗଳିକ । ଏଣୁ ପାପପୁଣ୍ୟ ପାଇଁ କୌଣସି ସାର୍ବଜନୀନ ମାନଦଣ୍ଡ ନାହିଁ ।

ଅପରାଧ ପାଇଁ ଦଣ୍ଡବିଧି ଏବଂ ନ୍ୟାୟାଳୟ ରହିଛି । ପ୍ରମାଣିତ ଅପରାଧ ଦଣ୍ଡିତ ହେବା ଏକ ସାମାଜିକ ଓ ପ୍ରଶାସନିକ ବ୍ୟବସ୍ଥା । କିନ୍ତୁ ପାପ ପାଇଁ ଅଦାଲତ ନାହିଁ । ଅଥଚ ତାହା ଦଣ୍ଡିତ ନ ହେଲେ ମାନବୀୟ ମୂଲ୍ୟ ପ୍ରତିଷ୍ଠିତ ହୋଇପାରୁ ନାହିଁ । ଏଣୁ ତାହା ଅବଶ୍ୟ ଦଣ୍ଡିତ ହୁଏ ବୋଲି ବିଶ୍ୱାସ । ସେଥିପାଇଁ ସ୍ୱର୍ଗ ନର୍କର କଳ୍ପନା । ପୂର୍ଣ୍ଣ କଶ୍ୟପ ଯାହା ଯୁକ୍ତି କରୁଛନ୍ତି ପୁଣ୍ୟ କିମ୍ବା ପାପର ପରିଣାମ ନାହିଁ ବୋଲି ତାହା ଠିକ୍ ନୁହେଁ । କାରଣ ମହାଜାଗତିକ ଛନ୍ଦରେ କୌଣସି କ୍ରିୟା ସମ୍ପୂର୍ଣ୍ଣ ବିଚ୍ଛିନ୍ନ କିମ୍ବା ସ୍ୱତନ୍ତ୍ର ହେବା ସମ୍ଭବ ନୁହେଁ । ପୂର୍ବକାଳରୁ ପରକାଳ ଘଟଣା ପ୍ରବାହ ଚାଲିଥିବା ବେଳେ କୌଣସି କ୍ରିୟାର ପରିଣାମ ରହିବ ନାହିଁ । ଏକଥା କହିବା ଯୁକ୍ତିସଂଗତ ନୁହେଁ । କିନ୍ତୁ ପାପ ପାଇଁ ଦଣ୍ଡ ଏବଂ ପୁଣ୍ୟ ପାଇଁ ପୁରସ୍କାର ବିଧାନ ହୁଏ ନା ନାହିଁ ତାହା ହୁଏତ ନିଶ୍ଚିତ ନୁହେଁ । କିନ୍ତୁ ପରିଣାମ ଅନିର୍ବାର୍ଯ୍ୟ ତାହା ତତ୍‌କ୍ଷଣାତ୍ ଦୃଶ୍ୟ ନ ହୋଇ ହୁଏତ ବହୁ ବର୍ଷ ପରେ ଅନୁଭୂତ ହୋଇପାରେ । କିନ୍ତୁ ପରିଣାମକୁ ସ୍ୱୀକାର ନ କରି ଉପାୟ ନାହିଁ ।



**୧-୨-୮୭**

Nothing happens in the cosmic play, but in its time and in its foreseen place - SAVITRI

ପ୍ରତ୍ୟେକ ଘଟଣା ପାଇଁ ସ୍ଥାନ କାଳ ନିର୍ଦ୍ଦିଷ୍ଟ । କାଳାନ୍ତର କିମ୍ବା ଦେଶାନ୍ତରରେ ତାହା ସମ୍ଭବ ନୁହେଁ । ଏଭଳି ଏକ ବ୍ୟାପକ ଏବଂ ଅଟଳବାକ୍ୟ ଉପରେ ଆଉ କ'ଣ କହିବାର ଥାଇପାରେ ? ସବୁତ' ସ୍ଥିର ହୋଇ ଯାଇଛି, କେବଳ ଅପେକ୍ଷା କରିବା କଥା । ମଣିଷର ଭୂମିକା କାହିଁ କର୍ତ୍ତା ଅଥବା ନିମିତ୍ତ ହେବା ପାଇଁ ?

ଜଳୁଥିବା ଦୀପ ଲିଭିବା ପାଇଁ ସମୟ ଓ ସ୍ଥାନ ନିରୂପିତ ହୋଇ ରହିଛି । ଜଣେ ଚାହିଁଲେ ଫୁଙ୍କି ଲିଭେଇ ଦେଇ ପାରିବ ନାହିଁ । ପାରିବ ନାହିଁ ମାନେ ପାରିବ କିନ୍ତୁ ସେଇ ଅଲଙ୍ଘନୀୟ ଯୋଜନା ଅନୁସାରେ ହିଁ ପାରିବ । ତାକୁ ହିଁ ନିମିତ୍ତ ରୂପେ ବ୍ୟବହାର କରି ଯଥା ସମୟରେ ଓ ସ୍ଥାନରେ ଦୀପଟିକୁ ଲିଭେଇ ଦିଆଯିବ । ସେ ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟି ସ୍ୱୟଂ ଆସି ଠିଆ ହୋଇ ନ ଯିବା ଯାଏ ତାକୁ ଚିହ୍ନଟ କରି ହେବନାହିଁ । ଯଦି ପୂର୍ବରୁ ସୂଚନା ମିଳନ୍ତା ତେବେ ହୁଏତ ତାର ବ୍ୟତିକ୍ରମ ପାଇଁ ମଣିଷର ଦାୟିତ୍ୱ, ଅଧିକାର ଏବଂ ସାମର୍ଥ୍ୟର ପରୀକ୍ଷା ହୋଇପାରନ୍ତା । ତାହା ହୋଇପାରେ ନାହିଁ । ଖାଲି କୁହାଯାଏ "ସମର୍ପିତ ହୋଇଯାଅ, ଠିକ୍ ସମୟରେ ଠିକ୍ କାର୍ଯ୍ୟ ହୋଇଯିବ । କିନ୍ତୁ ଏ ପ୍ରାଚୀନ ଅଟଳ ବ୍ୟବସ୍ଥାକୁ, Destiny ବୋଲାଉଥିବା ଏ ଦୁର୍ଲଙ୍ଘ୍ୟ ପାଚେରୀକୁ ଅତିକ୍ରମ କରାଯାଇପାରେ, ପୁରାତନ ଅଭ୍ୟାସ ପରି ମୃତ୍ୟୁକୁ ପରିହାର କରାଯାଇ ପାରେ, ବ୍ୟାଧି ଭଳି ବାର୍ଧକ୍ୟକୁ ନିରାକରଣ କରା ଯାଇପାରେ । ସେଥିପାଇଁ ଶ୍ରୀ ଅରବିନ୍ଦ ଚିରଭାସ୍ୱର ମାନବାତ୍ମାର ଆସ୍ପୃହା ଏବଂ ଅତିମାନସର ଦିବ୍ୟାବତରଣର ସଂଯୋଗ ବିଷୟ ଉଲ୍ଲେଖ କରିଛନ୍ତି । ଅସମ୍ଭବ ପରି ମନେ ହେଉଥିବା ରୂପାନ୍ତରଣ ତଦ୍ୱାରା ସମ୍ଭବ ହେବ ଏବଂ ଅବଶ୍ୟ ହେବ ବୋଲି ତାଙ୍କର ଗଭୀର ପ୍ରତିଶ୍ରୁତି । ସେଥିପାଇଁ ମଧ୍ୟ ସ୍ଥାନ, କାଳ ନିର୍ଦ୍ଦିଷ୍ଟ ହୋଇସାରିଛି - ଏହା କିନ୍ତୁ Destiny ନୁହେଁ, ବରଂ ତାର ବଳୟ ବହିର୍ଭୂତ ଏକ ଦିବ୍ୟ ନିଷ୍ପତ୍ତି ।



## ୧୦-୨-୮୭

ପାତ୍ରାପାତ୍ର ବିଚାର ନ କରି ଯେଉଁଠି ମନ ସେଇଠି ମନ୍ତ୍ର ପ୍ରୟୋଗ କରାଯାଏ ନାହିଁ । ଅତି ଗମ୍ଭୀର ତତ୍ତ୍ୱକୁ ଯାହାମନ ତାହା ପାଖରେ ବଖାଣିବାର ଅସମଞ୍ଜତା ନିଜ ଭିତରେ ବ୍ୟୁତ୍ପାତ୍ ସୃଷ୍ଟି କରିପାରେ । ଯେଉଁଠି ଏକାତ୍ମବୋଧ ନାହିଁ ନିଜର ସହମତ ଏବଂ ସମଧର୍ମୀ ଶ୍ରୋତା ନାହାନ୍ତି, ଅନ୍ତରରେ ପାରସ୍ପରିକ ବ୍ୟବଧାନ ବିଷୟରେ ସଚେତନତା ଅଛି ସେଇଠି ମହାମନ୍ତ୍ର ମାନଙ୍କୁ ଆବାହନ କରି ଆଣିଲେ ସେମାନେ ଅନୁକୂଳ ଭୂମି ନପାଇ ଅପ୍ରତିଭ ବୋଧ କରିବେ । ଜ୍ୟୋତି ବିକୀରଣ କରିବେ ନାହିଁ । କିଛି ପ୍ରଭାବ ନ ପକାଇ ଫେରିଯିବେ । ଏବଂ ଏ ବିମୁଖତାର ଫଳ ଭୋଗ କରିବ ସେଇ ଅବିମୃଶ୍ୟକାରୀ ଆବାହକ - ସେଇ ପ୍ରବକ୍ତା । ସେଥିପାଇଁ ବୋଧେ ଗତ ସନ୍ଧ୍ୟାର ଭାଷଣ ପରେ ମୁଣ୍ଡବ୍ୟଥା ଏ ପର୍ଯ୍ୟନ୍ତ ଛାଡ଼ି ନାହିଁ, ଅପରାଧ କ୍ଷମା ହୋଇଯାଉ । ଅଜ୍ଞାନ ଅହଂକାର ପାଇଁ ଯାହା କରାଗଲା ତାର ଫଳ ଏଇ ଭୋଗିବାକୁ ପଡ଼ିଲା । ଆଉ ସେପରି ପରିବେଶକୁ ନ ଗଲେ ଭଲ । ଗଲେ ସୁଦ୍ଧା କୌଣସି ଉଚ୍ଚ ଗମ୍ଭୀର ତତ୍ତ୍ୱ ଆଲୋଚନା ନ କରିବା ଭଲ ।



## ୧୫-୨-୮୭

ଯଦି ପ୍ରତ୍ୟେକ ଧୂଳିକଣା ପାଇଁ ଏ ବିଶ୍ୱ ପ୍ରଶାସନରେ ବ୍ୟବସ୍ଥା ଅଛି, ମୋ ପାଇଁ ନ ହେବାରକୌଣସି କାରଣ ନାହିଁ । କାରଣ ମୋତେ ବାଦ୍ ଦେଲେ ଏ ବିରାଟ ବିଶ୍ୱ ଅପୂର୍ଣ୍ଣ ରହିଯିବ । ଯେତେ କ୍ଷୁଦ୍ରାତିକ୍ଷୁଦ୍ର

ହେଲେ ମଧ୍ୟ ମୁଁ ଏ ବିଶ୍ୱର ଶାଶ୍ୱତ ମୌଳିକ ଉପାଦାନ । ଅନନ୍ତ କାଳରୁ ଅଛି ଏବଂ ରହିବ । ଅତଏବ ଏ ସମସ୍ତର ମାଲିକ ମୋତେ କଦାପି ପରିହାର କରିପାରିବେ ନାହିଁ । ତେବେ ମୋ ପାଇଁ ବ୍ୟବସ୍ଥା କଲାବେଳେ ମୋର ମାନସିକ ଏବଂ ଆତ୍ମିକ ପ୍ରୟୋଜନକୁ ଗୁରୁତ୍ୱ ଦିଆଯିବ ନା ନାହିଁ ସେଥିରେ ହିଁ ସନ୍ଦେହ ଭାବ ରହୁଛି । ହୁଏତ ଗୋଟିଏ ଜୀବରୂପେ କିଛି ଗ୍ରାସାଚ୍ଛାଦନ ତା ପାଇଁ ତାଙ୍କ ଦ୍ୱାରା ବ୍ୟବସ୍ଥା ହୋଇଗଲା । କିନ୍ତୁ ମୋର ସମସ୍ୟା ଅନ୍ୟଭୂମିରେଏବଂ ଅସଂଖ୍ୟ । ମୋର ପରିବାର ମୋର ସମାଜ ପାଇଁ ମୋର ସାଧାରଣ ଦାୟିତ୍ୱ ତୁଲାଇବାରେ ଯେଉଁ ସମସ୍ୟା ସେ ସବୁ ତାଙ୍କ ଆଖିରେ ହୁଏତ ନଗଣ୍ୟ । କାରଣ ସେଗୁଡ଼ିକ ମୋର ବା ମୋ ଭଳି ମଣିଷ ମାନଙ୍କର ମାନସିକତାରୁ ଉତ୍ପନ୍ନ । ନିଜେ ଜାଲ ସୃଷ୍ଟି କରି ନିଜେ ସେଥିରେ ଛନ୍ଦି ହେବାର କୌଣସି ବିଜ୍ଞତା ନାହିଁ ନିଶ୍ଚୟ, କିନ୍ତୁ କିଛି ବିବଶତା, କିଛି ଅସହାୟତା ନିଶ୍ଚୟ ଅଛି । ମଣିଷ ଯାହା, ଏଥିରୁ ଅନ୍ୟକିଛି ସେ କରି ପାରିବ ନାହିଁ । ତାର ପ୍ରକୃତି ତାକୁ ବାଧ୍ୟ କରିଛି ଏପରି ପରିବାର ଏବଂ ସମାଜ ସୃଷ୍ଟି କରି ତାର ଜଟିଳତାରେ ନିଜେ ବାନ୍ଧିହେବାକୁ । ତେବେ ମାଲିକଙ୍କ ଦୃଷ୍ଟି ନ ପଡ଼ିବ କେମିତି ? ଅତି ସୂକ୍ଷ୍ମ ଯନ୍ତ୍ରପାତି ଖଞ୍ଜି ମହାକାଶ ଯାନକୁ ଶୂନ୍ୟରେ ପହଞ୍ଚାଇଦେଲା ପରେ ତାର ଯାନ୍ତ୍ରିକ ଅସୁବିଧା ଦୂର କରିବାକୁ ତାର ସ୍ରଷ୍ଟା ଦାୟୀ । ସେ କହିପାରିବ ନାହିଁ ଯେ ଯେହେତୁ ସେ ସୂକ୍ଷ୍ମ ଯନ୍ତ୍ର ନିଜେ ସେ ସମସ୍ୟା ସୃଷ୍ଟି କରିଛି, ଏଣୁ ସେ ହିଁ ତାର ସମାଧାନ କରିବ କିମ୍ବା ସେଥିରେ ସେ ସମ୍ପୂର୍ଣ୍ଣ ଅକାମୀ ଜଡ଼ପିଣ୍ଡ ହୋଇଯିବ । ମାଲିକ ଯଦି ମାଲିକ ସେ ସବୁ କାଳେ ସବୁ ପରିସ୍ଥିତିରେ ମାଲିକ । ଏଣୁ ମୋ ପାଇଁ କ'ଣ ବ୍ୟବସ୍ଥା କରୁଛି ଦେଖିବାକୁ ଅଛି । ସେଥିପାଇଁ ଅଗାଧ ବିଶ୍ୱାସ ବି ଅଛି ।



## ୬-୩-୮୭

ସହସ୍ର ଉପଦେଶ ଶୁଣି ମୁଖସ୍ଥ କରି କିଛି ଲାଭ ହୁଏ ନାହିଁ । ସେଥିରୁ ଅନ୍ତତଃ ଗୋଟିଏ ଯଦି ଅଭ୍ୟାସ କରି ଅନୁଭବ ସ୍ତରକୁ ଅଣାଯାଇପାରେ ତା' ହେଲେ ଉପଦେଶ ଦେବା ଏବଂ ଶୁଣିବା ସାର୍ଥକ ହୁଏ । ଉଦାହରଣ ସ୍ୱରୂପ କୁହାଗଲା ଯେ ଜପ କର । ଜପ କଲେ ନୂତନ ଶକ୍ତି ସଂଚାରହୁଏ । ସବୁ ଯଜ୍ଞ ଭିତରେ ଜପ ଯଜ୍ଞ ଶ୍ରେଷ୍ଠ । ଯୁକ୍ତି ସର୍ବସ୍ୱ ମନ ପ୍ରଶ୍ନ କରିପାରେ – କୌଣସି ଗୋଟିଏ ଶବ୍ଦ ବା ଶବ୍ଦମାନଙ୍କର ସମାହାରକୁ ବାରମ୍ବାର ଉଚ୍ଚାରଣ କରିବା ଦ୍ୱାରା କି ପ୍ରକାର ଶକ୍ତି ସଂଗ୍ରହ କରାଯାଇପାରେ ? ଶବ୍ଦର ଅର୍ଥ ବା କଣ ଅଛି ? ତାହା ଭାଷାଗତ ଏବଂ ଭାଷା ଆଞ୍ଚଳିକ । ସଂସ୍କୃତରେ ମନ୍ତ୍ରବୋଲାଉଥିବା ଶବ୍ଦଗୁଡ଼ିକ ଜର୍ମାନ ବା ସ୍ପେନିସ୍‌ରେ ଅର୍ଥହୀନ । ତାହେଲେ କ'ଣ ବୁଝିବାକୁ ହେବ ଯେ ଶାବ୍ଦିକ ଅର୍ଥ ଥାଉ ବା ନଥାଉ ଧ୍ୱନିର ପୁନରାବୃତ୍ତିରେ ଶକ୍ତି ସଂଚାର ହେବ ? ଏକାକ୍ଷରୀ ପ୍ରଣବ ମନ୍ତ୍ର ନ ଜପି କ'ଣ ଜଣେ 'ମିଟ୍' 'ମିଟ୍' ଶବ୍ଦ ବାରମ୍ବାର ଏକାଗ୍ରତାର ସହିତ ଉଚ୍ଚାରଣ କଲେ ଏକା ପ୍ରକାର ଫଳ ଲାଭ କରିବ ? ଏ ବିଷୟରେ ତ ଶାସ୍ତ୍ରମାନେ ବହୁତ କଥା କହିଛନ୍ତି, ଏବେ ପରୀକ୍ଷା ମୂଳକ ଗବେଷଣା କରି ମଧ୍ୟ କିଛି କିଛି କହିବା ଆରମ୍ଭ କଲେଣି । ସେ ଯେ

କୌଣସି ଶବ୍ଦ ହେଉନା କାହିଁକି ତାର ସମତାଳ ପୁନରାବୃତ୍ତି (rhythmic pulsation) ମନର ବିଚଳନ ଏବଂ ବିକ୍ଷୋଭକୁ ଶାନ୍ତ କରିବାରେ ସକ୍ଷମ । ଏଣୁ ରୋଗୀକୁ ଶୁଆଇବାକୁହେଲେ ସଂପୂର୍ଣ୍ଣ ନୀରବତା ଭିତରେ ନ ରଖି ତା ପାଖରେ କୌଣସି ମୃଦୁ ଶବ୍ଦର ସମତାଳୀ ପୁନରାବୃତ୍ତି ବେଶି ଲାଭଦାୟକ ବୋଲି ପ୍ରମାଣିତ ହେଉଛି । ବର୍ତ୍ତମାନ ସ୍ୱୀକାର କରିବାକୁ ପଡ଼ିବ ଯେ ସବୁ ଧ୍ୱନି ସମାନ resonance ବା କମ୍ପନ, ସମାନ ଗଭୀରତା ବା ବିସ୍ତାରର ନୁହଁନ୍ତି । ସେହି ଅନୁସାରେ ସେମାନଙ୍କର ପ୍ରଭାବ ସମାନ ନହେବା ସ୍ୱାଭାବିକ । ଆମ ଦ୍ୱାରା ଉଚ୍ଚାରିତ ଶବ୍ଦଗୁଡ଼ିକ ଆମ କଣ୍ଠର ସ୍ୱର ଯନ୍ତ୍ରର ନିୟନ୍ତ୍ରଣରେହିଁ ଏତେ ବିବିଧତା ଏବଂ ବିଚିତ୍ରତା ନେଇ ପ୍ରକାଶିତ ହୋଇଥାନ୍ତି । କିନ୍ତୁ ପ୍ରଣବ ଏପରି ଏକ ଶବ୍ଦ ଯେଉଁଥିରେ ସ୍ୱରଯନ୍ତ୍ରକୁ ସମପରିମାଣରେ କଂପିତ କରି ସମଗ୍ର ପ୍ରାଣବାୟୁର ଶକ୍ତିକୁ ନିଃଶ୍ୱସିତ କରାଯାଏ । ଯେମିତି ପ୍ରାୟ ହାରମୋନିୟମ୍‌ର କୌଣସି ସା, ଧା, ପା, ନି କୁ ନ ଚାପି ସମଗ୍ର ଧ୍ୱନି ଯନ୍ତ୍ରକୁ ଆମୂଳଚୂଳ ଏକାଥରେଚାପିଧରି ପବନ ଦେଲେ ଯାହା ଶୁଭେ । ତାହା ପ୍ରଣବ ଭଳି । ବୋଧହୁଏ ଏଭଳି resonance ବା କମ୍ପନ ବିଶିଷ୍ଟ ଆଉ କୌଣସି ଏକାକ୍ଷରୀ ମନ୍ତ୍ର ନାହିଁ । ଏଣୁ ତାରଶକ୍ତି ଅପରିମେୟ । କିନ୍ତୁ ଏଭଳି ସ୍ଥୂଳ ଅବୟବୀ ବିଚାରରେ ଏହାର ସ୍ତୁତି ଗାନ କରାଯାଇ ନାହିଁ । ଏହାର ଅଦ୍ଭୁତ ଶକ୍ତି ଏବଂ ତାର ପରିଣାମ ଲାଭ କଲାପରେଏବଂ ତାହା ବାରମ୍ବାର ପ୍ରମାଣିତ ହେଲାପରେ ତାକୁ ଏପରି ଶ୍ରେଷ୍ଠ ଆସନ ଦିଆଯାଉଛି । ପ୍ରଶ୍ନ ହେଲା କୌଣସି ଧ୍ୱନି ବାରମ୍ବାର ସ୍ଫୁରିତ ହେଲେ ଶକ୍ତି ସଂଚାରହୁଏ କି ? ଅନ୍ତତଃ ଗୋଟିଏ ଯାନ୍ତ୍ରିକ ଉଦାହରଣ ନିଆଯାଉ । କୌଣସି ଅକ୍ଷଦଣ୍ଡରେ ଗୋଟିଏ ଚକ ଘୂରିଗଲେ କିଛି ସେପରି ବିଶେଷ ଫଳ ହେଲାନାହିଁ । କିନ୍ତୁ ଯଦି ସେ ଚକଟି ସେଇ ଦଣ୍ଡରେ ସନ୍ତୁଳିତ ହୋଇ ସମତାଳୀ ଢ଼ଙ୍ଗରେ ମିନିଟ୍‌କୁ ଲକ୍ଷଥର ଘୂରିଥାଏ ସେଇ ଘୂର୍ଣ୍ଣନ ହିଁ ବାରମ୍ବାର ପୁନରାବୃତ୍ତ ହୁଏ, ସେଥିରେ ଗୋଟିଏ ଶକ୍ତି ବଳୟ (field) ସୃଷ୍ଟି ହେବ ନାହିଁ କି ? ପ୍ରତ୍ୟେକ Generator ବା Dynamo ର ମୌଳିକ ନିୟମ ହେଲା ଏଇ ପୁନରାବୃତ୍ତ ଘୂର୍ଣ୍ଣନ । ଜପ ସେହିପରି ଗୋଟିଏ ଶବ୍ଦ ଛନ୍ଦର ବାରମ୍ବାର ଘୂର୍ଣ୍ଣନ । ଏଥିରେ ଶକ୍ତି ସଂଚାର ହେବ ନାହିଁ ବୋଲି କାହିଁକି କହିବା ? ଏତଦ୍ୱାରା ତାହା ପ୍ରମାଣିତ କରିବାକୁ ଚେଷ୍ଟା କରାଯାଉନାହିଁ । ବରଂ ତାକୁ ଅବଜ୍ଞା ନ କରି ସେ ବିଷୟରେ ହଠାତ୍ ମନ୍ତବ୍ୟ ନ ଦେଇ କାଳେ କଣ ଥାଇପାରେ, ହୁଏତ ମନ୍ତ୍ରଶକ୍ତି ଜପ ଦ୍ୱାରା ଆସୁଥାଇ ପାରେବୋଲି ଗୋଟିଏ ସମ୍ଭାବନାକୁ ସ୍ୱୀକାର କରିବା ପାଇଁ ଯୁକ୍ତି ।

ତେବେ ଏହା ପ୍ରମାଣିତ ବା ଅପ୍ରମାଣିତ ହେବାକୁ ପରୀକ୍ଷା ହିଁ ଏକମାତ୍ର ଉପାୟ । ପରୀକ୍ଷା କରାଯାଉ । ନିଷ୍ଠାର ସହିତ ଏକଲକ୍ଷ ଗାୟତ୍ରୀ ଜପ କରାଯାଉ । ନିଷ୍ଠାର ସହିତ ଏକାଗ୍ରଚିତ୍ତରେ ପ୍ରଣବ ଜପ କରାଯାଉ । ଦେଖାଯାଉ ଫଳ କ'ଣ ମିଳୁଛି । ମା'ଙ୍କ ନାମ ଜପ କର ବୋଲି ଯେଉଁ ନିର୍ଦ୍ଦେଶ ମିଳୁଛି ତାକୁ ମୂଳରୁ ବିରୋଧ ଏବଂ ଅବିଶ୍ୱାସ ନକରି ପ୍ରୟୋଗ କରାଯାଉ । ତାପରେ ଯେ ଯାହା ଅନୁଭବ କହିବାକୁ ସମର୍ଥ ହେବେ ମତ ଦେବାକୁ ଅଧିକାରୀ ହେବେ ।

ଜପ ଏକ ଛନ୍ଦ । କୋଳାହଳ, ବିଷମତା, ଅଶାନ୍ତି ବିକ୍ଷୋଭ ହେଉଛି ଛନ୍ଦର ବିଭଙ୍ଗ । ଚୂଡ଼ାନ୍ତ ଛନ୍ଦହୀନତା ମୃତ୍ୟୁ । ଛନ୍ଦ ହିଁ ନିରାମୟତା, ଶାନ୍ତି ଏବଂ ଜୀବନ । ଅତଏବ ଜପର ପ୍ରଥମ ଫଳ ହେଉଛି ଶରୀର ମନ ଓ ପ୍ରାଣରେ ଛନ୍ଦର ପ୍ରତିଷ୍ଠା । ଜପ ଏକାଗ୍ର ଧ୍ୟାନର ସହାୟକ । ଜପ ଦ୍ୱାରା ଶରୀରର ବିଶୃଙ୍ଖଳତା ଏବଂ ତଜ୍ଜନିତ ରୋଗ ଆଦି ଉପଶମ କରାଯାଇପାରେ । ଶରୀର ନିରାମୟ ସୁସ୍ଥ ରହିବାରେ ଜପ ସାହାଯ୍ୟ କରେ। ପ୍ରାଣର ଆବେଗ ଓ ମନକୁ ସନ୍ତୁଳିତ କରି ଶାନ୍ତ କରିପାରେ। ବିଘୂର୍ଣ୍ଣିତ, କ୍ଳାନ୍ତ, ବିପର୍ଯ୍ୟସ୍ତ

ମନକୁ ସୁସଂହତ, ବିନ୍ୟସ୍ତ, ଏକାଗ୍ର କରିଦେଇ ପାରେ । ଏଥିରେ ଶରୀରର କାର୍ଯ୍ୟ ଦକ୍ଷତା, ପ୍ରାଣର ଗଭୀରତା, ପ୍ରାଚୁର୍ଯ୍ୟ ଏବଂ ମନର ମନନକ୍ଷମତା ବିଚାରସାମର୍ଥ୍ୟ ଆଦି ଶକ୍ତିବୃଦ୍ଧି କରିଦେଇପାରେ । ଏହି ସାଧାରଣ ଅର୍ଥରେ ଜପ ନିଶ୍ଚୟ ଶକ୍ତି ସଂଚାର କରିପାରେ ଏବଂ କରେ। ଏହା ବାହାରେ ଯେଉଁ ଭୂମି, ଯେଉଁ ଅନୁଭବ ସହଜ ଲଭ୍ୟ ନୁହେଁ ସେ ପ୍ରକାର ସୌଭାଗ୍ୟ ଆଣିଦେଇ ପାରେ । ଅନ୍ତଃସ୍ଥଳ ଉଦ୍‌ଭାସ୍ୱର ବ୍ୟୋମାତୀତ ବ୍ୟାପ୍ତିରେ ମଗ୍ନମାନ ରହିପାରେ। ଜପ ନୀରବିତ ହୋଇ ସମାଧିପ୍ରାପ୍ତି ହୋଇପାରେ ।

ମା ନାମ ଜପ କରିବା, ମା'ଙ୍କ ସାନିଧ ଏବଂ ସ୍ପର୍ଶ ଲାଭ କରିବା ସମ ପର୍ଯ୍ୟାୟର ଅନୁଭବ । ବରଂ ଜପ ଦ୍ୱାରା ସେ ଅନୁଭବ ଆହୁରି ତୀବ୍ରତର ଏବଂ ପ୍ରଭାବଶାଳୀ ହୋଇପାରେ । ଏତେ଼ ସହଜ କୋମଳ, ସଂକ୍ଷିପ୍ତ ଓଷ୍ଠ୍ୟ ଏବଂ ଅନୁନାସିକ ବର୍ଣ୍ଣ ଉପରେ ଆଧାରିତ ମନ୍ତ୍ର ଆଉ କାହିଁ ? ଏଣୁ ଜପ ପାଇଁ ସଂକଳ୍ପ କରାଯାଉ । ବିଶ୍ୱାସ ଦୃଢ଼ କରାଯାଉ । ସଂଶୟ ଆଶଂକା ଦୂର ହେଉ । ଏବଂ ଅଭ୍ୟାସ କରାଯାଉ, ତା ପରେ କଣ ମିଳୁଛି ବା ନ ମିଳୁଛି ବଳେ ଜଣାଯିବ ।



୮-୩-୮୭

Break, break the last resistances. Consume the last impurities - Blast this being if need be, but let it be transfigured.

Prayers and Meditations - The Mother.

ଅବରୁଦ୍ଧ, ବ୍ୟାହତ ଅଭିପ୍ସାର ଜ୍ୱାଳାମୟୀ ପ୍ରାର୍ଥନା । ତ୍ୱଗ୍‌ମାଂସରୁଧିରାସ୍ଥିର ଏ ଶରୀର, ଏ ଅସଂଯତ ସ୍ୱେଚ୍ଛାଚାରୀ ମନ, ଏ ଅଣାୟତ୍ତ ପ୍ଲାବନ-ପ୍ରବଣ ପ୍ରାଣକୁ ନେଇ କ'ଣ କରି ହେବ ? ନର୍ତ୍ତକୀ ଶତଚେଷ୍ଟାରେ ଭଂଗୀମୁଦ୍ରାରେ ଭାବ ପ୍ରକାଶ କରି ନ ପାରି ଗୁରୁଙ୍କୁ ଯେପରି କହୁଛି... ଭାଙ୍ଗିଦିଅ ଏ ହାତ ଗୋଡ଼, ଗ୍ରୀବା, ଏ ସ୍ଥୂଳତା, ଅବାଧତାରୁ ମୁକ୍ତ କର, ଏହାକୁ ପ୍ରକାଶ-କ୍ଷମ କର । ନିଜ ନିଜର ସୀମାରେ ପହଂଚିଗଲେ ଏଭଳି ବିକଳ ଅନୁଭବ ଆସେ, ବନ୍ଦୀ ତାର କାରାଗୃହର ଦ୍ୱାରଦେଶରେ ପହଂଚି ଆର୍ତ୍ତନାଦ କଲାପରି । ଇତର ପ୍ରାଣୀଙ୍କଠାରୁ ମଣିଷ ପର୍ଯ୍ୟନ୍ତ ଯେତିକି ବିବର୍ତ୍ତନ ଘଟିଛି, ତାହା ଯଥେଷ୍ଟ ନୁହେଁ । ସେଥିରେ ଅବଶେଷ ଆପ୍ରାଣ ଚେଷ୍ଟା କରୁଛି - ନିଜେ ଲଂଘନ କରିନପାରି ଉପରୋକ୍ତ ବାକ୍ୟରେ ତାକୁ ଆବାହନ କରୁଛନ୍ତି । ସେ ହିଁ ଦନ୍ତାଘାତ କରି ବନ୍ଦିନୀ ଗଂଗାକୁ ମୁକ୍ତ କରନ୍ତୁ ।



୧୦-୩-୮୭

ଜଗତ୍ ପ୍ରବାହକୁ ସ୍ମୃତିରେ ଅନୁଭବ କରିହୁଏ, କଳ୍ପନାରେ ନୁହେଁ । ଅସଂଖ୍ୟ ଅତୀତ ଘଟଣାର ଚଳଚିତ୍ର ବେଳେବେଳେ ମନକୁ ଆଚ୍ଛନ୍ନ କରେ, ପ୍ରାଣକୁ ଆଲୋଡ଼ିତ କରେ । ବିସ୍ମୃତ ଅଭିଳାଷ, ଆବେଗ, ଅନୁରକ୍ତି

ସବୁ ପୁନର୍ଜୀବିତ ହୋଇଯାଏ । ଆଶ୍ଚର୍ଯ୍ୟ ଲାଗେ ଜୀବନର କେତେ ଅଂଶ ଭସ୍ମୀଭୂତ ହୋଇଗଲାଣି । ଆଉଥରେସେ ସମସ୍ତ ଫେରି ଆସନ୍ତା କି । ସେ ସବୁ ଯେ କିଛି ଅସାଧାରଣ ଘଟଣା ତା ନୁହେଁ । ବର୍ତ୍ତମାନ ଯାହା ଘଟୁଛି କିମ୍ବା ଭବିଷ୍ୟତରେ ଯାହା ଘଟିବ ସେଇଭଳି ଅତୀତର ଏ ସମସ୍ତ ଘଟଣା ଏବଂ ଅନୁଭବ । କିନ୍ତୁ ସ୍ୱଜନଙ୍କୁ ହରାଇଥିବାର ବିରହ ଭଳି ଏକ ପ୍ରକାର ବ୍ୟାକୁଳତା ଆସେ ଅତୀତ ପ୍ରତି । କିନ୍ତୁ ସେ ସମସ୍ତ ବର୍ଷର ଗୋଟିଏ ହେଲେ ମୁହୂର୍ତ୍ତ ଫେରି ଆସିପାରେ ନାହିଁ । ଏହିଭଳି ଅତୀତାକ୍ରାନ୍ତ ହୋଇଥିଲା ବେଳେ, ଜଗତ୍ ପ୍ରବାହର ତୀବ୍ର ଅନୁଭବ ଆସେ । କାଳ ସଂଚାରିତ ହେବାର, ଉପସ୍ଥିତ ଅନ୍ତର୍ହିତ ହେବାର, ବ୍ୟୟିତ, କ୍ଷରିତ ହୋଇଯିବାର ଅନୁଭବ ଆସେ । ନିଜର ସ୍ମୃତିକୁ ଆଉ କାହାକୁ ଦେଇ ଦେବାର ଅଧିକାର କାହାରି ନାହିଁ, ସାମର୍ଥ୍ୟ ବି ନାହିଁ, ସମ୍ଭାବନା ବି ନାହିଁ । ସ୍ମୃତିରୁ କାଳଜ୍ଞାନ ଏବଂ ଆତ୍ମଜ୍ଞାନ ଆସିପାରେ । ସ୍ମୃତିରୁ ପଶ୍ଚାତ୍ତାପ ଏବଂ ଦୁଃଖ ମଧ୍ୟ ଆସିପାରେ । ତେବେ ବ୍ୟକ୍ତି ବିଶେଷର ଅଧିକାର ଏବଂ ସାଧନା ଉପରେ ଫଳ ନିର୍ଭର କରେ । ସ୍ମୃତି ଏକ ସଂପଦ, ବୋଧହୁଏ ଏକମାତ୍ର ସଂପଦ ଯାହା ଗଚ୍ଛିତ ରହିଥାଏ, ଆପାତତଃ ଅବିଚଳିତ ମଧ୍ୟ ରହିଥାଏ । ଜଗତ୍ପ୍ରବାହରେ ସ୍ଥିରତା ନାହିଁ । କିନ୍ତୁ ସେହି ପ୍ରବାହର ସିକର ବିନ୍ଦୁ ପରି ସ୍ମୃତିଗୁଡ଼ିକ ସ୍ଥିର । ମନୋଭୂମିରେ ଏହା ବୋଧହୁଏ ଆଂଶିକ ଅମରତ୍ୱ, କାଳକୁ ଜୟ କରୁଥିବା ଏକ ମନସ୍ତ ସିଦ୍ଧି । ବିବର୍ତ୍ତନରେ, ହୁଏତ ଅତିମାନସ ସ୍ତରରେ ଏହାର ବିସ୍ତାର ଏବଂ କ୍ରମବର୍ଦ୍ଧନ ଘଟିପାରେ ଏବଂ ଶରୀର ସ୍ତରରେ ମଧ୍ୟ ଅମରତ୍ୱ ଅର୍ଜନ କରାଯାଇପାରେ । ସମ୍ଭବ ଅସମ୍ଭବର ପ୍ରଶ୍ନରେ ବିଚଳିତ ନ ହୋଇ ଅନ୍ତତଃ ଏହାର ଯୁକ୍ତିନିଷ୍ଠତାକୁ ସ୍ୱୀକାର କରାଯାଇ ପାରିବ ।



## ୧୨-୩-୮୭

ଯାହାକଲେ ସୁଦ୍ଧା ଯଦି ବ୍ୟର୍ଥ ପ୍ରମାଣିତ ହେଉଥାଏ, ବାରମ୍ବାର ପରାସ୍ତ ହେଉଥାଏ, ଅସଫଳ ହେଉଥାଏ ସଂକଳ୍ପ, ତାହାହେଲେ ଦୁଇଟି ପ୍ରତିକ୍ରିୟା ଦେଖାଦେବା ସ୍ୱାଭାବିକ । ପ୍ରଥମଟି ହେଲା ବିଫଳତା ଓ ନୈରାଶ୍ୟ । ଭିତରୁ ଆତ୍ମବିଶ୍ୱାସ ଦୋହଲିଯାଏ । ଏବଂ ଦ୍ୱିତୀୟଟି ହେଲା ସୃଷ୍ଟିର ନ୍ୟାୟ ବିଧାନ ଉପରେ ଆସ୍ଥା ତୁଟିଯାଏ । ବଂଚିବା ପାଇଁ ସେ ନାସ୍ତିକ ଏବଂ ବିଦ୍ରୋହୀ ହୋଇ ଠିଆହୁଏ... କିଏ ଅଛି କେଉଁଠି ଯେ ସବୁ ଦେଖୁଛି, ସମସ୍ତଙ୍କୁ ଯଥାବିଧି ନ୍ୟାୟ ଦଣ୍ଡରେ ତଉଲିଲା ପରେ ଫଳାଫଳ ପ୍ରଦାନ କରୁଛି ? ଯେଉଁମାନେ ଅନୈତିକ, ଅଧାର୍ମିକ ଅନଧ୍ୟାତ୍ମିକ ମାର୍ଗ ଏବଂ ଉପାୟ ଅବଲମ୍ବନ କରୁଛନ୍ତି ସେମାନଙ୍କର କୌଣସି ଯୋଜନା ବିଫଳ ହେଉନାହିଁ । ଅଥଚ ଯେ ସତ୍ୟଧର୍ମ ନ୍ୟାୟରେ ଯଥାଶକ୍ତି ବିନିଯୋଗ କରି ସାମାନ୍ୟତମ ସଫଳତା ଆଶା କଲା, ତା'ର ଖାଇବା ଭାତରେ ହିଁ ବାଲି ପଡ଼ିଯାଉଛି । ତାକୁ ସବୁଥିରୁ ବଂଚିତ କରାଯାଉଛି । ଏଠି ଜାଗ୍ରତସତ୍ତା କେହି ନାହିଁ, ଏହାଏକ ଅନ୍ଧାର ରାଜ୍ୟ । ଏଠି ପଶୁବଳ ହିଁ ଏକମାତ୍ର ବଳ । ଆତ୍ମବଳ ଏକ ପ୍ରତାରଣା । ଶଠତା, ଚତୁରତାର ମୂଲ୍ୟ ଅଛି କିନ୍ତୁ ସାଧୁତା ଏବଂ ମୂଢ଼ତା ଭିତରେ ପାର୍ଥକ୍ୟ ନାହିଁ । ଏଠି କିଛି କହିବାର ଅର୍ଥ ନାହିଁ, କିଛି କରିବାର ଅର୍ଥ ନାହିଁ । "ନଥିଥି କିରିୟଂ ନଥିଥି ବିରୀୟମ୍ ।" ବୋଧହୁଏ ଏହା ହିଁ ଠିକ୍ ଯେ ଈଶ୍ୱର ବୋଲାଉଥିବା ଦୁର୍ଲ୍ଲଭ ପଦାର୍ଥଟି ଏକ କଳ୍ପନା ମାତ୍ର । ଏଠି କେବଳ ଭୌତିକ ସତ୍ୟ, ସ୍ଥାନକାଳୀକ

ସତ୍ୟ ଏବଂ ଇନ୍ଦ୍ରିୟାନୁଭୂତ ସତ୍ୟ ହିଁ ଏକମାତ୍ର ସତ୍ୟ ।

ଏଭଳି ବିସ୍ଫୋରଣ ଘଟୁଥିବା ବେଳେ କେଉଁ ବେଦବାଣୀରେ ପୃଥିବୀ ପୁଣି ସ୍ଥିର ହେବ ? ବିଦ୍ରୋହୀଟି ଏକ ବିଡ଼ମ୍ବିତ ପ୍ରାଣୀ । ସେ ଗଭୀର ବିଶ୍ୱାସରୁ ଏବଂ ଆଶାରୁ ଆରମ୍ଭ କରିଥିଲା ନିଜ ଆଶାନୁରୂପ ଫଳ ନ ପାଇ ବିଦ୍ରୋହ କରିଛି । ସେ ଚାହିଁଲା ଭଳି ଘଟଣା ଘଟିଗଲେ ସେ ହୁଏତ ପୁଣି ଆସ୍ଥାବାନ୍ ହୋଇଯିବ ନିଜ ଉପରେ ଏବଂ ଈଶ୍ୱରଙ୍କ ଉପରେ । କିନ୍ତୁ ସେଭଳି ପ୍ରତ୍ୟକ୍ଷ ପ୍ରମାଣ ନପାଇବା ପର୍ଯ୍ୟନ୍ତ ଦୃଷ୍ଟିଭଙ୍ଗୀ ଓ ମାନସିକତାର ପରିବର୍ତ୍ତନ ହେବା ସହଜ ନୁହେଁ, ଏଥିରେ ଅପରପକ୍ଷର କିଛି କ୍ଷତି ହୁଏନାହିଁ, କ୍ଷତିହୁଏ କେବଳ ତା'ର । ତଥାପି ସେ ଉତ୍‌କ୍ଷିପ୍ତ ଅବସ୍ଥାରେ ବୁଝି ନ ବୁଝିଲା ପରି ବିଦ୍ରୋହ କରୁଥାଏ । ସେ ଏଭଳି ଆତ୍ମ ହନନ କଲାବେଳେ ଅଭିମାନରେ, ଆହତ ଆନୁଗତ୍ୟରେ ଫାଟି ପଡ଼ିଲା ବେଳେ, ଟିକିଏ ଅହେତୁକୀ, କୃପାର ସ୍ପର୍ଶ ପାଇବା ଉଚିତ୍ ନୁହେଁ କି ? ସାମାନ୍ୟତମ ସାନ୍ତ୍ୱନାର ପ୍ରଲେପ ପାଇଁ କ'ଣ ସେ ଯୋଗ୍ୟ ନୁହେଁ ? ସେ ବିଦ୍ରୋହ କଲାବୋଲି ଜଗତ୍‌କର୍ତ୍ତା କ'ଣ ଇତର ମାନବ ପରି ରାଗ ରୋଷରେ ତାକୁ ତାପିତ କରିବା, ନିଜ ଶକ୍ତି ଲଗାଇ ତାକୁ ଆହୁରି ପରାସ୍ତ କରିବା ଉଚିତ୍ ହେବ କି ? ଆମ ବୁଦ୍ଧିରେ ନିଶ୍ଚୟ ହେବ ନାହିଁ । କିନ୍ତୁ ଈଶ୍ୱରେଚ୍ଛା ତ ବୁଝିବା କଷ୍ଟ । ଏପରି ଅବସ୍ଥାରେ ଜୀବନରେ ଯାହା ଘଟେ ତାହା କେବଳ ଅନୁଭବ ସାପେକ୍ଷ୍ୟ । ପୃଥିବୀ ଯେତେ ତାପିତ ହୁଏ, ସେତିକି ମଥିତ ହୁଏ ସମୁଦ୍ର, ସେଇ ପରିମାଣରେ ଆକାଶରେ ନୂତନ ମେଘର ବଉଦ ଉଦୟ ହୁଏ ଏବଂ ଝରିଆସେ କରୁଣାର ବାରିପାତ । ଯେତେବେଳେ ବିଦ୍ରୋହୀ ଆତ୍ମା କରୁଣାଲାଭ କରେ ସେ ଅପୂର୍ବାନନ୍ଦର ତୁଳନା ନାହିଁ, କାରଣ ତାହା ବିଧିବିଧାନର ଅସାଧାରଣ ସ୍ୱତନ୍ତ୍ର ବ୍ୟବସ୍ଥା ।

ଯାହାର ଆବରଣ ଯେତେ କଠିନ, ତାକୁ ସେତିକି ହାତୁଡ଼ି ପ୍ରହାର (Hammering) ସହିବାକୁ ପଡ଼ିବ । ଭିତରୁ ବିଦ୍ରୋହ ଏବଂ ବାହାରୁ ତାଡ଼ନା ଏଇ ଉଭୟର ଆଘାତରେ ଆବରଣ ଛିନ୍ନ ହୁଏ । ଆଖିରୁ ପରଳ [illegible]ଏ, ମନରୁ ସଂଶୟର ଧୂମ ଅପସାରିତ ହୁଏ । ପ୍ରାଣ ବନ୍ଧହୀନ ହୋଇ ସ୍ୱତଃ ପ୍ଳାବିତ ହୁଏ । ଏଣୁ ଆଧ୍ୟାତ୍ମିକ ଜୀବନରେ ସଂସାର କଷ୍ଟ ଏକ ସ୍ୱତନ୍ତ୍ର ବ୍ୟବସ୍ଥା । ଏଠି ବିଦ୍ରୋହୀ ଆତ୍ମାଟି ଅଭିମାନରେଆହତ ଆନୁଗତ୍ୟରେ ଚିତ୍କାର କରୁଛି । ସାଧାରଣ ଅପରାଧଟିଏ ଦଣ୍ଡିତ ହେଲାବେଳେ ବିଦ୍ରୋହ କରି ପାରେ ନାହିଁ । କାରଣ ତା'ଭିତରେ ଅପରାଧବୋଧ ତା'ର ଦଣ୍ଡକୁ ଅନୁମୋଦନ କରୁଥାଏ । କିନ୍ତୁ ନିରପରାଧ ଦଣ୍ଡ ପାଇଲେ ହିଁ ଏପରି ବିଦ୍ରୋହ କରିଥାଏ । ଏ ଦଣ୍ଡ ବିଧାନ ହିଁ Divine Hammering ଆବରଣ ଭାଙ୍ଗିବାକୁ, ମୁକ୍ତ କରିବାକୁ ।



## ୧୫-୩-୮୭

ମାତ୍ର ଦୁଇପାଦ ମେଦିନୀ ଅଧିକାର କରି ମଣିଷ ସବୁବେଳେ ଠିଆ ରହେ । ଚାଲିଲାବେଳେ ମାତ୍ର ପାଦେ, କାରଣ ସେତେବେଳେ ଗୋଟିଏ ପାଦ ଥାପି ଅନ୍ୟପାଦକୁ ସେ ଭୂଇଁରୁ ଟେକି ନିଏ । ଉଭୟ ପାଦ ଭୂମି ସ୍ପର୍ଶକଲେ ଗତି ସ୍ଥଗିତ ହୋଇଯାଏ । ଯେ ଯେତେ ପ୍ରତାପୀ ହେଲେ ସୁଦ୍ଧା, ସସାଗରା ଧରାର ଅଧୀଶ୍ୱର ହେଲେ ମଧ ସେଇ ମାତ୍ର ଦ୍ୱିପାଦ ମେଦିନୀ ତାର ପ୍ରାପ୍ୟ । ଚାଲିଲାବେଳେ ଏକାକୀ ପାଦଟିଏ କେବଳ ଭୂମିକୁ

ଅଧିକାର କରିଥାଏ କିଛି ମୁହୂର୍ତ୍ତ ପାଇଁ । ସଂସାର ଯାତ୍ରାରେ ମଣିଷଟିଏ ଏକାକୀ । ଯୋକ ଭଳି ଏକପଦୀ ପ୍ରାଣୀ । ସ୍ଥିର ହେଲେ ଦୁଇପାଦ । ତେଣିକି ଅନ୍ୟ ସହିତ ସଂପର୍କ ତେଣିକି ପରିବାର ଆଉ ସମାଜ । ଗୋଟିଏ ପରିବାରରେ ଥାଇ ସୁଦ୍ଧା ଗତି କଲାବେଳେ କିଏ କେଉଁ ଉଦ୍ଦେଶ୍ୟରେ ଯାଏ । ପ୍ରତ୍ୟେକ ସ୍ୱତନ୍ତ୍ର ଓ ଏକାକୀ । ଜଣାଯାଏ ସତେ ବା ଏଇ ଏକାକୀତ୍ୱ ତାର ନ୍ୟୂନତମ ସତ୍ୟ । ସେଥିରେ ଶଙ୍କା ଭୟ ମିଶି ରହିବାରୁ ସେ ସଂପର୍କର ବଳୟ ଭିତରକୁ ପଶିଯାଏ । ସେଇଠି ତା'ର ପ୍ରତୀତି ହୁଏ ଯେ, ସେ ଏକାକୀ ନୁହେଁ । ଅନ୍ୟମାନେ ତା ସହିତ ଗ୍ରଥିତ ହୋଇ ରହିଛନ୍ତି । ସେଥିରେ ମଧ୍ୟ ସେ ପୀଡ଼ିତ ହୁଏ, ଭାରାକ୍ରାନ୍ତ ବୋଧକରେ। ଏବଂ ଚାହେଁ ତା'ର ଗୋପନ ଏକାକୀତ୍ୱକୁ ଫେରିଯିବାକୁ । ଏଇଭଳି ଏ ଦୁଇଟି ମେରୁ ଭିତରେ ତା'ର ସମଗ୍ର ବର୍ତ୍ତୁଳ ପୃଥିବୀ ସୀମିତ । କିନ୍ତୁ ସେ କ'ଣ କେବେ ତୃତୀୟ ପାଦର ଅଧିକାର ହୋଇପାରେ ? ତୃତୀୟ ପାଦଟି ବ୍ୟୁତ୍ଥାନର ପାଦ । ନିଜକୁ ନିଜେ ଅତିକ୍ରମ କରି ଆପେକ୍ଷିକ ରାଜ୍ୟରୁ ଉର୍ଦ୍ଧ୍ୱକୁ ଅଧିକାର କରିବାର ପାଦ । ତ୍ରିବିକ୍ରମ ହେବା ମଣିଷ ପାଇଁ ହୁଏତ ସମ୍ଭବ ନୁହେଁ । ତାହା ଏକ ଦିବ୍ୟ ବିଭୂତି । ସେହିଁ ଚାହିଁଲେ ଏ ଦ୍ୱିପଦ ପ୍ରାଣୀକୁ ସ୍ୱୀକାର କରି ଏକ ଦିବ୍ୟ ତୃତୀୟ ପାଦରେ ଅତିକ୍ରମ କରାଇ ପାରନ୍ତି । ଦେଶ କାଳରୁ ଉତ୍ତୀର୍ଣ୍ଣ ଅତୀତ ଭବିଷ୍ୟତ ଓ ବର୍ତ୍ତମାନର ଉର୍ଦ୍ଧ୍ୱରେ, ଶରୀର, ମନ, ପ୍ରାଣର ଅନଧିଗମ୍ୟ ଏ ତୃତୀୟପାଦର ଗତି ଓ ବିସ୍ତାର । ତିନି ପାଦରେ କ'ଣ ଗତି ସମ୍ଭବ ? ଦ୍ୱିପାଦରେ ଯଦି ନୁହେଁ, ତ୍ରିପାଦରେ ବା କେମିତି ସମ୍ଭବ ହୋଇପାରେ ? ଅତଏବ ତ୍ରିପାଦରେ ସେ ତ୍ରିବିକ୍ରମ ରୂପୀ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଅତିକ୍ରମି ଯାଆନ୍ତି – ସେହିପରି ପରମ ସ୍ଥିତିରେ ସ୍ଥିର ରହନ୍ତି । ଗତିର ଦ୍ୱୈତ ସୂଚନାକୁ ଅସ୍ୱୀକାର କରି ସ୍ଥିର ରହନ୍ତି – ତୃତୀୟ ପାଦ ଉର୍ଦ୍ଧ୍ୱମୁଖୀ । ତାହା ଆଉ ଏକ ଅଜ୍ଞାତ ଅନୁଭୂତ ବିସ୍ତାର ।



## ୨୧-୩-୮୭

କଠୋର ସାଧନା ପରେ ଅପରିମେୟ ତପସ୍ୟାର ଫଳ ସ୍ୱରୂପ ଜୀବଟିଏ ବ୍ରହ୍ମାସ୍ଥିର ଅନୁଭବ ଲାଭ କରେ – ସେ ତାର ସ୍ୱରୂପରେ ଯାହା, ତାହା ଅନାବୃତ୍ତ ପ୍ରତ୍ୟକ୍ଷ ହୁଏ । ସାଧାରଣ ଭାଷାରେ ମୁକ୍ତ ଜୀବ, ବ୍ରହ୍ମ ହୋଇଯାଏ । ସେଥିପାଇଁ ଏତେ ବିଦ୍ୟାସାଧନ, ଏତେ ଧର୍ମ ଦର୍ଶନ ଏତେ ଗୁରୁ ଏତେ ଦୀକ୍ଷା ଏତେ ପ୍ରୟାସ । ଏହା ହିଁ ମାନବଜନ୍ମର ସାର୍ଥକତା ଏବଂ ସିଦ୍ଧି । ନିଜକୁ ନିଜେ ଅତିକ୍ରମ କରି ପରମ ବ୍ୟୁତ୍ଥାନର ଶୀର୍ଷବିନ୍ଦୁ ହେଉଚି ଜୀବ ବ୍ରହ୍ମୈବ ନାପରମ୍ । ଠିକ୍ ! ଏଇ କଲୁଷମୟ, ତ୍ୱଚା ମାଂସ ରୁଧିରାସ୍ଥି ବିଗ୍ରହର କ୍ଷୁଧାତୃଷା ରୋଗ ଓ ମୃତ୍ୟୁକୁ ଅତିକ୍ରମ କରିବାକୁ ବହୁ ଯୁଗରୁ ଯେଉଁ ଅଦମ୍ୟ ଇଚ୍ଛା ଅଛି ଏହାର ବିପରୀତ ଯେଉଁ ଶାଶ୍ୱତ ବସ୍ତୁ ମୁକ୍ତ ନିତ୍ୟ ଶୁଦ୍ଧ ବୁଦ୍ଧ ମୁକ୍ତାବସ୍ଥା ତାଙ୍କୁ ଆକୃଷ୍ଟ କରି ଚାଲିଛି । ସେଥିପାଇଁ ସେ ଯେପରି ବିଡ଼ମ୍ବିତ ହୋଇ ଚାଲିଛି – ତାହା ହିଁ ଏ ବିଚିତ୍ର ଜୀବର ଦୁଃଖ । ଏଠୁ ସେ ଉର୍ଦ୍ଧ୍ୱକୁ ଉଠିବ ଏବଂ ସେଇଠି ପହଂଚିବ ଯେଉଁଠୁ ପ୍ରତ୍ୟାବର୍ତ୍ତନ ହୁଏ ନାହିଁ । ବିଦ୍ୟା ତାର ସହାୟକ । ବିଦ୍ୟୟାମୃତମଶ୍ନୁତେ । ଅନ୍ୟପକ୍ଷେ ଯେ ଏକମ୍

ଅଦ୍ୱିତୀୟମ୍ ଥିଲେ ସେ କେଉଁ ଏକ ନିଗୂଢ଼ ଉଦ୍ଦେଶ୍ୟରେ 'ବହୁସ୍ୟାଂ' ବିକୀର୍ଣ୍ଣ ହେବାକୁ କାମନା କଲେ ? କାହିଁକି ତପସ୍ୟା କଲେ ଏ ଅକଳନୀୟ ଜଡ଼ ପିଣ୍ଡରେ, ଅନନ୍ତକୋଟି ଜୀବକୋଷରେ ଅନନ୍ତକାଳ ପରେ ପ୍ରବେଶ କଲେ ? ଜୀବ ହେବାକୁ କ'ଣ ବ୍ରହ୍ମ ଅଖଣ୍ଡ ସାଧନା କରୁ ନାହାନ୍ତି ? ଜଠରରେ, ଜଞ୍ଜାଳରେ, ରୋଗ ଜରା ମୃତ୍ୟୁରେ, ଅବିଦ୍ୟାର ଅନ୍ଧକାରରେ ପ୍ରବେଶ କରିବାକୁ ସେ କ'ଣ ତପସ୍ୟା କରିନାହାନ୍ତି ? ଜୀବଭୂତ ହେବା ବ୍ରହ୍ମ ପାଇଁ କଣ ଚରମ ସିଦ୍ଧି ନୁହେଁ ? ଏଣୁ ଯେତିକି ପରିମାଣରେ ଜୀବ ପ୍ରୟାସୀ ସମସ୍ତ ବନ୍ଧନରୁ ମୁକ୍ତ ହେବାକୁ, ବ୍ରହ୍ମସତ୍ତା ହେବାକୁ ତା'ଠାରୁ ଅଧିକ ପରିମାଣରେ ବ୍ରହ୍ମ ପ୍ରୟାସୀ । ଅସଂଖ୍ୟ ଆବରଣରେ ନିଜକୁ ଆବୃତ କରି କରି ପରିଶେଷରେ ଜଡ଼ ଅବିଦ୍ୟାର ଅଂଧକାରରେ ଦେହାତ୍ମ ପ୍ରତ୍ୟୟରେ ବୁଡ଼ିଯିବାକୁ । ହୁଏତ ଜୀବ ଏବଂ ବ୍ରହ୍ମ ଗୋଟିଏ ଚକ୍ରର ଦୁଇ ବିପରୀତ ବିନ୍ଦୁ । ପରସ୍ପରର ଅନୁପୂରକ, ପରସ୍ପରର ଉତ୍ତେଜକ, ପରସ୍ପରର ଲକ୍ଷ୍ୟ । ଜୀବର ଲକ୍ଷ୍ୟ ବ୍ରହ୍ମ ଏବଂ ବ୍ରହ୍ମର ଲକ୍ଷ୍ୟ ଜୀବ । ହୁଏତ ଗୋଟିଏ ବଳୟ ଉପରେ ହିଁ ସମୁଦ୍ର ବେଳାକୁ ଛୁଇଁ ପୁନର୍ବାର ଫେରିଯିବା ପରି (ଆୟାତି ଯାତି ପୁନରେବ ଜଳଂପ୍ରୟାତି) ଭଳି ସେ ଆସି ଜୀବଭୂତ ହେଲାପରେ ପୁନର୍ବାର ବ୍ରହ୍ମଭୂତ ହେବାକୁ ତପସ୍ୟା କରନ୍ତି । ଜୀବ ଓ ବ୍ରହ୍ମ ଦୁଇଟି ବାଚକ ଶବ୍ଦ । ଦୁଇଟି ଅବସ୍ଥା ମାତ୍ର । ଦୁହେଁ ସେଇ ତତ୍ - ତଦେବୈତତ୍ ।



## ୨୦-୭-୮୭

"[illegible] ଚିତା ଦ୍ୱୟୋର୍ମଧ୍ୟେ ଚିନ୍ତା ଏବ ଗରୀୟସୀ" । ତୁଷାଗ୍ନି ପରି ଚିନ୍ତା ଏବଂ ଉଦ୍‌ବେଗ ଯେତେ ପରିମାଣରେ ଜୀବନକୁ ଭସ୍ମୀଭୂତ କରେ, ଚିତାଗ୍ନି ତାହା କରେ ନାହିଁ ବୋଲି - ଏହି ଉକ୍ତିରେ କୁହାଯାଇଛି । ଜୀବନରେ ବେଳେବେଳେ ସଂକଟ ଘନୀଭୂତ ହୋଇଯାଏ । କୌଣସି ପନ୍ଥା ଦିଶେ ନାହିଁ । ଅତି ବିକଟ ସମସ୍ୟାମାନ ଚାରିଆଡୁ ବେଢ଼ି ଠିଆହୋଇଯାଆନ୍ତି । କୌଣସି ଗୋଟିକୁ ମୁକାବିଲା କରିବାପାଇଁ ସାମର୍ଥ୍ୟ ନଥାଏ । ସେତିକିବେଳେ ଅତି ଦୁର୍ବଳ ଓ ଅସହାୟ ଅବସ୍ଥାରେ ଚିନ୍ତା କାଳନାଗୁଣୀ ପରି ମନରାଜ୍ୟକୁ ଅଧିକାର କରେ । ତାର ଦଂଶନରେ କୌଣସି ପ୍ରକାର ସୂକ୍ଷ୍ମ ବିଭବ ଆଉ ରହେନାହିଁ । ରାତିରେ ଶୋଇବା ପୂର୍ବରୁ ଯେଉଁ ଚିନ୍ତା, ନିଦ ଭାଙ୍ଗିବା ବେଳକୁ ସେହି ଚିନ୍ତା ଅବିକୃତ ଅବସ୍ଥାରେ ଅପେକ୍ଷା କରି ରହିଥାଏ । ଚେତନା ନିଦ୍ରାମୁକ୍ତ ହେଉ ହେଉ ସେ ତାକୁ ଧରିନିଏ । ଚିନ୍ତାଗ୍ରସ୍ତ ମଣିଷଟିଏ ଅପାରଗ ଓ ଅସମର୍ଥ କିନ୍ତୁ ତା'ର ଦୁଃଖ ଯେ, ସେ ଏହି ଅସାମର୍ଥ୍ୟ ପାଇଁ କିଛି କରିପାରେ ନାହିଁ । ନା ସେ କାର୍ଯ୍ୟ କରିପାରେ, ନା ନକରି ନିଶ୍ଚିତ ରହିପାରେ । ଭିତରୁ ଶୁଭେ, "କିଛି ଗୋଟାଏ କର, ନହେଲେ ଏ ବନ୍ୟାଜଳ ତତେ ବୁଡ଼ାଇ ଦେବ । କିଛି କରି ନ ପାରିଲେ ଅନ୍ତତଃ ଘୁଞ୍ଚିଯା । ନହେଲେ କ୍ଷୁଧିତ ସିଂହ ଝାମ୍ପି ପଡ଼ିବ ।" ଭିତର ତାଡ଼ନାକୁ ନ ଶୁଣି ତାର ଉପାୟ ନାହିଁ, କିନ୍ତୁ ପାଦେ ଘୁଞ୍ଚିବାକୁ ମନ ମାନେ ନାହିଁ । ଏହା ଏକ ଅସହନୀୟ ପରିସ୍ଥିତି । ଏତିକିବେଳେ ଈଶ୍ୱରାର୍ପିତ ହେବା ଗୋଟାଏ ପ୍ରକାର ଅନିବାର୍ଯ୍ୟତା । କିନ୍ତୁ ଏପରି ବିପଦଜାଲ ଘୋଟି ରହିଥିବା ବେଳେ ଈଶ୍ୱର ବିଶ୍ୱାସ ମଧ୍ୟ ଟଳମଳ ହୋଇଯାଏ । ମନରେ ବରଂ ସଂଶୟ, ତ୍ରାସ, ଅବିଶ୍ୱାସ କାହୁଁ ଆସି ଭରିଯାଏ ।

ଚିନ୍ତାଗ୍ନି ଗ୍ରାସ କରିଗଲା ବେଳେ, ଜୀବନ ଜଳିଜଳି ନିଃଶେଷ ହୋଇଗଲା ବେଳେ ଚେତନାର ସାମାନ୍ୟତମ ଆବାହନରେ ସେ ଆବିର୍ଭୂତ ହୋଇଯାନ୍ତି । ନିମ୍ନଭୂମିର ଲତାଜାଲରୁ ବ୍ୟୁତ୍ଥାନ ଘଟେ, ଏବଂ ସେ ହଠାତ୍ ଆବିଷ୍କାର କରେ ଯେ, ସେ ମୁକ୍ତ । ତାର ସଂତାପ ନାହିଁ, ଚିନ୍ତା ନାହିଁ, କାହାର ଗଭୀର ଆଶ୍ୱାସନାରେ ତା'ର ସମସ୍ତ ତାପ ଉପଶମ ହୋଇଯାଇଛି । ସେ ପ୍ରଥମଥର ସକାଶେ ଏ ଅଦୃଶ୍ୟ କୋମଳ ସ୍ପର୍ଶକୁ କୃତଜ୍ଞତାର ସହିତ ସ୍ୱୀକାର କରେ ।



## ୧୩-୯-୮୭

ଊର୍ଦ୍ଧ୍ୱଭୂମିରୁ ଯେ ଆବାହନ କରନ୍ତି ସେ ଏକ ରହସ୍ୟ । ସେ ଆବାହନ ମଧ୍ୟ ଅଶ୍ରୁତ, ଅଭୂତ ଏବଂ ସୂକ୍ଷ୍ମ । ଊର୍ଦ୍ଧ୍ୱ ଏକ ଦିଗ ମାତ୍ର, ଅଂଚଳ ନୁହେଁ । ସେ ଦିଗରେ ଆପେକ୍ଷିକତାକୁ ସ୍ୱୀକାର କରି ଊର୍ଦ୍ଧ୍ୱକୁ ଯିବାର ଯୋଜନା କରାଯାଏ । ସେ ଚାହିଁଲେ ଅନନ୍ତକୋଟି ଜୀବସତ୍ତା ଭିତରୁ କାହା କାହାକୁ ଟୋକି ନେଇ ଯାଇପାରେ ଅକସ୍ମାତ । ଅଜସ୍ର କରୁଣା ବର୍ଷା କରିଦେଇପାରେ ଆପାତ ନିର୍ବିଚାରରେ । ଝଣାପଡ଼େ ସତେବା ସମ୍ରାଟ ଭଙ୍ଗୀରେ ସେ ଯାହା କରିବେ ତାହା ଅନସ୍ୱୀକାର୍ଯ୍ୟ । ଆମ ମାନଦଣ୍ଡରେ ଯୋଗ୍ୟାଯୋଗ୍ୟ ମାନିବାକୁ ସେ ବାଧ୍ୟ ନୁହଁନ୍ତି । ଏଣୁ ପବିତ୍ର ଦେବଭୂମି ଋଷିକେଶରୁ ନିମନ୍ତ୍ରଣ ସେହିପରି ଏକ ଆବାହନ । ତ୍ରିତାପ ଜ୍ୱାଳାର ପ୍ରତୀକ ସ୍ୱରୂପ "ଜ୍ୱାଳାପୁର" ଷ୍ଟେସନ ପରେ "ହରିଦ୍ୱାର" । ପବିତ୍ର ଭବ୍ୟ ପରିବେଶ ପାବନୀ ଗଙ୍ଗା ଏକ ଅନ୍ୟଭୂମିର ସଂକେତ ବହନ କରି ବିଦ୍ୟମାନ । ତେବେ ଅନୁଭବ ହୋଇପାରେ ଯେ ହରିଦ୍ୱାର ତ ଦ୍ୱାରକେବଳ, ହରି କାହାନ୍ତି ? ସେଇଠାରୁ ବୋଧେ ହରିଙ୍କ ସନ୍ଧାନରେ ଦେବତାତ୍ମା ହିମାଳୟଙ୍କର ଅସଂଖ୍ୟ ଶୃଙ୍ଗ କୋଟରେ ଖୋଜିବାକୁ ପଡ଼େ । ସର୍ବତ୍ର ପରିପୂର୍ଣ୍ଣ ହରିସତ୍ତା କାହାକୁ କେଉଁଠି କେଉଁ ପ୍ରକାରେ ମିଳିଯିବା ମଧ୍ୟ ଅସାମାନ୍ୟ ନୁହେଁ । କିନ୍ତୁ ଋଷିକେଶର ପ୍ରକୋଷ୍ଠରେ ପହଂଚିବା ମାତ୍ରେ ଗୋଟିଏ ବାଣୀ କାନ୍ଥରେ ପ୍ରଦର୍ଶିତ ହୋଇଛି - Are you seeking God ? Seek him in your heart - Swami Sivananda ବାଃ, ହରି କାହାନ୍ତି ବୋଲି ଭିତରେ ପ୍ରଶ୍ନ ହେବା ମାତ୍ରେ ଏଭଳି ସର୍ବତୋଭାବେ ସୁଗଠିତ, ସୁଭାଷିତ ଉତ୍ତର ମିଳିବା ଆଶ୍ଚର୍ଯ୍ୟର ବିଷୟ । କୃତାର୍ଥୋସ୍ମି, କୃତାର୍ଥୋସ୍ମି ।



## ୯-୧୦-୮୭

ଗତ ୨୨ ତାରିଖରେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ପ୍ରଶ୍ନୋତ୍ତରୀ -

ପ୍ରଶ୍ନ - ପ୍ରେମ ଓ ଭକ୍ତି ଭିତରେ ସାଦୃଶ୍ୟ ଏବଂ ପାର୍ଥକ୍ୟ କ'ଣ ?

ଉତ୍ତର - ସଂପର୍କ ଦୁଇ ପ୍ରକାର (୧) I and it (୨) I and thou । ଅଧିକାଂଶ ସଂପର୍କ ପ୍ରଥମ ପର୍ଯ୍ୟାୟରେ ଯେଉଁଠି କେବଳ ନେବାକୁ ପ୍ରବୃତ୍ତି ହେଉଥାଏ । ବ୍ୟକ୍ତିକୁ ବସ୍ତୁଭଳି ବିନିଯୋଗ, ଉପଭୋଗ,

ବ୍ୟବହାର କରାଯାଏ । ତା'ର ମୂଲ୍ୟ କେବଳ ତାର ଉପାଦେୟତା । କ୍ୱଚିତ୍ ସଂପର୍କ ନିବିଡ଼ ହେଲେ ଦେବା ପାଇଁ ଇଚ୍ଛା ଜାଗ୍ରତ ହୁଏ । ତାହା ଦ୍ୱିତୀୟ ପର୍ଯ୍ୟାୟର ସେଭଳି ଶୁଦ୍ଧ ସଂପର୍କରେ ପ୍ରେମ ଏବଂ ଭକ୍ତି ସମ୍ଭବ । ଉଭୟ କ୍ଷେତ୍ରରେ ଦେବା ହିଁ ସାର୍ଥକତା ଏହା ସେମାନଙ୍କର ସାଦୃଶ୍ୟ । ପାର୍ଥକ୍ୟ ହେଲା ଯେ ଭକ୍ତି ସର୍ବଦା ବ୍ୟବଧାନକୁ ସ୍ୱୀକାର କରେଏବଂ ତାହା ଜାରି ରଖିବାକୁ ପ୍ରୟାସ କରେ । ନହେଲେ ନବଧାଭକ୍ତି ସମ୍ଭବ ନୁହେଁ । ଆରାଧ୍ୟ ଏବଂ ଆରାଧକ, ଭକ୍ତ ଏବଂ ଭଗବାନ୍ ପୃଥକ୍ ରହିଲେ ହିଁ ସମ୍ଭବ । ସେହିପରି ପ୍ରେମ । କିନ୍ତୁ ପ୍ରେମର I and thou ସଂପର୍କ ଜନିତ ଉଭୟ ଭିତରେ ରହୁଥିବା ଅନିବାର୍ଯ୍ୟ ବ୍ୟବଧାନକୁ ଅସ୍ୱୀକାର କରାଯାଏ । ସବୁବେଳେ ପ୍ରୟାସ ରହେ କିପରି ଦୁଇମିଶି ଏକ ହୋଇଯିବେ । ଏହା ହିଁ ପାର୍ଥକ୍ୟ । ଆପଣ କ'ଣ ଈଶ୍ୱର ?

ଗୋଟିଏ ପ୍ରଶ୍ନର ଗୋଟିଏ ଉତ୍ତର ନହୋଇପାରେ । କାରଣ ଗୋଟିଏ ଉତ୍ତରରେ ସମଗ୍ର ଉତ୍ତର ଦିଆଯାଇପାରେ ନାହିଁ । ଯଥା, ଯେଉଁ ପ୍ରଶ୍ନ ପଚରା ଯାଉଛି - ଏହାର ଉତ୍ତର ଏକପଦବାଚୀ ହଁ କିମ୍ବା ନା ଏଥିରୁ ଯେ କୌଣସି ଗୋଟିଏ ଉତ୍ତର ସେଭଳି ପ୍ରଶ୍ନ ପାଇଁ ଅପର୍ଯ୍ୟାପ୍ତ । ଏଣୁ ଏହାର ଉତ୍ତର ଉଭୟ ହଁ ଏବଂ ନା ।

ହଁ, କାରଣ ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ । ମଣିଷ ଭିତର ଅନାମରୂପା ତତ୍ତ୍ୱ ହିଁ ଈଶ୍ୱର । ମୁଁ ସେଇ ଦୃଷ୍ଟିରୁ ଈଶ୍ୱର । ଏହାର ଉତ୍ତର ନା ମଧ୍ୟ । କାରଣ ନାମ ରୂପ ଧାରଣ କରି ଅହଂକାର ଆବୃତ ହୋଇଥିବାରୁ ମୁଁ କେବଳ Ego , ଜୀବମାତ୍ର; ଈଶ୍ୱର ନୁହେଁ ।



## ୯-୧୦-୮୭

ଜଣେ ସଂପୂର୍ଣ୍ଣ ଅଜାଣତରେ ପାପ କାର୍ଯ୍ୟ କରିପାରେ । ଯଥା ଚାଲିଲାବେଳେ ଅସଂଖ୍ୟ କୀଟଙ୍କୁ ପାଦତଳେ ମାରିଦେଇପାରେ । ଜୀବହତ୍ୟା ପାପ । ସେ କିନ୍ତୁ ଜାଣେନାହିଁ ଯେ ସେ ପାପ କରୁଛି । ଆଉ ଜଣେ ପାପ କରେ ଏବଂ ଜାଣେ ସେ ପାପ କରୁଛି । ତୃତୀୟ ଜଣେ ପାପକରେ ଏବଂ ତାକୁ ପୂଣ୍ୟ ବିଚାରି କରେ । ଏଥିରୁ ପାପୀ କିଏ ? ପ୍ରଥମ ବ୍ୟକ୍ତି ଅଜ୍ଞାତସାରରେ ପାପ ପୁଣ୍ୟ କରିବାର ଦାୟିତ୍ୱ ଏବଂ ତା'ର ଫଳଭୋଗ ଉଭୟରୁ ମୁକ୍ତ । ଦ୍ୱିତୀୟ ବ୍ୟକ୍ତି ଜାଣି ଶୁଣି ଅଣାୟତରେ, ଅନ୍ୟଦ୍ୱାରା କିମ୍ବା ପରିସ୍ଥିତିରେ ବାଧ୍ୟ ହୋଇ ପାପକରେ ସତ, କିନ୍ତୁ ସେଥିପାଇଁ ତା ମନରେ ଗ୍ଲାନି ହେଉଥାଏ । ଗ୍ଲାନି ଏକ ପ୍ରକାର ଅନୁତାପ । ସେ ଚାହେଁ ପାପ ନ କରିବାକୁ କିନ୍ତୁ ତା'ର ସାମର୍ଥ୍ୟ ଅଣ୍ଟେ ନାହିଁ । ସେ ମଧ୍ୟ ଅପରାଧୀ ହେଲେ ସୁଦ୍ଧାପାପୀ ନୁହେଁ । ତୃତୀୟ ବ୍ୟକ୍ତି ପାପକୁ ପୂଣ୍ୟ ବିଚାର କରି ଯୁକ୍ତିବଳରେ ପାପଇଚ୍ଛାକୁ ସମର୍ଥନ କରି ପାପକରେ । ସେହି ପାପୀ, ଏବଂ ସେଥିପାଇଁ, ସେ ସମସ୍ତ ଫଳଭୋଗ କରିବାକୁ ବାଧ୍ୟ ।

ତେବେ ପ୍ରଶ୍ନ ଉଠିପାରେ ପାପ କ'ଣ ? ପାପ ଅଛି କି ନାହି ? ପାପ ପୂଣ୍ୟର ବିଚାର କିଏ କରେ ? ଏଗୁଡ଼ିକ ଅତି ବ୍ୟାପକ ଏବଂ ଗମ୍ଭୀର ପ୍ରଶ୍ନ । ରସେଲଙ୍କ ମତରେ ପାପ ଆଂଚଳିକ (ଭୌଗଳିକ) (Sin is

Geographical) ପ୍ରତ୍ୟେକ ମାନବ ସମାଜରେ ଏକତ୍ର ରହିବାର ପ୍ରୟାସରେ ଅନେକ ନୀତି ପ୍ରଣୟନ ହୁଏ । ସେଗୁଡ଼ିକ ଅନେକ ସମୟରେ ସେମାନଙ୍କର ସଂସ୍କୃତିର ସୂଚକ । ଏହି ନୀତିରେ ଜୀବନଚର୍ଯ୍ୟା ଏବଂ ସୀମା ଆଚରଣ ନିର୍ଦ୍ଧାରିତ ହୋଇଥାଏ, ନୀତିକାରକ ମାନେ ସାମୂହିକ ସ୍ୱାର୍ଥକୁ ଆଖିଆଗରେ ରଖି ବ୍ୟକ୍ତି ଉପରେ ଅଧାଦେଶ ଜାରି କରିଥାନ୍ତି । ଏଣୁ କେତେକ ଆଚରଣକୁ ଅପରାଧ ପର୍ଯ୍ୟାୟରେ ରଖାଯାଇଥାଏ । ଏବଂ ତାହା ପାଇଁ ଦଣ୍ଡବିଧାନ ମଧ୍ୟ ଥାଏ । ଚୋରି କରିବା ଅପରାଧ । ଅନ୍ୟକୁ ଆକ୍ରମଣ କରିବା କିମ୍ବା ହତ୍ୟା କରିବା ଅପରାଧ । ଏ ସମସ୍ତ ପଶ୍ଚାତ୍‌ରେ ପ୍ରାୟତଃ ଏକ ସାମାଜିକ ମୂଲ୍ୟର ଲଂଘନ ଘଟିଥାଏ ବୋଲି ଦୋଷୀକୁ ଦଣ୍ଡବିଧାନ କରାଯାଏ । କିନ୍ତୁ ବେଳେବେଳେ ଆଉ ଏକ ବ୍ୟାପକ ପର୍ଯ୍ୟାୟର ମୂଲ୍ୟ ଲଂଘନ କରାଯାଏ । ଯଥା ମିଥ୍ୟା କହିବା – ଦଣ୍ଡନୀୟ ଅପରାଧ ନୁହେଁ – ଅନ୍ୟକୁ ଠକିବା ଅପରାଧ କିନ୍ତୁ ମିଛ କହିବା ଅପରାଧ ନୁହେଁ । ସେଥିପାଇଁ ଦଣ୍ଡ ନାହିଁ । ଆଉ କେତେକ ଆଚରଣ ଉଭୟ ଭୂମିର ମୂଲ୍ୟ ଲଂଘନ କରିଥାଏ । ଯଥା ପରଦାର ଗମନ ତାହା ଅପରାଧ – ସାମାଜିକ ଦୃଷ୍ଟିରୁ ଏବଂ ତାହା ଏକ ପାପ । ତାହା ଅନ୍ୟ ଏକ ପର୍ଯ୍ୟାୟର ଲଂଘନ କରେ । ସେ ମୂଲ୍ୟଟି ଅନେକ ସମୟରେ ଆଂଚଳିକ । ଯଥା ଭାରତବର୍ଷରେ ମାଂସ ପାଇଁ ଗୋବଧ, ଏକ ଗର୍ହିତ ପାପକାର୍ଯ୍ୟ । କିନ୍ତୁ ଅନ୍ୟ ଦେଶରେ ତାହା ଅତି ସାଧାରଣ ଏବଂ ସ୍ୱାଭାବିକ । ପାଶ୍ଚାତ୍ୟ ଦେଶରେ ସେମାନେ ବିଶ୍ୱାସ କରନ୍ତି ଯେ, ମଣିଷ ମାତ୍ରେ ପାପୀ, କାରଣ ସେ ପାପାତ୍ମା, ପାପ ସମ୍ଭବ । ସେଥିପାଇଁ ସେ ଜୀବନସାରା କେବଳ ପ୍ରାୟଶ୍ଚିତହିଁ କରିପାରେ । ଅଥଚ ଆମ ଦେଶରେ ସବୁ ମଣିଷ ଅମୃତସ୍ୟ ପୁତ୍ରାଃ ସେ ଶୁଦ୍ଧ, ବୁଦ୍ଧମୁକ୍ତ ପଦାର୍ଥ, ସେ ନିଷ୍କଳୁଷ ଆତ୍ମ ସ୍ୱରୂପ । ଦୃଷ୍ଟିଭଂଗୀର ଭିନ୍ନତା ହେତୁ ପାପ ବିଚାର ମଧ୍ୟ ଭିନ୍ନ ହେବାକୁ ବାଧ୍ୟ । ଅପରାଧ ବିଚାର ମୂଳକ ସାମାଜିକ କିନ୍ତୁ ପାପ ବିଚାରକେବଳ ନୈତିକ । ପାପପୂଣ୍ୟ ଭଲମନ୍ଦ ବିଚାର ହେଉଛି ବିବେକ ବିଚାର । ସୁନ୍ଦର ଅସୁନ୍ଦର ବିଚାର ତାର ରୁଚି ବିଚାର । ଏହିପରି Social, Ethical, Aesthetic ଆଚରଣ ମାନ ନିର୍ଦ୍ଦିଷ୍ଟ କରାଯାଇଥାଏ । ଏଣୁ କୌଣସି ଆଚରଣକୁ ସମଗ୍ର ମାନବ ଜାତି ପାଇଁ ପାପ ଅଥବା ପୂଣ୍ୟ କହିଦେବା କଠିନ । ତଥାପି ପ୍ରତେକ ମଣିଷର ଚେତନା କେନ୍ଦ୍ରରେ ଯୁଗ ଯୁଗ ଧରି ଯେଉଁ ଗଭୀର ରହସ୍ୟ ବିଭିନ୍ନ ନାମରେ ନାମିତ ହୋଇ ଆସିଛି ଯାହାକୁ ବୁଝିବାକୁ, ଯାହା ପାଖରେ ପହଂଚିବାକୁ ସେ ଏ ଯାବତ୍ ପ୍ରୟାସୀ, ସେଇ ସଂପର୍କରେ ମଣିଷ ଭିତରେ ଭିନ୍ନତା ନାହିଁ । ତତ୍ ସଂକ୍ରାନ୍ତୀୟ ଆଚରଣ କିମ୍ବା ତା'ର ଲଂଘନ ବୋଧହୁଏ ସାର୍ବଜନୀନ ପାପ ଅଥବା ପୂଣ୍ୟ । ଯେପରି ପୃଥିବୀ ପୃଷ୍ଠରେ ସାତଟି ମହାଦେଶ ଏବଂ ମହାସମୁଦ୍ର ନିଜ ନିଜ ସୀମାରେଖା ଜଗିରହିଛନ୍ତି, କହୁଛନ୍ତି ଏ ପୂର୍ବ ସେ ପଶ୍ଚିମ । କିନ୍ତୁ ପୃଥିବୀର ଏକକ କେନ୍ଦ୍ର ପ୍ରାଚ୍ୟ ନୁହେଁ କି ପାଶ୍ଚାତ୍ୟ ନୁହେଁ । ତାହା ପୃଥିବୀର ଆତ୍ମା । ସେପରି ମାନବଚେତନାର ଗଭୀରତମ ବିନ୍ଦୁ ଏକ ଯେଉଁଠାରେ ସେ ସେଇ ଉତ୍ତମ ରହସ୍ୟକୁ ନେଇ ଆନ୍ଦୋଳିତ ହୁଏ । ସେଇଠି ସମସ୍ତ ବୈଷମ୍ୟ ଲୋପ ପାଇଯାଏ, କିନ୍ତୁ ଆଶ୍ଚର୍ଯ୍ୟର କଥା ସେଇ ବିନ୍ଦୁରେ ପାପପୂଣ୍ୟ ବିଚାର ମଧ୍ୟ ଲୋପ ପାଇଯାଏ । ସମସ୍ତ ଆପେକ୍ଷିକତା ଏକ ଦ୍ୱୈତ ଭୂମିରେ । ଏକକ ସତ୍ୟ ପାଖରେ ଦ୍ୱୈତ ନାହିଁ । ଏଣୁ ପାପ ପୂଣ୍ୟ ମଧ୍ୟ ନାହିଁ ।



"ଅପରାଧ ପରଂପରାବୃତଂ ନହି ମାତା ସମୁପେକ୍ଷତେ ସୁତମ୍ ।" ଯାହା ହେଲେ ସୁଦ୍ଧା ମା ପୁଅକୁ ଛାଡ଼ିପାରେ ନାହିଁ । ଏଥିପାଇଁ ପୁଅ ବୋଧହୁଏ ମା'ର ଯୋଗ୍ୟ ହେବାକୁ ଖାତିର କରେ ନାହିଁ । ବରଂ

ଅପରାଧ ପରେ ଅପରାଧ କରିଚାଲେ ଏଇ ପ୍ରତିଶ୍ରୁତିରେ ଯେ ମା' ତାକୁ ଛାଡ଼ିପାରେ ନାହିଁ । ତା'ର ଅପରାଧ - ପ୍ରବଣତା ଏ ପ୍ରକାର ପ୍ରତିଜ୍ଞା ପାଇଁ ବରଂ ଅବାରିତ ନିଜକୁ ଜାହିର୍ କରି ଚାଲିଥାଏ । ତାର ଅପରାଧବୋଧ ସହିତ ବିବେକ ସଂଯୁକ୍ତ ହୋଇ ଅନୁତାପ ସୃଷ୍ଟି କରେ ନାହିଁ । ସେ ଲଜ୍ଜିତ କିମ୍ବା ସତର୍କ ହୁଏନାହିଁ । ତଳମୁହାଁ ପାଣିଧାର ପରି ସେ କେବଳ ନିମ୍ନମୁଖୀ ଜୀବଧର୍ମରେ ଅପରାଧ କରିଚାଲିଥାଏ । ଅପରାଧ ଅର୍ଥ ନୁହେଁ ଯେ ମଣିଷ ତିଆରି ଆଇନକୁ ଲଂଘନ କରି ସେ ଦଣ୍ଡନୀୟ ହୁଏ । ଏ ପକ୍ଷ ତ ରହିଛି ସମସ୍ତ ପାଇଁ, କିନ୍ତୁ ଯେ ଥରେ Divine କୁ ସ୍ୱୀକାର କରିଛି ଏବଂ ତା ପାଖରେ ସମର୍ପିତ ହେବାର ସଂକଳ୍ପ କରିଛି ତା ପାଇଁ ଅପରାଧର ସଂଜ୍ଞା ଆହୁରି ଗଭୀର ଏବଂ ବ୍ୟାପକ । ସେ ଯାହାକୁ କେବଳ ବାକ୍ୟରେ ଆବାହନ କରୁଥାଏ ତାଙ୍କ ଆର୍ବିଭାବ ଏବଂ ଅବସ୍ଥାନ ପାଇଁ ତା ଭିତରେ ଯୋଗ୍ୟତା ସୃଷ୍ଟି କରିବା ତାର ସାଧନା । ମନ ପ୍ରାଣ ଶରୀର ଶୁଚିମନ୍ତ ହେବ, ଶ୍ରୀମନ୍ତ ହେବ, ତେବେ ସିନା ସେ ନିଜକୁ ଅର୍ପଣ କରି ପାରିବ । ଏଣୁ କୌଣସି ଭୂମିରେ ସାମାନ୍ୟତମ ଅଶୁଚି, ସାମାନ୍ୟତମ କଳୁଷ ତା'ର ସାଧନାର ବିରୋଧୀ । ମହାମହିମ ସମ୍ରାଟଙ୍କୁ ନିମନ୍ତ୍ରଣ କରି ଆଣିଲେ ତାଙ୍କୁ ଯାହା ଅତିଥି ସତ୍କାର କରାଯିବ ତାହା ତାଙ୍କ ପାଇଁ ସଂପୂର୍ଣ୍ଣ ଯୋଗ୍ୟହେବା ସମ୍ଭବ ନୁହେଁ । ତାହା କେବଳ ନିଜ ଆବାସସ୍ଥଳୀ ରାଜଭବନରେ ହିଁ ସମ୍ଭବ । କିନ୍ତୁ ଏଇଠି ଅନ୍ତତଃ ସେଇ ଝାଟିମାଟି କୁଡ଼ିଆକୁ ନିର୍ମଳକରି ଖଣ୍ଡିଏ ଅତି ନିର୍ମଳ ଆସନ ସଜାଇବାକୁ ହେବ । ଏଠି ଦରିଦ୍ରହେବା ଅପରାଧ ନୁହେଁ । ଅଶୁଦ୍ଧ ମଳିନ ହେବା ଅପରାଧ । ଖୁଦ ଗଣ୍ଡେ ଖାଇବାକୁଦେଲେ ସୁଦ୍ଧା ସେଇ ପାତ୍ରଟି ମାଜି ଚକ୍‌ଚକ୍ କରାଯାଇପାରେ । ସେଥିରେ କେଉଁଠି ଟିକିଏ ହେଲେ ଦାଗ ଲାଗିଥିଲେ ତାହା ତାଙ୍କର ଯୋଗ୍ୟ ହୋଇପାରିବ ନାହିଁ । ଅତଏବ ସେ ମୋତେ ଛାଡ଼ି ପାରିବେ ନାହିଁ ଏଇ ଭରସାରେ ଯଦି ମୁଁ କେବଳ ଅପରାଧ ହିଁ କରି ଚାଲିଥାଏ ତେବେ ମୁହିଁ ତାଙ୍କୁ ଛାଡ଼ିଦେଉଛି । କୁମାତା ସିନା ସମ୍ଭବ ନୁହେଁ କୁପୁତ୍ରର ଅଭାବ ନାହିଁ । "କୁପୁତ୍ରୋ ଜାୟେତେ କ୍ୱଚିଦପି କୁମାତା ନ ଭବତି ।" ଅପରାଧ କରିବା ନକରିବା ବ୍ୟକ୍ତିର ସ୍ୱେଚ୍ଛାଧୀନ । ତାର ଦାୟିତ୍ୱ ଏବଂ ଫଳାଫଳ ଭୋଗ କରିବାର ଅଧିକାର ମଧ୍ୟ କେବଳ ତା'ରି । ଗୋପନରେ ଅପରାଧ କଲାବେଳେ ସେ ନିଜେ ନିଜର ସାକ୍ଷୀ । ସେ ଆଭ୍ୟନ୍ତରୀଣ ସାକ୍ଷ୍ୟ ପ୍ରମାଣକୁ ଠକି ଦେବାର ଉପାୟ ନାହିଁ । ସେ ନିର୍ଭୁଲ ଭାବରେ ବୟାନ ଦେବ । ଏବଂ ତା'ର ସାକ୍ଷ୍ୟ ଉପରେ ନିଷ୍ପତ୍ତି ମଧ୍ୟ ନିଆଯିବ । ଏଣୁ ସାବଧାନ ।



## ୧୪-୧-୮୮

ଦୃଷ୍ଟି ଆଲୋକ ଭଳି ସରଳରୈଖିକ । ଏଣୁ ବର୍ତ୍ତୁଳତାର ଅନୁଭବ ସେଥିରେ ନାହିଁ । ଏଣୁ ଭିନ୍ନ ଭିନ୍ନ ଗୋଲାର୍ଦ୍ଧର ସ୍ୱତନ୍ତ୍ର ଦୃଶ୍ୟକୁ ସ୍ମୃତି ଏବଂ ଅନୁମାନ ସାହାଯ୍ୟରେ ଏକତ୍ର କରି ବର୍ତ୍ତୁଳତାକୁ ବୁଝିବାକୁ ହୁଏ । ଯୁକ୍ତି, ବିଚାର ଆଦି ବ୍ୟବହାର ହୁଏ । ସାଧାରଣ ବସ୍ତୁଜ୍ଞାନ ପାଇଁ ଏତେ ପ୍ରୟାସ ଏବଂ ଆୟୋଜନ ପର୍ଯ୍ୟାପ୍ତ ହେଉନଥିବା ସ୍ଥଳେ କେବଳ ଭାବରାଜ୍ୟର ବର୍ତ୍ତୁଳ ସତ୍ୟକୁ କିପରି ବା ବୁଝିହେବ ? ସେଥିରେ ଅନ୍ୟ ଅସୁବିଧା ହେଲା ଯେ ବର୍ତ୍ତୁଳତାରେ ପୂର୍ଣ୍ଣତା ସୂଚିତ ହୁଏ ସତ, କିନ୍ତୁ ଗୋଟିଏ ଗୋଟିଏ ଭାଗକୁ ସ୍ୱତନ୍ତ୍ର ସ୍ୱୀକୃତି ଦେବା

ଦ୍ୱାରା ବୈପରୀତ୍ୟ ଲକ୍ଷ୍ୟ ମଧ୍ୟ କରାଯାଏ । ଯଥା ଉପରତଳ, ପୂର୍ବ ପଶ୍ଚିମ ଇତ୍ୟାଦି । ଏହି ବୈପରୀତ୍ୟକୁ ବେଳେବେଳେ ବିଚାରସର୍ବସ୍ୱ ମନ ଗ୍ରହଣ କରିପାରେ ନାହିଁ .....

ତେବେ ବର୍ତ୍ତୁଳତା ପାଇଁ ଏତେ ଗୁରୁତ୍ୱପୂର୍ଣ୍ଣ ଆଲୋଚନାର ଅର୍ଥ କ'ଣ ? ତା'ର କାରଣ ହେଲା ଯେ ସୃଷ୍ଟିର ମୌଳିକ ନିୟମ ଭିତରୁ ବର୍ତ୍ତୁଳତା ଗୋଟିଏ । ଏହାକୁ ମହାକାଶର ବିକୀର୍ଣ୍ଣ ହୋଇଥିବା ପ୍ରତ୍ୟେକ ବସ୍ତୁପିଣ୍ଡ ସେମାନଙ୍କର କକ୍ଷ ରେଖାରେ ପ୍ରତିଫଳିତ କରୁଥିବା ଦେଖାଯାଏ । ଅହୋରାତ୍ର ପରି ଜନ୍ମମୃତ୍ୟୁ ଇତ୍ୟାଦି ଗୋଟିଏ ବୃତ୍ତରେ ଗତିକଲା ପରି ଜଣାଯାଏ । ଯେଉଁ ଅଜ୍ଞାତରୁ ଆରମ୍ଭ ହେଲା ସେଇ ଅଜ୍ଞାତରେ ବୋଧହୁଏ ପ୍ରଲୀନ ହୁଏ ସୃଷ୍ଟି । ଏଥିରେ ବୈପରୀତ୍ୟ ସ୍ୱତଃ ସମାହିତ ହେଉଥାଏ । ଯେକୌଣସି ସାମଗ୍ରିକ ଦୃଷ୍ଟିରେ ଏଇ ବୈପରୀତ୍ୟ ସମାଧାନର ଆବଶ୍ୟକତା ଅଛି – ଧରାଯାଉ ଯେତେବେଳେ ଉପନିଷଦ୍ କହନ୍ତି ଯେ, "ସେ ଗତି କରେ : ସେ ଗତିକରେ ନାହିଁ । ସେ ଦୂରସ୍ଥ, ସେ ଅନ୍ତସ୍ଥ ।" ବାକ୍ୟ ଏବଂ ସାଧାରଣ ଭାବ ପ୍ରକାଶରେ ଏହା ବାଚାଳତା ପରି ଶୁଭିବା ସ୍ୱାଭାବିକ । କିନ୍ତୁ ପରମ ସତ୍ୟକୁ ଏଭଳି ଭାବରେ ହିଁ ବିପରୀତ ମେରୁ ସ୍ପର୍ଶକରି କୁହାଯାଇପାରେ ନହେଲେ ଏକ – ପାକ୍ଷିକ ବିଚାର; ଆଂଶିକ, ଅପୂର୍ଣ୍ଣ ଏଣୁ ଭ୍ରମାତ୍ମକ ହେବାକୁ ବାଧ ।

ଏଭଳି ବିଚାରର ପ୍ରତ୍ୟକ୍ଷ ଅନୁଭବ କ'ଣ ସମ୍ଭବ ନୁହେଁ ? ନା, ସ୍ଥୂଳଦୃଷ୍ଟିରେ ସମ୍ଭବ ନୁହେଁ । ଆଖିରେ ଗୋଲାର୍ଦ୍ଧ ହିଁ ଦେଖାଯିବ, ଗୋଲକ ନୁହେଁ । କିନ୍ତୁ ସବୁ ଇନ୍ଦ୍ରିୟର ଅନୁଭବକୁ ସ୍ପର୍ଶ ବୋଲି କୁହାଯାଇଛି । ଏଇ ଗୋଟିଏ ସ୍ପର୍ଶ ଇନ୍ଦ୍ରିୟରେ, ତାର ବ୍ୟାପକତା ସାହାଯ୍ୟରେ ବର୍ତ୍ତୁଳତାର ଅନୁଭବ ଆସିପାରେ । ସେଥିପାଇଁ ବୋଧହୁଏ "ହସ୍ତାମଳକ" ଦୃଷ୍ଟାନ୍ତ ଦିଆଯାଇଛି । ହାତମୁଠାରେ ଧରିଥିବା ଅଁଳାକୋଳି ପରି ବର୍ତ୍ତୁଳତା ଧରାଦିଏ । ତାହାହିଁ ବର୍ତ୍ତୁଳ ସତ୍ୟର ପ୍ରତ୍ୟକ୍ଷ ଅନୁଭବ ।



**୧୬-୧-୮୮**

ଯେତେ ଚେଷ୍ଟାକଲେ ସୁଦ୍ଧା ଭୌତିକ ଜୀବନର ସୁଖଦୁଃଖ ସହିତ ଅସଂପୃକ୍ତ ରହି ଆଧ୍ୟାତ୍ମିକ ସ୍ଥିରତା ରକ୍ଷାକରି ହୁଏ ନାହିଁ । ଏ ଭୂମିର ବୈଫଲ୍ୟ, ବ୍ୟର୍ଥତା, ଯନ୍ତ୍ରଣା ସବୁ ସେ ଭୂମିରେ ବ୍ୟାଘାତ ସୃଷ୍ଟି କରନ୍ତି । ପ୍ରଥମେ ଆକ୍ରମଣ ହୁଏ ବିଶ୍ୱାସ ଉପରେ । କିଏ ସେ ଅଜବ ସ୍ରଷ୍ଟା କେଉଁଠି ବସିଛି, ଆଖି ନଥାଇ ଶାସନ ଦଣ୍ଡ ଧରିଛି – ଅଂଧ ଯନ୍ତ୍ରପରି ଯୋଗ୍ୟାଯୋଗ୍ୟ ବିଚାର ନକରି ସୁଖଦୁଃଖ ବିତରଣ କରୁଛି – ଫଳରେ ଯେଉଁମାନେ ଯେତେ ଅନୁଗତ ସେମାନେ ସେତିକି ଦୁର୍ଗତ । ତାଙ୍କ କଥା ଶୁଣିବାକୁ ମାଲିକକୁ ବେଳ ନଥାଏ । ଏମାନେ ତ' ନଅର ଭିତରେ ଅନ୍ନ ପାଳିତ ବଚସ୍କର ଭୃତ୍ୟ । ଯା'ର ଆଉ ତ' କିଛି ସମ୍ଭାବନା ନାହିଁ, ଯା କଥା ପଛେ ଶୁଣିବା ।" ନଶୁଣି ପାରିଲେ ନାହିଁ । ଯେତ ଆମ ନିଜ ଲୋକ । ବରଂ ସେତକ ସମୟ ଆରପକ୍ଷ ଲୋକଙ୍କ ଉପରେ ଅଜାଡ଼ି ଚାଲିଛନ୍ତି – ଐଶ୍ୱର୍ଯ୍ୟ । ଆମକୁ ବେଳ ପଡ଼ିଲେ ଭାଗ୍ୟଫଳ, କର୍ମଫଳ ଆଦି କହି ବୁଝେଇ

ସୁଝେଇ ଦିଆଯାଏ । ଅଥଚ ତା'ଙ୍କ ବେଳକୁ ସବୁ ଶାସ୍ତ୍ରରେ ସୂତା ବାନ୍ଧି ଦିଆଯାଏ । ସାହାଣ ମେଲା ହୋଇ ସବୁ ଦରଖାସ୍ତ ମଞ୍ଜୁର କରିଦିଆଯାଏ । ଉପରେ ପଡ଼ି ପାଞ୍ଚ ଯାଗାରେ ପଚିଶି କି ପଚାଶ ଗୁଞ୍ଜି ଦିଆଯାଏ । ଏଣେ ଭକ୍ତର ଥାଳରେ କେବଳ ପାଂଚ ପଇସି । ଏ ବ୍ୟବସ୍ଥା ଅଜବ୍ ନୁହେଁ ତ ଆଉ କ'ଣ ? ପଚାରି ତ ପାରିବ ନାହିଁ, କାରଣ ମାଲିକେ ଯାହା ମନ ତା କରିପାରନ୍ତି । ତାଙ୍କୁ ଭଲା କିଏ ପ୍ରଶ୍ନ କରିପାରିବ । ଏଣୁ ଯେ ଯାହା କଲେ ତା ସପକ୍ଷରେ ଶାସ୍ତ୍ରଯୁକ୍ତି ପ୍ରମାଣ ସବୁ ବରଂ ନିୟୋଜିତ କରାଯାଏ । ସମସ୍ତଙ୍କର ଅନ୍ୟାୟ ଯୋଜନା ପାଇଁ ସବୁ ମଂଜୁର ଅଥଚ ଏଆଡ଼େ ନିମ୍ନତମ ଅନୁଗ୍ରହକୁ ମଧ୍ୟ ନାମଂଜୁର - ଧେତ୍ ତେରି - ଏଇଟା କୁଆଡ଼େ Divine ବ୍ୟବସ୍ଥା - ଧନ୍ୟ ତୁମ Divine, ଯାହାର ଆଖିନାହିଁ, କାନନାହିଁ ବାଜିଗଲେ ଦୋଷ ନାହିଁ ହେଲା ମୂଳ ଘୋଷଣା - କୌଣସି ମଧ୍ୟ ଯୁଗୀୟ ଖିଆଲି ଛୋଟ ମିଜାଜର ଜମିଦାର ଭଳି ଏ ତୋଷାମଦ ପ୍ରିୟ ଅବୁଝା Divine କୁ କେତେ ଅନୁସରଣ କରିବା ? ଏମିତି କଷ୍ଟ ତ ମିଳୁଛି - ତାକୁ ଛାଡ଼ିଦେଲେ ସେ ହୁଏତ ଆହୁରି ଅଧିକ କଷ୍ଟ ଦେଇପାରେ କୌଣସି ଚୂଡ଼ାନ୍ତ Sadist ଭଳି । ଦେଲେ ଦେବ । ଜାଣି ଶତ୍ରୁତା କରି ଦୁଃଖ କଷ୍ଟ ପାଇଲେ କଥାଟା ଅନ୍ତତଃ ବୁଝି ହେବ ତ । କିନ୍ତୁ ବର୍ତ୍ତମାନ ବ୍ୟବସ୍ଥାରେ ତା ହେଉନାହିଁ । ଆରେ, ଜଣେ ଶରଣ ପଶିଲା ପରେ ତା'ର ଦାୟିତ୍ୱ ନେବା Divine ର ନୈତିକ କର୍ତ୍ତବ୍ୟ ନା ନୁହେଁ ? ନା ଆଖିଠାରରେ ଅନ୍ୟପକ୍ଷକୁ ଆୟତ୍ତ କରିନେଇ ନିଜପକ୍ଷକୁ ଲାତ ମାରି ଗଡ଼େଇ ଦେଇପାରିଲେ Divine ବୋଧେ ଖୁସି । ଆଶ୍ରିତକୁ ଯଥେଚ୍ଛାଚାରରେ ଭୟଭୀତ କରି ରଖିବା ଏକ ନିକୃଷ୍ଟ ଯୋଜନା । - ଏହା ହେଲା ଆହତ ଆତ୍ମାର ଚିତ୍କାର । ସୀମିତ ଦୃଷ୍ଟି, ସୀମିତ ସ୍ୱାର୍ଥର ପରିଧି ଭିତରେ ଏହିପରି ବିସ୍ଫୋରଣ ହେବା ସ୍ୱାଭାବିକ । ଏ ବ୍ୟବସ୍ଥାରେ Divine କୁ ଭଲ ପାଇବାର ଘୋର ଅଭାବ । ଏଣୁ ଏହାଦ୍ୱାରା Divine ସହିତ ବ୍ୟବଧାନ ହିଁ ସୃଷ୍ଟିହୁଏ, ଦୁଃଖ ଆହୁରି ବଢ଼େ ।



**୧୫-୭-୮୮**

ରୂପ ବିଗ୍ରହକୁ ନେଇ ଅନେକ ପ୍ରକାର କଳ୍ପନା କରାଯାଇପାରେ । କିନ୍ତୁ ସେଥିରେ ଇଚ୍ଛା, ମନ ଭିତରେ ବୁଡ଼ି ରହିବା ଗୁପ୍ତ ବାସନା ସବୁ କାମ କରିଥାନ୍ତି । ଏଣୁ ମାତୃକୃପା ଅବାରିତ ଲାଭ କରୁଥିବାର ଅନୁଭବ ନିଶ୍ଚୟ ଏକ ଅସାଧାରଣ ସୌଭାଗ୍ୟ । ଯେତେବେଳେ ଇଚ୍ଛା ସାମାନ୍ୟ ପ୍ରୟାସରେ (ପ୍ରାୟ ଅନାୟାସରେ) ମା'ଙ୍କର ନିର୍ଦ୍ଦିଷ୍ଟ ରୂପ ଆପାଦ ମସ୍ତକ ଅତି ନିର୍ମଳ ଭାବରେ ଦିଶି ଯାଉଛି । ଘର ଭିତରେ ବିଚରଣ କରୁଥିବାର, ଚାହିଁ ହସୁଥିବାର ଉର୍ଦ୍ଧ୍ୱରୁ ବିଭୂକୃପାକୁ ଅବତରଣ କରାଉଥିବାର ବିଭିନ୍ନ ରୂପ ଦିଶି ଯାଉଛି । ଏତିକି ଯେ ଏ ବାହ୍ୟ ଚକ୍ଷୁରେ ତାହା ନ ଦିଶି ଏଇ ପରିବେଶରେ ହିଁ ଅତି ସ୍ପଷ୍ଟ ଦେଖିଲା ପରି ଅନୁଭବ ହେଉଛି । ଧରାଯାଉ ଯେପରି କୌଣସି ଅନୁପସ୍ଥିତ ବ୍ୟକ୍ତିଙ୍କୁ ସ୍ମରଣ କରି ଏ ଘରେ ଚଳପ୍ରଚଳ କରାଇବାର କଳ୍ପନା କଲେ ସେପରି ହୁଅନ୍ତା । ସେଥିରେ ଚେଷ୍ଟାକଲେ ମଧ୍ୟ ରୂପ ସ୍ଥିର ଏବଂ ସ୍ପଷ୍ଟ ହେବାର ଆଶା ନାହିଁ । କିନ୍ତୁ ମା'ଙ୍କ କରୁଣା ଏପରି ଯେ, ସେ ସ୍ୱୟଂଆସି ଦର୍ଶନ ଦେଉଛନ୍ତି । ଚେତନାର କୌଣସି ଏକ ପ୍ରାନ୍ତରେ ତାଙ୍କର ସ୍ପର୍ଶ ନଥିଲେ

ଏପରି ବୋଧହୁଏ ହୁଅନ୍ତା ନାହିଁ । Subtle physical କଥା ଯାହା କୁହାଯାଉଛି, ଏଇଟା କ'ଣ ସେ ଅଂଚଳ ହୋଇପାରେ କି ? କେଜାଣି ! ସେଥିରେ ବିଶେଷ ଜାଣିବା ମଧ୍ୟ ଅନାବଶ୍ୟକ । ଯେତେବେଳ ପର୍ଯ୍ୟନ୍ତ ମା'ଙ୍କ ରୂପ ଦିଶୁଛି ତାକୁ ସୌଭାଗ୍ୟ ମଣି କେବଳ କୃତଜ୍ଞ ହେବା କଥା ।



## ୧୦-୮-୮୮

ଯେ ଧରିଥାଏ ସେ ହିଁ ଛାଡ଼େ । ଆମ ଚେତନାରେ ଆମେ କେବେ ହେଲେ ପରମେଶ୍ୱରଙ୍କୁ ଧରିଛୁ ବୋଲି କହିପାରିବା ନାହିଁ । ବରଂ ସେ ହିଁ ଏ ସଚରାଚର ବ୍ରହ୍ମାଣ୍ଡକୁ ଧାରଣ କରିଛନ୍ତି । ଅତଏବ ଯତ୍ କିଞ୍ଚିତ୍ କୃପା ସ୍ପର୍ଶ ଯଦି ଜୀବନରୁ ଅପସରି ଯାଉଛି, ଏ ଛାଡ଼ିବା କ୍ରିୟାଟି ତାଙ୍କର । ସେ ଧରିଥିଲେ । ପାଖକୁ ଆସୁଥିଲେ ଏବେ ଅପସରି ଯାଉଛନ୍ତି । ଜୀବନର ଶୂନ୍ୟ ସ୍ଥାନରେ ଅନ୍ୟ ସମୁଦ୍ର ଭରି ଯାଉଛି । ଯଦି କେତେବେଳେ କୃପା ବିତରଣ କଲାବେଳେ ଜାଣିଶୁଣି ଜଣକୁ ବାଦ୍ ଦିଆଯାଏ, ତା ହେଲେ ଗୋଟିଏ ବିଷୟ ସ୍ପଷ୍ଟ ଯେ ସେ ସେଥିପାଇଁ ଯୋଗ୍ୟ ନୁହେଁ । କିନ୍ତୁ ତାକୁ ନେଇ ମାଲିକଙ୍କ ଯୋଉ ଆପଣାପଣ, ତାକୁ ସେ ସର୍ବାଗ୍ରେ ନ ଥୋଇଲେ କୌଣସି କର୍ମ ହୋଇପାରିବ ନାହିଁ - ଏଭଳି ଅନୁଭବ ଦେଇସାରିଲା ପରେ ହଠାତ୍ ଯଦି ତାକୁ ପରିହାର କରାଯାଏ ତାଙ୍କ ନିଷ୍ଠୁର ପଣିଆକୁ ଆମର ବୋଲି କହିବା ଖୁବ୍ ଅନ୍ୟାୟ ହେବ । ଏଣୁ ବ୍ୟକ୍ତି ହୁଏତ ଜୋରଦେଇ କହିବାକୁ ଚାହେଁ, "ମୁଁ କେବେହେଲେ ତାଙ୍କୁ ଛାଡ଼ିପାରିବି ନାହିଁ । କାରଣ ତାଙ୍କୁ ମୁଁ ଧରି ପାରିନାହିଁ । ସେ'ହିଁ ମୋତେ ଧରି ରଖିବାର ଅନୁଭବ ଦେଇଛନ୍ତି । ଛାଡ଼ିଲେ ସେ'ହିଁ ଛାଡ଼ିବେ, ମୁଁ ନୁହେଁ ।

ସଂପର୍କ କହିଲେ ମଣିଷ କେବଳ ପାର୍ଥିବ, ମାନବୀ ସଂପର୍କ ହିଁ ବୁଝେ । ଇତର ପ୍ରାଣୀ କିମ୍ବା ଜଡ଼ ଚେତନର ଅନ୍ୟ ସତ୍ତା ସହିତ ସଂପର୍କ ମଧ୍ୟ ସେଇଆ ହୋଇଥିବ ବୋଲି ଅନୁମାନ କରେ । ମଣିଷ ମଣିଷ ସଂପର୍କ ଠାରୁ ମଣିଷ ଦେବତାର ସଂପର୍କ ନିଶ୍ଚୟ ଭିନ୍ନ ହେବା କଥା । କିନ୍ତୁ ସବୁ ଦେବତାଙ୍କୁ ପ୍ରଥମେ ମାନବୀକୃତ କରି ସାରିଲା ପରେ ତାଙ୍କ ସହିତ ମୁଁ ସଂପର୍କ ସ୍ଥାପନ କରିଥାଏ । ଏଇ ମାନବତ୍ୱର ଆରୋପ ହି ବିବଦମାନ । ଦେବତା ଚାହିଁଲେ ମାନବ ହୋଇପାରେ । ତା ବୋଲି ଦେବତା ମାନବ କି ? ଏଣୁ ସବୁ ପ୍ରକାର ମାନବଗୁଣ ତାଙ୍କ ଉପରେ ଆରୋପକରି ସାରିଲା ପରେ ସେ ଏକପ୍ରକାର ମଣିଷ ଭଳି ଆଚରଣ କରିବାକୁ ବାଧ୍ୟ । ମଣିଷ ସହିତ ମଧ୍ୟ ସେଇ ସ୍ତରର ଆଚରଣ ମିଳିଯିବା ସ୍ୱାଭାବିକ । Divine ଉପରେ ଆରୋପିତ ମୂଲ୍ୟ, ମୂଲ୍ୟ ନୁହେଁ । ମାନବ ଚେତନାରେ ତାଙ୍କର ଉଦ୍ଭାସିତ ମୂଲ୍ୟ ହିଁ ତାଙ୍କର ପ୍ରକୃତ ମୂଲ୍ୟ; ମଣିଷ ପାଇଁ । ତଥାପି ତାହା ଆପେକ୍ଷିକ । ତାଙ୍କର ଅନାପେକ୍ଷିକ ବା (absolute) ସ୍ୱରୂପ ଅକଳ୍ପନୀୟ ।



ଅତୀତର ସ୍ମୃତିଭଳି ସ୍ପଷ୍ଟ ନ ହେଲେ ସୁଦ୍ଧା ଭବିତବ୍ୟର ଛାୟାପାତ ସମପରିମାଣରେ ସତ୍ୟ ଏବଂ ଅନୁଭବ୍ୟ । ସେପରି କୌଣସି ଗୁରୁଭାର ଘଟଣା ପାଖେଇ ଆସୁଥିଲା ବେଳେ ଚେତନା ତା'ର ସୂଚନା ପାଇ

ଈଷତ୍ କଂପିତ ହୁଏ । ଗୋଟାଏ ପ୍ରକାର ଅସ୍ୱସ୍ତିବୋଧ ମଡ଼େଇ ହୋଇପଡ଼େ । ତାହାରି ଚାପରେ ସାଂପ୍ରତିକ ଘଟଣାସବୁ ଗୌଣ ଲାଗନ୍ତି । ମୃତ୍ୟୁ ସେପରି ଗୋଟାଏ ବିଷର୍ଣ୍ଣ ଛାୟାପାତ କରେ । ତାର ଅନିବାର୍ଯ୍ୟତା ଏବଂ ପ୍ରାଣୀଟିର ଅସହାୟତା ମିଶିଗଲେ ଆଚ୍ଛନ୍ନ ହେଲାପରି ଲାଗେ । ସତେବା ଏ ପୂର୍ବାଭାସ ହିଁ ଏକ ପ୍ରକାର ମୃତ୍ୟୁ । ତେବେ ଏଥିପାଇଁ କାହାର କ'ଣ ବା କରିବାର ଅଛି ? 'ପ୍ରପରି' ନ ଯଯୌ ନ ତସ୍ଥୌ ଅବସ୍ଥାରେ ଅଛନ୍ତି । ଜୀବନ ମରଣର ସେ ମଧ୍ୟଭୂମି । ସେଥିରେ ଜୀବନଭାଗ ଅପେକ୍ଷା ମୃତ୍ୟୁଭାଗ ବେଶୀ । ରାହୁ ଗ୍ରସ୍ତ ଚନ୍ଦ୍ରପରି ମାତ୍ର ରେଖାଏ ଆଲୋକ ଦିଶୁଛି କେବଳ । ପୂର୍ଣ୍ଣଗ୍ରାସ ଯେ କୌଣସି ମୁହୂର୍ତ୍ତରେ ସମ୍ଭବ । ସେତିକିବେଳେ ସୁଦ୍ଧା ଅଜ୍ଞାତ ସମୁଦ୍ରକୁ କେହି ଡ଼େଇଁବାକୁ ପ୍ରସ୍ତୁତ ନୁହଁନ୍ତି । ଶରୀର ମନ ପ୍ରାଣର ଏ ଅଦ୍ଭୁତ ଯନ୍ତ୍ରଟି ପୁଣି ବସ୍ତୁ ଜଗତରେ ବିଲୀନ ହୋଇଯାଏ ଯେଉଁଠୁ ସେ ତା'ର ଏ ବିଶିଷ୍ଟ ରୂପଟିକୁ ଆହରଣ କରିଥିଲା । ଅବଶେଷ ଯେ ରହେ ଯେ ପୁରୁଣା ବସ୍ତ୍ରଟିଏ ପରିହାର କରି ନୂଆବସ୍ତ୍ର ପିନ୍ଧିଥାଏ ବୋଲି ଶାସ୍ତ୍ର କହୁଛନ୍ତି ତା ସହିତ, ବା ତା'ର ରୂପଗୁଣ ସ୍ୱଭାବ ସହିତ ଆମର ଆଦୌ ପରିଚୟ ନଥିବାରୁ ହଠାତ୍ ସେଇ ଅବସ୍ଥା ପ୍ରାପ୍ତ ହେବାର ଭୟ ଆମକୁ ବିହ୍ୱଳ କରିପକାଏ । ଆମେ ପରିଚିତ ପୃଥିବୀକୁ ଜାବୁଡ଼ି ଧରି ରହିବାକୁ ଚାହୁଁ । ଭାରି ପ୍ରିୟ, ଅନୁପେକ୍ଷ୍ୟ ମନେହୁଏ ପ୍ରତ୍ୟେକ ବସ୍ତୁ ଏବଂ ବ୍ୟକ୍ତି 'ମରିତେ ଚାହିନା ଆମି ସୁନ୍ଦର ଭୁବନେ – ଏହାହିଁ ପ୍ରତ୍ୟେକ ମଣିଷର ଅନ୍ତରର ଭାଷା ଏବଂ ଅଭିଳାଷ । କିନ୍ତୁ ଏଥିରେ ଗତ୍ୟନ୍ତର ନାହିଁ । ପ୍ରଶ୍ନ ମନକୁ ସ୍ୱତଃ ଆସୁଛି ଯେସେ ଚୂଡ଼ାନ୍ତ ମୁହୂର୍ତ୍ତରେ କିଏ ଆସି ପାଖରେ ଠିଆ ହେବେ ନା ନାହିଁ । ଯେଉଁମାନଙ୍କୁ ଏତେ ବିଶ୍ୱାସରେ ନିତିଦିନଆମେ ଆରାଧନା କରିଚାଲିଛୁ – ସେ ସେତିକିବେଳେ ହାତଧରି ଲୋକାନ୍ତରକୁ ଘେନି ଯିବେ ନା ନାହିଁ ? ନା, ସଂସାରର ଅନ୍ୟମାନଙ୍କ ପରି ସେ ମଧ୍ୟ ଶେଷକୁ ଠକି ଦେବେ । ଶୂନ୍ୟ ସମୁଦ୍ରର ଆର ପାରିରୁ ହୁଏତ ସେ ଏ ପ୍ରଶ୍ନର ଉତ୍ତର ଦେଉଛନ୍ତି । କହୁଛନ୍ତି, "ସେତିକିବେଳେ ତୁ ମୋର କଲ୍ୟାଣତମ ରୂପ ଦେଖିପାରିବୁ । ସମସ୍ତ ଆବରଣ ଅପସାରିତ ହୋଇ ଶୁଦ୍ଧ ସତ୍ୟ ପ୍ରକାଶିତ ହୋଇଯିବ । ମୋହଗ୍ରସ୍ତ ଶରୀର ସହିତ ମୋହାନ୍ଧ ମନ ଏବଂ ପ୍ରାଣ ଏଇଠି ପଡ଼ି ରହିବେ ଅଜ୍ଞାନ ଅନ୍ଧାରର ରାଜ୍ୟରେ । ଯେ ପ୍ରୟାଣ କରିବେ ସେହି ସ୍ୱୟଂ ସତ୍ୟ ରୂପେ ସ୍ୱୟଂ – ପ୍ରତ୍ୟୟ ହୋଇଯିବେ ।"

ଆଖିରେ ପଟିବନ୍ଧା ଥିବାବେଳେ କିଏ ମୋତେ ଛୁଇଁଦେଇ ଚାଲିଯାଉଛି କହି ପାରିବି ନାହିଁ । କେବଳ ଏତିକି ଜାଣିହେଉଛି ଯେ, ସେ ମୋ ସାଙ୍ଗରେ ଖେଳୁଛି ମୋତେ ଏବଂ ମୋର ଏ ଖେଳକୁ ସ୍ୱୀକାର କରୁଛି । ବେଳେ ବେଳେ ତା'ର ସ୍ପର୍ଶ ଖୁବ୍ ଅସ୍ପଷ୍ଟ । ପବନ ଫୁଙ୍କି ଦେଲାପରି ଖୁବ୍ କୋମଳ । ଆଉବେଳେ କିନ୍ତୁ ଭାରି କଠିନ ଏବଂ ନିର୍ମମ । ସେ ସେତେବେଳେ ଛୁଏଁ ନାହିଁ, ଆଘାତ କରେ । ତଥାପି ଖେଳର ଦୁର୍ଲଙ୍ଘ୍ୟ ନିୟମ ଅନୁସାରେ ଆଖିରୁ ପଟି ଫିଟେଇ ତାକୁ ଦେଖିଦେବା ମନା, ତାକୁ ଭଲ ପାଇବାକୁ କିମ୍ବା ମୁକାବିଲା କରିବାକୁ ମୌକା ମିଳେନାହିଁ । ଅଥଚ ତାର ଉପସ୍ଥିତି, ସାନିଧ୍ୟ, ଏପରିକି ତାର ପଦପାତ, ଶ୍ୱାସ ପତନ ସବୁ ଅନୁଭବ କରିହୁଏ ସତେବା । ଦରାଣ୍ଡିଲେ ଶୂନ୍ୟ ହିଁ ମୁଠା ମୁଠା ସାଉଁଟି ହୋଇ ଆସେ । ଠିକ୍ ସେମିତି ସଂସାରରେ ଅନେକ ପରିଚିତ ଅପରିଚିତ ବ୍ୟକ୍ତିଙ୍କର ବିଭିନ୍ନ ସଂପର୍କ ଓ ସଂଘାତ ପଛରେ ଜଣାପଡ଼େ ସତେବା ଜଣେ ହିଁ ମୋ ସହିତ ଖେଳୁଛି । ଏମାନେ ସମସ୍ତେ କେବଳ ଆଳ ବା ମାଧ୍ୟମ । କାହା ମାଧ୍ୟମରେ ସେ ଲାଳନ କରୁଛି ତ ଆଉ କାହା ମାଧ୍ୟମରେ ତାଡ଼ନ କରୁଛି ।

ମୋତେ ଉତ୍ତେଜିତ, ପରାସ୍ତ କରୁଛି ସେ; ଆଶ୍ୱସ୍ତ, ଉତ୍ସାହିତ , ଜାଗ୍ରତ କରୁଛି ସେ । ଆଚମ୍ୱିତ, ବିମୂଢ଼ ଚକିତ କରି ଅପସରି ଯାଉଛି । ମୋର ବିପଥଗାମୀ ହେବାରେ ସେ ଦାୟୀ । ମୋତେ ପୁଣି ମାର୍ଗକୁ ଆଣିବାରେ ମଧ୍ୟ ସେ ଦାୟୀ । ମୋର ଶ୍ଳାଘା, ମୋର ସ୍ୱାଭିମାନ, ମୋର ଗ୍ଳାନି, ଅନୁତାପ, ଅପମାନ ସବୁ ପଛରେ ସେହି ବିଦ୍ୟମାନ । ମୋର ଏକମାତ୍ର ଦୁଃଖ ଯେ ଅନୁଭବ କୌଣସି ସ୍ଥିର ଜ୍ଞାନ ନୁହେଁ । ସେ କଦାପି ପ୍ରତ୍ୟକ୍ଷ ଭୂମିକୁ ଆସେ ନାହିଁ । ତା'ର କଣ ନିର୍ଦ୍ଦିଷ୍ଟ ରୂପ ନାହିଁ ? ନା ଏ ସମସ୍ତ ରୂପ ତାର ? ସେ ଚୀତ୍ ରୂପ ଆକାଶ ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛି । ସମୁଦ୍ରକୁ ଘଟରେ ଧାରଣ କରିବା ବିଡ଼ମ୍ବନା । ତେବେ ତାର ସେ ଜଳକୁ ଘଟରେ ପୂର୍ଣ୍ଣ କରିଦେଲେ ସମୁଦ୍ର ଜ୍ଞାନ ହୁଏ ନାହିଁ । ଏଣୁ ଇନ୍ଦ୍ରିୟମାନଙ୍କର ଗ୍ରାହ୍ୟ ହେବାରେ ସେ ପ୍ରମାଣିତ ହୋଇ ପାରିବ ନାହିଁ ବା ଗ୍ରାହ୍ୟ ନହେଲେ ଅପ୍ରମାଣିତ ହୋଇଯିବ ନାହିଁ । ବଂର ତାକୁ ଅନୁଭବ କରିବାପାଇଁ ଯେଉଁ ଚୈତ୍ୟ ସତ୍ତା ସାହାଯ୍ୟକରୁଛନ୍ତି, ତାଙ୍କର ବିକାଶ ଘଟିଲେ ହୁଏତ ସେ ସେଇଠି ପ୍ରତ୍ୟକ୍ଷ ହୋଇଯାଇପାରେ ।ବାସୁଦେବ ସର୍ବମିତି - କଣ ଏ ସ୍ଥୂଳ ବସ୍ତୁ ଜଗତ ଅନୁଭବ ? ଉତ୍ତମମ୍ ରହସ୍ୟମ୍ କ'ଣ ଏମିତି ସ୍ପର୍ଶ ଘ୍ରାଣଯୋଗ୍ୟ ପଦାର୍ଥ ? ସେ କ'ଣ ସେଚ୍ଛାରେ କୌଣସି ବ୍ୟକ୍ତି ଚେତନାକୁ ଅନୁଗୃହୀତ କରନ୍ତି ନା ଦୂରସ୍ଥ ଶୀର୍ଷବିନ୍ଦୁ ପରି ସେ ତପସ୍ୟା, ସାଧନା, ପ୍ରୟାସ ଆରୋହଣ ସାପେକ୍ଷ ? ଉତ୍ତରେ ସେ' ହିଁ ଗୁରୁ ରୂପରେ ଦେଇ ପାରନ୍ତି ... ଗୁରୁଭ୍ୟୋ ନମଃ, ପରମ ଗୁରୁଭ୍ୟୋ ନମଃ, ପରାପରଗୁରୁଭ୍ୟୋ ନମଃ, ପରମେଷ୍ଠି ଗୁରୁଭ୍ୟୋ ନମଃ, ଓଁ ନମୋ ଭଗବତେ ଶ୍ରୀ ଅରବିନ୍ଦାୟ ।



## ୪-୨-୮୯

ଅଧିଯଜ୍ଞ, ଅଧିଭୂତ, ଅଧିଦୈବ ଏକମାତ୍ର ଅଖଣ୍ଡୈକ ସତ୍ତାଙ୍କର ବିଭିନ୍ନ ପରିଚୟ । ଚିନ୍ମୟୀ ଆଦ୍ୟାଶକ୍ତି ଅଣୁଗର୍ଭରୁ ପରମ ବ୍ୟୋମ ପର୍ଯ୍ୟନ୍ତ ସକଳ ସ୍ପନ୍ଦନ, ସକଳ ସ୍ଫୁରଣ ସକଳ ଆଲୋଡ଼ନ କର୍ତ୍ତ୍ରୀ - ସେ ହିଁ ସ୍ୱୟଂ ପ୍ରକଟ । ତେବେ ପରମ ପୁରୁଷ ଏବଂ ଆଦ୍ୟାଶକ୍ତିକୁ ପୁରୁଷ ପ୍ରକୃତି ରୂପେ କଳନା କଲାବେଳେ ସାଧାରଣତଃ ନାରୀ ପୁରୁଷ କଳ୍ପନା କରିବା ଦ୍ୱାରା ସେଥିରେ ଅନେକ ଅବାଞ୍ଛନୀୟ ସ୍ଥୂଳତା ଏବଂ ପ୍ରମାଦ ପ୍ରବେଶ କରିଯାଏ । ମୂଳ ସତ୍ୟ ଏକ ଏବଂ ବୈଦିକ ସଜ୍ଞା ଅନୁସାରେ ନ ସ୍ତ୍ରୀ, ନ ପୁମାନ୍ ନ ଷଣ୍ଢଃ । ସେ Masculine, feminine କିମ୍ବା neuter ନୁହଁନ୍ତି - ତେବେ ଶକ୍ତି କହିଲେ ନାରୀ ଏବଂ ପୁରୁଷ କହିଲେ ନର ବୁଝିବା ଭ୍ରମାତ୍ମକ । ବୋଧହୁଏ ଏ ତତ୍ତ୍ୱକୁ ବୁଝିବା ପାଇଁ ସମୁଦ୍ରର ଦୃଷ୍ଟାନ୍ତ ନିଆଯାଇପାରେ । ତା'ର ଗଭୀର ଗମ୍ଭୀର କେନ୍ଦ୍ରରେ ସମୁଦ୍ର ସ୍ଥିର ଏବଂ ସ୍ୱୟଂ ନିମଗ୍ନ । କିନ୍ତୁ ସେଇ ସମୁଦ୍ର ବେଳାଭୂମିର ତରଙ୍ଗ ହୋଇ ଲୀଳାୟିତ । ତରଙ୍ଗ ତାର ସ୍ପନ୍ଦନ । ଗୋଟାଏ ବିଭାଗରେ ସେ ଅକ୍ରିୟ, ସ୍ଥିର ପୁରୁଷ । ଅନ୍ୟ ବିଭାଗରେ ସେ ସଦା ଚଞ୍ଚଳ ପ୍ରକୃତି -କେନ୍ଦ୍ର ନ ଥିଲେ ସମୁଦ୍ର ନାହିଁ ଏଣୁ ତରଙ୍ଗ ନାହିଁ । ତରଙ୍ଗ ନଥିଲେ ସମୁଦ୍ର ଅପକ୍ରଟ । With Him I exist not, without me He is unmanifest.

Ego, କଣ, କାହିଁକି, କେବେ କେଉଁ ପର୍ଯ୍ୟନ୍ତ ? ଅହଂ ଏବଂ ଅହଂକାର ଦୁଇଟି ଅଲଗା କଥା । ମୋର ଅହଂକାର ଠାରୁ ମୁଁ ଭିନ୍ନ । ମୋଟ୍ ଉପରେ ମୁଁ ର ମୁଁ ନାହିଁ – ମୁଁ ସକଳ କର୍ମର କର୍ତ୍ତା ଏବଂ ଯାହାସବୁ ମୋର ପରିଚୟ ସେଇଟା ମୋରଂ ପରିଧି । ମୁଁ କେନ୍ଦ୍ରବିନ୍ଦୁ ପରିସର ହୀନ, ଗଭୀର ସ୍ଥିର ବିନ୍ଦୁ । ସେ ହିଁ ଚେତନାର କେନ୍ଦ୍ର । ବାକି ମୋର ଦେହ ମନ ମୋର ଶରୀର ମୋର ବୁଦ୍ଧି ଏବଂ ଅହଂକାର, ସବୁତାର ଅବୟବ ସଦୃଶ। ମୁଁ ଅବିଭାଜ୍ୟ ମୋ ରାଜ୍ୟରେ ଯାହା ଆସିଲା ସେ ସମସ୍ତ ପରସ୍ପର ସହିତ ସଂପର୍କ କରନ୍ତି, ସଂଘର୍ଷ କରନ୍ତି । ମୁଁ କିନ୍ତୁ ସବୁ ଫଳ ଭୋକ୍ତା – ହୋଇପାରେ ମୁଁ ସଂପୂର୍ଣ୍ଣ ଏବଂ ନିର୍ଲିପ୍ତ । ଏପରିକି ମୋର ପ୍ରେମ ସ୍ୱତନ୍ତ୍ର ମୋର ଭକ୍ତି ମୋର ତପସ୍ୟା, ମୋର ଇଶ୍ୱରଙ୍କ ଠାରୁ ମଧ୍ୟ ମୁଁ ଅଲଗା । ଏ ମୁଁ ଅନୁଭବ ହିଁ ସ୍ୱାନୁଭବ । ଏଥିରେ ସଂପୂର୍ଣ୍ଣ ଅବଗାହୀ ହୋଇପାରିଲେ ମୁଁ ବିକଶିତ ହୁଏ, ସର୍ବତ୍ର ପ୍ରକଟିତ ହୁଏ । ମମକୁ ଅତିକ୍ରମ କରି ଭୂମାକୁ ଆଚ୍ଛନ୍ନ କରେ । ବାସୁଦେବ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ , କିମ୍ବା ଅହଂ ସର୍ବସ୍ୟ ଜଗତଃ, ପ୍ରଭବଃ ପ୍ରଳୟସ୍ତଥା ଅନୁଭବ ଆସେ ।

ଅହଂ ଚେତନା ପ୍ରଥମେ identify କରେ ତଦ୍ୱାରା ଅନ୍ୟଠାରୁ ପୃଥକ କରେ, ପୃଥକ ହେଲେ ହିଁ କର୍ତ୍ତା, କାର୍ଯ୍ୟ,ଭକ୍ତି, ପ୍ରେମ, ତପସ୍ୟା ସବୁ ସଂଭବ । କିନ୍ତୁ ଅଂହ ଭାବ ଅଂହକାର ରୂପେ ସବୁ ଅଧିକାର ମଧ କରିପକାଏ । ଯେଉଁ ହାତ ଫଳ ତୋଳିଥିଲା ତାହା ସେ ନୈବେଦ୍ୟରେ ଅର୍ପଣ କରିପାରେ କିମ୍ବା ନିଜେ ଭୋଜନ କରିବାକୁ ଅପହରଣ ମଧ୍ୟ କରିପାରେ । ଅହଂକାର ଏକ ସ୍ୱାତନ୍ତ୍ର୍ୟ ସେଥିପାଇଁ ଅପରିହାର୍ଯ୍ୟ ଏବଂ ବାଞ୍ଛନୀୟ । କିନ୍ତୁ ତାହା ଏକ ସ୍ୱେଚ୍ଛାଚାର ଏକ ସ୍ୱାର୍ଥପରତା ସେଇଠି ତାହା ସାଧନାର ବାଧକ,ଏଣୁ ବର୍ଜ୍ଜନୀୟ ।

ଜୀବନର ଯେ କୌଣସି ମୂହୁର୍ତ୍ତ ଅବିକୃତ ଭାବରେ ଅତୀତରେ ଚିରକାଳ ସଞ୍ଚିତ ହୋଇ ରହିଥାଏ । ସେଥିରେ ସ୍ଥିରତା ଅନନ୍ୟତା ଏବଂ ଅତିନ୍ଦ୍ରିୟତା ଆସିଥାଏ । ଅତୀତର ବିକଳ୍ପ ନାହିଁ । ଏଣୁ ବିଶ୍ୱନିଅନ୍ତା ଚାହିଁଲେ ସୁଦ୍ଧା ତାକୁ ବଦଳେଇ ଦେଇ ପାରିବେ ନାହିଁ । ପ୍ରତି ମୁହୂର୍ତ୍ତ ଅମୃତାୟିତ ହେଉଛି ଅତୀତରେ । ଏହିପରି ମୁହୁର୍ତ୍ତ ମୁହୂର୍ତ୍ତରେ ମୁଁ ରେଣୁ ରେଣୁ ଆକୃତି ସାଗରରେ ନିମଜ୍ଜିତ ହୋଇ ଚାଲିଥିବି ଚୂଡାନ୍ତ ବଳୟ ପର୍ଯ୍ୟନ୍ତ । ଅତଏବ ଜୀବନର ସାଧାରଣ ମୁହୂର୍ତ୍ତକୁ ସେ କାଳ ରୂପରେ ନିଜର ଅତୀତ ରୂପକ କୋଳରେ ଧାରଣ କରୁଛନ୍ତି । ଅତଏବ ଚଳମାନ୍ ଜଗତକୁ ଅତୀତ ସ୍ଥିର କରି ଚାଲିଛି । ଏହି ଅବବୋଧ ହିଁ କିଛି ମାତ୍ରାରେ immoralityର ଆସ୍ୱାଦ ଆଣି ଦେଉଛି ।

ଶୁଣାଯାଏ ଯେ ଜଣେ ସୋଭିଏତ୍ ବୈଜ୍ଞାନିକ ପ୍ରମାଣ କରିଛନ୍ତି ଯେ ମାତା ଶିଶୁ ପୁତ୍ରର ମୁଣ୍ଡରେ ହାତ ବୁଲାଇ ଆଣିଲା ବେଳେ କିଛି ଗୋଟାଏ ବିକୀରଣ, କିଛି glow ମା'ଠାରୁ ପୁଅ ଭିତରକୁ ସଂଚାରି ଯାଏ । ଏଥିରେ ଗୋଟିଏ ପ୍ରକାର ଆଲୋଡନ ଉଭୟ କେନ୍ଦ୍ରରେ ପରିଲକ୍ଷିତ ହୁଏ । ଏହାର ଅନୁଭବର କେନ୍ଦ୍ରପ୍ରାଣ, ମନ ନୁହେଁ । ଏହା ଏକ ଚିରକାଳୀନ ଅନୁଭବ୍ୟ ସତ୍ୟର ବୈଜ୍ଞାନିକ ସମର୍ଥନ । ଏପ୍ରକାର ଦେବାରେ କିନ୍ତୁ କିଛି କ୍ଷୟ ହୁଏ ନାହିଁ, ଆଲୋକ ବର୍ତ୍ତିକାରୁ ଆଉ ଏକ ବର୍ତ୍ତିକାକୁ ଅଗ୍ନି ସଂଚରିଲା ପରି । ବହୁ ଦୂରରେ ଥିଲେ ସୁଦ୍ଧା ଆତ୍ମୀୟର ସଂକଟ ବେଳେ ଯେଉଁ ଆଲୋଡନ ଏବଂ ଅସ୍ଥିରତା telepathy ଜରିଆରେ ହୁଏ ବୋଲି ଆମେ ସାଧାରଣତଃ କହିଥାଉ ଫ ସେଥିରେ ମଧ୍ୟ କିଛି ଶକ୍ତି ସଂଚାରିତ ହୁଏ । ସାଧାରଣ ଜଡ ବସ୍ତୁ ଉପରେ ଶକ୍ତି ପ୍ରୟୋଗ ହେଲେ ତାହା ସ୍ଥାନଚ୍ୟୁତ ହୁଏ । ସେଥିରେ ତାର displacement ହୁଏ ସେଇଭଳି କଣ ଆମ ପ୍ରାଣ କେନ୍ଦ୍ରରେ ଏକ ଦୂର ସଂଚାରୀ ଶକ୍ତିର ସଂଘାତରେ କିଛି ସ୍ଥାନଚ୍ୟୁତ ହୁଏ କି ? ଅବଶ୍ୟ ଏ ଜଡ ଜଗତ୍‌ର

ପରିଣତି ପାଇଁ ଏବେ ଗୋଟିଏ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଶବ୍ଦର ପ୍ରୟୋଗ ହେଲାଣି । ସେମାନେ ବସ୍ତୁ ବା ଅଣୁକୁ displaced ନ କହି perturbed ବୋଲି କହିଲେଣି । ଏଥିରେ ଚେତନ ମଣିଷ ସହିତ ଜଡ ବସ୍ତୁର ଦୂରତ୍ୱ ରହୁନାହିଁ -ସଂକଳ୍ପ କଲେ ଯେଉଁ ଶକ୍ତିର ଆର୍ବିଭାବ ହୁଏ ସେଥିରେ କୌଣସି ଜଡ ବା ଚେତନ ବସ୍ତୁକୁ perturb କରାଯାଇପାରେ ।



**୧୨-୩-୮୮**

କୌଣସି ବୋଧଗମ୍ୟ କାରଣ ନଥାଇ ଅଚାନକ ବା ଦୁର୍ଘଟଣା ଘଟିଲେ ସାଧାରଣତଃ ଅଜ୍ଞାତ / ଅଲୌକିକ ଶକ୍ତିର ହସ୍ତକ୍ଷେପ ହେଲା ବୋଲି ବୁଝାଯାଇଥାଏ । ଭୋକ କଲାବେଳେ ଦିବ୍ୟ ମିଷ୍ଟାନ୍ନ ଉପରୁ ରେଶମି ରୁମାଲୁ କାଢି ସାମ୍ନାରେ ତୋଳି ଧରିଲେ ବୁଝିବାକୁ ହୁଏଯେ, ଏ ପରିଚିତ ମିଟି ଆଉ କାହାଦ୍ୱାରା ଚାଳିତ ହୋଇ ହୁଏତ କାର୍ଯ୍ୟ କରୁଛି । ଯେ ଅଲକ୍ଷତ ରହି ଏ କାର୍ଯ୍ୟ କରାଉଛି ସେ କିଏ ? ମୋର ପ୍ରୟୋଜନକୁ ବୁଝି ଏପରି ଆପଣାପଣ ପ୍ରକାଶ କରୁଥିବା ସେ ବନ୍ଧୁଟି କିଏ ? ପେଟ ଦେଖି ଅନ୍ନ ପରଶୁଥିବା ସେ ମା'ଟି କିଏ ? ଏ ସେଇ, ସେଇ ଯେ ଅନନ୍ତ କୋଟି ବ୍ରହ୍ମାଣ୍ଡ ଚଳାଉଛି । ସେଇ ଦିବ୍ୟ ଜନନୀ ଯେ ଏକମାତ୍ର ଶକ୍ତି ରୂପେ ସବୁ ନିୟନ୍ତ୍ରିତ, ସ୍ପନ୍ଦିତ କରୁଛି ଓଃ ଟିକିଏ ସମ୍ଭାଳି ଯାଅ ଭଲା । ଏତେ ଚଂଚଳ ଏତେ ଟିକିଏ ଘଟଣାର ପ୍ରମାଣ ଉପରେ ଅପରିମେୟକୁ ଏମିତି ଚିହ୍ନଟ କରିବା ଅତି ସହଜିଆ, ବାହାଦୁରିଆ କିମ୍ବା ଘୋଷାପାଠିଆ ମନୋବୃତ୍ତି ହିଁ ହୋଇପାରେ । ଯେ ମୋତେ ଅନ୍ନର ପ୍ରୟୋଜନ ବେଳେ ଅଚାନକ ତାର ବ୍ୟବସ୍ଥା ହୋଇଯିବା ଏକ ଅନୁକୂଳ ବ୍ୟବସ୍ଥା । ସୁଖକର ପ୍ରତିପଦ ସନ୍ତୋଷ ଜନକ ହେଲା ବୋଲି ଆମକୁ ମଙ୍ଗଳ ମୟ ବୋଲି ଅଖ୍ୟାତ କରିଥିବା ଦିବ୍ୟପ୍ରଭୁ ବା ଜନନୀକୁ ଏଥିପାଇଁ ଦାୟୀ କରିଦେବା ଉଚିତ୍ ହେବ କି ? ଯଦି ଘଟଣା ପ୍ରତିକୂଳ ହୋଇଥାନ୍ତା ଅଚାନକ ଟେକା ମାଡରେ ଦାନ୍ତ ଭାଙ୍ଗି ଯାଇଥାନ୍ତା ତେବେ ସେଥିପାଇଁ ନିଶ୍ଚୟ ସେ ଦାୟୀ ହୋଇ ନଥାନ୍ତେ । ଭାରି ଅହିଂସ୍ର, ସୁକୁମାରିଆ ନିରାମିଷାଶୀ ଈଶ୍ୱରଟିଏ ତ । ଏଣୁ ସେଭଳି କ୍ରୂରକର୍ମ ସେ କେମିତି କରି ପାରିବେ ? ଏଣୁ ଏଥିପାଇଁ ତାଙ୍କ ଠାରୁ ଭିନ୍ନ ଆଉ ଗୋଟାଏ ଅଜ୍ଞାତ ଶକ୍ତିକୁ ଏଥିପାଇଁ ଦାୟୀ କରାଯାଇଥାଏ । ସେ ତାଙ୍କରି ଭଳି ଅଚାନକ କାର୍ଯ୍ୟକରେ ଏବଂ ଘୋର ଶକ୍ତିଶାଳୀ ହୋଇଥିବାରୁ ତା ପଛେ ମୃତ୍ୟୁ ପୋଷା କୁକୁର ପରି ଗୋଡାଇ ଥାଏ । ଏଣିକି ଭଲମନ୍ଦ ବିଭାଜନରେ Divine, non Divine ଭିତରେ ଥିବା ବ୍ୟବଧାନ ବଢିଚାଲେ । ତାହା ଆମକୁ କେବଳ ଦେଖାଦିଏ, ନା ସତକୁ ସତ ସେଭଳି ଦୁଇଟି ସମାନ୍ତରାଳ, ସମଶକ୍ତିଶାଳୀ, ଦୁଇଟି ଶକ୍ତି ଅଛି ? ଏହାର ଉତ୍ତର ହିଁ କହିଲେ ସଂସାରର ଆଲୋକ ଆଲୋକ ଅନ୍ଧାର ସୁଖଦୁଃଖ ବୁଝେଇ ଦେଲାଭଳି କୈଫିୟତ ମିଳିଯାଏ । ନାହିଁ କହିଲେ ଭାବ ଜଗତରେ ସମାଧାନ ହୋଇଯାଏ । କାରଣ ଆଦି ବିନ୍ଦୁଟି ଏକକ ହେବାକୁ ଅନ୍ତତଃ ଯୁକ୍ତି ଦୃଷ୍ଟିରୁ ବାଧ । ତା'ର ବାଁ ଡାହାଣ ଥାଇପାରେ ଏବଂ ସେଥିରେ ତାରତମ୍ୟ ଥାଇପାରେ । କିନ୍ତୁ ସଭିଟି ଏକ । ଏବଂ ଏ ଯେଉଁ ଭଲ ମନ୍ଦ ଆଲୁଅ ଅନ୍ଧାରରେଖେଳ ଚାଲିଛି ସେଥିରେ ଅନ୍ତତଃ କୌଣସି ତାତ୍ତ୍ୱିକ ସତ୍ୟ ନାହିଁ ।

ତା ବାହାରେ ଆମ ଜୀବନର ପ୍ରତି ମୁହୂର୍ତ୍ତରେ ଭିତରେ ଏବଂ ବାହାରେ ସର୍ବତ୍ର ଚିରକାଳ ପରିପୂର୍ଣ୍ଣ ଗୋଟିଏ ସତ୍ୟ ଯଦିଥାଏ ତାହାହେଲେ ସେ ବିଷୟରେ ବରଂ ତୁନି ରହିବା ଭଲ । କାରଣ ଛୋଟବଡ଼ ଆପେକ୍ଷିକ ଘଟଣା ସବୁ ଭିତରେ ତାକୁ ଜଡ଼ିତ କରି ଦେବାର ଅର୍ଥ କିଛି ନାହିଁ । ସେଥିରେ ବରଂ ବିଭ୍ରାନ୍ତି ଆସିପାରେ । କିନ୍ତୁ ଅବିଚଳିତ ରହି, ତାକୁ ସର୍ବତ୍ର ଅନୁଭବ କରି ପାରିଲେ ତା'ଠାରୁ ବଳି ଆଉ କଲ୍ୟାଣକାରୀ ସିଦ୍ଧି କିଛି ନାହିଁ । ସେ ସିଦ୍ଧିର ଅଧିକାର ଦୁର୍ଲ୍ଲଭ ମହାତ୍ମା ପୁରୁଷ ।



## ୪-୭-୮୯

କଣ୍ଟାବାଡ଼ ସହିତ ଛନ୍ଦି ହୋଇ ତା ସହିତ ଅହରହ ସଂଗ୍ରାମ କରିବା ହିଁ ଲତା ପାଇଁ ଏକ ଅନିବାର୍ଯ୍ୟ ସତ୍ୟ । କଣ୍ଟାବାଡ଼ର ଫାଙ୍କରେ ଫୁଲଟିଏ ଫୁଟେଇବା ତାର ସାଧନା ଓ ସିଦ୍ଧି । କଣ୍ଟାବାଡ଼କୁ ସଂପୂର୍ଣ୍ଣ ନିଶ୍ଚିହ୍ନ କରିଦେବା ସମ୍ଭବ ନୁହେଁ । ସେ ଅବଶ୍ୟ ରହିବ । ତାକୁ ଅସ୍ୱୀକାର କରିବା ମଧ୍ୟ ସଂଭବ ନୁହେଁ । ଯଦି କୌଣସି ପ୍ରକାରେ କଣ୍ଟାବାଡ଼ରୁ କଣ୍ଟାକୁ ବାହାର କରି ଦିଆଯାଇ ପାରେ ତେବେ ଲତା କ୍ଷତ ବିକ୍ଷତ ହେବାର ଆଶଙ୍କା ହ୍ରାସ ପାଇବ । ଶ୍ରୀ ଅରବିନ୍ଦ ସୁଦ୍ଧା ରୂପାନ୍ତର କଥା ହିଁ କହୁଛନ୍ତି । ପୁରାତନ ବିଲୁପ୍ତ ହେବ ନାହିଁ, ପରିବର୍ତ୍ତିତ ହେବ । ରୂପାନ୍ତର ହେଲେ କେବଳ ଆଚରଣ ଆକୃତି ପରିବର୍ତ୍ତନ ହୋଇ ପାରିବ, କିନ୍ତୁ ମୌଳିକ ଧାତୁର ପରିବର୍ତ୍ତନ ସମ୍ଭବ କି ? ସଂପୂର୍ଣ୍ଣ ରୂପେ ମୌଳିକ କାହାକୁ କହିପାରିବା ? ଯାହା କି ଦେଖୁଛୁ ବୁଝୁଛୁ ସବୁକେବଳ ବାହ୍ୟରୂପ ଓ ଆଚରଣ । ଭୂତ ମାନଙ୍କର ଚାରିତ୍ରିକ ପରିବର୍ତ୍ତନ ହେବା ହୁଏତ ପ୍ରକୃତ ରୂପାନ୍ତର, ସଂସାରକୁ ସ୍ୱୀକାର କରି, ତାକୁ ପରିହାର କରି ନୁହେଁ । ଯାହା ସଗୁଣ ତାହା ପରିବର୍ତ୍ତନୀୟ । ନିର୍ଗୁଣର ପରିବର୍ତ୍ତନ ନାହିଁ, ଅତଏବ ମନପ୍ରାଣ ଶରୀରରେ ରୂପାନ୍ତର ଚୈତ୍ୟର ପରିବର୍ତ୍ତନ ନୁହେଁ । ତାହା କେବଳ ବାହ୍ୟ ଆଚରଣ ଓ ଧର୍ମର ପରିବର୍ତ୍ତନ । ରୂପାନ୍ତର ଯୋଗରେ ପୂର୍ଣ୍ଣ ବିକଶିତ ହୁଅନ୍ତି । ମନ, ପ୍ରାଣ, ଚୈତ୍ୟସତ୍ତା ଶରୀର ଉପାଦାନ, ରୂପାନ୍ତରିତ ହୁଅନ୍ତି । ରୂପାନ୍ତରିତ ମନ, ପ୍ରାଣ, ଶରୀରରେ ଭଗବତ୍ ପ୍ରାପ୍ତି ହୁଏ ।

'ଯଥା ଯୋଗ୍ୟଂ ତଥା କୁରୁ' ବୋଲି ନିବେଦନ କଲାପରେ ଯାହା ଘଟିବ ତାକୁ ଭଲମନ୍ଦ ବିଚାର କରିବାର ଅଧିକାର ମୋର ନାହିଁ । ଏଣିକି ଯାହା ଆସିବ ତାହା ମୋର ଶିରୋଧାର୍ଯ୍ୟ । ଏ ଅବସ୍ଥାଟି ବହୁ ପ୍ରକାରେ ବିପଜ୍ଜନକ । ଏଣେ ସମର୍ପଣ ସଂପୂର୍ଣ୍ଣ ହୋଇ ନଥିବାରୁ ସେ ହୁଏତ ଦାୟିତ୍ୱ ବହନ କରିବେ ନାହିଁ, ତା ବାହାରେ ନିର୍ବିରୋଧ ସବୁ ଦ୍ୱାର ଦେଇ ଯାହା ଆସିଲା ତାକୁ ସ୍ୱୀକାର କରାଯିବାର ମାନସିକତାର ସୁଯୋଗ ନେଇ ଯେ କୌଣସି ଅପଶକ୍ତି ସର୍ବନାଶ କରିଦେଇ ପାରେ। ବିପଦ ଉପରେ ବିପଦ ଘନୀଭୂତ ହୋଇପାରେ । ସବୁଆଡୁ ସବୁ ଆଶ୍ରୟ ଛିଣ୍ଡି ଯାଇପାରେ । ଏହା ସତ୍ତ୍ୱେ ସମ୍ଭାଳି ରହିବା ମୋ ପାଇଁ ଘୋର ପରୀକ୍ଷାର ସମୟ । ତଦନୁପାତରେ ଏହା କ'ଣ ତାଙ୍କ ପାଇଁ ପରୀକ୍ଷାର ସମୟ ନୁହେଁ । ଜଣେ ଯଥାଶକ୍ତି ତାଙ୍କର ଆଶ୍ରିତ ବୋଲି ଘୋଷଣା କରୁଛି ପାରୁପର୍ଯ୍ୟନ୍ତ । ଦେବପକ୍ଷରେ ନିଜକୁ ସାମିଲ କରି ରଖିଛି । ଯଦି ଅନ୍ୟପକ୍ଷର ବଳଶାଳୀ

ଯୋଦ୍ଧା ତାକୁ ଅପହରଣ କରି ନେଇଯାନ୍ତି ଏ ପକ୍ଷର କର୍ତ୍ତାଙ୍କ ପାଇଁ ଏହା କିଛି କମ୍ ଅପମାନଜନକ ନୁହେଁ । ଏଣୁ ସ୍ୱୟଂ divine ଏହାର ପ୍ରତିକାର କରିବେ । ନତୁବା ତାକୁ ଧାୟି ଧାୟି ଯଦି ସେ ସଂପୂର୍ଣ୍ଣ ଖର୍ଚ୍ଚ ହୋଇଗଲା କାଳକାଳକୁ ଅପକୀର୍ତ୍ତି ରହିଯିବ । ଶରଣ ପଞ୍ଜର ବୋଲି ଯେଉଁ ଖ୍ୟାତି ସଂସାର ରଟୁଥିଲା ତା'ର ବ୍ୟତିକ୍ରମ ହେବା କ'ଣ ମୋତେ ସୁଖକର ଲାଗୁଛି ଶୁଣିବାକୁ । କିନ୍ତୁ ଯଦି ନିହାତି ହେଲା ତେବେ ବି ପ୍ରଭୁଙ୍କୁ ଦାୟମୁକ୍ତ କରାଯାଉ । ମୋତେ ପ୍ରଭୁ ଯାହା ଦେଇଛନ୍ତି, ସେଇ ସାମର୍ଥ୍ୟ ନେଇ ଯୁଦ୍ଧ କରିବାକୁ ପ୍ରତ୍ୟେକ ରକ୍ତ କଣିକା ଖର୍ଚ୍ଚ କରାଯାଉ – ଯାହା ହେଲା ତେଣିକି ।



୨୬-୮-୮୯

କାମ ରଜୋଗୁଣରୁ ଉତ୍ପନ ଏବଂ 'ମହାଶନ' ହୋଇଥିବାରୁ ସହଜରେ ଆୟତ୍ତ ହୋଇପାରେ ନାହିଁ । ଯୌନାଭିଳାଷ ବହୁ ବିକୃତ ବିକଟ ରୂପରେ ମନୋଭୂମିରେ ଉଦୟ ହୁଏ । ସ୍ଥୂଳ ଶରୀରର ଲାଳସାରୂପେ ସେ ଉତ୍ତାପ ସୃଷ୍ଟି କରେ । ବିକ୍ରିୟା ସୃଷ୍ଟି କରେ ଏବଂ ଧ୍ୟାନ ଭଂଗ କରେ । ଏହି ଉଦ୍‌ବେଳନକୁ ସାମ୍ନା କରିବାର ଉପାୟ ହେଲା ତା'ର ମୂଳପିଣ୍ଡକୁ ବିଦୀର୍ଣ୍ଣ କରିବା । କାମ ବା ଯୌନାଭିଳାଷ ମୁଖ୍ୟତଃ ଶରୀର ଧର୍ମୀ । ସେଥିରେ ମନପ୍ରାଣ ଆକ୍ରାନ୍ତ ଓ ଅସ୍ଥିର ହୁଅନ୍ତି ସତ କିନ୍ତୁ ତାହାର ଉଦ୍‌ଗମ ସ୍ଥଳ ହେଉଛି ଏ ଅନ୍ନମୟ କୋଷ । ଏଥିରେ ପଞ୍ଚମହାଭୂତର ସମାହାର ଘଟିଛି । ଶରୀରକୁ ତା'ର ମୌଳିକ ଉପାଦାନରେ ବିଭକ୍ତ କରିଦେଇ ଯୌନବିକାର ନିଶ୍ଚିହ୍ନ ହୋଇଯାଉଛି । କ୍ଷିତି, ଅପ୍, ତେଜ, ମରୁତ ଏବଂ ବ୍ୟୋମ କୌଣସିଟି ଲିଙ୍ଗ ଚିହ୍ନିତ ନୁହେଁ । ସବୁ କ୍ଳୀବ ଅଥବା ଲିଙ୍ଗୋତ୍ତର ଉପାଦାନ । ଏଣୁ ଶରୀରରେ ନ ରହି ମନକୁ ଏ ପଞ୍ଚମହାଭୂତରେ କିମ୍ବା ସେଥିରୁ କୌଣସି ଗୋଟିକ ଉପରେ ନ୍ୟସ୍ତ କଲେ ସେ ଆଉ ଯୌନାଭିଳାଷର ଚିହ୍ନ ସୁଦ୍ଧା ଦେଖିବାକୁ ପାଇବ ନାହିଁ । ଉପାଦାନରେ ନୁହେଁ, ସମନ୍ୱୟରେ ହିଁ ଏ ଶରୀର ଧର୍ମ ପ୍ରକାଶିତ ହୁଏ । ଶରୀର 'ଭୂତଗ୍ରାମଂଅଚେତସଃ'ରୁ ଆସେ ଏବଂ ସେଥିରେ ଲୀନ ହୁଏ । ମଧ୍ୟଭୂମିରେହିଁ ଏ ବିକାର ଦେଖା ଦେଇଥାଏ । ଏଣୁ କାମର ଆକ୍ରମଣ ବେଳେ ଶରୀରକୁ ଅତିକ୍ରମ କରି ମହାଭୂତ ଉପାଦାନରେ ହିଁ ଧ୍ୟାନସ୍ଥ ହେବା ତା'ର ଗୋଟିଏ ପ୍ରତିକାର । ଆକାଶ ଚିନ୍ତନରେ 'କାମ' ପରାସ୍ତ ହୋଇ ଉପଶାନ୍ତ ହୁଏ । ସେହିପରି ଅଖଣ୍ଡ ନୀଳାମ୍ବୁ ରାଶି କିମ୍ବା ଉନ୍ମତ୍ତ ପବନ ବା ବିପୁଳା, ପୃଥ୍ୱୀ । ପ୍ରଜ୍ୱଳ ସୂର୍ଯ୍ୟ ମଣ୍ଡଳକୁ ଧ୍ୟାନ କରିପାରିଲେ ଆହୁରି ଭଲ । ଏଣୁ ଅତି ସ୍ୱାଭାବିକ ଭାବରେ ସହଜ ଭାବରେ, କାମୋଦୟ ହେବାମାତ୍ରେ ମହାଭୂତ ଚିନ୍ତନ ଅଭ୍ୟାସ କରାଯାଇପାରେ ।



ଇଂରାଜୀରେ Transformation କହିଲେ ଯାହା ବୁଝାଏ ଓଡ଼ିଆରେ ରୂପାନ୍ତର କହିଲେ ଠିକ୍ ତାହା ବୁଝାଏ ନାହିଁ । କାରଣ ଅନ୍ୟରୂପ ରୂପାନ୍ତର । ଯେ କୌଣସି ଅନ୍ୟରୂପ ପ୍ରାପ୍ତିକୁ ରୂପାନ୍ତର କୁହାଯାଇପାରେ । ତାହା ପ୍ରାୟ ଘଟୋତ୍ତ ପରି । ପୁରାଣ ବର୍ଣ୍ଣିତ ଅନ୍ୟ ଇତର ଯୋନିରେ ଜନ୍ମହେବା ମଧ୍ୟ ରୂପାନ୍ତର । କିନ୍ତୁ Trans ଉପପଦ ଥିବାରୁ Transformation ରେ ଅତିକ୍ରମଣର ଅର୍ଥ ଆସୁଛି । ତାହା other formation ବା Reformation ବା deformation ନୁହେଁ । ତାହା ନିର୍ଦ୍ଦିଷ୍ଟ ଭାବରେ Transformation ଅର୍ଥାତ୍ ଯେଉଁ ଭୂମିରେ form ବା ରୂପଅଛି ସେ ଭୂମିକୁ ଅତିକ୍ରମ କରି ଆଉ ଏକ ଉର୍ଦ୍ଧ୍ୱଭୂମିରେ ରୂପ ସଂଚାରକୁ Transformation କୁହାଯାଇପାରେ । ଓଡ଼ିଆରେ ପ୍ରକାଶ କଲେ ବୋଧହୁଏ 'ରୂପାତିକ୍ରମଣ' ହିଁ ସେହି ଅର୍ଥବାହୀ ଶବ୍ଦ ହୋଇପାରେ । ତେବେ ଯେ ଅତିକ୍ରମ କରିଯାଏ ସେ ଅତିକ୍ରାନ୍ତ ଭୂମିକୁ ଛାଡ଼ି ଚାଲିଯାଏ । ପକ୍ଷୀ ଗଛ ଡାଳକୁ ଛାଡ଼ି ଉଡ଼ିଗଲା ପରି, ନା ତାକୁ ସାଙ୍ଗରେ ନେଇଯାଏ ଶୁଦ୍ଧ ସୂକ୍ଷ୍ମ ଝୀନ ରୂପରେ ? ଯଦି ଛାଡ଼ିଯାଏ ତାହେଲେ ସେ ବିଚ୍ଛିନ୍ନ ହୋଇଯାଏ । ଯେଉଁ ଧାରା ଗଡ଼ି ଆସିଥିଲା ତାହା ଛିଣ୍ଡିଯାଏ । ତାର ପରିସମାପ୍ତି ଘଟେ । ବିବର୍ତ୍ତନ ଧାରାରେ ଯଦି ଏପରି ଅତିକ୍ରମଣ ହୁଏ ତାହା ବ୍ୟତିକ୍ରମ । କାରଣ ବର୍ତ୍ତମାନ ସୁଦ୍ଧା ଯେଉଁ ରୂପ ମାଧ୍ୟମରେ ଚେତନା ନିଜକୁ ପ୍ରକାଶିତ କରି ଆସିଛି ସେ ସମସ୍ତ କିଛି ମାତ୍ରାରେ ମଣିଷ ଭିତରେ ଅଦ୍ୟାବଧି ବିଦ୍ୟମାନ । ମନସ୍ତତ୍ତ୍ୱବିତ୍ କହନ୍ତି ଯେ ମଣିଷ ମନଭିତରେ ଏକ ଚତୁଷ୍ପଦର ମନ ଗର୍ଭିତ ହୋଇ ରହିଛି, ଏବଂ ତା ଭିତରେ ଏକ ସରୀସୃପର ମନ ମଧ୍ୟ ଲୁଚି ରହିଛି । ଏଣୁ କୌଣସି ବ୍ୟକ୍ତିକୁ କଥା କହିଲାବେଳେ ଗୋଟିଏ କୁମ୍ଭୀର ଗୋଟିଏ ଘୋଡ଼ା ଏବଂ ଗୋଟିଏ ମାନବପ୍ରାଣୀର ମାନସିକତାକୁ ଏକତ୍ର ସମ୍ବୋଧ କରାଯାଉଛି ବୋଲି ସେହି ମନସ୍ତତ୍ତ୍ୱବିତ୍‌ଙ୍କ ମତ । ଶ୍ରୀ ଅରବିନ୍ଦ ଯେଉଁପରି ସୃଷ୍ଟି ପ୍ରକ୍ରିୟାକୁ ତିନୋଟି ସଂଘାତ ମାଧ୍ୟମରେ ବୁଝାଇଛନ୍ତି ତାହା ଏକ ମୌଳିକ ସତ୍ୟ । ପ୍ରଥମ ସଂଘାତ ଆଦିମ ଜଡ଼ ପିଣ୍ଡର । ସମଗ୍ର ବିଶ୍ୱର ରାଶି ରାଶି ଗ୍ରହ ନକ୍ଷତ୍ର ତାରକା ସେଇ ପ୍ରଥମ ସଂଘାତର ଫଳ । ଦ୍ୱିତୀୟ ସଂଘାତ ହେଲା ପ୍ରାଣର । ଜଡ଼ କିପରି ସଚେତନ ହେଲା କେହି କହି ପାରିବେ ନାହିଁ । କିନ୍ତୁ ପ୍ରାଣର ସଂଘାତ ଘଟିଲା ଏବଂ ବହୁବିଧ ପ୍ରାଣୀ ଦେଖାଦେଲେ ଏହା ସତ୍ୟ । ତୃତୀୟ ସଂଘାତ ମନର । ମନର ବିକାଶ ପରେମାନବ ଦେଖାଦେଲା । ସଂସାର ପ୍ରବାହରେ କୌଣସି ପ୍ରକ୍ରିୟାର ବିରାମ ନାହିଁ । ଏଣୁ ମାନବ ପାଖରେ ବିବର୍ତ୍ତନର ପ୍ରକ୍ରିୟା ସ୍ତମ୍ଭିତ ହୋଇ ଯିବାର କୌଣସି କାରଣ ବା ଅନିବାର୍ଯ୍ୟତା ନାହିଁ । ଏଣୁ ଏହାପରେ ଯାହେବ ତା ମାନସିକତାର ବିକାଶ ନୁହେଁ, ତା ହେବ ଆଉ ଏକ ସଂଘାତ । ଚତୁର୍ଥ ସଂଘାତ ଅତିମାନସର । ସେଥିରେ ଆଉ ଏକ ଅତିକ୍ରମଣ ହେବାର ପ୍ରତିଶ୍ରୁତି ଶ୍ରୀ ଅରବିନ୍ଦ ଦେଇଛନ୍ତି । ରୂପାନ୍ତରିତ ମନପ୍ରାଣ ଶରୀରରେ ଭଗବତ୍ ପ୍ରାପ୍ତି କଥା ବାବାଜୀ ମହାରାଜ ବହୁବାର କୁହନ୍ତି । ଏହି ରୂପାତିକ୍ରମଣ କ୍ରିୟାଟି ଅତିମାନସ ଶକ୍ତିର ସଂଘାତରେ ସଂଭବ । ଚେତନାର ନୂତନ ବିକାଶକୁ ଧାରଣ କରିବାକୁ ତଦନୁଯାୟୀ ଏକ ରୂପର ଆବଶ୍ୟକତା ରହିଛି । ଯେପରି ମାନବର ମାନସିକ ବିକାଶ ଲୋମଶ ଚତୁଷ୍ପଦ ରୂପରେ ଧାରଣ କରାଯାଇ ପାରି ନ ଥାନ୍ତା, ଏବଂ ସେଥିପାଇଁ ମାନବ ଶରୀର ବିବର୍ତ୍ତିତ ହେଲା ସେହିପରି ଅତିମାନସ ସ୍ତରର ଚେତନାକୁ ଧାରଣ କରିବାକୁ ମାନବର ବର୍ତ୍ତମାନ ରୂପ ଅସମର୍ଥ ହୋଇଥିବାରୁ ଏକ ରୂପାତିକ୍ରମଣ ହେବା ଅନିବାର୍ଯ୍ୟ । ତାହା କିପରି ଜନ୍ମ

ଜରା ମୃତ୍ୟୁକୁ ଅତିକ୍ରମ କରିବ ଏବଂ ସ୍ଥୂଳ ଉପାଦାନ ପରିବର୍ତ୍ତେ କେବଳ ଜ୍ୟୋତି ଘଟିତ ହେବ ତାହା ଶ୍ରୀ ଅରବିନ୍ଦ ଦିବ୍ୟ ଜୀବନ ଗ୍ରନ୍ଥର ଶେଷଭାଗରେ ସୂଚନା ଦେଇଛନ୍ତି । ତାହା ଆଉ ଏକ ପ୍ରସଙ୍ଗ ।



ନିଜକୁ ନିଜେ ଆୟତ୍ତ କରିବାକୁ ହେଲେ ପ୍ରଥମେ ବିଭାଜିତ ହେବାକୁ ପଡ଼ିବ । ଗୋଟିଏ ସତ୍ତା ଶାସନ କରିବ, ଅନ୍ୟଟି ଶାସିତ ହେବ । ଯେ ଶାସନ କରିବ ସେ ଅସଂପୃକ୍ତ, ଶୁଦ୍ଧ, ମୁକ୍ତ, ବିଜ୍ଞ ସତ୍ତା । ଅନ୍ୟଟି ଶରୀର ପ୍ରାଣ ମନର ସ୍ଥୂଳତା ଜଟିଳତା ଭିତରେ କ୍ଷୁଧା, ଆବେଗ, ପ୍ରବେଗ, ପ୍ରଲୋଭନ, ଅନୁରକ୍ତି ସଂପୃକ୍ତି, ଅସଂପୃକ୍ତି ଆଦି ବିବିଧ ତାଡ଼ନାରେ ବିକ୍ଷୁବ୍ଧ ସତ୍ତା । ଗୋଟିଏ ସାକ୍ଷୀସତ୍ତା ଅନ୍ୟଟି ଜୀବସତ୍ତା । ଏ ଦୁଇ ସତ୍ତାକୁ ଉପନିଷଦ ଦୁଇଟି ସୁନ୍ଦର ପକ୍ଷୀ ସହିତ ତୁଳନା କରିଛନ୍ତି । 'ଦ୍ୱା ସୁପର୍ଣ୍ଣା ସଯୁଜା ଶଖାୟା, ସମାନଂ ବୃକ୍ଷଂ ପରିଷସ୍ୱଜାତେ । ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତି, ଅନଶ୍ନନ ଅନ୍ୟଃ ଅଭିଚକାଷିତି ।' ପିପ୍ପଳ ଗଛର ଦୁଇଟି ଶାଖାରେ ଦୁଇଟି ସୁନ୍ଦର ପକ୍ଷୀ ବସିଛନ୍ତି । ଗୋଟିଏ ଗଛର ଫଳ ଖାଇ ତା'ର ସ୍ୱାଦ ପାଉଛି – ଅନ୍ୟଟି ନଖାଇ କେବଳ ଚାହିଁ ରହିଛି । ଯେ ଫଳଖାଏ ତା ପାଇଁ ଭଲ ମନ୍ଦ ଉଭୟ ଫଳଭୋଗ କରିବାର ଏବଂ ସେଥିରେ ତାପିତ ହେବାର ବ୍ୟବସ୍ଥା ରହିଛି । ସେ ଦୁଃଖ ପାଉଛି, ସୁଖ ବି ପାଉଛି । ଉଭୟରେ ବିଚଳିତ ହେଉଛି । ଅନ୍ୟ ପକ୍ଷୀଟି ନିର୍ଲିପ୍ତ ବସି ରହିଛି । ସେହିଁ ଚାହିଁ ରହିଛି । ଏ ଚାହିଁ ରହିଥିବା ସାକ୍ଷୀସତ୍ତାଟିକୁ ସର୍ବ ପ୍ରଥମେ ଆବିଷ୍କାର କରିବାକୁ ପଡ଼ିବ । ତାକୁ କିଏ ଆବିଷ୍କାର କରିବ ? ସେହି ସ୍ୱୟଂ ଆତ୍ମସଚେତନ ହେବ । ଦେହାତ୍ମ ପ୍ରତ୍ୟୟର ଅବିଦ୍ୟାରୁ ମୁକ୍ତି ହୋଇ ସେ ଅନ୍ୟକୁ ଦୂରରୁ ଦେଖିଲା ପରି ନିଜର ଜୀବସତ୍ତାକୁ ଦେଖିପାରିବ । ଦେଖିପାରିଲେ ହିଁ ସେ ଦ୍ରଷ୍ଟା, ବା ସାକ୍ଷୀ । ଏହାକୁ ମା ପାଦେ ପଛକୁ ଘୁଞ୍ଚିଯାଅ (step back) ବୋଲି କହିଛନ୍ତି । ଏ ଅନୁଭବ ଆତ୍ମ ବିଶ୍ଳେଷଣ ଆତ୍ମ ନିରୀକ୍ଷଣ ଭଳି ବୌଦ୍ଧିକ ଅଭ୍ୟାସରେ ବେଳେବେଳେ ଆସିଯାଏ । କିନ୍ତୁ ଏହାକୁ ଅଧିକାର କରି ସାକ୍ଷୀ ଭୂମିରେ ଅବସ୍ଥାନ କରିବା ଏକ ବିରଳ ଆଧାତ୍ମିକ ସିଦ୍ଧି । ସେପରି ସାଧକ ହିଁ ସୁଖ ଦୁଃଖରେ ସମପରିମାଣରେ ଅବିଚଳିତ ରହିବ, ସଂସାରରେ ଥାଇ ସୁଦ୍ଧା ପାଣିର ପଦ୍ମପତ୍ର ପରି ନିର୍ଲିପ୍ତ ରହିବ, ତାପମୁକ୍ତ ରହିବ । ମୁଁ କେବଳ ଦେହ ନୁହେଁ, ମନ ନୁହେଁ, ପ୍ରାଣ ନୁହେଁ, ଏ ସାମାନ୍ୟ ବସ୍ତୁ ସଂଘ ନୁହେଁ; ମୁଁ ଏ ସମସ୍ତରୁ ଉଦ୍‌ବୃତ୍ତ, ଏ ସମସ୍ତଙ୍କୁ ଧାରଣ କରିଥିବା, ସ୍ୱୀକାର କରିଥିବା ଅଥଚ ଅତିକ୍ରମ କରିଥିବା ଆତ୍ମସତ୍ତା । ତେଣିକି ସେ ସାକ୍ଷୀସତ୍ତା କିପରି ଉନ୍ମୁଖ ହୁଏ, କିପରି ଜୀବାତ୍ମାର ବିଶ୍ୱାତ୍ମା ସାକ୍ଷାତ୍‌କାର ହୁଏ, କିପରି ଉଦ୍‌ଭାସିତ ହୁଏ ନିମ୍ନଭୂମି ଆଲୋକର ଅବତରଣରେ, କିପରି ଆସ୍ପୃହାର ନୀରବ ଆବାହନରେ କୃପାବତରଣ ଘଟେ, ତାହା ଅତି ସୂକ୍ଷ୍ମ ପର୍ଯ୍ୟାୟର ଆଧାତ୍ମିକ ଅନୁଭବ ଓ ଉପଲବ୍ଧିର ବିଷୟ, ଯାହା ଅନୁଭବ୍ୟ ଅଥଚ ପ୍ରକାଶିତବ୍ୟ ନୁହେଁ ।

କେମିତି ଜାଣିବା ଯେ, ଆମେ ଯାହା କରୁଛୁ ତାହା ଭଗବତ୍ ଇଚ୍ଛାରେ ହିଁ କରୁଛୁ ? ସାଧାରଣତଃ ଆମର କର୍ତ୍ତାପଣ ଥିବା ପର୍ଯ୍ୟନ୍ତ ଗୋଟାଏ ସ୍ଥୂଳ ଅହଂ ସବୁ ଅଧିକାର କରି ରହିଥାଏ । ମୁଁ ଦେଖୁଛି, ମୁଁ କରୁଛି, ମୁଁ ମାରୁଛି, ମୁଁ ତାରୁଛି – ଏ ବାକ୍ୟଗୁଡ଼ିକ ଅହଂ ଉଚ୍ଚାରଣ କରୁଥାଏ । କିନ୍ତୁ ଯେତେବେଳେ ସେ କହେ, ମୁଁ ଶ୍ରେଷ୍ଠ, ମୁଁ ଜ୍ୟେଷ୍ଠ, ମୁଁ ବିଜ୍ଞ, ମୁଁ ବଳଶାଳୀ ମୋ ଭଳି ଆଉ କେହି ନାହିଁ । ସେତେବେଳେ ତା'ର ପ୍ରକୃତ ମୂଢ଼ତା ପ୍ରକାଶ ପାଏ । "ଆଢ୍ୟୋଭି ଜନବାନ ଅସ୍ମି କୋନ୍ୟୋସ୍ତି ସଦୃଶୋ ମୟା ... ଇତ୍ୟଜ୍ଞାନ ବିମୋହିତାଃ ।"

କିନ୍ତୁ ଯେତେବେଳେ ସେ ବୁଝିବା ଆରମ୍ଭ କରେ ତାକୁ ଆଉ ପ୍ରକାରେ ଦେଖାଯାଏ । ସମସ୍ତ କର୍ମ ପାଇଁ ଗୋଟାଏ ଅନନ୍ୟ ପରିବେଶ ସୃଷ୍ଟି ହୋଇ ଚାଲିଛି । ଆଜି ସଂଧ୍ୟା ୮.୩୦ ରେ ମୁଁ ଭିତରେ ବାହାରେ ଯାହା ହୋଇଛି ଏବଂ ମୋର ପରିପାର୍ଶ୍ୱର ବ୍ୟକ୍ତି ବସ୍ତୁ ଆଦି ଯାହା ସେ ସମସ୍ତ ପଛରେ ଏକ ଅନିବାର୍ଯ୍ୟ ଘଟଣା ପରମ୍ପରା ଗୁନ୍ଥା ହୋଇ ରହିଛି – ଯାହାକୁ ବଦଳେଇ ହେବ ନାହିଁ । ଏଣୁ ମନେହୁଏ ଯେ, ଆଉ ଜଣକ ଇଛାରେ ଏ ସୃଷ୍ଟି ଆତଯାତ ହୁଏ । ସେତିକିବେଳେ ନିଜର ଗଭୀର ହୃତ୍‌କନ୍ଦରରୁ ଏକ ସ୍ପଷ୍ଟ ଅଥବା ସୂକ୍ଷ୍ମ ସ୍ୱର ଶୁଭେ – ତାହା ହିଁ ମାଲିକଙ୍କ ସ୍ୱର । ତାକୁ ଶୁଣିଲେ ଆଉ ଦିଗ୍‌ଭ୍ରାନ୍ତି ନାହିଁ ।



## ୪-୩-୯୨

ଜୀବନରେ ବିଫଳତାର ଗ୍ଲାନି ହିଁ ବିଫଳତାକୁ ଏତେ ଦୁର୍ବହ ଦୁଃଖରେ ପରିଣତ କରିଦିଏ । ବୃଥା ହୋଇଗଲା ଜୀବନ, ଏକଥା କି ସେ କଥା ହୋଇପାରିଥାନ୍ତା ହେଲା ନାହିଁ । ଏ କାର୍ଯ୍ୟ କି ସେ କାର୍ଯ୍ୟ କରିଥିଲେ ଏଇଆ ନା ସେଇଆ ହୋଇପାରିଥାନ୍ତା । ହାୟ ହାୟ ବୃଥା ହୋଇଗଲା ଜୀବନ । ଏଭଳି ଭାରାକ୍ରାନ୍ତ ଥିଲାବେଳେ ଗୋଟିଏ ଦୃଷ୍ଟାନ୍ତ ଦେଇ ମନକୁ ସାନ୍ତ୍ୱନା ଦିଆଯାଇପାରେ ।

ଆମ୍ବ ଗଛଟିଏ, ବେଶ୍ ସବୁଜ, ଛାୟା ଶୀତଳ, ପୁଷ୍ପଳ । ମଣିଷ ଯାଇ ତାକୁ କହେ "ଗଛରେ ଗଛ ତୁ ମୋ ପାଇଁ କେତେ ଫଳ ଦେବୁ କହ ।" ଗଛ କହେ "ଦେଖ ଭାଇ ମୁଁ ତୁମ ପାଇଁ ବୋଲି ଫଳୁନାହିଁ । ଗୋଟାଏ ସମୟରେ ମୋ ଭିତରେ କଣ ସବୁ ହୋଇଯାଏ । ତା ପରେ ମୁଁ ବଉଳିବାକୁ ଏବଂ ଫଳବନ୍ତ ହେବାକୁ ବାଧ୍ୟ । ତାହା ସେ ସମୟରେ ଅନିବାର୍ଯ୍ୟତା । ଫଳ ପାଚି ସୁସ୍ୱାଦୁ ନହେବା ଯାଏ ତୁମେ ଅପେକ୍ଷା କରିଥାଅ । କିନ୍ତୁ ବଉଳିବା ଦିନୁ ଲକ୍ଷ ଲକ୍ଷ କୀଟ, ମାଛି ମୋ ଦେହରେ ଲାଗିଯାନ୍ତି । ଶହେରେ ନବେ ଭାଗ ବଉଳ ସେଇମାନେ ଖାଇଯାନ୍ତି । ତାପରେ ଆସେ ଝଙ୍କା ପବନ ଝଡ ବର୍ଷା ସେ ଅମାନିଆ ଝାଙ୍କି ପକାଏ । ସେଥିରେ ଆଉ କିଛି ବଉଳ ଚଣା ଝଡିଯାଏ । ତାପରେ ଖଟାଖିଆ ଛୋଟପିଲା ଫୋପଡ଼ ମାରି ଖସେଇ ପକାନ୍ତି । ଶେଷକୁ ବହୁ କଷ୍ଟରେ କିଛି ରହିଥାଏ ଡେମ୍ଫରେ ପାକଳ ହୋଇ ପାଚିବାକୁ ତାହାତୁମ ଭାଗରେ ପଡେ । ମାତ୍ର ଦଶଟି ଫଳ ଦେଲି ବୋଲି ତୁମର ଅଭିଯୋଗ । କିନ୍ତୁ ମୋ ପରିସ୍ଥିତିରେ ମୁଁ ତା ଠାରୁ ଅଧିକ ଦେବା ସମ୍ଭବ ନୁହେଁ । ଏତକ ଯେ ଦେଇପାରିଲି ସେଇ ଯଥେଷ୍ଟ । ମୋର ସେଥିରେ କୌଣସି ବିଫଳତା ବୋଧ ନାହିଁ । କୌଣସି ଗ୍ଲାନି ନାହିଁ ।



ସଂସାର ଜାବ ଭିତରେ ପଡିଗଲା ପରେ ସେ ଅପରିହାର୍ଯ୍ୟ ପ୍ରବାହକୁ, ସେ ବିପେକ୍ଷକୁ ସହି ସଂମ୍ଭାଳି ଫଳିବା ଧର୍ମକୁ ଜାରି ରଖିବା ହିଁ ବିସ୍ମୟ । ଶହେରେ ଅଠାନବେ ନ ନେଇ ଦୁଇ ନେଲି । ସେଥିରେ ଅଠାନବେର ବିଫଳତା ପାଇଁ ଦୁଃଖ କରି ଲାଭ ନାହିଁ । କାରଣ ସେଥିପାଇଁ ବହୁ ବିରୋଧଦାୟୀ । କିନ୍ତୁ ବାକି ଯେଉଁ ଦୁଇ ସଫଳତା ଆସିଛି ସେଥିପାଇଁ ବଂର ଖୁସି ହେବା କଥା । ଏଣୁ ପରାଜୟ ଓ ବିଫଳତାର ଗ୍ଲାନି କେବଳ

ବୁଝାମଣାର ଅଭାବ । ବୁଝିଗଲେ କଥା ନିଆରା ।

ପରାଭବର ଗ୍ଲାନି ଜୀବନର ଅନ୍ୟତମ ଯାତନା । ସେଥିରେ ମନ ଅବସ ପ୍ରାଣ ଆନ୍ଦୋଳିତ ଏବଂ ଶରୀର ବିବଶ ବୋଧ କରନ୍ତି । ଦିଗ୍‌ବଳୟ ସାଙ୍କୁଡ଼ି ଗଲା ପରି ଲାଗେ । ଦୈବ ବିଧାନ ପ୍ରତି ଅନାସ୍ଥା ଭାବ ଦେଖାଦିଏ । ଆଶ୍ରିତ ପ୍ରାଣୀଟି ବିଡମ୍ବିତ ହୋଇ ହତଚକିତ ଅନାଏ । ନିଜର ଆଖି କାନକୁ ସେ ବିଶ୍ୱାସ କରିପାରେ ନାହିଁ । ଏମିତି ଅପ୍ରତ୍ୟାଶିତ ଭାବରେ ଗୁଡ଼ିଏ ଇତର ଜନ ଆସି ମତେ ଦଳି ଚକଟି ଯିବାର କଣ କାରଣ ଥାଇପାରେ, କଣ ବା ଯଥାର୍ଥ୍ୟ ? କେଉଁ ଦୋଷ ପାଇଁ ଏ ଦଣ୍ଡ ? ଆଶ୍ରିତ ହେଲେ କଣ ଏପରି ଅସହାୟ କ୍ଷତବିକ୍ଷତ ହେବାକୁ ପଡେ ? ଆଶ୍ରିତ ପ୍ରାଣୀଟି କଣ ଗୋଟାଏ ଦୁର୍ବଳ ଜୀବ ଯାହାକୁ ଯେକେହି ଆଘାତ କରିବାକୁ ପ୍ରଲୁବ୍ଧ ହୁଏ । ତାର ସରଳତା ତାର ଶୁଦ୍ଧତା ବୋଧହୁଏ ତାର ନୈତିକ ପରିବେଶରେ ଏକ ପ୍ରକାର ଲଘୁଚାପ ସୃଷ୍ଟିକରେ । ଫଳରେ ପ୍ରବଳ ବେଗରେ ଚାରିଆଡୁ ଧୂମାକ୍ତ ଧୂସର ବାୟୁ ପ୍ରବାହ ମାଡି ଆସନ୍ତି ତାକୁ ଗ୍ରାସ କରିବାକୁ । ଅପଶକ୍ତିକୁ ସେ ତାର ଅଜ୍ଞାତରେ ଅବଜ୍ଞା କରିବାରୁ ଅପ ଶକ୍ତି ଆକ୍ରମଣ କରେ । ସେ ଆକ୍ରମଣ ବେଳେ ଦିବ୍ୟ ଜନନୀ କଣ ଆଶ୍ରିତ ସନ୍ତାନକୁ ରକ୍ଷା କରନ୍ତି ନାହିଁ ? କରିବାକୁ ଚାହାନ୍ତି ନାହିଁ ? କରି ପାରନ୍ତି ନାହିଁ ?

କଥା ସେପରି ନୁହେଁ । ସାଧାରଣ ଜୀବ ଧର୍ମରୁ ଉପରକୁ ଉଠିବା ହିଁ ଏକ ବ୍ୟତିକ୍ରମ । ଉଠିବା ମାତ୍ରେ ବିରୋଧି ଶକ୍ତି ସତର୍କ ହୋଇଯାଏ । ତାର ଦୃଷ୍ଟି ପଡେ ଏ ବ୍ୟତିକ୍ରମ ଉପରେ । ଏଣୁ ଆଧ୍ୟାତ୍ମିକ ସାଧକ ତା ଅଜ୍ଞାତ ସାରରେ ବିପୁଳ ଅପଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ । ଯେତେବେଳେ ଆକ୍ରମଣ ହୁଏ ସେତିକି ବେଳେ ପ୍ରଭୁ ସ୍ୱୟଂ ସାଧକ ପକ୍ଷରୁ ଯୁଦ୍ଧ କରନ୍ତି । ବଡ ଭାଗ ଆଘାତ ସେ ସ୍ୱୟ ବହନ କରନ୍ତି । ଅଗ୍ନି ବଳୟ ଭିତରୁ ଉଦ୍ଧାର କରି ଆଣିଲା ବେଳେ ଆଶ୍ରିତ ଦେହରେ ଧାସ ବାଜେ ନିଶ୍ଚୟ କିନ୍ତୁ ସମସ୍ତ ବହ୍ନି ଶିଖା ସେ ସ୍ୱୟଂ ସ୍ୱୀକାର କରନ୍ତି । ନହେଲେ ପ୍ରବଳ ଅପଶକ୍ତିର ପ୍ରବାହ ସହିବାକୁ, ଏ ଦୁର୍ବଳ ପ୍ରାଣୀଟିର ସାମର୍ଥ୍ୟ କାହିଁ ?

ସେହିପରି ଏକ ଆକ୍ରମଣରୁ ମୁକୁଳି ଆସିଲା ପରେ ପରାଭବର ଗ୍ଲାନି ହୁଏତ ଅତି ସ୍ୱାଭାବିକ ଭାବରେ ଆସିପାରେ । କିନ୍ତୁ ଅନ୍ୟ ଦୃଷ୍ଟିରୁ ଦେଖିଲେ କୃତଜ୍ଞତାର ଅନ୍ତର ଭରିଯାଏ । ମୁଁ ତା'ହେଲେ ପ୍ରଭୁଙ୍କ ପକ୍ଷରେ ଅନ୍ତର୍ଭୁକ୍ତ । ସେଥିପାଇଁ ପ୍ରତିପକ୍ଷର ମୋ ଉପରେ ଏପରି ଆକ୍ରମଣ ? ଏହା ତା ହେଲେ ପ୍ରତ୍ୟକ୍ଷ ପ୍ରମାଣ ଯେ ମୋତେ ପ୍ରଭୁ ସ୍ୱୀକାର କରିଛନ୍ତି ? ଏତିକି ପ୍ରତ୍ୟୟ ଆସିଗଲେ ତେଣିକି ପ୍ରତିପକ୍ଷର ପ୍ରହାରରେ ବିଲୀନ ହୋଇଗଲେ ମଧ୍ୟ ଚିନ୍ତା ନାହିଁ ।



୫-୫-୯୨

କଣ କର୍ମ କଣ ଅକର୍ମ ଏ ବିଷୟରେ କବି ଅର୍ଥାତ୍ ତ୍ରିକାଳ ଦ୍ରଷ୍ଟାମାନେ ମଧ୍ୟ ବିମୋହିତ ହୋଇଯାନ୍ତି କିଂ କର୍ମ କିଂ ଅକର୍ମେତି କବୟୋଽପ୍ୟତ୍ର ମୋହିତାଃ' । ପରିସ୍ଥିତି ଭେଦରେ, ବ୍ୟକ୍ତି ଭେଦରେ ଜଣଙ୍କର କର୍ମ ଆଉଜଣଙ୍କ ପାଇଁ ଅକର୍ମ ହୋଇପାରେ । ଏପରିକି ଭିନ୍ନ ଭିନ୍ନ ସମୟରେ ଜଣେ ବ୍ୟକ୍ତି ପାଇଁ ମଧ୍ୟ ସେପରି ଘଟିପାରେ । ଏଣୁ କର୍ମର ଗୁଣାଗୁଣ କିଛି ନାହିଁ । ତାହା ଦେଶକାଳ ପାତ୍ର ଭେଦରେ କର୍ମ ଅଥବା ଅକର୍ମ ରୂପେ

ପରିଗଣିତ ହୋଇଥାଏ । ବ୍ରାହ୍ମ ମୁହୂର୍ତ୍ତରୁ ସ୍ନାନାଦି ସାରି ସ୍ୱାଧ୍ୟାୟ କରିବା ନିଶ୍ଚୟ ଏକ ସାତ୍ତ୍ୱିକ କର୍ମ । କିନ୍ତୁ ସନ୍ନିପାତ ରୋଗୀପାଇଁ ତାହା ନିଷିଦ୍ଧ ଏଣୁ ଅକର୍ମ । ଏପରିକି ସତ୍ୟ କହିବା ମଧ୍ୟ ସ୍ଥାନକାଳ ନିର୍ବିଶେଷରେ କରଣୀୟ ନୁହେଁ । ସେଥିପାଇଁ ଅପ୍ରିୟ ସତ୍ୟ କହିବାକୁ ବାରଣ କରାଯାଇଛି । 'ସତ୍ୟଂ ବ୍ରୁୟାତ୍ ପ୍ରିୟଂ ବ୍ରୁୟାତ୍ ମା ବ୍ରୁୟାତ୍ ସତ୍ୟଂ ଅପ୍ରିୟମ୍' । କିନ୍ତୁ ଅପ୍ରିୟ ସତ୍ୟ ପାଇଁ ମିଥ୍ୟା ବିକଳ୍ପ ନୁହେଁ । ବରଂ ମୌନ ହିଁ ତାର ବିକଳ୍ପ । ଏଣୁ ମନେ ହେଉଛି ଯେ ପ୍ରତ୍ୟେକ କର୍ମକୁ ସ୍ୱତନ୍ତ୍ରଭାବରେ ବିଚାର କଲାପରେ ତାହା କରଣୀୟ କିମ୍ବା ବର୍ଜନୀୟ ବୋଲି ଗ୍ରହଣ କରାଯାଇପାରେ । ଏହା ନିଶ୍ଚୟ କଷ୍ଟସାଧ୍ୟ । କାରଣ ଅନେକ ସମୟରେ ବିଚାର ବିଭ୍ରାଟ ହୁଏ, ଧର୍ମ ସଂକଟ ସହିତ କର୍ମ ସଂକଟ ମଧ୍ୟ ଦେଖାଦିଏ ଯେପରି ଅର୍ଜୁନଙ୍କର ହୋଇଥିଲା । ଯୁଦ୍ଧ କରି ଶତ୍ରୁ ବିନାଶ କରିବା କ୍ଷତ୍ରିୟର ଧର୍ମ । କିନ୍ତୁ ନିଜର ସ୍ୱଜନଶତ୍ରୁ ପକ୍ଷରେ ଠିଆହେଲେ ବିଚାର ବିଭ୍ରାଟ ହେବା ସ୍ୱାଭାବିକ । ଆଉ କ'ଣ ସହଜ ସରଳ ପରୀକ୍ଷା ହୁଏ ତ ଥାଇପାରେ ଯାହା ସାହାର୍ଯ୍ୟରେ ସାଧୁ ସାଧକମାନେ ଅକ୍ଳେଶରେ ଏବଂ ଅନାୟାସରେ କର୍ମ କରଯାନ୍ତି । ତାର ଗୋଟିଏ ପନ୍ଥା ହେଲା ଇଶ୍ୱାରାର୍ପିତ ହୋଇ କର୍ମ କରିବା, ସଂପୂର୍ଣ୍ଣ ଉତ୍ସର୍ଗିତ ହୋଇ ମୀରା ବିଷପାନ କଲେ ସୁଦ୍ଧା ତାହା ଅମୃତରେ ପରିଣତ ହୋଇଯାଏ । ଏହା ମଧ୍ୟ ସହଜ ସାଧ୍ୟ ନୁହେଁ । ଏଥିପାଇଁ ସାଧାରଣ ମଣିଷ ପାଇଁ ମା ଗୋଟାଏ ସରଳ ଉପାୟ ସ୍ଥିର କରିଛନ୍ତି । ତାହା ହେଲା ଯେ କୌଣସି ଭୁଲ୍ କାମ କରିବା ପୂର୍ବରୁ ବା କରୁଥିଲା ବେଳେ ଏକ ପ୍ରକାର ଗଭୀର ଅସ୍ୱସ୍ତି ବୋଧ ଆସେ । ସେଥିରୁ ଜଣାଯାଏ ଯେ ସେ କର୍ମଟିକୁ ଆମ ଭିତରେ ଥିବା ଆତ୍ମାପୁରୁଷ ଅନୁମୋଦନ କରୁନାହାନ୍ତି । ଭିତରୁ ଆସୁଥିବା ଏହି ନିର୍ଭୁଲ ଅଥଚ ସୂକ୍ଷ୍ମ ସଂକେତକୁ ବାରି ପାରିଲେ କର୍ମ ଓ ଅକର୍ମ ବଳେ ଚିହ୍ନା ପଡିଯିବେ । ତାର ଅର୍ଥ ହେଲା ଯେ, କର୍ମ କଲାବେଳେ ମନ ପ୍ରାଣ ଶରୀରରେ ଏବଂ ଚୈତ୍ତ କେନ୍ଦ୍ରରେ ଯଦି କୌଣସି ବିରୋଧାତ୍ମକ କମ୍ପନ ନ ହୁଏ, କର୍ମରେ ଏକ ନିର୍ବିରୋଧ ସଂପୃକ୍ତି ଏବଂ ଉଲ୍ଲାସ ଭାବ ଆସୁଥାଏ ତାହେଲେ ପ୍ରଭୁଙ୍କ କର୍ମ ହେଉଛି ବୋଲି ବୁଝିବାକୁ ହେବ । କିନ୍ତୁ ବେଳେବେଳେ ମନ ପ୍ରାଣ ଶରୀରରେ ଲୁଚି ରହିଥବା ଭୟ, ଦ୍ୱେଷ, ଆଳସ୍ୟ ଆଦି କର୍ମର ବିରୋଧ କରିଥାନ୍ତି । ତାକୁ ଆତ୍ମାପୁରୁଷର ବିରୋଧ ବୋଲି ବୁଝିବା ଠିକ୍ ହେବ ନାହିଁ । ବରଂ ଏ ପ୍ରତିବାଦ ଗୁଡିକ ଅତିକ୍ରମ କରି ଭିତରର ନିର୍ଦ୍ଦେଶ ଓ ସମର୍ଥନରେ ଥରେ କର୍ମ ଆରମ୍ଭ କରିଦେଲେ ମନ ପ୍ରାଣ ଶରୀରରେ ମଧ୍ୟ ଈଶ୍ୱରେଚ୍ଛା ପ୍ରତି ସମର୍ପଣ ଭାବ ଆସିଯାଏ, ଏବଂ କର୍ମ କରିବା ପାଇଁ ତତ୍ପରତା ପ୍ରକାଶ ପାଇବ । ମୋଟ ଉପରେ ସ୍ଥୁଳ ଭାବରେ କହିବାକୁ ଗଲେ ଆତ୍ମାବିରୋଧି କର୍ମ କଲାବେଳେ କେଉଁଠି ଟିକିଏ ଖଟ୍ ଖଟ୍ ଲାଗିବ ଏବଂ ଅସୁସ୍ଥ ଲାଗିବ ଅପରାଧି ଅପରାଧି ଲାଗିବ । କିନ୍ତୁ ଆତ୍ମା ସମର୍ଥନ କରୁଥିବା କର୍ମରେ ବିଶାଳ ଆନନ୍ଦ ସ୍ଥିରତା, ଶାନ୍ତି ଏବଂ ପ୍ରଫୁଲ୍ଲତା ଅନୁଭବ ହେବ । ତେବେ ଏହା କୌଣସି ନିୟମକବିଧି ବା ଫର୍ମୁଲା ନୁହେଁ । ପ୍ରତ୍ୟେକ ବ୍ୟକ୍ତି ଖୁବ୍ ସଜାଗ ଏବଂ ସତର୍କ ନରହିଲେ କର୍ମାକର୍ମ ବୁଝିବା କଠିନ ।



ବକଟିଏ ପାଣିରେ ସ୍ଥିର ହୋଇ ଠିଆହୋଇଥିଲା ବେଳେ ଭାରି ନିରୀହ ଏବଂ ନିରାପଦ ଦେଖାଯାଏ । କିନ୍ତୁ ତା ସାମ୍ନା ଦେଇ ମାଛ ଟିଏ ପାରି ହୋଇଗଲେ ସେ ବିଜୁଳି ବେଗରେ ତା'ର ବକତ୍ୱ ପ୍ରମାଣିତ କରେ । ଏଣୁ ସ୍ଥିର ହୋଇ ଠିଆ ରହିବାର ନିରୀହ ଆଚରଣରୁ ବକଟିକୁ ଚିହ୍ନିହେବ ନାହିଁ । ସେ ସେତେବେଳେ ଯାହା ଦେଖାଯାଏ ପ୍ରକୃତରେ ସେ ତାହା ନୁହେଁ । ଏହା ମଣିଷ ମାନଙ୍କ ପାଇଁ ଆହୁରି ବ୍ୟାପକ ଭାବରେ ପ୍ରଯୁଜ୍ୟ । ଛଳ ଆଚରଣ କରିବାରେ ପୃଥିବୀରେ ଆଉ କୌଣସି ପ୍ରାଣୀ ମଣିଷର ସମକକ୍ଷ ନୁହେଁ । ଏଣୁ ମଣିଷର ବାହ୍ୟ ରୂପ ବା ଆଚରଣରୁ ତାର ଚରିତ୍ର ସ୍ୱଭାବ ବା ସ୍ୱରୂପ ଜାଣିବା ପ୍ରାୟ ଅସଂମ୍ଭବ । ଏପରିକି divine ପାଖରେ ମଧ୍ୟ ସେ ଛଳ ଆଚରଣ କରିଥାଏ । କିନ୍ତୁ ଅତି ଯତ୍ନରେ ସମସ୍ତଙ୍କ ଦୃଷ୍ଟିରୁ ଲୁଚାଇ ରଖିଥିବା ତାର ସ୍ୱରୂପକୁ ସେ ନିଜ ପାଖରୁ ଲୁଚାଇ ରଖିପାରେ ନାହିଁ । ସେ କିପରି ନିଜର ସ୍ୱାର୍ଥ ପାଇଁ ଅନ୍ୟର ଅନିଷ୍ଟ ଚିନ୍ତା କରିଥାଏ, ଅହରହ ଶରୀରର ବିଭିନ୍ନ କ୍ଷୁଧା ମେଣ୍ଟାଇବା ପାଇଁ ଅନ୍ୟାନ୍ୟ ଜନ୍ତୁଙ୍କ ଭଳି ବା ତାଙ୍କ ଠାରୁ ଅଧିକ ତତ୍ପରତାର ସହିତ ଲାଗିପଡିଥାଏ, କିପରି ସେ ମିଥ୍ୟା ଆଚରଣ କରେ, କପଟାଚରଣ କରେ, ଭାଇବନ୍ଧୁ କୁଟୁମ୍ବଙ୍କୁ ଗୁରୁ ବିପ୍ର, ବିପ୍ର, ଦେବତାଙ୍କୁ ଛଳ ବାକ୍ୟ ଓ ଆଚରଣରେ ପ୍ରତାରିତ କରେ, ସାଧନାରେ କିପରି ଅଧିକ ପ୍ରସଂଶାଭାଜନ ହେବାକୁ ଏବଂ ପୂଣ୍ୟ ଅର୍ଜନ କରିବାକୁ ସେ ମିଥ୍ୟା ପ୍ରଚାର କରିଥାଏ । ଆଖିବୁଜି ସଂସାର ଚିନ୍ତା କରୁଥିବାବେଳେ ଧ୍ୟାନ କରୁଛି ବୋଲି କହିହୁଏ, ଏଠୁ ସେଠୁ ପଲ୍ଲବଗ୍ରାହୀ ନ୍ୟାୟରେ କିଛି ଶିଖିବା କଣ୍ଠସ୍ଥ କରି ଜ୍ଞାନୀ ପଣ ଜାହିରି କରେ, କିପରି ମା'ଙ୍କର ଏବଂ ପ୍ରଭୁଙ୍କର ଅନନ୍ୟ କୃପା ସେ ପାଇଛି ବୋଲି ପ୍ରଚାର କରେ, ସବୁଦିନେ ସେ ସ୍ୱପ୍ନରେ ବିଭୂର୍ଦାନ କରୁଛି ବୋଲି ସରଳ ବିଶ୍ୱାସିଙ୍କୁ କହି ତାଙ୍କର ଭକ୍ତି ଭାଜନ ହୁଏ – ଏ ସମସ୍ତ ତାକୁ ଜଣା । କିନ୍ତୁ ଯେତେବେଳେ ବିରାଡି ଆଖିବୁଜି ଦୁଧ ପିଉଥିଲା ବେଳେ ଜାଣିଯାଏ ଯେ ମାଲିକ ସ୍ୱୟଂ ତାକୁ ଦେଖିସାରିଲାଣି ସେ ଲୁଚିବାକୁ ସ୍ଥାନ ପାଏ ନାହିଁ । ସେହିପରି ଆମର ସମସ୍ତ ଗୋପନ କାର୍ଯ୍ୟ ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ତିନି ଅବସ୍ଥାରେ ଯାହାସବୁ ପ୍ରତି ମୁହୂର୍ତ୍ତରେ ଘଟି ଯାଉଛି ତାର ପ୍ରାଞ୍ଜଳ ଚିତ୍ର ଯେ ମା ସ୍ୱୟଂ ଦେଖୁଛନ୍ତି ଏହା ଜାଣିବା ପରେ ଲଜ୍ୟାର ସୀମା ରହେ ନାହିଁ । ଆଖିଟେକି ମାଙ୍କ ମୁହଁକୁ ଚାହିଁବାକୁ ସାହାସ ହୁଏନାହିଁ । ମା ସେଥିପାଇଁ କହିଛନ୍ତି "There is a tremendous difference between how I see you and how you see yourself" ତୁମେ ନିଜକୁ ନିଜେ ଦେଖିବା ଏବଂ ମୁଁ ତୁମକୁ ଦେଖିବା ଭିତରେ ଆକାଶ ପାତାଳ ତଫାତ୍ । ଆମର ସମସ୍ତ କୁତ୍ସିତ ପଶୁତୁଲ୍ୟ ଦୁରାଚରଣକୁ ସେ ଚାହିଁ ରହିଛନ୍ତି ବୋଲି ଅନୁଭବକୁ ଆସିଲେ ମନହୁଏ କହିବାକୁ "ପୃଥିବୀ ତୁ ଫାଟିଯା ମୁଁ ତୋ ଭିତରେ ପଶିଯାଏ ।" ଏ ଲଜ୍ୟାରୁ ବଂଚିଯାଏ କିନ୍ତୁ କରୁଣାମୟୀଙ୍କ ଦୃଷ୍ଟିରେ ଜନ୍ତୁଟିଏ ମଧ୍ୟ ବର୍ଜନୀୟ ନୁହେଁ ସେ ତାକୁ ସର୍ବଦା କ୍ଷମା କରିବାକୁ ପ୍ରସ୍ତୁତ । ତାକୁ ଧୋଇ ଧାଇ ଶୁଦ୍ଧ କରିଦେବାକୁ ପ୍ରସ୍ତୁତ । ସେ ଯଦି ସେଥିପାଇଁ ରାଜିହୁଏ । ଏହାର କାରଣ ହୁଏତ ଏ କଥା ହୋଇପାରେ ଯେ ଆମର ମିଳନ ଆବରଣ ଓ ଆଚରଣ ପଶ୍ଚାତରେ ଆମର ଶୁଦ୍ଧ ସତ୍ତାକୁ ମଧ୍ୟ ମା' ଦେଖି ପାରନ୍ତି । ତାର ପ୍ରସ୍ତୁତି ମଧ୍ୟ ଜାଣି ପାରନ୍ତି । ଏବଂ ସେଇ ଅନୁସାରେ କରୁଣା ପ୍ରଦାନ କରନ୍ତି । ତା ନହେଲେ ଯଦି ଆମର ଅପରାଧ ପାଇଁ ଦଣ୍ଡବିଧାନର ବ୍ୟବସ୍ଥା ଥାନ୍ତା ଆମ ଭିତରୁ କେହି ହେଲେ କଣ ବଂଚି ପାରନ୍ତେ ? ସେ କ୍ଷମା ଦିଏ ଏବଂ ଦେଇ ଚାଲିଥାଏ ବୋଲି ସ୍ୱୀକାର କରାଯାଉଛି , "ମୁଁ ସିନା ଚିର ଅପରାଧି, ତୁ ନାଥ କରୁଣା ବାରିଧି" ।

ମଣିଷର ସାଧାରଣ ଯୁକ୍ତି ହେଲା ଏହିପରି - ମୁଁ ଯାହା ଚାହେଁ ତାହା ପାଏ ନାହିଁ । କାହିଁକି ପାଏ ନାହିଁ ବୋଲି ମୋର ଦୁଃଖ; ଏବଂ କାହିଁକି ପାଏ ନାହିଁ ବୋଲି ମଧ ଅଭିଯୋଗ । ମୋର ବିଷୟ ବାସନା ହୁଏ ଏବଂ ସେଥିପାଇଁ ତାକୁ ଲାଭ କରିବାକୁ ମୋର ଇଚ୍ଛା ହୁଏ । 'ଧ୍ୟାୟତୋ ବିଷୟାନ୍ ପୁଂସଃ ସଂଗସ୍ତେଷୁ ଉପଜାୟତେ' । ନ ପାଇବାରୁ କ୍ରୋଧ ମୋହ ଆଦି ବିକାର ଉତ୍ପନ୍ନ ହୁଏ । ଏବଂ ଶାସ୍ତ୍ର କହୁଛନ୍ତି ଯେ ପରିଶେଷରେ ଏଥିରେ ମୋର ବିନାଶ ହୁଏ । ମୋର କିନ୍ତୁ ମୌଳିକ ପ୍ରଶ୍ନଟି ହେଲା ଯେ ମୁଁ ମୋର କାମ୍ୟ ବସ୍ତୁ କାହିଁକି ପାଏ ନାହିଁ ? ତାହା ସେପରି କିଛି ଅପ୍ରାପ୍ୟ ଧୂମ ବସ୍ତୁ ନୁହେଁ । ହୁଏତ ଅନ୍ୟମାନେ ପାଇବାର ଦୃଷ୍ଟାନ୍ତ ରହିଛି ଅଥଚ ମତେ ତାହା ମିଳେ ନାହିଁ, ଯଦିବା ମୋ ବିଚାରରେ ମୋର ସେଥିପାଇଁ ଯୋଗ୍ୟତାର କୌଣସି ଅଭାବ ନାହିଁ । କାମ୍ୟ ବସ୍ତୁ ପାଇଁ କାମନା ରହିବା ସ୍ୱାଭାବିକ୍ । ସ୍ୱାଭାବିକ୍ ହୋଇଥିବାରୁ ଅପରାଧ ମଧ୍ୟ ନୁହେଁ । ତେବେ କାହିଁକି ତାହା ମିଳେ ନାହିଁ ? ତାହା କଣ ଆଉ କାହା ଆୟତରେ ବଣ୍ଟନ ହୁଏ, ଏବଂ ସେ ମୋତେ ନ ଦେବାକୁ ନିଷ୍ପତ୍ତି ନିଅନ୍ତି । ଏହିପରି ହତାଶା କ୍ରୋଧ ଅଭିଯୋଗର ସ୍ୱର ସମୟ ସମୟରେ ପ୍ରାୟ ସମସ୍ତଙ୍କ ଭିତରେ ଶୁଣାଯାଏ । ଏହାକୁ ଗୌତମ ବୁଦ୍ଧ ମଣିଷ ଜୀବନର ଅନ୍ୟତମ ଦୁଃଖ ବୋଲି ବର୍ଣ୍ଣନା କରିଛନ୍ତି । ସେ ଯାହା ଚାହେଁ ତାହା ପାଏ ନାହିଁ ଏବଂ ଯାହା ପାଏ ତାହା ଚାହେଁ ନାହିଁ । ଉଭୟ ତା ପାଇଁ ଦୁଃଖ । ଏ ଦୁଃଖର ପଶ୍ଚାତରେ ମଣିଷର ତୃଷ୍ଣା ବା ତନ୍‌ହାକୁ ଦାୟୀ କରଥିଲେ । ଏବଂ କହିଥିଲେ ଯେ କାମନାର ବିନାଶରେ ଦୁଃଖର ବିନାଶ ହୋଇପାରିବ । ସେହିପରି ଗୀତା ଶାସ୍ତ୍ରରେ ମଧ୍ୟ କୁହାଯାଇଛି "ଅସଙ୍ଗ ଶସ୍ତ୍ରେଣ ଦୃଢେନ ଛିତ୍ୱା" କୌଣସି କାମ୍ୟ ବ୍ୟକ୍ତି ବା ବସ୍ତୁ ସହିତ ଅସଙ୍ଗ ବା ଅନାଶକ୍ତି ଅଭ୍ୟାସ କଲେ ଦୁଃଖ ଆଉ ହେବ ନାହିଁ । କିନ୍ତୁ ଏଥିରେ ନିଷ୍କୃତିର ଆଉ ଏକ ଉପାୟ ଅଛି । ତାହା କାମନାକୁ ତ୍ୟାଗ କରି ନୁହେଁ, ତାକୁ ସ୍ୱୀକାର କରି, ସମଗ୍ର ଜୀବନକୁ ଓ ତାର ଯାବତୀୟ ବକ୍ରତା, ଦୁର୍ବଳତାକୁ କରି । କାମନାକୁ ଯଦି ନିଃସଂକୋଚ ଈଶ୍ୱରଙ୍କୁ ଅର୍ପଣ କରାଯାଇପାରେ ତାହେଲେ କେବଳ ଯେ ତାହା ଫଳବତୀ ହେବ ତା ନୁହେଁ, ସେଥିରେ ଆଉ କଳୁଷ ରହିବ ନାହିଁ । କଳ୍ପବୃକ୍ଷ ପାଖରେ ଯାହା ମାଗିଲେ ତାହା ମିଳିଯିବ, ସ୍ୱାମୀବିବେକାନନ୍ଦ ମା'ଙ୍କୁ ଧନ ଜନ ବାଡି ମାଗିଥିଲେ ଅବଶ୍ୟ ମିଳିଥାନ୍ତା, ସେ ମାଗିଲେ ନାହିଁ ବା ମାଗିପାରିଲେ ନାହିଁ, ତାହା ଆଉ ଏକ ପ୍ରକାର ପ୍ରସଙ୍ଗ କିନ୍ତୁ ନିଃସଙ୍କୋଚ ମାଗିଲେ ସେ ଅବଶ୍ୟ ତାହା ଦେବେ ଏଥିରେ ସଂନ୍ଦେହ ନାହିଁ । କିନ୍ତୁ divine ପାଖରେ ପହଞ୍ଚି ତାଙ୍କ ଉପସ୍ଥିତିରେ ଏ ଭୂମିର ଯାଚନାଗୁଡିକୁ ତାଙ୍କୁ ଜଣାଇବା ସହଜ ବ୍ୟାପାର ନୁହେଁ । ସମ୍ରାଟଙ୍କ ପାଖରେ ଯୋଡିଏ କେନ୍ଦୁ ମାଗିଲାପରି ତାହା ହାସ୍ୟାସ୍ପଦ ମନେ ହେବ । କିନ୍ତୁ ଏହା ନିଶ୍ଚିତ ଯେ ଯଦି ଆମ ସଂକଳ୍ପ ମା'ଙ୍କ ସଂକଳ୍ପ ସହିତ ସଂଯୁକ୍ତ ହୋଇଯାଏ ଏ ପୃଥିବୀ ରେ ଅସାଧ୍ୟ କିଛି ନାହିଁ, ତାହା ଲୌକିକ ହେଉ ବା ପାରଲୌକିକ, ଦିବ୍ୟ ହେଉ ଅଥବା ଅଦିବ୍ୟ ।



## ୧୨-୫-୯୨

ଦିବାରାତ୍ରି ସଚେତନ ରହ; ନହେଲେ ସେ ଆସି କେତେବେଳେ ଫେରିଯିବେ ଜାଣି ପାରିବ ନାହିଁ । କଥିତ ଅଛି ଯେ ଗଂଗା କୂଳରେ ଗୋସ୍ୱାମୀ ତୁଳସୀ ଦାସ ରାମ ନାମରେ ବିଭୋର ହୋଇ ଭକ୍ତ ଜନଙ୍କୁ ଚନ୍ଦନ ସେବା କରୁଥିବା ବେଳେ ତାଙ୍କର ଇଷ୍ଟ ଦେବ ସ୍ୱଂୟ ତିଳକ କରି ଚାଲିଗଲେ, ସେ ଜାଣିପାରିଲେ ନାହିଁ । 'ତୁଳସୀ ଦାସ ଚନ୍ଦନ ଘିସୈ ତିଲକ କରେ ରଘୁବୀର' ସେହିପରି କେତେବେଳେ ଶୀତଳ ପବନ ରୂପରେ ଛୁଇଁ ଦିଅନ୍ତି କେତେବେଳେ ସୁଦୂର ଚମ୍ପକର ସୌରଭ ରୂପେ ବାସ୍ନା ବିଭୋର କରିଦିଅନ୍ତି, କେତେବେଳେ ପକ୍ଷୀ ଗାନ, କେତେବେଳେ ବଂଶୀତାନ କେତେବେଳେ ବା ସେ ବଜ୍ରନାଦରେ ଦୃଷ୍ଟିଆକର୍ଷଣ କରୁଥାନ୍ତି । ବାହାରେ ଆକାଶ ହୋଇ ଆବୋରି ରହନ୍ତି ଧରିତ୍ରୀ ହୋଇ ଧାରଣକରନ୍ତି, ଭିତରେ ଚାରିକାନ୍ଥ ରୂପେ ସୁରକ୍ଷା କରନ୍ତି, ଅନ୍ନରୂପେ ପୋଷଣ କରନ୍ତି । ଏପରିକି ଗୋଟାଏ ଗୋଟାଏ ମୁହୂର୍ତ୍ତରେ ଆମେ ବସିଥିବା ଚୌକିଟି ସେଇ, ଶୋଇଥିବା ବିଛଣା ସେଇ, ବନ୍ଧୁ ବାନ୍ଧବ ସ୍ୱଜନ ସୋଦର ଏପରିକି ଶତ୍ରୁ ଭଗାରୀ କୁତ୍ସାକାରୀ ରୂପେ ସେଇ ପ୍ରକଟିତ ହୋଇଯାନ୍ତି । ଗଗନେ ପବନେ ତରୁ ଉପବନେ ସେଇ ଦିବସେ ନିଶିଥେ ସେଇ । ଶ୍ୱାସକ୍ରିୟା ସେଇ, ହୃତ୍ କମ୍ପନ ସେଇ । ଇହକାଳ ପରକାଳ ସେଇ ସେଇ ମାତ୍ର ସେଇ ।

ମତ୍ତଃ ପରତରମ୍ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ
ମୟି ସର୍ବମିଦଂ ପ୍ରୋତମ୍ ସୂତ୍ରେ ମଣିଗଣାଇବ ।

ସେ ଅତି ସହଜ ସରଳ ଭାବରେ କହି ଦେଇ ପାରନ୍ତି । ମୋ ଭିନ୍ନ ଆଉ କେହି କିଛି ହେଲେ ନାହିଁ । ହେ ଧନଞ୍ଜୟ ଏସବୁ ଯାହା ଦେଖୁଛ, ସୂତାରେ ମଣି ଗୁନ୍ଥା ହେଲା ପରି ଏ ସମସ୍ତ ମୋ ଦ୍ୱାରା ଗଥିତ ଧାରିତ ହୋଇ ରହିଛନ୍ତି । ମଣିମାଳାରୁ ସୂତାଟି ଚାଲିଗଲେ ଯେପରି ମାଳାର ଅସ୍ତିତ୍ୱ ରହେ ନାହିଁ ସେହିପରି ଏ ସମସ୍ତ ତାଙ୍କ ବ୍ୟତିରେକ ସମ୍ଭବ ନୁହେଁ ।

କିନ୍ତୁ ଧନଞ୍ଜୟ ସଦୃଶ ଆମେ ସାଧାରଣ ମଣିଷଙ୍କ ପାଇଁ ଏ ଉଚ୍ଚାରଣର ସତ୍ୟତା ଉପଲବ୍ଧ କରିବା ସହଜ ନୁହେଁ, ମା' ସେଥିପାଇଁ କହୁଛନ୍ତି ଜାଗ୍ରତ ରୁହ । ସେ ସର୍ବଦା ସବୁଠାରେ ଉପସ୍ଥିତ ଥିଲେ ସୁଦ୍ଧା କେବଳ ସୁଚେତନ ବ୍ୟକ୍ତି ପାଇଁ ବିଦ୍ୟୁତ୍‌ର ଝଲକପରି ଗୋଟାଏ ମୁହୂର୍ତ୍ତ ଦିଶିଯାଇ ପାରନ୍ତି । ସେ ଅତୁଳନୀୟ ସୌଭାଗ୍ୟ ପାଇଁ ଜାଗ୍ରତ ରହ ଦିବ୍ୟରାତ୍ରୀ ସଚେତନ ରହ ।



## ୧୫-୫-୯୨

ଏକଦା ଦେବ ଦାନବ ଓ ମାନବର ପ୍ରତିନିଧି ପ୍ରଜାପତିଙ୍କ ପାଖରେ ଉପଦେଶ ପାଇଁ ଉପସ୍ଥିତ ହେଲେ । ସେମାନଙ୍କର ପ୍ରକୃତି ଏବଂ ସ୍ୱଭାବ ଅନୁସାରେ ତାଙ୍କୁ ଜଣ ଜଣ କରି ସ୍ୱତନ୍ତ୍ର ଭାବରେ ଉପଦେଶ ଦେବାରେ ବ୍ୟବସ୍ଥା ହେଲା । କିନ୍ତୁ ପ୍ରଜାପତି ତିନିଜଣଙ୍କୁ କେବଳ ଗୋଟିଏ ଅକ୍ଷର ଉଚ୍ଚାରଣ କରି ଉପଦେଶ ଦେଲେ ।

ସେ ଅକ୍ଷରଟି ହେଲା 'ଦା' । ତାଙ୍କ ପାଖରୁ ଆସି ପ୍ରତିନିଧିମାନେ ପରସ୍ପର ସହିତ ଆଲୋଚନାରୁ ଜାଣି ପାରିଲେ ଯେ ପ୍ରଜାପତି ସମସ୍ତଙ୍କୁ କେବଳ ଗୋଟିଏ ଉପଦେଶ ଦେଇଛନ୍ତି । ସେଥିରେ ହୁଏତ କଣ ରହସ୍ୟ ଥାଇପାରେ ବୋଲି ସେମାନେ ପୁଣି ପ୍ରଜାପତିଙ୍କ ପାଖକୁ ଗଲେ । ପ୍ରଥମରେ ମାନବର ପ୍ରତିନିଧି ଯାଇ ପଚାରିଲା, ଆପଣ ମୋତେ ଦେଇଥିବା ଉପଦେଶ 'ଦା' ର ଅର୍ଥ କଣ ?

ପ୍ରଜାପତି କହିଲେ 'ଦା' ର ଅର୍ଥ ତୁମ ପାଇଁ ଦାନ । ସାଧାରଣତଃ ମାନବ ମାତ୍ରେ ଅନୁଦାନ ଓ କୃପଣ । ମନ ଓ ପ୍ରାଣର ବିସ୍ତାର ହେବାକୁ ଦାନର ପ୍ରୟୋଜନ ଅଛି । ସଂକୀର୍ଣ୍ଣ ସ୍ୱାର୍ଥକୁ ଅତିକ୍ରମ ନ କରିବା ଯାଏ ଜଣେ ଦାନ କରିପାରିବ ନାହିଁ । ଦାନ କରିବାରେ ମଧ୍ୟ ସୂକ୍ଷ୍ମରୂପରେ ସ୍ୱାର୍ଥ ଏବଂ ଅହଂ କାର୍ଯ୍ୟ କରୁଥାନ୍ତି । ଦାନ ଦ୍ୱାରା ପ୍ରତିଦାନ ଆଶା କରାଗଲେ ତାହା ବଣିଜ ହୋଇଯାଏ, ଦାନ ନୁହେଁ ପ୍ରତିଦାନ ସୁନାମ, ଯଶ ପ୍ରତିପତ୍ତି ଆକାରରେ ମଧ୍ୟ ଦେଖାଦିଏ । ଦାନ ଦେଲାବେଳେ ଅନ୍ୟମାନଙ୍କୁ ଦେଖାଇ ପ୍ରଚାର ଉଦ୍ଦେଶ୍ୟରେ ଦାତା ସ୍ୱୀକୃତି ଆଶାରେ କରନ୍ତି । ଅସ୍ଥାନରେ ଅପାତ୍ରରେ ଦାନ ଦେଇ କେବଳ ଦାନର ଅଭିନୟ କରନ୍ତି । ଗୁଣ ଏବଂ ପରିମାଣ ଭେଦରେ ଦାନ ତିନି ପ୍ରକାର - ସାତ୍ତ୍ୱିକ, ରାଜସିକ ଏବଂ ତାମସିକ । ସାତ୍ତ୍ୱିକ ଦାନର ଲକ୍ଷଣ ହେଲା "ଦାତବ୍ୟଂଇତି ଯତ୍ ଦାନଂ ଦୀୟତେନୁପ କାରିଣେ, ଦେଶେ କାଳେ ଚ ପାତ୍ରେଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍" - ଏ ଦାନ ଦେବା ଉଚିତ୍ ବୋଲି ମନ ଭିତରେ ବିଚାର ସଂକଳ୍ପ ପରେ ଅନୁପକାରୀ ଅର୍ଥାତ୍ ଯାହାଠାରୁ ପ୍ରତ୍ୟୁପକାର ପାଇବାର ଆଶାନାହିଁ ସେପରି ପାତ୍ରକୁ ଦେଶକାଳ ବିଚାରରେ ଯେଉଁ ଦାନ ଦିଆଯାଏ ତାହାକୁ ସାତ୍ତ୍ୱିକ ଦାନ କୁହାଯାଏ । ଦାନ ଦେଲାବେଳେ ପୁଣ୍ୟାର୍ଜନ କରିବାର ଯୋଜନା ମଧ୍ୟ ମନରେ ନଥିବ । ଦାନ କରୁଛି ବୋଲି ଶ୍ଲାଘା ବା ଅଂହକାର ନଥିବ । କେହି ଦେଖି ପ୍ରଚାର ପ୍ରଶଂସା କରିବାର ଅବକାଶ ନଥିବ । ଏବଂ ଦାନ ଦେଲା ପରେ ସ୍ୱୟଂ ଭୁଲି ଯିବାର ଉଦାରତା ଥିବ । ତେବେ ସେ ଦାନ ମନପ୍ରାଣ ତଥା ଚେତନାର ବିସ୍ତାର ସାଧନ କରେ । ତଦ୍ୱାରା ଚିତ୍ତ ଶୁଦ୍ଧି ହୁଏ ଏବଂ ମାନବର ସଧାରଣ କାର୍ପଣ୍ୟଦୋଷ ଦୂରହୁଏ ।

ଦେବତାଙ୍କ ପ୍ରତିନିଧି ପ୍ରଜାପତିଙ୍କୁ ପ୍ରଶ୍ନ କଲେ ଆପଣ ଦେଇଥିବା 'ଦା' ର ଅର୍ଥ କଣ ? ପ୍ରଜାପତି କହିଲେ ତୁମ ପାଇଁ 'ଦା' ର ଅର୍ଥ 'ଦମ୍ୟତାମ୍' । ଦେବତାମାନେ ଅମର, ନିର୍ଜର ଓ ଶକ୍ତିଶାଳୀ ହୋଇଥିବାରୁ ସେମାନଙ୍କ ଚରିତ୍ରରେ ଦାମ୍ଭିକତା ଦୋଷ ଆସିଯାଏ । ସ୍ୱର୍ଗ ଭୁବନର ଐଶ୍ୱର୍ଯ୍ୟ ପୂଣ୍ୟବଳର ମହାର୍ଘ ଫଳ ଭୋଗ କରୁଥିବା ଦେବତାଙ୍କର ଉଚ୍ଛୃଙ୍ଖଳ ହୋଇଯିବା ପ୍ରବୃତ୍ତିକୁ ଆୟତ୍ତ କରିବା ପାଇଁ ଦମର ପ୍ରୟୋଜନ ରହିଛି । ସାତ୍ତ୍ୱିକ କ୍ରିୟା ଭାବ ଓ ସାଧାନାରେ ଏହିପରି ଏକ ଅହଂକାର ଦେଖାଦିଏ ଯାହା ଅଧାମ୍ ପନ୍ଥାର ବିରୋଧି । ଏଣୁ ତାର ଦମନ ପାଇଁ ପ୍ରଜାପତି ଉପଦେଶ ଦେଇଛନ୍ତି, "ଦମ୍ୟତାମ୍" ।

ଦାନବଙ୍କ ପ୍ରତିନିଧି ଅବିକଳ ସେହି ପ୍ରଶ୍ନ କରିବାରୁ ପ୍ରଜାପତି କହିଲେ ତୁମ ପାଇଁ 'ଦା' ର ଅର୍ଥ "ଦୟଧ୍ୱମ୍" । ଦାନବମାନେ ସ୍ୱଭାବତଃ ନିଷ୍ଠୁର । ସେମାନେ ନିଜର ସ୍ୱାର୍ଥ ପାଇଁ ଅନ୍ୟର ବିନାଶ କରିବାରେ ଆଦୌ କୁଣ୍ଠିତ ନୁହନ୍ତି । ଏଣୁ ସେମାନଙ୍କୁ ଉପଦେଶ ଦିଆଗଲା ଦୟାକରି ଶିଖ । ଦୟାକଲେ ଦାନବ ପ୍ରକୃତିର ସଂଶୋଧନ ହୋଇ ପାରିବ ।

ଏ ଉପାଖ୍ୟାନର ତିନୋଟି ଯାକ ଉପଦେଶ ପ୍ରକୃତରେ ମାନବ ପାଇଁ ହିଁ ଉଦ୍ଦିଷ୍ଟ । କାରଣ ମାନବ ଭିତରେ ଦେବ ଦାନବ ମାତ୍ରା ଭେଦରେ ବିଦ୍ୟମାନ । ସେମାନଙ୍କୁ ନିଜ ନିଜ ପ୍ରକୃତି ପାଶରୁ ମୁକ୍ତ କରିବା ପାଇଁ ପ୍ରଜାପତିଙ୍କ ଏହି ଉପଦେଶ । 'ଦା', 'ଦମ୍ୟତାମ୍', 'ଦୟଧ୍ୱମ୍' ।

ସମର୍ପଣ ଏକ କ୍ରିୟା ଯେଉଁଥିରେ ଦୁଇଟି ପକ୍ଷ ସ୍ୱୀକାର କରାଯାଏ । ଗୋଟିଏ ପକ୍ଷ ହେଲା ଯେ ସମର୍ପଣ କରେ ଏବଂ ଅନ୍ୟ ପକ୍ଷ ହେଲା ଯାହାକୁ ସମର୍ପଣ କରାଯାଏ । ଯାହାକୁ ସମର୍ପଣ କରାଯାଏ ସେ କେବଳ ଏ ଉଦାର ଅଙ୍ଗୀକାର କରନ୍ତି । ତାଙ୍କ ପକ୍ଷରୁ କୌଣସି ଯାଚନା ନଥିବାରୁ ଯେ ଯାଚକ ବା ଗ୍ରହିତା ନୁହନ୍ତି । ଦାନ ସମର୍ପଣ ହୋଇପାରେ କେବଳ ସ୍ଥଳ ବିଶେଷରେ, କିନ୍ତୁ ସମର୍ପଣ ଦାନ ନୁହେଁ । ଉପର ହାତରେ ଦାନ କରାଯାଏ କିନ୍ତୁ ସମର୍ପଣ କରାଯାଏ ତଳ ହାତରେ । ଦାନରେ ଔଦାର୍ଯ୍ୟ, ବଡପଣ, ଅନୁକଂପା, ଦୟା ପୂଣ୍ୟଅର୍ଜନର ଫଳାଭିସନ୍ଧି ପ୍ରକାଶ ପାଇଥାଏ । ସମର୍ପଣରେ ବିନୟ, ଦୀନତା, ନ୍ୟୂନପଣ କୃପାଭିକ୍ଷା ଆଦି ପ୍ରକାଶ ପାଏ ।

ସମର୍ପଣରେ ପ୍ରଥମେ କେତେଗୁଡ଼ିଏ ବାଧକ ପ୍ରବୃତ୍ତି ବା ପରିସ୍ଥିତିରୁ ନିଷ୍କୃତି ପାଇବାକୁ ପ୍ରୟାସ ହୋଇଥାଏ । ଦୁଃଖ, ଯାତନା, ଯନ୍ତ୍ରଣା, ବିକ୍ଷୋଭ ତାପରୁ ମୁକ୍ତି ପାଇବାକୁ ଆମେ ତାହା ସମର୍ପଣ କରି ଦେବାକୁ ଚାହୁଁ । କାରଣ ଆମେ ଭାବୁ ଯେ ଯାହାଙ୍କ ପାଖରେ ଆମେ ସମର୍ପଣ କରୁଛୁ ସେ ଏ ସମସ୍ତ ବଦଳରେ ସେମାନଙ୍କର ବିପରୀତ, ସୁଖ, ସ୍ୱାଛନ୍ଦ୍ୟ, ସ୍ୱାସ୍ଥ୍ୟ ଶାନ୍ତି ଏବଂ ଶୀତଳତା ପ୍ରଦାନ କରିବେ ଏ ସମର୍ପଣ କ୍ରିୟାଟିକୁ ନିକୃଷ୍ଟ ବୋଲି ଆଖ୍ୟାତ କରାଯାଇ ପାରେ । କାରଣ ଆମ ପାଇଁ ଯାହା ଯାହା ଅସହ୍ୟଣୀୟ, ଅସୁଖକର ଯାହାକୁ ଘରର ବେଦରକାରୀ ଆସବାସ ଭାବି ଆମେ ଫିଙ୍ଗି ଦେବାକୁ ଚାହୁଁ ତାକୁ ହିଁ ସମର୍ପଣ କରିଥାଉ । ତାଙ୍କ ପ୍ରତି ଆମର କୌଣସି ପ୍ରିୟବସ୍ତୁ ବା କାମ୍ୟ ସୁଖରେ ବସ୍ତୁ ଏ ତାଲିକାରେ ନଥାଏ । ଏଥିରେ ଯାହାକୁ ଆମେ ସମର୍ପଣ କରିଥାଉ ତାଙ୍କ ପ୍ରତି ଆମର କୌଣସି ଶ୍ରଦ୍ଧା, ସମ୍ମାନ, ପ୍ରେମ ବିଚାର ନଥାଏ କାରଣ ତାହା ହୋଇଥିଲେ, ଆମକୁ ଯାହା ଦୁଃସହ, ଆମେ ସେ ସମସ୍ତ ଅପ୍ରିୟ ବସ୍ତୁକୁ ତାଙ୍କୁ ସମର୍ପଣ କରନ୍ତୁ ନାହିଁ, ଅନ୍ତତଃ ସମର୍ପଣ କରିବା ପୂର୍ବରୁ କିଛି ହେଲେ ସଂକୋଚ ପ୍ରକାଶ କରନ୍ତୁ । ଧରାଯାଉ ଆମେ ମା'ଙ୍କୁ ହିଁ ସମର୍ପଣ କରୁଛୁ । ଆମର ସମର୍ପଣ ବେଳେ ପ୍ରାର୍ଥନା ହେଲା ମା' ମୋତେ ଦାରିଦ୍ର୍ୟରୁ ମୁକ୍ତ କର । ଉହ୍ୟ ରହିଥାଏ ମା' ମୋତେ ଧନଧାନ୍ୟ ଦେଇ ଐଶ୍ୱର୍ଯ୍ୟଶାଳୀ କର । ଆମେ କେତେବେଳେ କହୁନା ମା' ଏ ଦାରିଦ୍ର୍ୟକୁ ଜୟ କରିବାକୁ ମୋତେ ଶକ୍ତି ଦିଅ । ଯାକୁ ସହିବାକୁ ମୋତେ ସାମର୍ଥ୍ୟ ଦିଅ । ଯେମିତି ଧରାଯାଉ ରବୀନ୍ଦ୍ରନାଥ କହିଲେ "ବିପଦେ ମୋରେ ରକ୍ଷାକରୋ, ଏ ନହେ ମୋର ପ୍ରାର୍ଥନା, ବିପଦେ ଯେନ ନା ଆମି କରି ଭୟ" – ଦ୍ୱିତୀୟ ପର୍ଯ୍ୟାୟରେ ଦୁଃଖ ସହିତ ସୁଖକୁ ଦାରିଦ୍ର୍ୟ ସହିତ ଐଶ୍ୱର୍ଯ୍ୟକୁ ମଧ୍ୟ ସମର୍ପଣ କରିଦେଉ । କାରଣ ଉଭୟେ ବିକ୍ଷୋଭ ସୃଷ୍ଟିକରନ୍ତି । ସୁଖ ପାଇଁ ସ୍ପୃହାଭଳି ଦୁଃଖ ପାଇଁ ଉଦ୍‌ବେଗ ମନକୁ ଅସ୍ଥିର କରେ । ଏଣୁ ଉଭୟକୁ ଉତ୍ତୀର୍ଣ୍ଣ ହେବା ପାଇଁ ଉଭୟକୁ ହିଁ ସମର୍ପଣ କରାଯାଏ । ଏ ପର୍ଯ୍ୟାୟରେ ଫଳାଭିସନ୍ଧି ନ ଥାଏ କେବଳ ଦିବ୍ୟଶକ୍ତିଙ୍କ ନିମିତ୍ତ ହେବା ପାଇଁ ସମ୍ମତି ଓ ସ୍ୱୀକୃତି ଥାଏ । ଧର୍ମ କଣ ମୁଁ ଜାଣେ କିନ୍ତୁ ସେଥିପାଇଁ ମୋର ପ୍ରବୃତ୍ତି ହେଉନାହିଁ । ଅଧର୍ମ କଣ ମୁଁ ଜାଣେ କିନ୍ତୁ ସେଥିରୁ ମୋର ନିବୃତ୍ତି ହେଉନାହିଁ । ଏଣୁ ଆପଣ ହିଁ ହୃଦୟରେ ରହି ଯେମିତି ନିଯୁକ୍ତି କରିବେ ମୁଁ ସେପରି କରିବି 'ଜାନାମି ଧର୍ମଂ ନଚମେ ପ୍ରବୃତ୍ତିମ୍ ଜାନାମ୍ୟଧର୍ମଂ ନ ଚ ମେ ନିବୃତ୍ତିମ୍ । ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ, ଯଥା ନିଯୁକ୍ତୋସ୍ମି ତଥା କରୋମି ।' ଏପରି ସ୍ଥିତିରେ ମଧ୍ୟ ସମର୍ପଣ କରୁଥିବା ସତ୍ତା ନିଜ ବିଷୟରେ ସଚେତନ ଥାଏ । ସେ ଯାହା ବି କରୁଥାଏ ତାହା ଆଉ ଜଣକ

ଇଚ୍ଛାରେ ହିଁ ସେ କରୁଥାଏ ବୋଲି ତାର ଅଗାଧ ବିଶ୍ୱାସ । ତେବେ ଏଠାରେ ଏକ ବିପଦର ଆଶଂକା ଅଛି । ନିଜର ପ୍ରବୃତ୍ତିକୁ ଈଶ୍ୱରଙ୍କ ଉପରେ ଆରୋପ କରି ତାଙ୍କ ନାମରେ ସ୍ୱେଚ୍ଛାଚାର କରିବାର ସମ୍ଭାବନା ଅଛି । ବ୍ୟକ୍ତି ଅନ୍ୟମାନଙ୍କୁ ଏବଂ ନିଜକୁ ପ୍ରତାରିତ କରୁଥାଏ କିନ୍ତୁ ଭାବୁଥାଏ ଯେ ଅନ୍ତର୍ଯାମୀ ଈଶ୍ୱରଙ୍କୁ ହିଁ ସେ ପ୍ରତାରିତ କରୁଛି । ଏହା ଏକ ବିଡ଼ମ୍ବନା । କେତେକ ଏ ପ୍ରତାରଣା ବିଷୟରେ ସଚେତନ । ଆଉ କେତେକ ଆଦୌ ଜାଣିପାରନ୍ତି ନାହିଁ ଯେ ସେମାନଙ୍କୁ ଦିବ୍ୟଶକ୍ତି ନୁହେଁ ବରଂ ଅପଶକ୍ତି ଏବଂ ନିମ୍ନ ପ୍ରକୃତି ହିଁ ଅଧିକାର କରି ବ୍ୟବହାର କରୁଛି ।

ଏଥିପାଇଁ ଅତ୍ୟନ୍ତ ସତର୍କ, ସଜାଗ ଏବଂ ନିଷ୍ଠାବାନ୍ ହୋଇ ସମର୍ପଣ କରିବାକୁ ହୁଏ । ମା ସେଥିପାଇଁ ଆନ୍ତରିକତା ଉପରେ ଏତେ ଜୋର୍ ଦେଇଛନ୍ତି । ସମର୍ପଣରେ ଠକା ଠକି ନାହିଁ । ସତ୍ତାର ଗଭୀରତମ ପ୍ରଦେଶ ରୁ ଶରୀର ମନ ପ୍ରାଣ ଭୂମିରେ ଏକ ବିକଳ୍ପହୀନ ସମର୍ପଣ ଭାବ ଆସିଲେ ତେଣିକି କ୍ରିୟାର ଆଉ ସେତେ ଗୁରୁତ୍ୱ ରହେ ନାହିଁ । କାରଣ ସମର୍ପଣ ନକରି ଯଦି ବ୍ୟକ୍ତି ସତ୍ତା ସ୍ୱୟଂ ସମର୍ପିତ ହୋଇଥାଏ ତେବେ ତେଣିକି ଯାହା ହୁଏ ତାହା ସ୍ୱତଃ ସମର୍ପିତ ହେବା ଅନିବାର୍ଯ୍ୟ । ସମର୍ପଣରେ ତେଣିକି ବାଛ ବିଚାର ନଥାଏ । 'ଯତ୍ କରୋଷି ଯଦଶ୍ନାସି, ଯଜ୍ଜୁହୋସି, ଦଦାସି ଯତ୍; ଯତ୍ ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱମଦର୍ପଣମ୍। ଏହାର ଅର୍ଥ ନୁହେଁ କେବଳ କର୍ମ, ଭୋଜନ, ହବନ, ଦାନ ତପସ୍ୟା ହିଁ ସମର୍ପିତ ହେବ । ଏହାର ଅର୍ଥ ହେଲା ଏହିପରି ଯାବତୀୟ କର୍ମାକର୍ମ ସହିତ ନିଜକୁ ହିଁ ସକଳ ପରିସ୍ଥିତିରେ ସମର୍ପିତ କରି ଦେବାକୁ ହେବ । ସମର୍ପଣ କୌଣସି ସିଦ୍ଧି ନୁହେଁ, ତାହା ସାଧନା । ଅହରହ ସମର୍ପଣ କରିବାକୁ ହୋଇଥାଏ । କିନ୍ତୁ ସଂପୂର୍ଣ୍ଣ ସମର୍ପଣ ଏକ ସ୍ଥାୟୀଭାବ । ଏହି ସମର୍ପଣ ଭାବରେ ନିମଗ୍ନ ରହିଲେ ତେଣିକି ସମର୍ପଣର ପ୍ରୟାସ ସୁଦ୍ଧା ସମର୍ପିତ ହୋଇଯାଏ ।

ଏପରିକି ପୂର୍ଣ୍ଣାଙ୍ଗ ଯୋଗରେ ଯେତେବେଳେ ଚୈତ୍ୟସତ୍ତା ସ୍ୱୟଂ ବହିର୍ମୁଖୀ ହୋଇ ସାଧକର ସମସ୍ତ ଭୂମି ଅଧିକାର କରନ୍ତି ସେ ମଧ ଦିବ୍ୟଜନନୀଙ୍କର ପାଖରେ ସମର୍ପିତ ହେବାକୁ ମନପ୍ରାଣ ଶରୀର ଚେତନାକୁ ତଦନୁସାରୀ କରାନ୍ତି । ଚୈତ୍ୟସତ୍ତା ସ୍ୱୟଂ ଦିବ୍ୟଚେତନାର ଅଂଶ ଓ ପ୍ରତିନିଧି । କିନ୍ତୁ ସେ ନିଜ ପାଖରେ ସମର୍ପଣ ନକରାଇ ଦିବ୍ୟ ଜନନୀଙ୍କ ପୂର୍ଣ୍ଣତା ପାଖରେ ହିଁ କରାନ୍ତି । ଉଦାହରଣ ସ୍ୱରୂପ - କୌଣସି ଯଜ୍ଞ କର୍ମରେ ବସିଥିବା ଯଜମାନ କିଛି ଜାଣେ ନାହିଁ ତାଙ୍କୁ ପୁରୋହିତ ଯାହା କୁହନ୍ତି ତାହା ସେ ନିର୍ବିଚାର କରିଥାନ୍ତି । ଯଦି ପୁରୋହିତ ନିଜକୁ ଈଶ୍ୱରଙ୍କ ପ୍ରତିନିଧି ଭାବି ସମସ୍ତ ପୂଜାବିଧିକୁ ନିଜଆଡ଼କୁ ନେଇଯାନ୍ତେ ତେବେ ବି ଯଜମାନ କିଛି ଆପତ୍ତି କରନ୍ତେ ନାହିଁ । କିନ୍ତୁ ପୁରୋହିତ ଆସନ ପାଦାସନ ଧୂପ, ଦୀପ ଅର୍ଘ୍ୟ ଆଦି ଦେବତାଙ୍କ ଉଦ୍ଦେଶ୍ୟରେ ହିଁ ଅର୍ପଣ କରାନ୍ତି । କାରଣ ସେ ଜାଣନ୍ତି କାହାକୁ ଯଜ୍ଞଭୂମିରେ ସ୍ଥାପନ କରାଯାଇଥାଏ । ସେହିପରି ଚୈତ୍ୟସତ୍ତା ଜାଣନ୍ତି ସେ ଯାହାର ଆଂଶିକ ପ୍ରକାଶ ସେ ପୂର୍ଣ୍ଣ ବିକାଶ ସ୍ୱୟଂ ଦିବ୍ୟ ଜନନୀ । ଏଣୁ ସମର୍ପଣ ତାଙ୍କୁ କରିବାକୁ ନିର୍ଦ୍ଦେଶ ଦିଅନ୍ତି।



## ୧୯-୫-୯୨

"ଯେତେ ଶୁଣିଲି ଭାଗବତ, ତୃପତ ନୋହିଲା ମୋ ଚିତ୍ତ ।" ଏ ଦୁଇଟି ପଙ୍କ୍ତିର ଗୋଟିଏ ଅର୍ଥ ହେଲା ଯେ ଭାଗବତ କଥା ଏତେ ମଧୁର ଯେ ଯେତେ ଶୁଣିଲେ ସୁଦ୍ଧା ଆହୁରି ଶୁଣିବାକୁ ମନହୁଏ; କେତେବେଳେ ତୃପ୍ତି ଆସେନାହିଁ । ଅର୍ଥାତ୍ ଭୋଜନ ପରେ ଯେମିତି ଖାଦ୍ୟ ପ୍ରତି ତୃପ୍ତିଜନିତ ବିମୁଖତା ଆସେ ଏ କ୍ଷେତ୍ରରେ ତାହାହୁଏ ନାହିଁ । ଅନ୍ୟ ଅର୍ଥଟି ହେଲା ଯେତେ ତତ୍ତ୍ୱ ବିଚାର କହିଲେ ଶୁଣିଲେ ସୁଦ୍ଧା ବିନା ଅନୁଭବରେ କୌଣସି ଆଧ୍ୟାତ୍ମିକ ଆନନ୍ଦ ମିଳେ ନାହିଁ । 'ନାୟମାତ୍ମା ପ୍ରବଚନେନ ଲଭ୍ୟଃ' । ସହସ୍ର ଶାସ୍ତ୍ର ଅଧ୍ୟୟନ କରି ଯାହା ମିଳେ ନାହିଁ ତାହା ଏକ ମାତ୍ର ମୁହୂର୍ତ୍ତର ଅନୁଭବରେ ମିଳିପାରେ । ମହୁ ବିଷୟରେ ହଜାରେ ପ୍ରବଚନ ଶୁଣିଲେ ସୁଦ୍ଧା ଜିଭରେ ଗୋଟିଏ ବିନ୍ଦୁ ମହୁ ନ ଲାଗିବା ପର୍ଯ୍ୟନ୍ତ ମନ ତୃପ୍ତହେବନାହିଁ । ଏଣୁ ଶାସ୍ତ୍ରଜ୍ଞାନ, ପାଣ୍ଡିତ୍ୟ, ତୀକ୍ଷ୍ଣ ବିଚାର ବୁଦ୍ଧି ସବୁ ଯଶ, ପ୍ରତିଷ୍ଠା, ଅର୍ଥ, ଭୂମି ଆଦି ପାଇବାରେ ସାହାଯ୍ୟ କରିପାରନ୍ତି । କିନ୍ତୁ ଆତ୍ମାକୁ ଉପଲବ୍ଧି କରିବାରେ କଦାପି ନୁହେଁ । କିନ୍ତୁ ଏହା ଭାବିବା ଠିକ୍ ହେବନାହିଁ ଯେ ଶାସ୍ତ୍ରାଦି ବିଦ୍ୟା ସଂପୂର୍ଣ୍ଣ ଅନାବଶ୍ୟକ । କାରଣ ସେଇ ଯୁକ୍ତିରେ କୁହାଯାଇପାରେ ଯେ ବେଦୋପନିଷଦ୍ ଗୀତା ଏବଂ ଶ୍ରୀ ଅରବିନ୍ଦଙ୍କ ରଚିତ ସମସ୍ତ ଗ୍ରନ୍ଥ ଅଧ୍ୟୟନ କରିବା ଅନାବଶ୍ୟକ । ଅଧ୍ୟୟନ ନଥିଲେ ଚିନ୍ତା ରାଜ୍ୟରେ ଗଭୀରତା, ବିଚାର ସମ୍ଭବ ନୁହେଁ । ମନର ସଂଶୟ ଦୂର କରିବା ପାଇଁ ଗୁରୁ ଓ ଶାସ୍ତ୍ର ହିଁ ସମର୍ଥ । ଏଣୁ ଶାସ୍ତ୍ରମାନଙ୍କୁ ଅନାବଶ୍ୟକ ବୋଲି ଅବମାନନା କରିବା ମୂର୍ଖତା ।

ଶାସ୍ତ୍ରଜ୍ଞାନ ଯଥେଷ୍ଟ ନୁହେଁ; ଏହା ସତ୍ୟ । କିନ୍ତୁ ଶାସ୍ତ୍ରଜ୍ଞାନ ନିଷ୍ପ୍ରୟୋଜନ ନୁହେଁ । ଅବଶ୍ୟ ଏଠାରେ ଶାସ୍ତ୍ରର ଶୁଷ୍କ ଜ୍ଞାନ କେବଳ ଶାସ୍ତ୍ରକୁ କଣ୍ଠ କରିବାର ଏବଂ ପୁଷ୍ପିତ ବାକ୍ୟ କହି ସନ୍ତୋଷ ଲାଭ କରୁଥିବା ପ୍ରବୃତ୍ତିକୁ ବାରଣ କରାଯାଉଛି । ପାଣ୍ଡିତ୍ୟ ନୁହେଁ ପଣ୍ଡିତମ୍ମନ୍ୟତାହିଁ ବିପଜ୍ଜନକ । ସେଥିପାଇଁ ମା' କହିଛନ୍ତି One drop of realisation is greater than an ocean of learning. ଭଗବଦ୍ ଗୀତା ମଧ କହୁଛନ୍ତି "ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତି ଅବିପଶ୍ଚିତଃ ବେଦବାଦରତାଃ ପାର୍ଥ ନାନ୍ୟଦ ସ୍ତୀତିବାଦିନଃ ।" ଗୋଟିଏ ମୁହୂର୍ତ୍ତର ଆତ୍ମାନୁଭବ ଅପାର ଜ୍ଞାନର ସାଗର ଅପେକ୍ଷା ଅଧିକ ମୂଲ୍ୟବାନ୍ । ଯେଉଁମାନେ ଅଳ୍ପ ବୁଦ୍ଧି ଅବିବେକୀ ସେମାନଙ୍କର ଆଧ୍ୟାତ୍ମିକ ସମ୍ଭାବନା ନାହିଁ । ଏଣୁ ନିଷ୍ଠା ଓ ଆନ୍ତରିକତାର ସହିତ ଶାସ୍ତ୍ର ଅଧ୍ୟୟନ କଲେ ମନୋଭୂମି କର୍ଷିତ ହୁଏ । ଗଭୀରଜ୍ଞାନ ହିଁ ଉପଲବ୍ଧି, ଏଣୁ ଶାସ୍ତ୍ର ବର୍ଜନୀୟ ନୁହେଁ । ନଚେତ୍ ଶ୍ରୀ ଅରବିନ୍ଦ ଏତେ ଶାସ୍ତ୍ର ପ୍ରଣୟନ କରି ନଥାନ୍ତେ । ଏଣୁ ପଢ଼ାଯାଉ, କଣ୍ଠସ୍ଥ କରି ପାଠୋଦ୍ଧାର ପାଇଁ ନୁହେଁ, ଗଭୀର ମନନ ପାଇଁ, ଉପଲବ୍ଧି ପାଇଁ ।



## ୨୨-୫-୯୨

ଅନେକ ସମୟରେ ମନେ ହୁଏ ଆମେ ନିଜେ ହିଁ ଦୁଃଖର କାରଣ । ଏକ ପ୍ରକାର ବିଚାର ବିଭ୍ରାଟରୁ ହିଁ ତାର ଉତ୍ପତ୍ତି । ଆମେ ଯେଉଁ ସାମାଜିକ ପରିବେଶରେ ଥାଉ ସେଇଠି ଅନ୍ୟମାନଙ୍କ ସହିତ ନିଜକୁ ତୁଳନା

କରି ନିଜ ସପକ୍ଷରେ ହଜାର ପ୍ରକାର ଯୁକ୍ତି ବାଢ଼ିଥାଉ । ସେ ସମସ୍ତ ପ୍ରୟାସର ଉଦ୍ଦେଶ୍ୟ ହେଲା ଜୀବନର ଯାବତୀୟ ସୁଖ ଏବଂ ଉପଭୋଗ୍ୟ ସାମଗ୍ରୀ ସକାଶେ ନିଜର ଯୋଗ୍ୟତା ପ୍ରମାଣ କରିବା । ଆମେ ଅନ୍ୟମାନଙ୍କୁ ବୁଝି ବିଚାରି କରିବା ତ ଆମ ସାମର୍ଥ୍ୟ ବାହାରେ କାରଣ ଆମେ ସେମାନଙ୍କୁ କେତେ ବା ଦେଖୁ ଏବଂ ଜାଣୁ ? ମାତ୍ର କେତୋଟି ଆଚରଣକୁ ଆମ ନିଜ ମାନ ଦଣ୍ଡରେ ମାପି ଆମେ ଅନ୍ୟମାନଙ୍କ ଉପରେ ନିଷ୍ପତ୍ତି ନେଇଯାଉ । ସେଥିରେ ଆମେ ନିଜକୁ ଅତି ଉଚ୍ଚରେ ରଖି ସେମାନଙ୍କୁ ଦେଖୁଥିବାରୁ ସେମାନେ ଖୁବ୍ ଛୋଟ ଏବଂ ଦୟନୀୟ ଦେଖାଯାନ୍ତି । ବେଲୁନ୍‌ରେ ପବନ ଭର୍ତ୍ତି କରିଦେଲେ ସେ ଯେମିତି ଅତିକାୟ ହୋଇଯାଏ ସେପରି ଆମ ଭିତରେ ଅହଂଟି ନିଜକୁ ନିଜେ ଫୁଲେଇ ଅତିବଡ଼ କରି ପକାଏ । ଫଳରେ ଆମେ ଭାବୁ ଆମେ ହିଁ ସମାଜରେ ମାନନୀୟ ବ୍ୟକ୍ତି । ସମସ୍ତଙ୍କ ଠାରୁ ସମ୍ମାନ ଆମର ପ୍ରାପ୍ୟ । ତାହା ମିଳେ ନାହିଁ କାରଣ ଅନ୍ୟ ଜଣକ ଆମକୁ ତା ନିଜ ଭୂମିରୁ ଦେଖୁଥିବାରୁ ଆମେ ମାନନୀୟ ଦେଖାଯାଉ ନା । ଏଣୁ ରାସ୍ତାରେ ଚାଲିଗଲାବେଳେ ଅମୁକ ଲୋକ କାହିଁକି ଦଣ୍ଡବତ କଲାନାହିଁ, ସମୁକ ଦୋକାନୀ ଆମେ କହିବା ସତ୍ତ୍ୱେ ଜିନିଷ ଉପରୁ କାହିଁକି ପଚାଶ ପଇସା କାଟିଭା ନାହିଁ, ସେ କାହିଁକି ଆମକୁ ନ ଚାହିଁ ବାଟ ଭାଙ୍ଗି ଚାଲିଗଲା ବା ସେ କାହିଁକି ଆମକୁ ପ୍ରଶଂସା କଲାନାହିଁ ଇତ୍ୟାଦି ବିଚାର ଆମର ମନ ପ୍ରାଣକୁ ଆଲୋଡ଼ିତ କରେ । ଫଳରେ ଦୁଃଖ । ନିଜକୁ ମନକୁ ମନ ଗୋଟିଏ ପ୍ରାପ୍ୟ ତାଲିକା ପ୍ରସ୍ତୁତ କରି ସେଥିରୁ ଅଧିକାଂଶ ନ ପାଇ ଆମେ ଦୁଃଖ ଭୋଗ କରିଥାଉ । ସବୁବେଳେ ବିଧି ବିଧାନକୁ ମଧ୍ୟ ନିନ୍ଦା କରି ଚାଲିଥାଉ । ଏପରିକି ବେଳ ପଡ଼ିଲେ କହିଥାଉ 'ମା'ଙ୍କ ବ୍ୟବସ୍ଥାରେ ମଧ୍ୟ କିଛି ସୁବିଚାର ନାହିଁ । ଅମୁକ ଲୋକଟିର ସବୁ ସମସ୍ୟା ସମାଧାନ କରିଦେଲେ । ଅଥଚ ବିଚରା ମୁଁ କେଉଁ ଗୁଣରେ ତା'ଠୁ କମ୍ ? ବୁଝିବାକୁ ଗଲେ ମୁଁ ତା'ଅପେକ୍ଷା ମାଙ୍କୁ ବେଶୀ ଭାବେ, ବେଶୀ ଧ୍ୟାନ ଧାରଣ କରେ, ବେଶୀ ପ୍ରବଚନ ଶୁଣେ ଓ ଶୁଣାଏ । କିନ୍ତୁ ମୋ ଆଡ଼େ ମା'ଙ୍କ ଦୃଷ୍ଟି ଆଦୌ ନାହିଁ । ମୁଁ ମଣିଷଙ୍କ ପାଖରୁ ସିନା ସୁବିଚାର ପାଇନାହିଁ, ପାଇବି ବୋଲି ଆଶା ବି କରିନାହିଁ । କିନ୍ତୁ Divine ? ସେ ବି କିପରି ଅନ୍ୟାୟ କରୁଛନ୍ତି ଦେଖ !" ଏପରି ଚିନ୍ତାରେ ପୁଣି ମନପ୍ରାଣ ଆଲୋଡ଼ିତ ହୁଏ ଫଳ ଦୁଃଖ ।

ଏ ସମସ୍ତ ଯାତନା ଭିତରେ ମୂଳ ତ୍ରୁଟିଟି ଆମ ଆଖିରେ ପଡ଼େ ନାହିଁ । ତ୍ରୁଟିଟି ହେଲା ନିଜ ମନ ମୁତାବକ ତିଆରି କରିଥିବା ନିଜର ପ୍ରାପ୍ୟ ତାଲିକା । ଆମେ ଧରି ନେଇଥାଉ ଯେ ସେ ସବୁ ପାଇବା ପାଇଁ ଆମେ ହିଁ ସବୁଠାରୁ ଯୋଗ୍ୟ । ଏଭଳି ଦୃଢ଼ ଆଶା ବାନ୍ଧି ବସିଲେ ନିରାଶ ଅବଶ୍ୟମ୍ଭାବୀ । ଏବଂ ନିରାଶା ଦୁଃଖ । ଏଥିରେ ଆଉରି ଗୋଟିଏ କଉତୁକିଆ ଦିଗ ଅଛି । ଆମ ପାଇଁ ପ୍ରାପ୍ୟ ତାଲିକା ପ୍ରସ୍ତୁତ କଲାବେଳେ ଆମେ ଅନ୍ୟ ପାଇଁ ମଧ୍ୟ ଆମ ଇଚ୍ଛାରେ ତାଲିକା କରିଦେଉ । ଅମୁକ ଲୋକ ମୋ ବନ୍ଧୁ । ସେ ମୋତେ ମୁଣ୍ଡରେ ଧରି ବୁଲିବା ଉଚିତ୍ । ସେ ମୋ ଭାଇ ମୋ ପତ୍ନୀ ମୋ କୁଟୁମ୍ବୀ – ଏମାନେ ସମସ୍ତେ ଏଇଆ ଏଇଆ କରବା ଉଚିତ୍ । ଏପରିକି ଏ ପୃଥିବୀ ଆକାଶ ସୂର୍ଯ୍ୟ, ଚନ୍ଦ୍ର ତାରକା ମଧ୍ୟ ଆମପାଇଁ କ'ଣ କରିବା ଉଚିତ୍ ତାହା ଆମେ ସ୍ଥିର କରିଥାଉ । ସେମାନେ ଏହା କରିବା ଉଚିତ୍ ଅର୍ଥାତ୍ ଏଇଆ ହେଲା ସେମାନଙ୍କ କର୍ତ୍ତବ୍ୟ । କିଏ କହିଲା ? ଆମେ କହିଲୁ ! ଯଦି ସେମାନେ ନ କରନ୍ତି – କାହିଁକି ବା କରିବେ – ଆମେ ହା ହତାଶାରେ ଲୋଟିପଡୁ । ଆମେ Divine କୁ ମଧ୍ୟ ସେପରି ଗୋଟିଏ ଚିଠା ଧରେଇ ଦେବାରେ ହେଳା କରୁନା । Divine ଆମ ଗୋରୁ ଖୋଜି ଆଣିବାଠୁ ଆରମ୍ଭ କରି ଲଟେରି ଟଙ୍କା ଉଠାଇ ଆମକୁ କୋଠାବାଡ଼ିରେ ମଣ୍ଡିତ କରିବା ପର୍ଯ୍ୟନ୍ତ ବିବିଧ କର୍ମ କରିବା ଉଚିତ୍ । ଆମ ପାଖରେ ଯୋଗ୍ୟତା ନଥିଲେ ସୁଦ୍ଧା ଅହେତୁକ

କୃପାବଳରେ ଆମର ଇଚ୍ଛା ପୂରଣ କରିଦେବା ଉଚିତ୍ । ନ କଲେ ଅଭିଯୋଗ, ନ କଲେ କାନ୍ଦଣା । ଫଳ ନିରାଶା ଓ ଦୁଃଖ । ଏଣୁ ମନେହୁଏ ଶତକଡ଼ା ଅନେକଶତ ଦୁଃଖ ପାଇଁ ଆମେ ସ୍ୱୟଂ ଦାୟୀ । ବାକି ଅଂଶେକ ଦୁଃଖ ଅପ୍ରମେୟ । ସେଥିପାଇଁ କିଏ ଦାୟୀ କହିବା କଠିନ । ଅନେକଶତକୁ ଆଡ଼ କରି ଦେଇ ପାରିଲେ ବାକି ସମ୍ଭାଳିବାକୁ ବିଶେଷ ଅସୁବିଧା ନ ହେବା କଥା, କାରଣ ସେଇ କ୍ଷେତ୍ରରେ ସ୍ୱୟଂ Divine ଆବୋରି ରହିଥାନ୍ତି ।



## ୨୯-୫-୯୨

କ୍ଷୁଧା ଏକ ପ୍ରାକୃତିକ ନିୟମ । ତାକୁ ଜଠରାଗ୍ନି କୁହାଯାଏ । ଆହାର ଯୋଗାଇ ଦେଲେ ତାହା ସେହି ସମୟ ପାଇଁ ଉପଶମିତ ହୋଇଯାଏ । କ୍ଷୁଧାକୁ ଆହାର ଯୋଗାଇଦେବା କ୍ରିୟାଟି ସୁଖପ୍ରଦ । ଆହାର ଦ୍ୱାରା ତୃପ୍ତି ଆସେ । ତୃପ୍ତି ମଧ୍ୟ ସୁଖପ୍ରଦ । ଏହି ତୃପ୍ତିଜନିତ ସୁଖ ପାଇଁ ଆମେ ଭୋଜନରେ ଆସକ୍ତ ହୋଇଯାଉ । ଆମର ଧାରଣା ହୋଇଯାଏ ଯେ ଭୋଜନ ମାତ୍ରେ ସୁଖପ୍ରଦ । କିନ୍ତୁ ତାହା ନୁହେଁ । ବ୍ୟକ୍ତି ଅନୁସାରେ ରୁଚି ଏବଂ ରୁଚି ଅନୁକୂଳ ନ ହେଲେ ଭୋଜନ ସୁଖକର ନୁହେଁ । ଆମେ ଆହାରକୁ ଦେଖି ଶୁଙ୍ଘି ଚାଖି ଗ୍ରହଣ କରୁ । ପ୍ରତିଟି ସ୍ତରରେ ତାହା ରୁଚିକର ନ ହେଲେ ଉପଭୋଗ୍ୟ ନୁହେଁ । ସେଥିପାଇଁ ସବୁ ଖାଦ୍ୟ ସମସ୍ତଙ୍କର ସମପରିମାଣରେ ରୁଚି ଅନୁକୂଳ ହୋଇପାରେ ନାହିଁ । ଯା' ବାହାରେ ଆହୁରି ଅନେକ ବାଛ ବିଚାର ମଧ୍ୟ ରହିଛି । ସ୍ୱଳ୍ପ ଭୋଜନ ବା ଅତିଭୋଜନ ସୁଖକର ନୁହେଁ । ମନ ଏବଂ ପ୍ରାଣ କୌଣସି କାରଣରୁ ଉତ୍ତେଜିତ ଥିଲେ ଶରୀରର କ୍ଷୁଧା ସତ୍ତ୍ୱେ ଭୋଜନ ପ୍ରୀତିକର କିମ୍ବା ତୃପ୍ତିକର ହୁଏ ନାହିଁ । କ୍ରୋଧ, ବିଦ୍ୱେଷ, ହିଂସା ଆଦି ଆବେଗ ସହିତ ଭୋଜନ କଲେ ଖାଦ୍ୟ ସେଇ ପରିମାଣରେ ବିଷାକ୍ତ ହୋଇଯାଏ ଏବଂ ତାର ପରିଣାମ ମଧ୍ୟ ବିଷମୟ ହୁଏ ।

ଜନ୍ତୁଟିଏ ଅତି ସ୍ପଷ୍ଟ ଏବଂ ସ୍ୱାଭାବିକ ଭାବରେ ସ୍ୱାର୍ଥପର । ଖାଇଲା ବେଳେ ସେ ଆଉ କାହାକୁ ପ୍ରଶ୍ରୟ ଦିଏ ନାହିଁ । ପ୍ରୟୋଜନ ହେଲେ ଆହାର ପାଇଁ ସେ ଅନ୍ୟ ସହିତ ଲଢ଼ି ଯାଇପାରେ । ମଣିଷ ଭିତରେ ମଧ୍ୟ ଏଭଳି ପ୍ରବୃତ୍ତି ରହିଛି । କିନ୍ତୁ ଲୁକ୍କାୟିତ ଭାବରେ । ବିବର୍ତ୍ତନ ଦ୍ୱାରା ମଣିଷ ଏହାକୁ କିଛି ମାତ୍ରାରେ ଅତିକ୍ରମ କରି ଶିଖିଛି । ଏଣୁ ସେ କେବଳ ଯେ ଖାଇବାରେ ସୁଖ ପାଏ ତା'ନୁହେଁ, ଖୁଆଇବାରେ ମଧ୍ୟ ସୁଖ ପାଏ । ଇତର ପ୍ରାଣୀ ସ୍ତରରେ ପ୍ରାକୃତିକ ନିୟମରେ ମା ତାର ଶାବକ ମାନଙ୍କୁ ଖୁଆଇ ପରିତୃପ୍ତି ଲାଭ କରେ । ମଣିଷ କ୍ଷେତ୍ରରେ ଆପଣାପଣର ପରିସର ଅନେକ ବିସ୍ତୃତ । କିନ୍ତୁ ତା'ର ମଧ୍ୟ ସୀମା ଅଛି । ସୀମା ବାହାରେ ଅପରକୁ ମଣିଷ ସୁଖ ବିତରଣ କରି ନିଜେ ସୁଖୀ ହୋଇପାରେ ନାହିଁ । ମଣିଷର ଆଚରଣ ତାର ଚେତନା ଦ୍ୱାରା ନିୟନ୍ତ୍ରିତ ଓ ପ୍ରଭାବିତ ହୁଏ ସତ, କିନ୍ତୁ ଆଚରଣରୁ ଚେତନାର ସ୍ତର ସୂଚିତ ହୁଏନାହିଁ । ଅତି ମାର୍ଜିତ ସାତ୍ତ୍ୱିକ ଆଚରଣ କରୁଥିବା ବ୍ୟକ୍ତିଟିଏ ଅତି ନିମ୍ନ ଚେତନାରେ ଥାଇ ସେପରି ଭ୍ରମ ସୃଷ୍ଟି କରିପାରେ। ଅଥଚ ଇତର ଜନୋଚିତ କର୍ମ ବା ଆଚରଣ କରୁଥିଲେ ସୁଦ୍ଧା ଜଣେ ଉନ୍ନତ ଚେତନାର ବ୍ୟକ୍ତି ହୋଇପାରନ୍ତି । ଚେତନା ଆଭ୍ୟନ୍ତର ବ୍ୟାପାର । ଉନ୍ନତ ଚେତନାରେ ନିର୍ଲିପ୍ତ ଭାବ ଆସେ । ମନ ଯେତେ ଜ୍ଞାନର ଅଧିକାରୀ ତା'ଠାରୁ

ଅଧିକ ଜ୍ଞାନ ସ୍ୱତଃ ବିକଶିତ ହୁଏ । ପ୍ରାଣରେ ସେହିପରି ପ୍ରେମ, ଶ୍ରଦ୍ଧା, ଭକ୍ତି, କୃତଜ୍ଞତାର ଅଧିକ ବିକାଶ ଘଟେ ଶରୀର ଅଧିକ ନିରାମୟ, ଉଜ୍ଜ୍ୱଳ ସୌଷ୍ଠବମୟ ହୁଏ । ତେବେ ସେପରି ଚେତନାରେ ଥାଇ ସାଂସାରିକ କର୍ମରେଅବହେଳା ନଥାଏ, କାରଣ ଅବହେଳା ଏକପ୍ରକାର ଶଠତା । ଉନ୍ନତ ଚେତନାରେ ଶଠତା ଅବାନ୍ତର । ବରଂ ନିଷ୍ଠା ଏକାଗ୍ରତା ଓ ଆନ୍ତରିକତା ଅଧିକ ପ୍ରଗାଢ଼ ହେବାରୁ ସମସ୍ତ କର୍ମ ଆହୁରି ଦକ୍ଷତାର ସହିତ ନିଷ୍ପନ୍ନ ହୁଏ । ତଥାପି ନିର୍ଦ୍ଦିଷ୍ଟ ଭାବରେ ଚେତନାର ସ୍ତର ଚିହ୍ନିତ କରିବା ପାଇଁ ଆଚରଣ ଯଥେଷ୍ଟ ଲାକ୍ଷଣିକ ପ୍ରମାଣ ନୁହେଁ । ଚେତନାର ସ୍ତର ଏକ ସାମଗ୍ରିକ ସ୍ଥିତିର ସୂଚନା ଦିଏ । ଗୋଟିଏ ସ୍ତରରେ ଥାଇ ଆଉ ଏକ ସ୍ତରର ଚିନ୍ତା ବା ଆଚରଣ କରି ହୁଏ ନାହିଁ । ଇତର ହିଂସ୍ର ଜନ୍ତୁପରି ମଣିଷ ଖାଇବା ପାଇଁ ହତ୍ୟାରକଥା ଚିନ୍ତା କରିପାରେ ନାହିଁ । କିନ୍ତୁ ଶ୍ୱାପଦଟିଏ ତାକୁ ଅତି ସ୍ୱାଭାବିକ ଭାବରେ ସ୍ୱୀକାର କରେ । ମଣିଷ ଭିତରେ କେତେକ ମିଥ୍ୟା, ଶଠତା, ଛଳନା, କପଟତାକୁ ଛାଡ଼ି ଚିନ୍ତା କରି ପାରନ୍ତି ନାହିଁ । ଅଥଚ ଆଉ ଜଣେ ଏସବୁ ପିଲାଖେଳ ଭାବି କେବେଠୁ ପରିହାର କରିଛନ୍ତି । ଏସବୁ ବିଷୟରେ ସେ ଆଦୌ ସଚେତନ ନୁହନ୍ତି । ସେ ସତ୍ୟାଶ୍ରୟୀ ସାଧକ ସାଧାରଣ ମଣିଷ ଚେତନାକୁ ଅତିକ୍ରମ କରି ଆଉ ଏକ ଉନ୍ନତ ଚେତନାର ଅଧିକାରୀ ହୋଇଛନ୍ତି । ମିଥ୍ୟା, ଶଠତା, ଭୟ, କ୍ରୋଧ, ଦ୍ୱେଷ, ଅସୂୟାକୁ ଦମନ କରିବା ସାଧନା କିନ୍ତୁ ସେ ସମସ୍ତର ସ୍ଥିତି ବିଷୟରେ ଆଦୌ ସଚେତନ ନ ରହିବା ଅନ୍ୟ ଏକ ଚେତନାରେ ସମ୍ଭବ ।

ଗୋଟିଏ ଉପାଖ୍ୟାନ ଦୃଷ୍ଟାନ୍ତ ନିଆଯାଉ । ରାଜା ଥାଆନ୍ତି ପାରିଧିରେ । ବନସ୍ତରରେ ଶିବିର ପଡ଼ିଥାଏ । ରାଜାଙ୍କ ବିଶ୍ରାମ କକ୍ଷ ପାଖରେ ରାଣୀମାନଙ୍କର ବିଳାସ କକ୍ଷ, ଯେଉଁଠାକୁ ରାଜାଙ୍କ ବ୍ୟତୀତ ଆଉ କେହି ପ୍ରବେଶ କରିବା ନିଷିଦ୍ଧ । ଜହ୍ନ ପକ୍ଷ ରାତି । ରାଜାଙ୍କ ନିଦ ହଠାତ୍ ଭାଙ୍ଗିଗଲା । ସେତେବେଳକୁ ରାତିର ତୃତୀୟ ପ୍ରହର । ସେ ଦେଖିଲେ ଯେ ଜଣେ ସମ୍ପୂର୍ଣ୍ଣ ଦିଗମ୍ବର ତେଜସ୍ୱୀ ପୁରୁଷ ଅସଂଯତ-ବସନା ରାଣୀମାନଙ୍କୁ କୌତୂହଳରେ ଚାହିଁ ରହିଛନ୍ତି ଏବଂ କାହାକୁ ସ୍ପର୍ଶ ନ କରି ବାଟ କାଟି ଚାଲି ଯାଉଛନ୍ତି । ରାଜା ହଠାତ୍ ଉତ୍ୟକ୍ତ ହୋଇ ତରବାରୀରେ ତାକୁ ଆଘାତ କଲେ । ଫଳରେ ତାଙ୍କର ଗୋଟିଏ ବାହୁ ଛିଣ୍ଡି ପଡ଼ିଲା । ପୁଣି ଆଘାତ କଲା ବେଳକୁ ସେ ଦେଖି ବିସ୍ମିତ ହେଲେ ଯେ ସେ ବ୍ୟକ୍ତି କୌଣସି ପ୍ରତିକ୍ରିୟା ପ୍ରକାଶ କରୁନାହାନ୍ତି । ସେ ପୂର୍ବବତ୍ ଅତି ପ୍ରସନ୍ନ ମୁଦ୍ରାରେଆଗକୁ ଚାଲିବାକୁ ଲାଗିଲେ । ରାଜାଙ୍କର ଶଙ୍କା ହେଲା ଯେ ସେ କୌଣସି ମହାପୁରୁଷଙ୍କୁ ଆଘାତ କରି ଦ୍ରୋହ ଅର୍ଜନ କରିଛନ୍ତି । ସେ ତତ୍‌କ୍ଷଣାତ୍ ତାଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷା କଲେ । ବ୍ୟକ୍ତି ସେହିପରି ପ୍ରସନ୍ନ ମୁଦ୍ରାରେ ପଚାରିଲେ, "ତୁମର ଅପରାଧ କ'ଣ" ।

ରାଜା କହିଲେ, "ଆପଣ ରାଣୀଙ୍କ ବିଳାସ୍ କକ୍ଷରେ ଅନାବୃତ ଅବସ୍ଥାରେ ପ୍ରବେଶ କରିବାରୁ ମୁଁ ଆପଣଙ୍କ ଅଙ୍ଗଚ୍ଛେଦ କରିଛି ।"

ସେ ସେହିପରି ଅବିଚଳିତ ରହି କହିଲେ, "କାହିଁ, କୌଣସି ଅଙ୍ଗଚ୍ଛେଦ ହେବା କଥା ତ ମୁଁ ଜାଣେ ନାହିଁ ।"

ରାଜା ଚକିତ ହୋଇ ଦେଖିଲେ ଯେ ତାଙ୍କର ବାମବାହୁ ପୂର୍ବବତ୍ ଯଥା ସ୍ଥାନରେ ଲାଗି ରହିଛି ।

ଏ ଅବଧୂତ ଉପାଖ୍ୟାନରୁ ସୂଚିତ ହେଉଛି ଯେ ଆଗନ୍ତୁକଙ୍କ ଚେତନା ସ୍ତରରେ ଅନାବୃତ ଶରୀରର ଲଜ୍ଜା ସଙ୍କୋଚ ଭୟ ଭାବନା ନାହିଁ । ନରନାରୀ ସମ୍ପର୍କରେ ଆହତ ଅହମିକା ପାଇଁ କେହି ଜଣେ ତରବାରୀ ଆଘାତରେଆଉ ଜଣକର ଅଙ୍ଗଚ୍ଛେଦନ କରିବାର ଚିନ୍ତା ତାକୁ ସ୍ପର୍ଶକରି ନାହିଁ । ତାଙ୍କ ଆଚରଣର ଶୁଦ୍ଧତା,

ବିମଳ ଉଦାରତା ଏକ ଅତ୍ୟନ୍ତ ଉନ୍ନତ ଅସାଧାରଣ ଚେତନାର ଲକ୍ଷଣ । ରାଜା ବି ସଚେତନ, ବୁଦ୍ଧିମାନ ବିବେକବାନ୍ କିନ୍ତୁ ତାଙ୍କ ଚେତନା ସାଧାରଣ ସ୍ତରରେ ।



ବିବର୍ତ୍ତନର ଧାରା ନିରବଚ୍ଛିନ୍ନ । କୌଣସିଠାରେ ଅଟକି ଗଲେ ତା'ର ପ୍ରବହମାନତା ବ୍ୟାହତ ହୁଏ । ତେଣିକି ଯାହା ପ୍ରବାହିତ ହୁଏ ତାହା ଆଉ ଏକ ଧାରା । ଗିରିଗର୍ଭରୁ ଯେଉଁ ଜଳଧାରଟି ଉତ୍ସାରିତ ହୁଏ ତାହା ସମୁଦ୍ରରେ ମିଶିବା ପର୍ଯ୍ୟନ୍ତ ଏକ ନିରବଚ୍ଛିନ୍ନ ପ୍ରବାହ । ଏଣୁ ନଦୀକୁ ଯେକୌଣସି ବିନ୍ଦୁରେ ପରୀକ୍ଷା କଲେ ଦେଖାଯାଏ ଯେ ଗିରିଗର୍ଭରୁ ନିର୍ଗତ ହେବାଠାରୁ ସେଇଠି ପହଂଚିବା ପର୍ଯ୍ୟନ୍ତ ଯେଉଁ ଯେଉଁ ଘାଟ ଅଘାଟ ଦେଇ ସେ ବହି ଆସିଛି ସେ ସମସ୍ତର ରଙ୍ଗ, ସ୍ୱାଦ ଓ ବିଶେଷତା ସେ ଧାରଣ କରିଛି । କୌଣସି ଗୋଟିଏ ଘାଟର ବିଶେଷତ୍ୱକୁ ବାଦ୍ ଦେଲେ ନଦୀ ଯାହା ପରୀକ୍ଷା ବିନ୍ଦୁରେ ଦେଖାଯାଉଛି ତା' ନ ହୋଇ ଆଉ କ'ଣ ହୋଇଯିବ ।

ଠିକ୍ ସେହିପରି ସମୁଦ୍ରର ଏକକୋଷୀ ଜୀବଠାରୁ ମଣିଷ ପର୍ଯ୍ୟନ୍ତ ଯେତେ ପ୍ରକାର ପ୍ରାଣୀ ବିବର୍ତ୍ତନର ଧାରାରେ ଦେଖା ଦେଇଛନ୍ତି ସେ ସମସ୍ତେ ମଣିଷ ଭିତରେ ସୂକ୍ଷ୍ମ ରୂପରେ ବିଦ୍ୟମାନ । ଏଥିପାଇଁ ଶରୀର ବିଜ୍ଞାନୀମାନେ ଏବଂ ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି, While talking to a man you are in fact, addressing a man, a horse and a crocodile simultaneously," ତା'ହେଲେ ତ ମଣିଷ ତାର ଜାତବ ପରମ୍ପରାରୁ କଦାପି ମୁକ୍ତ ହୋଇପାରିବ ନାହିଁ । ସେ ସମସ୍ତ ସଂସ୍କାର ସୂକ୍ଷ୍ମ ରୂପରେ ମଣିଷର ଅବଚେତନାରେ ରହିଯିବେ ଏବଂ ଅବଚେତନା ଅପରିହାର୍ଯ୍ୟ । କିନ୍ତୁ ବେଳେବେଳେ ବିବର୍ତ୍ତନର ଧାରାରେ କ୍ରମାନ୍ୱୟତା ବା ନିରବଚ୍ଛିନ୍ନତା ପରିବର୍ତ୍ତେ କେମିତି ଗୋଟାଏ ଲେଖା ରହସ୍ୟମୟ ଲମ୍ଫ ପରିଲକ୍ଷିତ ହୁଏ । ମାଣ୍ଡେଲଙ୍କ ନିୟମାନୁସାରେ ତାକୁ Leap କହନ୍ତି । ଏହାଫଳରେ ହୁଏତ ଗୋଟିଏ ଜଳଚର ମାଛ ପାଣିରୁ ମୁକ୍ତ ହେବାକୁ ଚେଷ୍ଟା କରୁ କରୁ ଡେଣା ଗଜେଇ ଗଲା । ସରୀସୃପର ମଧ୍ୟ ସେହିପରି ଏକ ଅଦମ୍ୟ ଆସ୍ପୃହାର ପରିଣାମ ସ୍ୱରୂପ ଡେଣା ଗଜେଇ ଗଲା । ଏବଂ ବ୍ୟତିକ୍ରମ ଶେଷକୁ ନିୟମରେ ପରିଣତ ହୋଇଗଲା । ବିବର୍ତ୍ତନର ଧାରାରେ ଏକ ଅତି ସ୍ପଷ୍ଟ ବାରି ହୋଇ ପଡୁଥିବା ବିଶେଷତ୍ୱର ବିକାଶ ଦେଖାଦେଲା । ସେଥିରେ ଧୀର ଏବଂ ସୂକ୍ଷ୍ମ ପରିବର୍ତ୍ତନ ପରିବର୍ତ୍ତେ ଏକ Leap ବା ଲମ୍ଫ ଦେଖାଦେଲା । ଏ ଅସାଧାରଣ ବିଦ୍ରୋହ ଏକ ସ୍ଥାୟୀ ଲକ୍ଷଣରେ ପରିଣତ ହେଲା । ଉଲ୍ଲଙ୍ଘନ କରିଯିବାର ପ୍ରବୃତ୍ତି ହୁଏତ ମଣିଷର ସବୁଠାରୁ ଅଧିକ । ଏଣୁ ତା କ୍ଷେତ୍ରରେ ନିରବଚ୍ଛିନ୍ନତା ଗୋଟିଏ Leap ରେ ଭୂମି ଛାଡ଼ିଯାଇ ପୁନଶ୍ଚ ଆବିର୍ଭୂତ ହୋଇପାରେ। ପାଣିରେ ବୁଡ଼ା ପହଁରା ପରି । ପରମ୍ପରା ଆମକୁ ଛାଡୁନାହିଁ ସତ ଆମ ଭିତରେ ପ୍ରାଗୈତିହାସିକ ସରୀସୃପର ସୂକ୍ଷ୍ମାବଶେଷ ରହିଯାଇଛି ସତ କିନ୍ତୁ ମଣିଷ ଯଦି ଚାହେଁ ତା'ହେଲେ ସେ ତା'ର ଅନିବାର୍ଯ୍ୟତାକୁ ଅତିକ୍ରମ କରିଯିବ । ନିଶ୍ଚେତନାର ଅନ୍ଧଗର୍ଭରୁ ଘୋର ଅଜ୍ଞାନ ସମସ୍ତ ପ୍ରକାର ବ୍ୟାମୋହ ପାଇଁ ଦାୟୀ । ତାକୁ ସୁଦ୍ଧା ଅତିକ୍ରମ କରିଯିବ ।



ଜୀବନରେ ଯାହାସବୁ ଘଟିଥାଏ ସେ ସମସ୍ତକୁ ସ୍ମୃତି ଧରି ରଖିପାରେ ନାହିଁ । ଯାହା ବି ଧରି ରଖେ, ତାହା କ୍ରମଶଃ ବିସ୍ମୃତିରେ ନିମଜ୍ଜିତ ହୋଇ ଚାଲିଥାଏ । ସେ ସବୁ ଯାଏ କୁଆଡ଼େ ? ମନେ ହୁଏ ସେସବୁ କାଳ ବକ୍ଷରେ ଲୀନ ହୋଇଯାଏ । କିନ୍ତୁ ତାହା ହୁଏ ନାହିଁ । ବରଂ ତାହା ସଂଚିତ ରହେ ଚିରକାଳ । ଦେଶକାଳର କୌଣସି ଏକ ବିନ୍ଦୁରେ ଯାହା ଘଟେ ତାହା ଅପସରି ଯାଏ । ଲୁପ୍ତ ହୁଏ ନାହିଁ । ପ୍ରସାରିତ କାଳର ସ୍ଥିର ବ୍ୟାପ୍ତି ଭିତରେ ପ୍ରତ୍ୟେକ ମୁହୂର୍ତ୍ତ ତାର ସମସ୍ତ ସ୍ୱାତନ୍ତ୍ର୍ୟ ନେଇ ଚିର କାଳ ରହିଥାଏ । ଏପରିକି ଏ ସାଧାରଣ ଜୀବନରେ ଯାହା ବିସ୍ମୃତ ବୋଲି ଆମେ ଭାବିଥାଉ ତାକୁ ଏକ ପ୍ରକାର ସାଧନା ପ୍ରକ୍ରିୟାରେ ପୁନର୍ଜୀବିତ କରାଯାଇପାରେ । ତା'ର ଅର୍ଥ ହେଲା ଯେ ଆମର ଶରୀର ଯାତ୍ରା ସମୟରେ ପ୍ରତି ମୁହୂର୍ତ୍ତରେ ଯାହା ଘଟିଛି ସେ ସମସ୍ତ ସୂକ୍ଷ୍ମ ରୂପରେ ଗଚ୍ଛିତ ରହିଛି । ଚେତନାର ଗୋଟିଏ ଅଂଶରେ ଆମେ ଯାହା ମନେ ରଖିଛୁ ସେ ଏକ ନଗନ୍ୟ ଅଂଶ, ଗତକାଲି ଯାହା ଘଟିଲା, ସେଥିରୁ ଯାହା ମନେ ଅଛି ସେ ସବୁ ମିଶାଇଲେ ମାତ୍ର ଦୁଇ ତିନି ଘଣ୍ଟାରୁ ଅଧିକ ହେବ ନାହିଁ । ବାକି ବାଇଶ ଘଣ୍ଟା ସ୍ମୃତି ସରହଦ ପାରି ହୋଇଗଲା । ସେଥିରେ ଛ' ଘଣ୍ଟା ନିଦ୍ରା ବା ସ୍ୱପ୍ନାବସ୍ଥା ରହିଛି । ଜୀବନର ଏକ ଚତୁର୍ଥାଂଶ ସ୍ୱପ୍ନ ଓ ନିଦ୍ରା । ତାକୁ ସାଧାରଣତଃ ଆମେ ଜୀବନରଅଂଶ ବୋଲି ଗ୍ରହଣ କରୁନାହୁଁ । କେବଳ ଜାଗ୍ରତ ଅବସ୍ଥା ହିଁ ଆମକୁ ଜୀବନ ପରି ଲାଗେ । ଅତୀତରେ ସ୍ମୃତି ହିଁ ସମଗ୍ର ଅତୀତ ପରି ଲାଗେ । ବାସ୍ତବରେ ଯାହା ମନେ ରହେନାହିଁ ତାହା ଅବଚେତନରେ ସଂଚିତ ହୋଇଯାଏ । ଏଣୁ ଅବଚେତନ ବଢ଼ି ଚାଲିଥାଏ । ଜୀବନର ସବୁ ସ୍ମୃତିର ସୂକ୍ଷ୍ମରୂପ ପରବର୍ତ୍ତୀ କ୍ରିୟା ଚିନ୍ତା ଅନୁଭବ ଓ ଘଟଣାକୁ ନିୟନ୍ତ୍ରିତ କରେ ଆମ ଅଜ୍ଞାତରେ । ଏହି ଅବଚେତନାରେ ପ୍ରତି ମୁହୂର୍ତ୍ତର ଏକ ସ୍ୱତନ୍ତ୍ର ଜଗତ୍ ଧାରିତ ହୋଇ ରହିଛି । ଏ ସମସ୍ତ ପୁଣି ପୁରୁଷାନୁକ୍ରମେ ବଂଶଲତାରେ ପ୍ରବେଶ କରେ । ଫଳରେ ମାନବ ଜାତିର ଉଦ୍‌ବର୍ତ୍ତନର ସମସ୍ତ ଇତିହାସ, ସରୀସୃପଠାରୁ ଆରମ୍ଭ କରି ଚତୁଷ୍ପଦ ଦ୍ୱିପଦ ପ୍ରାଣୀ ପର୍ଯ୍ୟନ୍ତ ସମସ୍ତ ପରଂପରା ଆମ ଅବଚେତନାରେ କାୟା ବିସ୍ତାର ଘଟି ଚାଲିଛି । ମୋଟାମୋଟି ଭାବରେ ଯାହା କୁହାଯାଏ ଯେ ଆମ ମନର ଦଶ ଭାଗରୁ ମାତ୍ର ଏକଭାଗ ଚେତନ, ବାକି ନଅଭାଗ ଅବଚେତନ ତାହା ପ୍ରାୟ ସତ । କାରଣ ଅବଚେତନ ହୁଏତ ଶହେଭାଗରୁ ଅନେଶତ ଭାଗ ମଧ ହୋଇପାରେ । କାରଣ ଆମ ଶରୀରର ସ୍ନାୟୁ ତନ୍ତୁ ରକ୍ତ ମେଦ ଭିତରେ କୋଟି କୋଟି ଜୀବକୋଷ ସ୍ୱତନ୍ତ୍ର । ସେମାନଙ୍କର ଜନ୍ମ ମୃତ୍ୟୁ ଚକ୍ର ଭିତରେ ସେହି ପରିମାଣରେ ଅନନ୍ତ ଘଟଣା ଅବଚେତନାରେ ଗଚ୍ଛିତ । ଅବଚେତନର ଏ ଗୁରୁଭାରକୁ ବହନ କରି, ତା ଚାପରୁ ମୁକ୍ତ ହେବା ସହଜ ବ୍ୟାପାର ନୁହେଁ । ଅଥଚ କେବଳ ଅବଚେତନ ନୁହେଁ, ତା'ଠାରୁ ଅନନ୍ତ ଗୁଣରେ ବିସ୍ତୃତ, ଅନନ୍ତ ଗୁଣରେ ଅକଳନୀୟ ଓ ଅପରାଜେୟ ନିଶ୍ଚେତକ କୁ ଜୟ କରିବାକୁ ଶ୍ରୀ ଅରବିନ୍ଦଙ୍କ ଅଭିଯାନ । ଏଥିରେ ଆମେ ଏ ଦୁରୁହ ମାର୍ଗରେ କେବଳ ମାତୃକୃପାକୁ ଆଶ୍ରୟକରି ରହିବା ଛଡ଼ା ନିଜ ଆୟତ୍ତରେ କିଛି ହେଲା ଭଳି ଅନୁଭବ ହେଉଛି କି ?



ଶତ୍ରୁପକ୍ଷ ଚିହ୍ନଟ ହୋଇଗଲେ ତେଣିକି ମୁକାବିଲା କରିବା ପାଇଁ ନିଷ୍ପତ୍ତି ନିଆଯାଇପାରେ । ନିଷ୍ପତ୍ତି ନେବା ପୂର୍ବରୁ ସ୍ୱପକ୍ଷ ଓ ପରପକ୍ଷର ସାମର୍ଥ୍ୟ କଳନା କରାଯାଏ । ଦେବପକ୍ଷ ଓ ଦାନବ ପକ୍ଷ ମଝିରେ ମଧ ରେଖାଟିକୁ ଅତିସ୍ପଷ୍ଟ ଭାବରେ ଟାଣି ଦିଆଯାଏ । ତା'ପରେ ଦେବ ପକ୍ଷରେ ଏକାକୀ ଠିଆ ହେଲେ ସୁଦ୍ଧା ଭୟ ନାହିଁ । କାରଣ ଦେବପକ୍ଷ ହିଁ ଧର୍ମ ପକ୍ଷ ଏବଂ ଧର୍ମର ଜୟ ସୁନିଶ୍ଚିତ । କିନ୍ତୁ ଅସୁବିଧା ହୁଏ ଯୁଦ୍ଧ ପୂର୍ବରୁ ପ୍ରସ୍ତୁତି ପର୍ବରେ ।

ସର୍ବପ୍ରଥମେ ପ୍ରଶ୍ନ ଉଠେ, ମୁଁ କାହା ପକ୍ଷରେ ଠିଆ ହୋଇଛି । ମୁଁ ହୁଏତ ଚାହେଁ ଦେବପକ୍ଷରୁ ସଂଗ୍ରାମ କରିବାକୁ କିନ୍ତୁ ବସ୍ତୁତଃ ମୋ ଭିତରେ ଦାନବ ପକ୍ଷ ପାଇଁ ସମର୍ଥନ ଅଧିକ । ମୁଁ ଯଦି କାୟ ମନ ବାକ୍ୟରେ କୌଣସି ଗୋଟିଏ ବିନ୍ଦୁରେ ଅପରପକ୍ଷ ସହିତ ସାଲିସ କରିଯାଏ ତାହେଲେ ମୁଁ ଦେବପକ୍ଷରେ ରହି ସଂଗ୍ରାମ କରିବାର ଅର୍ଥ କିଛି ନାହିଁ । ସେଥିପାଇଁ ହୁଏତ ମୁଁ ଯୋଗ୍ୟତା ଅର୍ଜନ କରିନାହିଁ । ଦେବାସୁର ସଂଗ୍ରାମ ଚେତନାର ବ୍ୟାପାର । ନିଜ ଭିତରେ ଏ ସଂଗ୍ରାମ ଅହରହ ଚାଲିଥାଏ । କେତେବେଳେ କାହାର ଜିତାପଟ । ମୁଁ ସ୍ୱୟଂ ମଧରେଖାରେ ଏପାଖ ସେପାଖ ହୋଇ ସଂଗ୍ରାମ କରୁଥାଏ । ଏହା ଏକ ଛଳଯୁଦ୍ଧ । ମୁଁ ନିଜେ ସଂକଳ୍ପବଦ୍ଧ ହୋଇ ପକ୍ଷଭୁକ୍ତ ନହେବା ଯାଏଁ ଏ ସଂଗ୍ରାମର ଚୂଡ଼ାନ୍ତ ମିମାଂସା ହୋଇ ପାରିବ ନାହିଁ ।

ଦ୍ୱିତୀୟ ଅସୁବିଧାଟି ହେଲା ଯେ ସାଧାରଣତଃ ମୁଁ ନିଜକୁ ସତ୍ୟ ଧର୍ମ ନ୍ୟାୟର ପକ୍ଷ, ଦେବତାର ପକ୍ଷ ବୋଲି ଭାବିନିଏ ଏବଂ ଅପରକୁ ସବୁବେଳେ ଦାନବ ପକ୍ଷ ବୋଲି ବିଚାର କରିଥାଏ । ଅପର ସହିତ ମୋର ଅହଂର ସଂଘାତ ଘଟେ । ମୁଁ ତତ୍‌କ୍ଷଣାତ୍ ଧରିନିଏ ଯେ ସେ ଭୁଲ୍ ଏବଂ ମୁଁ ହିଁ ଠିକ୍ । ଅନ୍ୟ ବିକଳ୍ପଟି ମୋତେ ଆଦୌ ଦେଖାଯାଏ ନାହିଁ । ଅର୍ଥାତ୍ ମୁଁ ଯେ ଭୁଲ୍ ହୋଇପାରେ ଏ କଥା ମୁଁ ସ୍ୱୀକାର କରି ପାରେ ନାହିଁ । ସେପରି ବଳାବଳି ଯୁକ୍ତିତର୍କ ହେଲେ ହୁଏତ ରାଜି ହୋଇଯାଇ ପାରେ ଯେ ମୁଁ ଯଦି ଭୁଲ୍ ସେ ବି ଭୁଲ୍ । ଉଭୟେ ଭୁଲ । କିନ୍ତୁ ସେ ଠିକ୍ ଏବଂ ମୁଁ ଭୁଲ, ଏଇଟା ଆଦୌ ଗ୍ରହଣ କରିହୁଏ ନାହିଁ । ଫଳରେ ଯଦି ଏହା ହିଁ ସତ୍ୟ ହୋଇଥାଏ ଏ ମୁକାବିଲାର ଅନିବାର୍ଯ୍ୟ ପରିଣାମ ପରାଜୟ, ଗ୍ଲାନି ଓ ଦୁଃଖ ।

ତୃତୀୟ ଅସୁବିଧା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଦେବପକ୍ଷରେ ତାଲିକାଭୁକ୍ତ ହୋଇଥିବା ବ୍ୟକ୍ତିଙ୍କ ଭିତରେ ଅଧିକାଂଶ ସମୟରେ ସଂଘର୍ଷ ହୋଇଥାଏ । ଏଣୁ ସ୍ୱପକ୍ଷରେ ହିଁ ପରପକ୍ଷର ଚିହ୍ନଟ କରିବା ଏକ ବିଷମ ସମସ୍ୟା । କେବଳ ସତ୍ୟ ଯୁଗରେ ହିଁ ଦେବପକ୍ଷ ଓ ଦାନବ ପକ୍ଷ ସ୍ପଷ୍ଟ ଏବଂ ପ୍ରକଟିତ ହୋଇ ସଂଗ୍ରାମ କରୁଥିଲେ ଆମ ପାଇଁ ବାସ୍ତବତା ହେଲା ଯେ ଦାନବ ପକ୍ଷ ବୋଲି ଆମେ ଯାହାକୁ କହିଥାଉ ସେ ଏକ ଛଦ୍ମବେଶୀ ସ୍ୱପକ୍ଷ । ଆମେ ଯଦି ମା'ଙ୍କୁ ସ୍ମରଣକରି ତାଙ୍କ ନାମରେ ନିଷ୍ଠାର ସହିତ କିଛି କର୍ମ ଯୋଜନା ଗ୍ରହଣ କରିଥାଉ, ଆଉ ଜଣେ ଆମଠାରୁ ଅଧିକ ମା'ଙ୍କ ନିକଟତର ବୋଲି ଦାବି କରି ତାର ବିରୋଧ କରେ । ଜଣାପଡ଼େ ସତେବା ଦାନବପକ୍ଷ କହିଲେ କିଛି ନାହିଁ । କେବଳ ଦେବପକ୍ଷ ହିଁ ବିଭାଜିତ ହୋଇ ପରସ୍ପର ସହିତ ସଂଗ୍ରାମ ରତ । ସେଇଠି ଦ୍ୱେଷ, ସେଇଠି ଅସୂୟା, ସେଇଠି କପଟାଚାର । ଏ ପରିସ୍ଥିତିରେ ସ୍ୱତଃ ପ୍ରଶ୍ନ ଉଠେ ଏ ଛଳନାକୁ ଭେଦି ସତ୍ୟକୁ ଆବିଷ୍କାର କରିହେବ ତ ? ହୋଇପାରେ ବିରୋଧୀ ଶକ୍ତି ସ୍ୱପକ୍ଷର ଆବରଣ ଦ୍ୱାରା ବର୍ମାବୃତ ହୋଇ ଆସିଛି । ତାକୁ ଭେଦିବା ମୋ ପାଇଁ ସାଧ୍ୟାତୀତ । କିମ୍ବା ହୋଇପାରେ ଯେ ସେ ସତକୁ ସତ ମା'ଙ୍କ କାର୍ଯ୍ୟ କରିବାକୁ ଅଧିକ ସମର୍ଥ । ମୁଁ କେବଳ ମୋର ଆହତ ଅହଂ

ପାଇଁ ତାର ଯୋଗ୍ୟତାକୁ ବୁଝି ପାରୁନାହିଁ । ଏପରି ସ୍ଥଳେ ସଂଗ୍ରାମ କିପରି ହେବ ? କେମିତି ଗୋଟାଏ ପକ୍ଷରେ ଥାଇ ପରସ୍ପରକୁ ଲଢ଼ିବାକୁ ହେବ ?

ମା'ଙ୍କ କାର୍ଯ୍ୟ ସେ ସ୍ୱୟଂ କରନ୍ତି, କାରଣ ଏ ଅକଳନୀୟ ବିଶ୍ୱ ଯୋଜନାର ବିସ୍ତାରରେ ଆମର ଅବଦାନ ବା ଯୋଗଦାନର କୌଣସି ବିଶେଷ ଅର୍ଥ ନାହିଁ । କେବଳ ନିଜର ସାର୍ଥକତା ପାଇଁ ତାଙ୍କ ଅକଳନୀୟ ସେନାବାହିନୀରେ ଅନ୍ତର୍ଭୁକ୍ତ ହୋଇ ପଦାତିକଟିଏ ହୋଇ ଠିଆ ହେବା ଯଥେଷ୍ଟ । ମହାରଥୀମାନେ ଯୁଦ୍ଧ କରି ପରାକ୍ରମ ପ୍ରମାଣ କରିବେ । ଏଣୁ ଛଳନାରେ ହେଲେ ସୁଦ୍ଧା ତାଙ୍କ ନାମ ନେଇ କେହି ଯଦି ମୋର ବିରୋଧ କରେ, ମୁଁ ତାଙ୍କୁ ହିଁ ସ୍ମରଣ କରି ବାଟ ଛାଡ଼ିଦେବା ବୋଧହୁଏ ବିଜ୍ଞତା । ଯଦି ସେ ସତକୁ ସତ ତାଙ୍କ ପକ୍ଷ ହୋଇଥାଏ ସେ ଚମତ୍କାରିତାର ସହିତ ସାଫଲ୍ୟ ଅର୍ଜନ କରିବେ । ନଚେତ୍ ଅଗ୍ନିରେ ଝାସ ଦେଇ ପତଙ୍ଗ ପରି ନିପାତ ହେବେ । ମୋର ଏକମାତ୍ର ଦାୟିତ୍ୱ ନିଜକୁ ପରୀକ୍ଷା କରି ସ୍ଥିର ଭାବରେ ଦେବପକ୍ଷରେ ଠିଆ କରାଇବା । ମୋ ଭିତରର ସମସ୍ତ ବିରୋଧ, ସମସ୍ତ ଦାନବ ଛାୟା, ଅପସାରିତ କରି ସମସ୍ତ ଦ୍ୱନ୍ଦ୍ୱ ଦୂରକରି ଦୃଢ଼ ସଂକଳ୍ପର ସହିତ କେବଳ ପରମାଶକ୍ତିଙ୍କର ଅନୁଗତ ହେବା । ତେଣିକି ସେ କେଉଁ ସଂଗ୍ରାମରେ ଏ ପଦାତିକଟିକୁ ବ୍ୟବହାର କରିବାକୁ ଚାହାନ୍ତି ତାହା ତାଙ୍କ ଇଚ୍ଛା । ଦାନବକୁ, ଅନ୍ଧକାରକୁ, ଅଜ୍ଞାନକୁ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିବା ଏବଂ ତଦ୍ରୂପ ଦୃଢ଼ତାର ସହିତ ଦେବତାକୁ ଆଲୋକକୁ ସତ୍ୟକୁ ଆବାହନ କରିବା ହିଁ ମୋର ସାଧନା ମୋର ସିଦ୍ଧି । ମୋର ପକ୍ଷଭୁକ୍ତିରେ କାଣିଚାଏ ସୁଦ୍ଧା ଅନ୍ୟର ପକ୍ଷ ପାଇଁ ଯେମିତି ଆନୁଗତ୍ୟ ନ ରହୁ । ଆଲୋକ ଓ ଅନ୍ଧାର ଏକତ୍ର ରହିବା ସମ୍ଭବ ନୁହେଁ । ଏଣୁ ମଧ୍ୟରେଖାରେ ଠିଆ ରହି ଭାଗଭାଗ ହେବାର ବିଡ଼ମ୍ବନାରୁ ମୁକ୍ତ ହେବାକୁ ହେବ । ସ୍ଥିର କରିନେବାକୁ ହେବ ଯେ ମୁଁ ଅନ୍ଧାରର ନୁହେଁ ଆଲୋକର, ଦାନବ ନୁହେଁ ଦେବତାର ପକ୍ଷଭୁକ୍ତ । ଏଥିରେ ଛଳନା କରିବା ନିଜକୁ ନିଜେ ଠକିବା ଏବଂ ତାର ପରିଣାମ ଅକଲ୍ୟା ... ଦୁର୍ଗତି ।



ସେ ଯେ ସବୁବେଳେ ପାଖରେ ଅଛନ୍ତି, ଅନ୍ଧାରରେ ବାଟ କଢ଼ାଇ ନେଇ ଯାଉଛନ୍ତି, ଭାଙ୍ଗି ପଡ଼ିଲାବେଳେ ଟେଲି ଧରୁଛନ୍ତି, ଜଳିଗଲା ବେଳେ ଜଳଧାର ବର୍ଷା କରି ଶୀତଳ କରି ଦେଉଛନ୍ତି, ଏହା ସ୍ଥୂଳ ଜଗତରେ ଶରୀର ମାଧ୍ୟମରେ ଅନୁଭବ ନ କଲା ପର୍ଯ୍ୟନ୍ତ ପ୍ରତ୍ୟୟ ଆସେ ନାହିଁ । ଦିବ୍ୟ ଜନନୀଙ୍କ ଉପସ୍ଥିତି ଏକ ଶୀତଳ ଆଲୋକର ବର୍ମ । ସମଗ୍ର ସତ୍ତାକୁ ଭିତରେ ବାହାରେ ଓତଃପ୍ରୋତ ଭାବରେ ଆଚ୍ଛନ୍ନ କରି ରଖିଥିବା ଏକ ହ୍ଲାଦିନୀ ଶକ୍ତି ।

ତାର ସ୍ଥୂଳ ପ୍ରକାଶ କେତେବେଳେ କିଭଳି ହେବ କହିବା କଠିନ କିନ୍ତୁ ସତର୍କ ରହିଲେ ବାରି ହୋଇଯିବ । ତାର କେତେଗୁଡ଼ିଏ ଚିହ୍ନଟ ଭିତରୁ ପ୍ରଥମଟି ହେଲା ତା'ର ଆକସ୍ମିକତା । ଅଚାନକ ଅପରିଚିତ ବ୍ୟକ୍ତି କୌଣସି ପ୍ରତ୍ୟାଶା ନରଖି ସାହାଯ୍ୟ କରିଦେବା, କେହି ଜଣେ ଠିକ୍ ପାଖ ଦେଇ ପାରି ହେଲାବେଳେ ହୁଏତ ଆଉ କାହା ସହିତ କଥା ହେଉ ହେଉ ଏପରି ଏକ ବାକ୍ୟ କହିଦେବା ଯାହାକି ଉପସ୍ଥିତ ସଙ୍କଟର ସମାଧାନ - ଏପରି ଅନେକ । ଦ୍ୱିତୀୟ ଚିହ୍ନଟ, ତାର ଆତ୍ମୀୟତା । ଏକ ବିସ୍ମୟକର ଆପଣାପଣ, ଖୁବ୍ ସୁକୁମାର କୋମଳ ସ୍ପର୍ଶ ପରି ସଂପର୍କ, ଶୀତଳ ପ୍ରଲେପ ପରି ସୁମଧୁର ହସ ଓ ହାର୍ଦ୍ଦିକତା । ତୃତୀୟ ଚିହ୍ନଟ ଆତ୍ମାର

ଉଲ୍ଲାସ । ଏଥିରେ ମନପ୍ରାଣ ଶରୀର ତୃପ୍ତିଲାଭ କରନ୍ତି ସତ କିନ୍ତୁ ଆତ୍ମାପୁରୁଷ ସିଧାସଳଖ ସେ ମୁହୂର୍ତ୍ତଟିକୁ ସ୍ୱୀକାରି ନିଅନ୍ତି । ମୋଟ ଉପରେ ସତ୍ୟର ଆକାଶରୁ ପାତାଳ ଯାଏ ସବୁ ଭୂମି, ସବୁ କୋଣ ଅନୁକୋଣରେସେ ଆଲୋକ ଉଦ୍ଭାସିତ ହୋଇଯାଏ । ଭାରି ସାର୍ଥକ ସାର୍ଥକ ଲାଗେ ଜୀବନ, ସରଳ ସ୍ୱଚ୍ଛ, ପବିତ୍ର ଲାଗେ ସବୁ କିଛି ସେଇ ସମୟଟା ପାଇଁ । ହିଂସା ଦ୍ୱେଷ, ଉଦ୍ବେଗ ଲୋଭ କାମ କ୍ରୋଧ କିଛି ସେତେବେଳେ ନଥାଏ । ଖୁବ୍ ସ୍ଥିର ଜହ୍ନ ରାତ୍ରି ପରି ଶୀତଳ ଆଲୋକିତ ଶାନ୍ତ ଅନୁଭବ । ତା'ର କିନ୍ତୁ କୌଣସି କାର୍ଯ୍ୟକାରଣ ନାହିଁ । ତାହାକେବଳ କୃପାବତରଣ ।



## ୨୧-୧୧-୯୨

ଭିକ୍ଷା ନ ଦେଲ ନାହିଁ, ଭିକ୍ଷାଥାଳ ଭାଙ୍ଗିଦେବା କ'ଣ ନ୍ୟାୟସଙ୍ଗତ ହେଉଛି ? ଶରଣାଗତକୁ ନେଇ ବେଳେବେଳେ ପ୍ରଭୁ ସେପରି ଆଚରଣ କରନ୍ତି ବୋଲି ଅପବାଦ ଅଛି । ସେ ଯାହାଙ୍କ ପାଖରେ ଶରଣ ପଶେ ତାଙ୍କୁ ଜାଣେ ନାହିଁ, ଦେଖେ ନାହିଁ ଅନୁଭବ କରେ ନାହିଁ । ତାଙ୍କର ଅଭୟ ସ୍ପର୍ଶ ପାଏ ନାହିଁ । ଅଥଚ ସେ ଶରଣ ପଶିଲା ବୋଲି ଅଦିବ୍ୟ ଶକ୍ତିମାନେ ତାକୁ ଯାବତୀୟ ଦୁଃଖ ଦୁର୍ଦ୍ଦଶା ଭିତରେ ଉତ୍ପୀଡ଼ନ କରନ୍ତି । ସେ ଜାଣେ ଯେ ତା'ର ପ୍ରଭୁ ନ ଚାହିଁଲେ କେହି ତାକୁ ସ୍ପର୍ଶ କରି ପାରିବ ନାହିଁ । ଏଣୁ ଯେତେବେଳେ ତାହାରି ମୁଣ୍ଡରେ ଆକାଶ ଛିଣ୍ଡିପଡ଼େ ତାହାରି ପାଦତଳେ ପୃଥ୍ୱୀ ବେନିଫାଳ ହୋଇଯାଏ, ସେ କାତର ହୋଇ ଅନାଏ । ଅସହାୟ ଦୁଃଖ ଯାତନା ଭୋଗ କଲାବେଳେ ପଚାରେ, "ମୁଁ ତୁମର ଶରଣାଗତ ହେବା କ'ଣ ଅପରାଧ ? ଏପରି ଶାସ୍ତି ତୁମ ଦୃଷ୍ଟି ଆଗରେ ଦିଆ ଯାଉଛି, ଅଥଚ ତୁମେ ଟିକିଏ ଆଙ୍ଗୁଆଳ କରିଦେଉ ନାହଁ ? ବାରଣ କରୁନାହଁ ? ଅଥଚ ତୁମେ ନ ଚାହିଁଲେ କାହାରି ସାଧ ନାହିଁ ମୋ ଦେହରେ ଟିପ ମାରିଦେବ । ତା'ହେଲେ ତୁମେ ହିଁ କ'ଣ ଚାହୁଁଛ ମୁଁ ଉତ୍ପୀଡ଼ିତ ହୁଏ ? ଏଇଟା କୁଆଡ଼େ ପରୀକ୍ଷା ବୋଲି ଭକ୍ତଜନେ କହୁଛନ୍ତି । ଏପରି ନିଷ୍ଠୁର ହୋଇ କ'ଣ ପରୀକ୍ଷା କରାଯାଏ ? ମାଲିକଙ୍କୁ କୋଉ କଥା ଭଲା ଅଜଣା ରହିଛି । ମୁଣ୍ଡପାତି ଦୁଃଖ ଭୋଗ କଲେ ସହନଶୀଳତା ପ୍ରମାଣିତ ହୋଇପାରେ । କିନ୍ତୁ ତୁମ କୃପା ପାଇବାର ଯୋଗ୍ୟତା କିପରି ପ୍ରମାଣିତ ହୁଏ ? ଦୁଃଖଭାର ପରି କୃପାଭାର କ'ଣ ଦୁର୍ବହ ? ଏବଂ ସେଇଥିପାଇଁ ଏ ପରୀକ୍ଷା ?"

ପ୍ରତିକୂଳ ପରିସ୍ଥିତିରେ ନିଷ୍ଠା, ଏକାଗ୍ରତା, ବିଶ୍ୱାସର ଦୃଢ଼ତା ପରୀକ୍ଷା ହୁଏ । କିନ୍ତୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର କୌଣସି ସ୍ୱୀକୃତି ମିଳେ କି ? ବିଶ୍ୱାସ ଆଣିବାକୁ ଅନ୍ୟପକ୍ଷରୁ କିଛି ପ୍ରମାଣ କିଛି ସ୍ପର୍ଶ କିଛି ଆଶ୍ୱାସନା ମିଳିବା ଉଚିତ୍ ନୁହେଁ କି ? ତୁମେ ଆକାଶ ପରି ନିର୍ଲିପ୍ତ, ନିର୍ବିକାର ପରିବ୍ୟାପ୍ତ ରହିଥିବ, ଦିଶୁ ନଥିବ ଶୁଣୁ ନଥିବ ଛୁଇଁ ହେଉ ନଥିବ । ଅଛ କି ନ ଅଛ ଜାଣି ହେଉନଥିବ, ଅଥଚ ଜୀମିତ ସାମର୍ଥ୍ୟର ଜୀବଟିଏ କେଉଁ ଭରସାରେ ତୁମକୁ ଆଶ୍ରୟ କରିବ ? ତାର ପରିସୀମା ଭିତରକୁ ଅବତରଣ କରି ତାକୁ କୃତାର୍ଥ କଲାଭଳି ତା'ର ପ୍ରତ୍ୟୟ ଭରସା, ଆନନ୍ଦ ବିଶ୍ୱାସ ଦେଲା ଭଳି ଟିକିଏ ଅନୁଭବ ନ ଦେଲେ ସେ ବଂଚିବ କେମିତି ? ସେ ସଂସାର ଦୁଃଖରେ ଜଳିଗଲା ବେଳେ ନିଆଁ ନ ଲିଭିଲେ ସୁଦ୍ଧା ଟିକିଏ ଶୀତଳ ପବନର ସ୍ପର୍ଶ ପାଇଲେ ଯଥେଷ୍ଟ । ଏତିକି କ'ଣ ତା'ର ପ୍ରାପ୍ୟ ନୁହେଁ ?

ଦୀପମ୍ ଜ୍ୟୋତି ପରଂବ୍ରହ୍ମ ।

ମାଟିର ପାତ୍ର, ତୈଳ ଓ ସଳିତା ଏସବୁ ଦୀପର ସ୍ଥୁଳ ଉପାଦାନ, କିନ୍ତୁ ଦୀପ ନୁହନ୍ତି । କାରଣ ଦୀପ ଦ୍ୱାରା ଯେଉଁ ଦୀପନ କ୍ରିୟାଟି ହୁଏ ତାହା ଏମାନଙ୍କ ଆୟତ୍ତରେ ନାହିଁ । ଏମାନେ ଯଥା ସ୍ଥାନରେସମାହିତ ହୋଇ ଅପେକ୍ଷା କରନ୍ତି । ମାଟିର ଆଧାର ଧାରଣ କରିବାକୁ ପ୍ରସ୍ତୁତ, ତୈଳ ବିନିଯୁକ୍ତ ହେବାକୁ ପ୍ରସ୍ତୁତ ଏବଂ ସଳିତାଟି ଜଳିବାକୁ ପ୍ରସ୍ତୁତ । ଏଣିକି ଏଥିରେ ଅଗ୍ନି ସଂଯୋଗ ହେବା ଆଉ ଏକ ଭୂମିର ନିଷ୍ପତ୍ତି । ଯେ ଏକ ସ୍ଥୁଳ ଉପାଦାନକୁ ଗଢ଼େ ଏବଂ ପ୍ରସ୍ତୁତ କରେ ସେ ହିଁ ହୁଏ ତ ଅଗ୍ନି ସଂଯୋଗ କରିବାର ଦାୟିତ୍ୱ ବହନ କରେ । ତେବେ ଅଗ୍ନି ଏକ ଆଗନ୍ତୁକ ଉପାଦାନ । ଅଗ୍ନି ଅବତରଣ କରେ, ଆଉ କେଉଁଠୁ ଆସି ସ୍ଥୁଳ ଉପାଦାନଗୁଡ଼ିକୁ ସ୍ୱୀକାର କରେ । ବିନିଯୋଗ କରେ । ଏମାନଙ୍କୁ ମାଧ୍ୟମ କରି ସ୍ୱୟଂ ପ୍ରକାଶିତ ହୁଏ । ପ୍ରସ୍ତୁତ ଉପାଦାନଗୁଡ଼ିକ ଅଗ୍ନିର ସଂସ୍ପର୍ଶରେ ଆସି ସାର୍ଥକ ଅନୁଭବ କରନ୍ତି । ଅଗ୍ନିକୁ ଧାରଣ କରି ମାଟି ପିଣ୍ଡଟି ଉତ୍ତପ୍ତ, ଆଲୋକିତ ହୁଏ । ତୈଳ ରସ ଅଗ୍ନିରେ ରେଣୁ ରେଣୁ ହବନ ହୋଇଯାଏ । ରେଣୁ ରେଣୁ ରୂପାନ୍ତରିତ ହୋଇଯାଏ ଉତ୍ତାପରେ ଓ ଆଲୋକରେ । ସଳିତା ଜଳିଯାଏ, ଭସ୍ମୀଭୂତ ହୋଇଯାଏ ଏବଂ ଅଗ୍ନିର ସହଯୋଗୀ ଇନ୍ଧନ ହୋଇ ତାକୁ ଧାରଣ କରେ । ଇନ୍ଧନ ସରିଗଲେ ଅଗ୍ନି ମଧ୍ୟ ନିର୍ବାପିତ ହୋଇଯାଏ । ପୁଣି ଅପ୍ରକଟ ହୋଇଯାଏ । ଯେଉଁ ରହସ୍ୟ ଭୂମିରୁ ସେ ଆସିଥିଲା ପୁଣି ସେଠାକୁ ଫେରିଯାଏ । ଏ ଆସିବା ଫେରିବା କ୍ରିୟାଟି ଅବଶ୍ୟ ଦେଶକାଳ ନିରପେକ୍ଷ ।

ଦୀପନ ଦୀପର ଅଗ୍ନିଶିଖା । ଅଗ୍ନି କିନ୍ତୁ ଏକ ଆଗନ୍ତୁକ, ଏକ ବହିରାଗତ ତତ୍ତ୍ୱ । ଏ ରୂପକରେ ମାଟି ଆଧାରଟି ସ୍ଥୁଳ ଶରୀର - ଆକାର ଆୟତନ ବିଶିଷ୍ଟ ସାବୟବ କ୍ଷେତ୍ର । ତୈଳ ସ୍ନେହ, ଶ୍ରଦ୍ଧାବିଶ୍ୱାସ ଆଦି ପ୍ରାଣିକ ଉପାଦାନ । ସଳିତା ହେଉଛି, ନିଷ୍ଠା, ସଂକଳ୍ପ, ଆସ୍ପୃହା ଆତ୍ମୋତ୍ସର୍ଗ, ଆତ୍ମସମର୍ପଣ ।

ଦୀପନ କ୍ରିୟାଟି ତପସ୍ୟା ଏବଂ କରୁଣାର ଯୁଗ୍ମରୂପ-ନିମ୍ନଭୂମିର ଆବାହନ ଏବଂ ଦିବ୍ୟ ଭୂମିର ପ୍ରତ୍ୟୁତ୍ତର ଉର୍ଦ୍ଧ୍ୱମୁଖୀ ଓ ନିମ୍ନମୁଖୀ ଦୁଇଟି ଶାଣିତ ଶକ୍ତିର ତୀବ୍ର ପ୍ରଜ୍ୱଳ ପ୍ରକାଶମାନ ଦେଦୀପ୍ୟମାନ ମିଳନ ବିନ୍ଦୁ । ଅଗ୍ନିଥିବାଯାକେ ଦୀପନ । ସଳିତା ଇନ୍ଧନ ଥିବା ଯାକେ ଅଗ୍ନି । ତୈଳ ଥିବା ଯାକେ ରସସିକ୍ତ ସଳିତା, ଆଧାର ଥିବା ଯାକେ ତୈଳ ସୁରକ୍ଷିତ ଓ ନିୟନ୍ତ୍ରିତ । ଅଗ୍ନି ଆସେ ଏବଂ ଯାଏ । ସେଥିରେ ସଳିତା ଜଳିଯାଏ ଓ ତୈଳ ସରିଯାଏ । କିନ୍ତୁ ପଡ଼ିରହେ ପରିତ୍ୟକ୍ତ ମାଟିପିଣ୍ଡ । ଏଇ ମାଟିପିଣ୍ଡଟି ସୁଦ୍ଧା ଅଗ୍ନିରେ ରୂପାନ୍ତରିତ ହେବାଯାଏଁ, ଆଲୋକ ଓ ଉତ୍ତାପରେ ସମ୍ପୂର୍ଣ୍ଣ ବିନିଯୁକ୍ତ ହେବାଯାଏଁ, ଦୀପନ କ୍ରିୟା ଅସମାପ୍ତ । ଦୀପନ, ପ୍ରକାଶନ ଯେ କରନ୍ତି ସେ ପରମ୍ । ଦୀପଂ ଜ୍ୟୋତି ପରଂବ୍ରହ୍ମ । ମାତୃ ମୀରାରବିନ୍ଦୌ ଶରଣଂ ।



ପୃଥିବୀର ଦୁଇଟି ଗତି ବିଷୟରେ ଭୁଗୋଳ ଶିକ୍ଷା ଦିଏ । ଗୋଟିଏ ଆହ୍ନିକ ଗତି, ଅନ୍ୟଟି ବାର୍ଷିକ ଗତି । ଆହ୍ନିକ ଗତିରେ ପୃଥିବୀ ତା' ନିଜ ମେରୁଦଣ୍ଡ ଚାରିପଟେ ନଟୁ ଘୁରିଲା ପରି ଘୁରିଥାଏ । ଅନ୍ୟଟିରେ ସୂର୍ଯ୍ୟ ଚାରିପଟେ ଗୋଟିଏ ନିର୍ଦ୍ଦିଷ୍ଟ କକ୍ଷ ଉପରେ ବୁଲିଆସେ । ସୂର୍ଯ୍ୟୋଦୟରୁ ସୂର୍ଯ୍ୟୋଦୟ ଭିତରେ ସାମୟିକ

ବ୍ୟବଧାନକୁ ଗୋଟିଏ ଅହନ୍ ବା ଦିନ କୁହାଯାଉଥିବାରୁ ଏହି ଗତିର ନାମ ଆହ୍ନିକ । ପୃଥିବୀ କକ୍ଷରେ ଗୋଟିଏ ବିନ୍ଦୁରୁ ଆରମ୍ଭ କରି ପୁନର୍ବାର ସେହି ବିନ୍ଦୁକୁ ଫେରିଆସିବାର ସାମୟିକ ବ୍ୟବଧାନକୁ ବର୍ଷ କୁହାଯାଉଥିବାରୁ ଏହି ଗତିର ନାମ ବାର୍ଷିକ । ବାର୍ଷିକ ଗତିପାଇଁ ଯେ ପୃଥିବୀର କକ୍ଷକୁ ନିର୍ଦ୍ଧାରଣ କରେ ସେଥିରୁ ତିଳାର୍ଦ୍ଧେ ବିଚ୍ୟୁତ ହେବାକୁ ଦିଏନାହିଁ, ତାହା ଏକ ପ୍ରବଳ ଶକ୍ତି ଯାହା ସୂର୍ଯ୍ୟ ପିଣ୍ଡର କେନ୍ଦ୍ରରୁ ପୃଥିବୀକୁ ଟାଣିରଖେ । ସାଧାରଣ ପାରିଭାଷିକ ଶବ୍ଦରେ ତାକୁ ମାଧ୍ୟାକର୍ଷଣ ଶକ୍ତି କୁହାଯାଏ । ଏହି ଶକ୍ତି ପୃଥିବୀର ସ୍ଥିର ରହିଯିବାର ଏବଂ କକ୍ଷଚ୍ୟୁତ ହୋଇ ମହାଶୂନ୍ୟରେ ଦିଗ୍‌ଭ୍ରାନ୍ତ ହୋଇଯିବାର ପ୍ରବଣତାକୁ ବଳପୂର୍ବକ ଆକର୍ଷଣ କରିବାରୁ ପୃଥିବୀ ତା'ନିଜ ମେରୁଦଣ୍ଡ ଚାରିପଟେ ଘୁରିଥାଏ ଏବଂ ଆହ୍ନିକ ଗତିର ସୃଷ୍ଟି ହୁଏ । ଦୁଇଟି ଶକ୍ତିର ରୂପ କିନ୍ତୁ ଶକ୍ତି ଗୋଟିଏ ।

କିନ୍ତୁ ମନେ ହୁଏ ପୃଥିବୀର ଆହ୍ନିକ ଗତିଟି ସ୍ୱେଚ୍ଛାଧୀନ ଏବଂ ବାର୍ଷିକ ଗତିଟି ତାର ଅଣାୟତ୍ତ ଓ ଅନିବାର୍ଯ୍ୟ । ପ୍ରତ୍ୟେକ ବ୍ୟକ୍ତି ପ୍ରତି ମୁହୂର୍ତ୍ତରେ ନିଜର ସ୍ୱତନ୍ତ୍ର ଇଚ୍ଛା ଓ ସଂକଳ୍ପ ଦ୍ୱାରା କାର୍ଯ୍ୟ କରିଥାଏ । କିନ୍ତୁ ତାର କାର୍ଯ୍ୟକୁ ଯେଉଁ ସାମାଜିକ ପାରିପାର୍ଶ୍ୱିକ ଏପରିକି ଜାଗତିକ ଓ ମହାଜାଗତିକ ଶକ୍ତି ନିୟନ୍ତ୍ରିତ କରେ ତାହା ତାର ଆୟତ୍ତ ବାହାରେ । ପ୍ରକୃତ ପକ୍ଷେ ବ୍ୟକ୍ତିର ଚିନ୍ତା ଇଚ୍ଛା ଓ ସଂକଳ୍ପ ଏହି ପାରପାର୍ଶ୍ୱିକ ଶକ୍ତି ଦ୍ୱାରା ପରିଚାଳିତ ହୁଏ ତାହା ହିଁ ତାର ଆଭ୍ୟନ୍ତର ଶକ୍ତି ।

ତଥାପି ମନେହୁଏ ଯେ ମଣିଷକୁ ଯେତିକି ସ୍ୱାଧୀନତା ଦିଆଯାଇଛି ଯେଉଁଭଳି ଏକ ସଂକଳ୍ପ-ବିକଳ୍ପାତ୍ମକ ମନ ଦିଆଯାଇଛି, ଯେପରି ବିଚାର ବୁଦ୍ଧି ଓ ବିବେକ ଦିଆଯାଇଛି, ମୋଟ ଉପରେ ଯେଉଁ ଚେତନାର ସ୍ତର ତା ପାଇଁ ଖୋଲି ଦିଆଯାଇଛି, ସେଥିରେ ସେ ଏ ବିପୁଳ ବ୍ୟବସ୍ଥାର ଏକ ଅନନ୍ୟ ସୁଯୋଗର ଅଧିକାରୀ । ସେ ଚାହିଁଲେ ସମଗ୍ର ସାମ୍ରାଜ୍ୟ ତାର । ସେ କେବଳ ତା ଭିତରେ ବାହାରେ ତାକୁ ଚାଳିତ କରୁଥିବା ଏକମାତ୍ର ପରମା ଶକ୍ତିକୁ ଚିହ୍ନିତ କରି ତାଙ୍କ ସହିତ ନିଯୁକ୍ତ ହୋଇ ପାରିଲେ ବ୍ୟକ୍ତିଗତ ତଥା ସାମାଜିକ ଓ ଆଧ୍ୟାତ୍ମିକ କର୍ମ ସମସ୍ତ ସୁସଂଯତ ଏବଂ ସମନ୍ୱିତ ହୋଇପାରିବ ।



## ନବବର୍ଷ ୧୯୯୩

ନଦୀଧାରକୁ ଗାର ପକାଇ ବିଭାଜିତ କରିହୁଏ ନାହିଁ । ସମୟକୁ ମଧ୍ୟ ନୁହେଁ । କେବଳ ଦିନ ମାସର ଗଣନା ରଖିବାକୁ ନିଜ ସୁବିଧା ପାଇଁ ଆପୋଷ ବୁଝାମଣାରେ ଗୋଟାଏ ଦିନ ବର୍ଷଟିଏ ଆରମ୍ଭ କରାଯାଏ ଏବଂ ଆଉ ଗୋଟିଏ ଦିନ ସାରି ଦିଆଯାଏ । ପୃଥିବୀର ବୃତ୍ତାକାର ଗତି ଯେକୌଣସି ସମୟରୁ ଆରମ୍ଭ କରି ସେଇଠି ପୁଣି ସାରି ଦିଆଯାଇପାରେ । ଅର୍ଥାତ୍ ଜାନୁଆରୀ ୧ ତାରିଖରେ ବର୍ଷ ଆରମ୍ଭ ନ ହୋଇ ଫେବୃୟାରୀ ୧ ତାରିଖରେ ହେଲେ, ଗଣନାରେ ଶୂନ୍ୟକାଳ ଅର୍ଥାତ୍ Zero hour ନ ହୋଇ ସକାଳେ ହେଲେ ମଧ୍ୟ ଚଳନ୍ତା । ସକାଳ ଆରମ୍ଭ ହୁଅନ୍ତା ଶୂନ୍ୟ ଘଣ୍ଟାରେ ତାପରେ ଦିନ ବଢ଼ି ଚାଲନ୍ତା ଏକ ଦୁଇ ତିନି ବାଜି ଚାଲନ୍ତା । ସଂଧ୍ୟା ହୁଅନ୍ତା ୧୨ ଟାରେ । ସେହିପରି ରାତି ବଢ଼ି ବଢ଼ି ସକାଳକୁ ୨୪ ଘଣ୍ଟା ହୁଅନ୍ତା ଅର୍ଥାତ୍ Zero hour ଆରମ୍ଭ ହୁଅନ୍ତା ।

ପୃଥିବୀର ବିଭିନ୍ନ ପ୍ରାନ୍ତରେ ଗୋଟାଏ ପ୍ରକାର ଗତିରେ ପଡ଼ି ଯାଇଛି ବୋଲି ବର୍ତ୍ତମାନ ଗଣନାର ମାନ୍ୟତା ଏତେ ବେଶୀ । ନହେଲେ ତା' ନହୋଇ ଆଉ ଯେକୌଣସି ବିକଳ୍ପକୁ ମଧ୍ୟ ଗ୍ରହଣ କରାଯାଇପାରେ ।

ଜାନୁଆରୀ ପହିଲାରେ ସେପରି କୌଣସି ଅନନ୍ୟ ସାଧାରଣ ଘଟଣା ଘଟୁନାହିଁ । ଯାହାଫଳରେ ନୂଆବର୍ଷ ଆରମ୍ଭ ହେଲା ବୋଲି ଅନୁଭବ ହେବ । ମଣିଷ କେବଳ ଉଦ୍‌ଘୋଷଣା କରୁଛି ଯେ ଆଜି ବର୍ଷ ଆରମ୍ଭ ହେଲା । ଏହା ଏକ ସ୍ୱତନ୍ତ୍ର ଦିବସ । ଏ ଘୋଷଣା କରିବା ଓ ଶୁଣିବା ଲୋକ ଉଭୟେ ଏଥିରେ ବିଶ୍ୱାସ କରନ୍ତି । ସେଥିପାଇଁ ଏ ବ୍ୟବସ୍ଥାଟି ଅପରିହାର୍ଯ୍ୟ । ଜାନୁଆରି ପହିଲା ! ତୁମକୁ ସ୍ୱାଗତ ଜଣାଉଛି । ମୋ ଆଖିରେ ତୁମେ ଯେକୌଣସି ଅନ୍ୟଦିନ ପରି ଦିନଟିଏ । ତଥାପି ତୁମର ଗୁରୁତ୍ୱକୁ ମୁଁ ଅସ୍ୱୀକାର କରୁନାହିଁ । ମଣିଷର ସମୟ ଚେତନାର ତୁମେ ବର୍ତ୍ତମାନ ଏକ ନୂତନ ବର୍ଷର ଆଦି ଦିବସ । ଏହାର କୌଣସି ବିକଳ୍ପ ବର୍ତ୍ତମାନ ଗ୍ରହଣୀୟ ହୋଇ ନଥିବାରୁ ତୁମକୁ ସେହିପରି ସ୍ୱୀକାର କରୁଛି ଯେମିତି ଅନ୍ୟମାନେ କରୁଛନ୍ତି ସ୍ୱଗତମ୍ ! ସୁସ୍ୱାଗତମ !!



## ୯-୧-୯୩

ଦେହ ମନ ପ୍ରାଣ ଅନ୍ଧାରରେ ଆଚ୍ଛନ୍ନ ଥିଲାବେଳେ ମନେହୁଏ ସତେ ବା ଅନ୍ତସ୍ଥ ଚୈତ୍ୟ ସତ୍ତା ସଂପୂର୍ଣ୍ଣ ନିଷ୍କ୍ରିୟ ଅଥବା ଅସହାୟ । ସେ ହୁଏତ ଅସଂପୃକ୍ତ ରହି ଜୀବଯାତନା କେବଳ ଦ୍ରଷ୍ଟା ଭୂମିରୁ ଦେଖୁଛନ୍ତି । ଚେତନାର କୌଣସି ଉନ୍ମେଷ ହୁଏତ ହେଉନାହିଁ ଏବଂ ସାଧନାରେ ସମସ୍ତ ପ୍ରୟାସ ବ୍ୟର୍ଥ ହୋଇଯାଉଛି । ମଣିଷ ବିଚାର ଯେଉଁ ଦ୍ୱିପଦ ଜନ୍ତୁଟିଏ ଥିଲା ସେଇ ଦ୍ୱିପଦ ଜନ୍ତୁ ହୋଇ ରହି ଯାଉଛି । ଚୈତ୍ୟ ସତ୍ତାର ଯେ କ୍ରମବିକାଶ ଘଟୁଛି ଏହାର ପ୍ରମାଣ କାହିଁ ? ଜୀବନ ତ ଯେପରି ଯାତନାମୟ ଅନ୍ଧକାରମୟ ଥିଲା ସେହିପରି ରହିଛି ।

କୌଣସି ବସ୍ତୁ ବ୍ୟକ୍ତି ବା ଘଟନାକୁ ଲାକ୍ଷଣିକ ପ୍ରମାଣ ଦ୍ୱାରା ବୁଝାଯାଏ । ସେହିପରି ଚୈତ୍ୟ ସତ୍ତାର ସ୍ଥିତି ବା ପ୍ରଗତି ପାଇଁ ଲାକ୍ଷଣିକ ପ୍ରମାଣ ନାହିଁ । ଦୃଶ୍ୟମାନ ଜଗତ୍‌କୁ ଇନ୍ଦ୍ରିୟ ମାଧ୍ୟମରେ ପ୍ରତ୍ୟକ୍ଷ କରାଯାଏ । କିନ୍ତୁ ଇନ୍ଦ୍ରିୟମାନେ ସେ କ୍ରିୟା ବିଷୟରେ ସଚେତନ ନୁହଁନ୍ତି । ଆଖି ଦେଖେ କିନ୍ତୁ ଜାଣେ ନାହିଁ ସେ ଦେଖେ ବୋଲି । କାନ ଶୁଣେ କିନ୍ତୁ ଜାଣେ ନାହିଁ ସେ ଶୁଣେ ବୋଲି । ଦେଖିବା ଶୁଣିବା କ୍ରିୟା ଇନ୍ଦ୍ରିୟର କିନ୍ତୁ ଦେଖିବା ଶୁଣିବା ଜ୍ଞାନ ମନର । ମନ ଜାଣେ ଯେ ଆଖି ଦେଖୁଛି ଏବଂ କାନ ଶୁଣୁଛି । ଏହିପରି ଇନ୍ଦ୍ରିୟଗୋଚର ହେବା ବ୍ୟକ୍ତି ବସ୍ତୁ ବା ଘଟନାର ଲାକ୍ଷଣିକ ପ୍ରମାଣ ।, କାରଣ ସେମାନଙ୍କର ବିଭିନ୍ନ ଲକ୍ଷଣକୁ ଇନ୍ଦ୍ରିୟମାନେ ଗ୍ରହଣ କରିଥାନ୍ତି । ରୂପ ରସ ଗନ୍ଧ ଶବ୍ଦ ସ୍ପର୍ଶ ସବୁ ଲକ୍ଷଣ ।

ଚୈତ୍ୟ ସତ୍ତାର ସେପରି କୌଣସି ଲକ୍ଷଣ ନଥିବାରୁ ତାହା ଇନ୍ଦ୍ରିୟ ଗୋଚର ନୁହେଁ । ସେଥିପାଇଁ ଇନ୍ଦ୍ରିୟସର୍ବସ୍ୱ ମନ ତାର ଅସ୍ତିନାସ୍ତି ବିଷୟରେ ସନ୍ଦେହ ପ୍ରକାଶ କରେ କିନ୍ତୁ ସ୍ଥୂଳଭୂମିରେ ଯେପରି ଗୋଟାଏ ପ୍ରକାର ନିୟମରେ ସମସ୍ତେ ପ୍ରକଟିତ ହୁଅନ୍ତି, ସୂକ୍ଷ୍ମଭୂମିରେ ଆଉ ପ୍ରକାରେ ଚେତନା ବିକଶିତ ହୁଏ । ସେଥିପାଇଁ ଅନ୍ୟ ପ୍ରକାର ଦୃଷ୍ଟି ଓ ବୋଧଶକ୍ତିର ପ୍ରୟୋଜନ ରହିଛି ।

ତେବେ ଯୁକ୍ତିପ୍ରବଣ ମନକୁ ବୁଝାଇବା ପାଇଁ ଗୋଟାଏ ଦୃଷ୍ଟାନ୍ତ ଦିଆଯାଇପାରେ । ଯଦି ଗୋଟିଏ ଲୌହ ଦଣ୍ଡକୁ ନିଆଁରେ ପୋଡ଼ି ଦିଆଯାଏ, ତା ଭିତରକୁ ଉତ୍ତାପ ରୂପରେ ଅଗ୍ନି ସଂଚରି ଯାଏ । ଏବଂ କ୍ରମଶଃ ଅଧିକରୁ ଅଧିକ ସଂଚରୁଥାଏ । କିନ୍ତୁ ବାହ୍ୟତଃ ଲୁହା ଦଣ୍ଡଟି ଯେପରି ସ୍ଥୁଳ ଧୂସରବର୍ଣ୍ଣ ଥିଲା ସେପରି ରହିଥାଏ । ସେଥିରେ କୌଣସି ପରିବର୍ତ୍ତନ ଲକ୍ଷ କରିହୁଏ ନାହିଁ । କିନ୍ତୁ ଗୋଟାଏ ସମୟରେ ଅଗ୍ନି ସେ ଲୌହଦଣ୍ଡକୁ ସ୍ୱଗୁଣରେ ଆଚ୍ଛନ୍ନ କରିନିଏ ଏବଂ ସେ ସ୍ଥୁଳ ବସ୍ତୁଟି ରୂପାନ୍ତରିତ ହୋଇ ଅଗ୍ନି ପରି ତେଜ ପ୍ରକାଶ କରେ । ସେତିକିବେଳେ ସୂକ୍ଷ୍ମ ଭୂମିରେ ସଂଚରୁଥିବା ଏବଂ ବିକାଶ ଲାଭ କରୁଥିବା ଅଗ୍ନିର ଲାକ୍ଷଣିକ ପ୍ରମାଣ ଇନ୍ଦ୍ରିୟ ଗୋଚର ହୁଏ । ଏଣୁ ଆମ ଚୈତ୍ୟ ସତ୍ତାର ବିକାଶ ପାଇଁ ଲାକ୍ଷଣିକ ପ୍ରମାଣ ପାଇବା ସକାଶେ ସେଇ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ଯେଉଁ ପର୍ଯ୍ୟନ୍ତ ମନପ୍ରାଣ ଶରୀର ତଦ୍ୱାରା ସଂପୂର୍ଣ୍ଣ ଅଧିକୃତ ଏବଂ ରୂପାନ୍ତରିତ ହୋଇ ଯାଇ ନାହାନ୍ତି । ସେତେବେଳେ ସେମାନେ ତାଙ୍କର ସ୍ଥୁଳ ଗୁଣ ଓ ଲକ୍ଷଣ ପରିବର୍ତ୍ତେ ଚୈତ୍ୟ ସତ୍ତାର ସୂକ୍ଷ୍ମ ଲକ୍ଷଣ ପ୍ରକାଶ କରିବେ । ଯେପରି ଲୌହଦଣ୍ଡ ଅଗ୍ନିରେ ଉତ୍ତପ୍ତ ହୋଇଗଲା ପରେ ତା'ର କଠିନତା ଧୂସର ବର୍ଣ୍ଣ ଅନମନୀୟତା ପରିତ୍ୟାଗ କରିଦିଏ । ସେ ତେଜସ୍ୱିୟ ହୋଇଉଠେ । ନମନୀୟ ଏବଂ କୋମଳ ହୋଇଉଠେ, ତାହା ତାର ମୌଳିକ ଗୁଣ ନୁହେଁ । ସେ ଗୁଣଗୁଡ଼ିକୁ ସେ ଅତିକ୍ରମ କରି ସାରିଥାଏ । ସେହିପରି ଚୈତ୍ୟ ସତ୍ତାର ପୂର୍ଣ୍ଣ ବିକାଶ ଘଟିଲେ ରୂପାନ୍ତରିତ, ମଣିଷର ଚାରିଟି ନୂତନ ଗୁଣ ପ୍ରକଟିତ ହେବ । ପ୍ରଥମଟି Lightness -ବା ଲଘିମା, ଦ୍ୱିତୀୟଟି Adaptability- ଭଙ୍ଗୀ ରୂପତା Plasticity ନମନୀୟତା ଏବଂ Luminosity ତେଜସ୍ୱିୟତା ।

ପ୍ରଶ୍ନ ହେଉଛି ଏପରି ରୂପାନ୍ତର ହେଲେ ତ ଆଉ ସନ୍ଦେହ ସଂଶୟର ଅବକାଶ ନାହିଁ । କିନ୍ତୁ କେତେକାଳ ସେଥିପାଇଁ ଅପେକ୍ଷା କରିବାକୁ ହେବ । ମଧ୍ୟବର୍ତ୍ତୀକାଳୀନ ପର୍ଯ୍ୟାୟରେ ପ୍ରତ୍ୟୟ ଆସିବ କିପରି ଯେ ଆମ ଅଲକ୍ଷରେ ଚୈତ୍ୟ ସତ୍ତା କ୍ରମ ବିବର୍ତ୍ତିତ ହେଉଛନ୍ତି । ସେଥିପାଇଁ ପୁଣି ଲୌହ ଦଣ୍ଡ ଉଦାହରଣ ନିଆଯାଉ । ଦଣ୍ଡଟି ଅଗ୍ନିରୂପ ହେବା ପୂର୍ବରୁ ଉତ୍ତପ୍ତ ହୋଇ ଚାଲିଥାଏ ଅର୍ଥାତ୍ ନିଜ ଭିତରେ ଏକ ବର୍ଦ୍ଧିଷ୍ଣୁ ଅଗ୍ନି ପ୍ରବାହକୁ ଧାରଣ କରି ଚାଲିଥାଏ । ସେଥିରେ ତାର ଅଣୁ ପରମାଣୁ ଉତ୍ତେଜିତ ବିତାଡ଼ିତ ହେଉଥାନ୍ତି । କ୍ରମଶଃ ସେମାନେ ଅଗ୍ନିକୁ ଗ୍ରହଣ କରିବାରେ ଏବଂ ରୂପାନ୍ତରିତ ହେବାରେ ଲାଗିଥାନ୍ତି । ଏହାକୁ Cellular Transformation କୁହାଯାଇପାରେ । ସେତିକିବେଳେ ଲୌହଦଣ୍ଡର ରୂପ ପୂର୍ବବତ୍ ଦିଶୁଥିଲେ ସୁଦ୍ଧା ତାକୁ ଛୁଇଁ ଦେଲେ ଜଣାଯାଏ ପାର୍ଥକ୍ୟ ଛୁଇଁବା ହେଉଛି ଘନିଷ୍ଟ ସାନ୍ନିଧ୍ୟ । ସେହିପରି ଯାହା ଭିତରେ ଚୈତ୍ୟ ସତ୍ତାର ଉନ୍ମେଷ ଘଟୁଛି ତାଙ୍କର ଘନିଷ୍ଠ ସାନ୍ନିଧ୍ୟରେ ରହିଲେ ପାର୍ଥକ୍ୟ ଅନୁଭବକୁ ଆସିପାରେ । ଅନେକ ଏପରି ଲକ୍ଷଣ ତାଙ୍କଠାରେ ଲକ୍ଷ୍ୟ କରାଯାଏ ଯାହାକି ଅସାଧାରଣ । ସେସବୁ ଦୂରରୁ ଦିଶେ ନାହିଁ । ଦୂରରୁ ସେ ଅନ୍ୟମାନଙ୍କ ପରି ଏକ ସାଧାରଣ ମଣିଷ । କିନ୍ତୁ ନିକଟରେ ରହିଲେ ଏହି ସାନ୍ନିଧ ଦ୍ୱାରା ହିଁ ତାଙ୍କ ଭିତରର ତେଜ ଅନୁଭବ କରିହୁଏ । ତାଙ୍କ ଆଚରଣ, ଉଚ୍ଚାରଣ ଚାହାଣି ଚଳଣିରେ ପାର୍ଥକ୍ୟ ଲକ୍ଷ କରିହୁଏ । ଏଣୁ ସାଧାରଣ ସ୍ଥୁଳ ଅର୍ଥରେ ଲାକ୍ଷଣିକ ପ୍ରମାଣ ମିଳୁ ନାହିଁ ବୋଲି, ମନପ୍ରାଣ ଶରୀର ଯଥାବତ୍ ମୋହାଚ୍ଛନ୍ନ ରହିଛନ୍ତି ବୋଲି ଯେ ଅନ୍ତସ୍ଥ ଚୈତ୍ୟ ସତ୍ତାଙ୍କର ବିକାଶ ଘଟୁନାହିଁ ଏହା କହିବା ଠିକ୍ ହେବ ନାହିଁ । ଆମ ଅଲକ୍ଷ୍ୟରେ ଆମ ଭିତରେ ଚେତନାର ଉନ୍ମେଷ ହୋଇ ଚାଲିଛି । ସେଥିପାଇଁ ଦିବ୍ୟଦ୍ରଷ୍ଟା ଗୁରୁ ସେଇ ଆଭ୍ୟନ୍ତର ବିକାଶ ଉପରେ ହିଁ ମଣିଷଟିକୁ ମୂଲ୍ୟାୟନ କରିଥାନ୍ତି । ବାହ୍ୟ ଲକ୍ଷଣକୁ ନୁହେଁ । ଲୌହ ଶଳାକା ଅଗ୍ନିରେ ପତିତ ହେଲା ପରି ଯଦି

ଚୈତ୍ୟ ସତ୍ତା ଦିବ୍ୟ ଜନନୀଙ୍କ ନିକଟରେ ମୁକ୍ତ ରହେ ତା' ହେଲେ ତାର ବିକାଶ ଅନିବାର୍ଯ୍ୟ ଓ ଅବଶ୍ୟମ୍ଭାବୀ । ଏଥିରେ ସନ୍ଦେହ ନାହିଁ ।



**୨୬-୧-୯୩**

ଦୁଃଖରେ ପ୍ରଭୁଙ୍କୁ ସ୍ମରଣ କରିବା ଏବଂ ସୁଖରେ ଭୁଲିଯିବା ଯଦି ମଣିଷର ସ୍ୱଭାବ ତା' ହେଲେ ଆଧ୍ୟାତ୍ମିକତା ପାଇଁ କ'ଣ ଦୁଃଖ ଅନିବାର୍ଯ୍ୟ ? ଦୁଃଖ କଣ ପ୍ରଭୁଙ୍କ ନିକଟତର ହେବାରେ ସହାୟକ ?

ଦୁଃଖ, ଯାତନା କ୍ଳେଶ, ମଣିଷର ମନପ୍ରାଣ ଶରୀରକୁ ପୀଡ଼ିତ କରେ । ପୀଡ଼ା କଦାପି ସ୍ପୃହଣୀୟ ନୁହେଁ । ମଣିଷ ପୀଡ଼ାକୁ, ଦୁଃଖକୁ ଭୟକରେ । ସେଥିପାଇଁ ସେ ସେଥିରୁ ପରିତ୍ରାଣ ଚାହେଁ । ଦୁଃଖ ମଣିଷକୁ ଅସହାୟ କରିଦିଏ । ଏଣୁ ସେ ଆଶ୍ରା ଖୋଜେ, ସାହାଯ୍ୟ ଖୋଜେ । ଦୁଃଖ ତାକୁ ଏକାକୀ କରିଦିଏ, ଦୁର୍ବଳ କରିଦିଏ । ଏଣୁ ସେ ଅପରକୁ ଖୋଜେ ତା ଉପରକୁ ଆଉଜି ଯିବା ପାଇଁ । ସେଥିପାଇଁ ଡ଼ାକ୍ତରକୁ ଲୋଡ଼େ ଏବଂ ସେଇ ଧାରାରେ ହୁଏତ ଭଗବାନଙ୍କୁ ମଧ ମନେପକାଏ । ଏମାନଙ୍କ ସହିତ ସାଧାରଣତଃ ତାର ସମ୍ପର୍କ ନଥାଏ । କେବଳ ବିପତ୍ତି ପଡ଼ିଲେ ହିଁ ସେମାନେ ମନେ ପଡ଼ନ୍ତି । ସେହିପରି ସୁଖ ସମ୍ଭୋଗ ବେଳେ ମଧ ଆଉ କେତେକ ମନେ ପଡ଼ନ୍ତି ଯେଉଁମାନେ ବିପଦବେଳେ ଦେଖା ଦିଅନ୍ତି ନାହିଁ । ସେମାନଙ୍କ ସହିତ ମଧ ସମ୍ପର୍କ କେବଳ ଆବଶ୍ୟକତାଭିତ୍ତିକ । ଆବଶ୍ୟକ ବେଳେ, ସୁଖ ପାଇଁ ହେଉ ଅଥବା ଦୁଃଖ ପାଇଁ, ଅପରକୁ କେବଳ ବ୍ୟବହାର କରାଯାଏ । ଯାହା ବ୍ୟବହାର କରାଯାଏ ତାର ଏକମାତ୍ର ମୂଲ୍ୟ ତା'ର ଉପଯୋଗିତା । ଠିକ୍ ବୁଝିଲେ ଆମେ ବ୍ୟକ୍ତିମାନଙ୍କୁ ମଧ ବସ୍ତୁ ଭଳି ବ୍ୟବହାର ହିଁ କରିଥାଉ । ସେମାନଙ୍କର ଉପଯୋଗିତା ଚାଲିଗଲେ ଆମ ପାଇଁ ସେମାନେ ମୂଲ୍ୟହୀନ ହୋଇଯାନ୍ତି । ଏପରି ସଂପର୍କ କେବଳ 'I' and 'it'ର ସମ୍ପର୍କ । କିନ୍ତୁ ବେଳେବେଳେ ଏହା ଅପେକ୍ଷା, ଅଧିକ ଘନିଷ୍ଠ ଗଭୀର ନିବିଡ଼ ସଂପର୍କ ସମ୍ଭବ । ଯେଉଁଠି ନେବା ଅପେକ୍ଷା ଦେବା ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଯାଏ ତାହା ପ୍ରେମର ସଂପର୍କ । ଜଣେ ଅନ୍ୟଜଣଙ୍କର ପରିପୂରକ ହୋଇ ଏକ ଅତିରିକ୍ତ ପୂର୍ଣ୍ଣତାର ଉପଲବ୍ଧି ଆଣିଦିଏ । ଜଣକର ଅଭାବରେ ଅନ୍ୟ ଜଣେ ଅସମ୍ପୂର୍ଣ୍ଣ ମନେକରେ । ତେଣିକି ନିଜ ପାଇଁ ବଂଚିବା ନିରର୍ଥକ ମନେହୁଏ । ଏପରି ସଂପର୍କର ବିଶେଷତ୍ୱ ହେଲା ଶରୀର ପ୍ରାଣ ମନରେ ପରସ୍ପର ସାନ୍ନିଧ । ଏପରି ସଂପର୍କରେ ସୁଖଦୁଃଖ ଛାଇ ଆଲୁଅ ପରି ପାରି ହୋଇଥାଏ । ସେମାନେ ଏକତ୍ର ତାହା ଭୋଗ କରନ୍ତି । ପ୍ରଭୁଙ୍କ ସାଙ୍ଗରେ ଏପରି ନିବିଡ଼ ସଂପର୍କ ଥିଲେ ସେ ସମ୍ପଦର ସଖା ବିପଦର ବନ୍ଧୁ ନହୋଇ ଅଭିନ୍ନ ଆତ୍ମା ରୂପେ ଅହରହ ପାଖରେ ରହନ୍ତି ତେଣିକି ସୁଖ ଦୁଃଖର ବିଚାର ଏକ ଅଳିକ ପ୍ରଶ୍ନ ।



ପ୍ରତ୍ୟେକ ପ୍ରଭାତ ବିଭୁକୃପାର ଏକ ଅମୂଲ୍ୟ ନୂତନ ଅବଦାନ । ସୂର୍ଯ୍ୟାଲୋକରେ ସ୍ୱଚ୍ଛ ବାୟୁସେବିତ ବିବିଧ ସୁଷମାରେ ପରିଶୋଭିତ ଏ ଦିନଟିକୁ କାଳର ଅକ୍ଷୟ ଭଣ୍ଡାରରୁ ଆମକୁ ଦିଆଯାଏ । ନିଃସର୍ତ୍ତ, ମୁକ୍ତ ସମ୍ଭାବନାମୟ ଏ ସୁଯୋଗ ଆମେ ରାଜପୁତ୍ର ପରି ବିନା ମୂଲ୍ୟରେ ବିନା ପରିଶ୍ରମରେ ଅଯାଚିତ ପାଉ । ଏବଂ ସେହି ବେପରୁଆ ରାଜପୁତ୍ର ପରି ତାକୁ ଅପବ୍ୟୟ କରୁ । ସେ ଯେଉଁ ଅଲଙ୍ଘ୍ୟ ପ୍ରଶାସନର ନିୟମରେ ଯେଉଁଭଳି ଆସିଥିଲା ସେଇ ନିୟମରେ ସେଇଭଳି ଚାଲିଯାଏ । ଆମ ଆୟୁଷର ଜମା ଖାତାରୁ ଦିନଟିଏ

କଟିଯାଏ । ଆମ ଅଲକ୍ଷ୍ୟରେ ଆମେ ଏକ ମହାର୍ଘ ସୁଯୋଗକୁ ହରାଇ ଦେଉ । ଜୀବ ଧର୍ମର ସାଧାରଣ ଗୋଡ଼ି ଗୋଟେଇବାରେ ସମୟ ସରିଯାଏ ।

ଯେତେବେଳେ ଶୂନ୍ୟ ଥାଳିଟି ଧରି ଆମେ ଯାତ୍ରା ଶେଷରେ ଠିଆ ହୋଇଥାଉ ଏ ପୃଥିବୀରେ ଆଉ ମାତ୍ର ଦିନଟିଏ ବଂଚିବାକୁ ବିକଳ ପ୍ରାର୍ଥନା କରୁଥାଉ ସେତେବେଳେ ଦିନ ଦିନ ବର୍ଷ ବର୍ଷର ଅପୂର୍ବ ସମ୍ପଦକୁ କିପରି ଫିଙ୍ଗି ଫୋପାଡ଼ି ଅପବ୍ୟୟ କରିଛୁ ମନେପଡ଼େ କିନ୍ତୁ ଆଉ ସେ ସୁଯୋଗ ଫେରି ଆସେନାହିଁ । ଏହାକୁ ବୋଧହୁଏ ଉପନିଷଦ୍ 'ମହତି ବିନଷ୍ଟି' ବୋଲି ଆଖ୍ୟାତ କରିଛନ୍ତି । ମନୁଷ୍ୟ ଜନ୍ମ ପାଇଥିବ, ଦେବୋପଯୋଗୀ ଶରୀର ମନ ପାଇଥିବ, ବୁଦ୍ଧି ବିବେକରେ ବିବେଚନା କରି ପାରୁଥିବ, ପ୍ରାଣରେ ଭକ୍ତି ପ୍ରେମ ସ୍ନେହ ବାତ୍ସଲ୍ୟର ଐଶ୍ୱର୍ଯ୍ୟ ଗଚ୍ଛିତ ଥିବ, ମନରେ ସଂକଳ୍ପର ସମ୍ଭାବନା ରହିଥିବ ଏବଂ ଏ ନବଦ୍ୱାରପୁରକୁ ଅଧିକାର କରି ସ୍ୱୟଂ ଆତ୍ମାପୁରୁଷ ଚିରଜାଗ୍ରତ ବିରାଜମାନ କରିଥିବେ ଅଥଚ ମନୁଷ୍ୟ ଇତର ପ୍ରାଣୀଟିଏ ପରି କେବଳ ଇତସ୍ତତଃ ପ୍ରବୃତ୍ତି ପଛରେ ଗୋଡ଼େଇ ଚାଲିଥିବ । ସାଧନାମୟ କ୍ଷେତ୍ରକୁ ବ୍ୟର୍ଥ ବିଳାସରେ ଅପବ୍ୟବହାର କରି ଚାଲିଥିବ, ଜାଣି ପାରୁନଥିବ କିପରି ପ୍ରତ୍ୟେକ ପ୍ରଭାତ ନୂତନ ସମ୍ଭାବନା ନେଇ ଆସେ ଏବଂ ବିମୁଖ ହୋଇ ଫେରିଯାଏ – ଏହାଠାରୁ ବଳି ଆଉ କ'ଣ ଅଧିକ ବିଡ଼ମ୍ବନା ଥାଇପାରେ ? ଦିନଟିଏ ଚାଲିଗଲା ଅଥଚ ମୁଁ ପାଦେ ଆଗେଇ ପାରିଲି ନାହିଁ । ପଦେ ପ୍ରାର୍ଥନା କରିପାରିଲି ନାହିଁ । ମୁହୂର୍ତ୍ତକ ପାଇଁ କାହାକୁ ହେଲେ ନିର୍ମଳ ଭଲ ପାଇ ପାରିଲି ନାହିଁ । ଦେଖିପାରିଲି ନାହିଁ ଫୁଟି ଆସୁଥିବା ଫୁଲକୁ, ଦୂର ପାହାଡ଼ର ଶୃଙ୍ଗକୁ, ଶୁଣି ପାରିଲି ନାହିଁ ଅନ୍ୟ ଏକ ଆତ୍ମାର ଭାଷା, ନିଜ ଆତ୍ମାର ଭାଷା; ଅଥଚ ଦିନଟିଏ ସରିଗଲା । ସରିଗଲା ବୋଲି ଅନୁଭବି ଥିଲେ ବି ବଂଚିବା ନିରର୍ଥକ ହୋଇନଥାନ୍ତା । ତା ମଧ୍ୟ ହେଲା ନାହିଁ । ସ୍ୱପ୍ନାବିଷ୍ଟ ହୋଇ ଏକ ଅଜ୍ଞାତ ଅପରିଚିତ ରାଜ୍ୟରେ ଭ୍ରମିଲା ପରି ଜୀବନ ବିତିଗଲା । ପ୍ରତି ମୁହୂର୍ତ୍ତରେ ସେ ମୋ ଆଗରେ ଉଭା ହୋଇଥିଲେ । ମୁଁ ଆଖି ଫିଟେଇ ଦେଇଥିଲେ ଜୀବନ କୃତାର୍ଥ ହୋଇଯାଇଥାନ୍ତା । ପାରିଲି ନାହିଁ । ସେ ବାରଂବାର ମୋ ରୁଦ୍ଧ ଦ୍ୱାରରେ କରାଘାତ କରିକରି ଫେରିଗଲେ ପ୍ରତ୍ୟେକ ଦିନ ପ୍ରତି ମୁହୂର୍ତ୍ତରେ । ଜାଣି ପାରିଲି ନାହିଁ । ତଥାପି ଅକୂପାର କରୁଣାରେ ସେ ମୋ ଚିରା ଅଣ୍ଡିରେ ଅବିରାମ ରତ୍ନଧାର ବର୍ଷି ଚାଲିଛନ୍ତି । ଗୋଟିଏ ମୁହୂର୍ତ୍ତରେ ଐଶ୍ୱର୍ଯକୁ ଧରି ରଖିପାରିଲେ, ସମଗ୍ର ଜୀବନର ଦୀନତା ସାର୍ଥକ ହୋଇଯାନ୍ତା । ଆତ୍ମାପୁରୁଷକୁ ଦେହ ମନ ପ୍ରାଣ ଅର୍ପଣ କରି କହି ହୁଅନ୍ତା, ଏଣିକି ତୁମେ ହିଁ ଅଧୀଶ୍ୱର । ତୁମକୁ ପାଇ ନାହିଁ ବୋଲି ସିନା ଏତେ ଦୀନତା । ଏଣିକି ପ୍ରତ୍ୟେକ ପ୍ରଭାତ ତୁମକୁ ଅର୍ପିତ ଏକ ଉନ୍ମିଳିତ ପଦ୍ମଫୁଲ । ମୁଁ ଏକ କୃତାର୍ଥ ଚେତନା ଏକ ସାର୍ଥକ କ୍ଷେତ୍ର ।



ଅନେକ ସମୟରେ ମନେହୁଏ ସତେବା ଘଟଣା ସବୁ ଆଉ କାହା ନିର୍ଦ୍ଦେଶରେ ଆମ ଜୀବନରେ ଘଟି ଯାଉଛି । ସତେବା ଜୀବନ ଏକ କ୍ଷେତ୍ର । ଏହା ଉପରେ କେତେବେଳେ ଖରା ତ' କେତେବେଳେ ବର୍ଷା । ଯେଉଁ ସବୁ ଉଦ୍ଭିଦ ଉଠନ୍ତି ତାଙ୍କ ଉପରେ ବି କର୍ତ୍ତୃତ୍ୱ ନାହିଁ । ସେମାନେ ତାଙ୍କ ଢ଼ଙ୍ଗରେ ଉଠନ୍ତି ବଢ଼ନ୍ତି । କେହି କେହି ମୂଳରୁ ମଉଳି ଯାଆନ୍ତି ଆଉ କେହି କେହି ବଢ଼ି ଯାନ୍ତି ବୃକ୍ଷାଳ ହୋଇ । ଭୂମି ସେମାନଙ୍କୁ ପାଳିଯାଏ କି ସେ ତା ନିଜ ଧର୍ମରେ ରହିବା ଦ୍ୱାରା ସେମାନେ ପାଳି ହେଇଯାନ୍ତି କହିବା କଠିନ । ମୋଟ ଉପରେ ଖରା ବର୍ଷା ଶୀତ ପାଣି ପବନ ପରି ଏ ଉଦ୍ଭିଦମାନେ ମଧ୍ୟ ଗଢ଼ି ହୋଇଯାନ୍ତି ନିୟନ୍ତ୍ରିତ ହୋଇଯାନ୍ତି ଆଉ କାହା ନିର୍ଦ୍ଦେଶରେ ।

ଏଣୁ ଜୀବନରେ ସୁଖ ଦୁଃଖ ମାନ ଅପମାନ ଆସନ୍ତି ଏବଂ ଯାଆନ୍ତି ସେଥିରେ ବିଚଳିତ ହେବାର କ'ଣ ଅଛି ? କେବଳ ପ୍ରତ୍ୟାଶା ରଖି କାର୍ଯ କଲେ ବିଡ଼ମ୍ବିତ ହେବାକୁ ପଡ଼େ । କାହାଠାରୁ ସମ୍ମାନ ଆଶା କଲାବେଳେ ସେ ସଂପୂର୍ଣ୍ଣ ବିପରୀତ ଆଚରଣ କରେ; ମୁହଁକୁ ଚାହେଁ ନାହିଁ । ଅଥଚ ଅପରିଚିତ କେହି ଅଯାଚିତ ଭାବରେ ଶ୍ରଦ୍ଧା ଅଜାଡ଼ି ଦିଏ । ବଡ଼ ବିଚିତ୍ର ଏ ସଂସାର । ଉଦାସୀନ ପରି ଯାହା ଆସିଲା ତାକୁ ନିର୍ବିକାର ଗ୍ରହଣ କରିପାରିଲେ ହୁଏତ ତାପରୁ ମୁକ୍ତି ମିଳନ୍ତା । କିନ୍ତୁ ତାହା ହେବା କ'ଣ ସହଜ ପଡ଼ିଛି ? ତେବେ ବାରଂବାର ବିଡ଼ମ୍ବିତ ହେବା ପରେ ହୁଏତ ପ୍ରତ୍ୟାଶାର ମାତ୍ରା ଅନେକ କମି ଯାଇପାରେ ଏଣୁ ସେହି ପରିମାଣରେ କିଛି ଉଦାସୀନତା ମଧ୍ୟ ଆସି ଯାଇପାରେ । କିନ୍ତୁ ତୃଷାର୍ତ୍ତ ଅହଂଟିଏ ସବୁବେଳେ ଚାହିଁ ରହିଥାଏ ତାକୁ ପରିତୃପ୍ତ କଲାଭଳି କିଛି ପ୍ରଶଂସା କିଛି ସମ୍ମାନ କିଛି ଯଶ । କିଛି ପାଏ କିଛି ପାଏ ନାହିଁ । ଏଣୁ ସୁଖ ଦୁଃଖ ଭୋଗକରେ ଓ ଭୋଗକରି ଚାଲିଥାଏ ଗୋଟିଏ ଜୀବଦ୍ଦଶା ସରିଯିବା ପର୍ଯ୍ୟନ୍ତ ।



## ୨୪-୨-୯୩

ମାଟିହାଣ୍ଡିଟି ଗଢ଼ା ହୋଇଗଲା ପରେ ତାର ଦୁଇଟି ସମ୍ଭାବନା ଥାଏ । ହୁଏତ ପାଣିରେ ମିଶି ପୁନଶ୍ଚ କର୍ଦ୍ଦମ ହୋଇଯିବ କିମ୍ବା ଅଗ୍ନିରେ ପୋଡ଼ି ଘଟ ହୋଇଯିବ । କଞ୍ଚାହାଣ୍ଡିର ଉପାଦାନରେ ମୃତ୍ତିକା ଥାଏ, ପାଣି ବି ଥାଏ । ତା'ର କର୍ଦ୍ଦମ ଭାବ ତାକୁ ଦୃଢ଼ତା ଦିଏ ନାହିଁ । କର୍ଦ୍ଦମର ପିଣ୍ଡ ଜଳ ଉପାଦାନରୁ ଆଂଶିକ ମୁକ୍ତ ହୋଇ ସ୍ୱତନ୍ତ୍ର ସତ୍ତାରୂପେ ଠିଆ ହୋଇଥାଏ ମାତ୍ର । କିନ୍ତୁ ତା'ର ପ୍ରବୃତ୍ତି ତାକୁ କର୍ଦ୍ଦମ ଅଭିମୁଖୀ ଜଳରେ ବତୁରି ଯିବାର ପ୍ରବଣତାରେ ସୀମିତ ରଖିଥାଏ । ଯେଉଁ କର୍ଦ୍ଦମରୁ ସେ ଉଠି ଆସିଛି, ସେଠାକୁ ଫେରିଯିବାର ଦୁର୍ବଳତା ତା'ର [illegible]ଏ, ପୁଷୁତ୍ୱରୁ ଉଠି ଆସିଥିବା ମଣିଷ ଧରି ।

କିନ୍ତୁ ତା'ର ଅନ୍ୟ ସମ୍ଭାବନା ହେଲା ଅଗ୍ନିରେ ଦଗ୍ଧ ହୋଇ ଶୁଦ୍ଧ ଓ କର୍ଦ୍ଦମମୁକ୍ତ ହେବା । ଅଗ୍ନି ସେ ମାଟିପିଣ୍ଡର ରେଣୁ ରେଣୁରେ ଲୁଚି ରହିଥିବା ସମସ୍ତ ଜଳୀୟ ସତ୍ତାକୁ ବାଷ୍ପୀଭୂତ କରିଦିଏ । ଜଳ ଓ ଅଗ୍ନି ବିପରୀତଧର୍ମୀ ହୋଇଥିବାରୁ ଅଗ୍ନିର ପ୍ରାବଲ୍ୟରେ ଜଳ ନିବାରିତ ହୁଏ, ନିଃଶେଷ ହୁଏ; ଆଲୋକରେ ଅନ୍ଧାର ପରି, ଜ୍ଞାନ ଅଜ୍ଞାନ ପରି, ଦିବ୍ୟରେ ଅଦିବ୍ୟ ପରି । ଜଳ ନିଃଶେଷ ହୋଇଗଲେ ମୃଣ୍ମୟ ପିଣ୍ଡରୁ କର୍ଦ୍ଦମ ଭାବ ସମ୍ପୂର୍ଣ୍ଣ ଅପସାରିତ ହୋଇଯାଏ । ଥରେ ଅଗ୍ନିରେ ଦାହ ହୋଇଯିବାପରେ ଘଟ ଆଉ କଦାପି କର୍ଦ୍ଦମ ହୋଇପାରିବ ନାହିଁ । ତେଣିକି ଜଳରେ ନିମଗ୍ନ ରହି ମଧ୍ୟ ତାହା ଜଳରେ ଅତିସିକ୍ତ ହେବ ନାହିଁ । ଜଳ ଆଉ ତାକୁ ବିଲୀନ କରି ପାରିବ ନାହିଁ । ଅଗ୍ନିରେ ଅର୍ପିତ ଏବଂ ସେଥିରେ ପରିଶୁଦ୍ଧ ଘଟ ମୃଣ୍ମୟ ନିଶ୍ଚୟ କିନ୍ତୁ ରୂପାନ୍ତରିତ, ବିବର୍ତ୍ତିତ ସତ୍ତା ।

ପ୍ରାୟ ସେହିପରି ଦିବ୍ୟଜନନୀଙ୍କ ସବିତାଲୋକ ଆଡ଼କୁ ଉନ୍ମୁଖ ସାଧାରଣ ମଣିଷଟିର ପ୍ରତ୍ୟେକ ରେଣୁରୁ ପଶୁଭାବର କର୍ଦ୍ଦମରୁ ଆଦିମ ଜଳକଣା ସବୁ ବାଷ୍ପୀଭୂତ ହୋଇଯାନ୍ତି । କ୍ରମଶଃ ସବିତା ଅଗ୍ନିରେ ସେ ପରିଶୁଦ୍ଧ ହୋଇଯାଏ । ତା'ର ଉପାଦାନ ବିବର୍ତ୍ତିତ ହୋଇଯାଏ । ଥରେ ଅଗ୍ନିରେ ପାରି ହେଲାପରେ ଆଉ ସେ ଘଟ ପାଇଁ ଜଳଭୟ ନାହିଁ । ସେ ଅଗାଧ ସମୁଦ୍ରରେ ମଧ୍ୟ ନିଜର ସ୍ୱତନ୍ତ୍ର ସତ୍ତା ରକ୍ଷାକରିପାରେ । ତାକୁ ଆଉ କେହି କର୍ଦ୍ଦମରେ ପରିଣତ କରିପାରିବେ ନାହିଁ । ସେ ଭାଙ୍ଗିଯାଇପାରେ କିନ୍ତୁ ତା'ର ପ୍ରତ୍ୟେକ ଅଂଶରେ ସେ

କର୍ଦ୍ଦମକୁ ଜୟ କରି ସାରିଥାଏ । ସେଥିପାଇଁ ଅଗ୍ନିରେ ସମ୍ପୂର୍ଣ୍ଣ ପୋଡ଼ା ଖାଇବାକୁ ସେ ରାଜିହେବାକୁ ପଡ଼ିବ । ତା'ର ମନପ୍ରାଣ ଶରୀରର କୌଣସି ଗୋଟିଏ ଅଣୁ ପରମାଣୁରେ ସୁଦ୍ଧା ଆଉ ପୁରାତନକୁ ଧରି ରଖିବାର ବିବଶତା ନଥିବ । ଅଗ୍ନିରେ ପଶୁକୁ ପ୍ରୋକ୍ଷଣ କରିଦେବା ପରେ ସେହି ଅଗ୍ନିରୁ ହିଁ ଏକ ଶୁଦ୍ଧ ବିବର୍ତ୍ତିତ ସତ୍ତା ନିର୍ଗତ ହେବ । କଞ୍ଚାହାଣ୍ଡି ଏବଂ ପୋଡ଼ା ଖାଇ ଥିବା ହାଣ୍ଡି ଦେଖିବାରେ ଏକା ପରି । କିନ୍ତୁ ସ୍ୱଭାବ ଓ ସ୍ୱଧର୍ମରେ ସଂପୂର୍ଣ୍ଣ ଅଲଗା । ନିମ୍ନମୁଖୀ ଜଳ ନିମ୍ନଭୂମିର ହିଁ ଉପାଦାନ । ସେଥିରେ ଉଭୟଙ୍କର ପରୀକ୍ଷା ହୋଇଯାଏ । ଗୋଟିଏ ବିଲୀନ ହୋଇଯାଏ; ଅନ୍ୟଟି ଅକ୍ଷୁଣ୍ଣ ରହେ । ଅନାସକ୍ତ ଅପରିବର୍ତ୍ତିତ ରହେ ତାର ଦୃଢ଼ତାରେ ତାର ଅଗ୍ନିଶୁଦ୍ଧ ଉପାଦାନରେ ।



## ୨୪-୨-୯୩

ମନ ଏକାଗ୍ର ଅବିଚଳିତ ନରହିଲେ କୌଣସି ବିଷୟରେ ନିବିଷ୍ଟ ହୋଇପାରେ ନାହିଁ । କାମ୍ୟ ଓ ଭୋଗ୍ୟ ବସ୍ତୁକୁ ମନୋଭୂମିରେ ସାକାର କରି ଉପଭୋଗ କରାଯାଏ । କାମନାର ତୀବ୍ରତା କଳ୍ପିତ ଉପଭୋଗକୁ ଶରୀର ସ୍ତରକୁ ମଧ୍ୟ ନେଇ ଆସି ପାରେ । ବାସ୍ତବ ଭୋଗ ସମ୍ଭୋଗ ବେଳେ ଶରୀରରେ ଯେଉଁ ଯେଉଁ ବିକ୍ରିୟା ଲକ୍ଷ୍ୟ କରାଯାଏ, ସେ ସମସ୍ତ ବିକ୍ରିୟା ମନ ଦ୍ୱାରା କଳ୍ପିତ ସମ୍ଭୋଗରେ ମଧ୍ୟ ଦେଖା ଦେଇଥାଏ । ଭୟ, କ୍ରୋଧ, କାମଜନିତ କମ୍ପନ, ଉତ୍ତାପ, ରୋମାଞ୍ଚ ଆଦି ଦୈହିକ ଲକ୍ଷଣ ସବୁ କଳ୍ପିତ ପରିସ୍ଥିତିରୁ ମଧ୍ୟ ଜାତ ହୋଇପାରନ୍ତି । ଏଣୁ ମନ ତାର କ୍ଷୁଧା ମେଣ୍ଟାଇବା ପାଇଁ ଶରୀରକୁ ଉତ୍ତେଜିତ କରେ, ବିନିଯୋଗ କରେ ଏବଂ ଶରୀର ଏକ ପଶୁ ପରି ମନର ଆବେଗକୁ ସ୍ୱେଦ କମ୍ପନ ପୁଲକାଦି କଳ୍ପନାରେ ମଧ୍ୟ ଅନୁଭବ କରେ । ଏଭଳି ଏକ ବ୍ୟବସ୍ଥାର ସୁଯୋଗ ନେଇ ମନ ସ୍ୱେଚ୍ଛାଚାରୀ ହୋଇଯାଏ । ସ୍ୱେଚ୍ଛାଚାରୀ ଅସ୍ଥିର । ଏପରିକି ସବୁଠାରୁ ଅଧିକ ପ୍ରେୟ ଧ୍ୟେୟ ବସ୍ତୁ ଉପରେ ମଧ୍ୟ ସେ ଏକାଗ୍ର ହୋଇପାରେ ନାହିଁ । ସେ ତା'ର ଅକଳ୍ପନୀୟ ବିକଳ୍ପରେ ହିଁ ଭ୍ରମଣ କରୁଥାଏ । ଯୌବନାବସ୍ଥାରେ ଯେଉଁ କାମ ପ୍ରବୃତ୍ତି ଦେଖାଦିଏ ତାହା ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ସବୁଠାରୁ ପ୍ରବଳ ବୋଲି ସ୍ୱୀକାର କରାଯାଇଛି । କିନ୍ତୁ 'ମନୋରମାଂ ସକଳ ଜନ କାମ୍ୟାଂ ବରବଧୂଂ' ପାଖରେ ମଧ୍ୟ ମନ ସ୍ଥିର ରହେ ନାହିଁ । ସେଠାକୁ ବାରମ୍ବାର ହୁଏତ ଫେରିଆସୁଥାଏ କିନ୍ତୁ ବିଚରଣ କରୁଥାଏ ବିକଳ୍ପ ଜଗତ୍‌ରେ । ଭୋଜନପ୍ରିୟ ଲୋକଟିଏ ତାର ସବୁଠାରୁ ପ୍ରିୟ ଖାଦ୍ୟ ଉପରେ ସୁଦ୍ଧା ଏକାଗ୍ର ମନୋନିବେଶ କରିପାରେ ନାହିଁ । କାରଣ ମନର ଲକ୍ଷଣ ହେଲା ଚାଞ୍ଚଲ୍ୟ । ଏଣୁ ଯେତେବେଳେ ଆଧ୍ୟାତ୍ମିକ ସାଧନାରେ ପ୍ରଥମେ ଦିବ୍ୟ ଜନନୀଙ୍କ ପାଖରେ ମନକୁ କେନ୍ଦ୍ରୀଭୂତ କରିବାକୁ ଚେଷ୍ଟାକରାଯାଏ ସେ ଛଟପଟ ହୁଏ । କାରଣ ବିଷୟାଶ୍ରୟୀ ମନ ଦିବ୍ୟ ଜନନୀଙ୍କୁ ବିଷୟ ରୂପେ ସ୍ୱୀକାର କରେ ନାହିଁ । ସେ ତାଙ୍କ ପ୍ରତି ଆକୃଷ୍ଟ ହୁଏନାହିଁ । କୌଣସି ରାତ୍ରିଚର ପକ୍ଷୀଟିକୁ ତା' କୋଟରରୁ ଆଣି ହଠାତ୍ ସୂର୍ଯ୍ୟାଲୋକରେ ଖୋଲି ଧରିଲେ ଯାହା ହୁଏ ପ୍ରାୟ ସେହିପରି । ସେ କାମ୍ୟ ବସ୍ତୁ ଚାହେଁ । ଭୋଗ ସମ୍ଭୋଗ ଚାହେଁ । ଏତେ ବିଶୁଦ୍ଧ ଆଲୋକମୟ ସତ୍ତାରେ ତାହା ସମ୍ଭବ ହୁଏ ନାହିଁ । କିନ୍ତୁ ତାକୁ ବାରମ୍ବାର ଅଭ୍ୟାସ କରାଇଲେ ଦୁରାଚାରୀ ମନ ଶେଷରେ ତା'ର ସମସ୍ତ କାମନାର କର୍ଦ୍ଦମକୁ ନେଇ ଦିବ୍ୟ ଜନନୀଙ୍କର ସାକାର ରୂପକୁ କଳୁଷିତ କରି ପକାଏ । ପରମା ମହେଶ୍ୱରୀଙ୍କ ଅପ୍ରକଟ ବିଭୂତି ପାଖରେ ମନ ପରାଭୂତ ହୋଇ ବିମୁଖ ହୋଇଯାଏ । କିନ୍ତୁ

ଦୈବାତ୍ ସେ ସାକାର ନାରୀ ରୂପ ନେଇ ଆମକୁ ଅନୁଗୃହୀତ କରିଥିବାରୁ ମନ ସେଠାରେ ତାର ଲୌକିକ ଜାନ୍ତବ ଆଚରଣ ପ୍ରକାଶ କରେ । କିମ୍ବା ତାକୁ ଆଦୌ ସ୍ମରଣ ନକରି ତା'ର ସ୍ୱଚ୍ଛନ୍ଦ ବିଳାସ କରୁଥାଏ । ତା'ମାନେ ହୁଏତ ମନ ଏକାଗ୍ର ହେଉନାହିଁ କିମ୍ବା ମା'ଙ୍କୁ ଏକ ଇତର ନାରୀ ରୂପେ କଳ୍ପନା କରୁଛି । ଏ ଜଟିଳ ପରିସ୍ଥିତିରେ କ'ଣ କରାଯାଇପାରେ ? ଏହାର ମୁକାବିଲା କରିବାକୁ ନିଷ୍ଠା ପ୍ରକାଶ ପାଇବା ମାତ୍ରେ ବିପଜ୍ଜନକ ପ୍ରୟାସ ନକରି, ଖୁବ୍ ସହଜ, ସରଳ ଭାବରେ ତାଙ୍କର ବିଭିନ୍ନ ଆଲୋକ ଚିତ୍ରଗୁଡ଼ିକୁ ମୁକ୍ତ ମନରେ ଦେଖାଯାଇପାରେ । ଆମ ଭାଗ୍ୟକୁ ମା'ଙ୍କ ସହସ୍ରେ ଆଲୋକ ଚିତ୍ର ଆମ ପାଇଁ ସହଜ ଲଭ୍ୟ ହୋଇପାରିଛି । କୌଣସି ଏକ ଶୁଭ ମୁହୂର୍ତ୍ତରେ ମା'ଙ୍କ ଗୋଟିଏ ଚିତ୍ର ଦେଖି ଆତ୍ମ ପୁରୁଷ ଚମକି ପଡ଼ନ୍ତି । ମନ ପ୍ରାଣ ଶରୀର ପୁଲକିତ ହୋଇ ଉଠନ୍ତି । ଏଇତ ସେଇ ଯାହାକୁ ସେମାନେ ଖୋଜି ବୁଲୁଥିଲେ । ସେଇ ମୁହୂର୍ତ୍ତରେ ହିଁ ସେ ମା'ଙ୍କ ପ୍ରତି ଶ୍ରଦ୍ଧାଶୀଳ ହୁଏ । ଶ୍ରଦ୍ଧା ହେତୁ ବାରମ୍ବାର ତାଙ୍କ ସାନିଧ୍ୟ ପାଇଁ ଇଚ୍ଛା ପ୍ରକାଶ କରେ । ଏଣୁ ବାରମ୍ବାର ତାଂକୁ ସେଇ ରୂପରେ ସେ କଳ୍ପନା କରେ, କଳ୍ପନା କରିବାକୁ ଭଲପାଏ । ତା'ପରେ ଆସ୍ତେ ଧାରଣା ମନକୁ ଆୟତ୍ତ କରା ଯାଇପାରେ ଏବଂ ଦିବ୍ୟଜନନୀଙ୍କ ପାଖରେ ନିବେଦିତ କରାଯାଇପାରେ । ତେଣିକି ଯାହା ହୁଏ ତାହା ଭକ୍ତ ଭଗବାନଙ୍କ ଅନ୍ତରଙ୍ଗ ବ୍ୟପାର, ସାଧକ ଓ ସାଧ୍ୟ ମଧ୍ୟରେ ଆଭ୍ୟନ୍ତର ସମ୍ପର୍କର ବ୍ୟାପାର । ତେଣିକି ସାଧକ କେତେ ନିମଗ୍ନ ହେଉଛି, କେତେ ତନ୍ମୟ ହୋଇ ପାରୁଛି, କେତେ ପରିମାଣରେ ଜାଗ୍ରତ ସ୍ୱପ୍ନ ସୁଷୁପ୍ତିରେ ତାର ଚେତନା ମାତୃ କରୁଣାରେ ଆଚ୍ଛନ୍ନ ହୋଇ ପାରୁଛି ତାହା କେବଳ ଅନୁଭବ ସାପେକ୍ଷ ।



ଯୋଗମାର୍ଗରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଉ ହେଉ କେତେଗୁଡ଼ିଏ ଦୁର୍ଜ୍ଜୟ ପ୍ରବୃତ୍ତି ବାଟ ଜଗି ଠିଆ ହୋଇଯାନ୍ତି । ସେମାନଙ୍କ ଭିତରୁ ସବୁଠାରୁ ପ୍ରବଳ ଶକ୍ତିଶାଳୀ ହେଉଛି କାମ-ପ୍ରବୃତ୍ତି ବା ଯୌନାଭିଳାଷା । ଏହାର ଉତ୍ସ ନିମ୍ନପ୍ରାଣ ଏବଂ କ୍ଷେତ୍ର ଉପସ୍ଥ । ଏହା ଜୀବଧର୍ମର ଆଦିମତମ ନିୟମ ଯାହା ବଳରେ ମୂଳ ପ୍ରକୃତି ପ୍ରାଣୀ ଜଗତର ଉତ୍ପତ୍ତି ଓ କ୍ରମାନ୍ୱୟତା ରକ୍ଷାକରେ । ଗୋଟାଏ ସମୟରେ ଗଛରୁ ପାଚିଲା ଫଳ ପଡ଼ି ଉର୍ବର କ୍ଷେତ୍ରରେ ବୀଜରୁ ପୁଣି ଗଛର ଉଦ୍ଗମ ହେଲା ଭଳି ପ୍ରାଣୀ ଜଗତରେ ଏହି କ୍ରିୟା ପାଇଁ ଏକ ଅନିବାର୍ଯ୍ୟ ପ୍ରବୃତ୍ତି ସାହାଯ୍ୟ କରିଥାଏ । ଇତର ପ୍ରାଣୀ ମାନଙ୍କର ଏହି ପ୍ରବୃତ୍ତିକୁ ପ୍ରକୃତି ସ୍ୱୟଂ ନିୟନ୍ତ୍ରଣ କରିଥାଏ । କିନ୍ତୁ ବିବେକବାନ୍ ମଣିଷକୁ ଅବାଧ ଛାଡ଼ି ଦିଆଯାଏ । ପ୍ରାପ୍ତବୟସ୍କ ହୋଇଗଲେ ଏହି ପ୍ରବୃତ୍ତି ଅନୁସାରେ ସେ ଚାଳିତ ହୁଏ ସତ, କିନ୍ତୁ ସ୍ୱେଚ୍ଛାରେ । ଏହି ପ୍ରବୃତ୍ତିଟି ତା ଭିତରେ ଅହରହ ଜାଗ୍ରତ ଥାଏ । ପ୍ରବୃତ୍ତି ନ କହି ତାକୁ ଏକ ପ୍ରବଣତା କୁହାଯାଇପାରେ । ବାହାରେ କୌଣସି ଉତ୍ତେଜକ ଉପାଦାନ ଦେଖାଦେଲେ ସେହି ପ୍ରବଣତା ବଶତଃ ପ୍ରବୃତ୍ତି ନିଆଁ ଭଳି ଜଳି ଉଠେ ।

ସାଧନା ମାର୍ଗରେ ଏହାକୁ ସବୁଠାରୁ ବଡ଼ ବାଧକ ବୋଲି ସ୍ୱୀକାର କରାଯାଇଛି । ଏହା ସହିତ ତିନିପ୍ରକାର ବ୍ୟବହାର କରାଯାଇପାରେ । ପ୍ରଥମଟି ହେଲା ଇତର ଜନୋଚିତ । ତାକୁ ଭୋଗ ସମ୍ଭୋଗ ଦ୍ୱାରା ଆପ୍ୟାୟିତ କରିବା । ଏଥିରେ ବିଡ଼ମ୍ବିତ ହେବା ହିଁ ସାର । କାରଣ କାମକୁ "ମହାଶନଃ" ବୋଲି ଗୀତା ଶାସ୍ତ୍ର କହିଛନ୍ତି । ସେ "ଦୁଷ୍ପୁର" । ତାକୁ କେବେ ହେଲେ ସନ୍ତୁଷ୍ଟ କରି ହେବ ନାହିଁ, ଘୃତ ସମିଧରେ ଅଗ୍ନିକୁ ଲିଭାଇଲା ପରି । ଦ୍ୱିତୀୟ ପନ୍ଥା ହେଲା ତାକୁ ବଳ ପ୍ରୟୋଗ କରି ବଶୀଭୂତ କରିବା । ଏଥିରେ ନାନା ପ୍ରକାର

କୃଚ୍ଛ ଓ ହଠାଯୋଗାଦି ଉପାୟ ରହିଛି । କିନ୍ତୁ ଅବଦମିତ କାମନା ସୁଯୋଗ ପାଇବା ମାତ୍ରେ ଆଗ୍ନେୟଗିରିର ଉଦ୍ଗୀରଣ ପରି ବିସ୍ଫୋରିତ ହୁଏ । ତା ବାହାରେ ସମ୍ଭୋଗ ଏବଂ ଦମନ ଭିତରେ ସମାନ ମାତ୍ରାରେ ଯୌନ ଚେତନତା କାର୍ଯ୍ୟ କରିଥାଏ । ସେହି କ୍ରିୟାରେ ହିଁ ଆଚ୍ଛନ୍ନ ରହି ଆଉ ଅଗ୍ରସର ହେବା ସମ୍ଭବ ହୁଏ ନାହିଁ । ଏହା ଏକ ମହାବଳ ବାଘ ପରି । ତା'ର ଆହାର ହୋଇ କେହି କେବେ ତାକୁ ସନ୍ତୁଷ୍ଟ କରି ପାରେନାହିଁ । କିମ୍ବା ତା' ପିଠିରେ ସବାର ହୋଇ କେହି କେବେ ନିଶ୍ଚିନ୍ତ ହୋଇପାରେ ନାହିଁ ।

ଏଣୁ ତୃତୀୟ ପନ୍ଥାଟି ବିଚାରଣୀୟ । ତାହା ହେଲା ଅସମ୍ପୃକ୍ତି । ପ୍ରାଥମିକ ଅବସ୍ଥାରେ ତାହା ଯଦି ସ୍ୱାଭାବିକ ଭାବରେ ଆସୁଛି ତାକୁ କୌଣସି ଗୁରୁତ୍ୱ ନ ଦେବା । ଦୈନିକ ଭୋଜନ ଓ ନିଦ୍ରାପରି କ୍ରିୟା । ତାହା ବାହାରୁ ଆସି ବାହାରକୁ ଚାଲିଗଲା ଭଳି ଏକ ଆଗନ୍ତୁକ ଘଟନା । ତାହା ମନପ୍ରାଣ ଚେତନାକୁ ଅଧିକାର ଓ ଆବିଷ୍ଟ କରିବାକୁ ନଦେବା । ତା'ପରେ ହୁଏତ ଅନେକ ସଂଯତ ଅନ୍ୱେଷଣ ପରେ ତା'ର ସ୍ୱରୂପ ଉପଲବ୍ଧି । ଏହା ପରିଧେୟ ପରି ବ୍ୟବହୃତ ହେଉଥିବା ଶରୀରର ଏକ ମୌଳିକ ଚିହ୍ନ । ସେଥିରେ ଅନ୍ତର ସତ୍ତା ଜଡ଼ିତ ବା ବିଚଳିତ ହେବାର ପ୍ରୟୋଜନ ନାହିଁ । କ୍ରମଶଃ ଅସଂପୃକ୍ତି ହେତୁ ତାହା ଶିଥିଳ ହୋଇଯାଏ ଏବଂ ନିମ୍ନପ୍ରାଣର ଯୌନ ପ୍ରବଣତା ହ୍ରାସ ପାଇଯାଏ । ଅନ୍ତର୍ମୁଖୀ ଚେତନା ଏହି ପ୍ରବଣତାକୁ ପ୍ରଶ୍ରୟ ଦିଏ ନାହିଁ । ଫଳରେ ଏହା ଅବହେଳିତ, ବିସ୍ମୃତ ଏବଂ ପରାଜିତ ହୋଇ ଯାଏ । ପରିଣତ ସାଧକ ଜୀବନରେ ଏହା ଅବାନ୍ତର ହୋଇଯାଏ । ସେ ପ୍ରବୃତ୍ତି ପ୍ରତି ଅନାସକ୍ତି ବା ଆସକ୍ତି କିଛି ରହେନାହିଁ । ମୋଟ ଉପରେ ତାକୁ ଉତ୍ତୀର୍ଣ୍ଣ ହୋଇଗଲେ ତା' ସହିତ କିମ୍ବା ତାର କ୍ରିୟା ସହିତ କୌଣସି ସଂପର୍କ ରହେନାହିଁ ।



**୧୨-୫-୯୩**

ଦିବ୍ୟ ଜନନୀ - ବ୍ୟାକରଣାନୁସାରେ ଦିବ୍ୟା ଜନନୀ ହେବା କଥା କିନ୍ତୁ ସନ୍ଧି ହେଲେ ଦିବ୍ୟଜନନୀ ମଧ୍ୟ ଠିକ୍ । ତେବେ ପ୍ରତ୍ୟେକ ପ୍ରାଣୀ ପାଇଁ ଜଣେ ଗର୍ଭଧାରିଣୀ ରହିବା ଅନିବାର୍ଯ୍ୟ । ବେଳେବେଳେ ମନ ଭିତରେ ପ୍ରଶ୍ନ ଉଦୟ ହୁଏ ଯେ ଦିବ୍ୟଜନନୀକୁ ମା ବୋଲି ସ୍ୱୀକାର କଲାପରେ ଆଉ ଏ ସ୍ଥୂଳ ଜଗତ୍‌ର ଜନୟିତ୍ରୀକୁ ସେ ସମ୍ମାନ ବା ସ୍ୱୀକାରି ଦିଆଯାଇ ପାରିବ କି ? କେହିଜଣେ ପଣ୍ଡିଚେରୀ ଗଲା ପରେ ଘରେ ତାଙ୍କ ମାଙ୍କୁ ଚରମ ଅବହେଳା ପ୍ରଦର୍ଶନ କରିଥିଲେ ବୋଲି ଶୁଣାଯାଏ । ଏହା ଅପରିପକ୍ୱ ବୁଝାମଣାର ଦୃଷ୍ଟାନ୍ତ । ରକ୍ତ ମାଂସ ଶରୀରରେ ଆମେ ଯାହାକୁ ବାଲକୋନିରେ ଦର୍ଶନ କରୁଥିଲୁ ଏବଂ ଦିବ୍ୟଜନନୀ ବୋଲି ସ୍ୱୀକାର କରୁଥିଲୁ ସେ ବସ୍ତୁତଃ ସର୍ବବ୍ୟାପିନୀ ମାତୃଶକ୍ତି । ଉକ୍ତ ବ୍ୟକ୍ତି ଭୁଲିଗଲେ "ଯା ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା" ଯାହାକୁ ସେ ଅବହେଳା କରୁଥିଲେ ପ୍ରକୃତରେ ସେହି ରୂପରେ ଦିବ୍ୟଜନନୀ ତାଙ୍କୁ ଗର୍ଭରେ ଧାରଣ କରି ଜନ୍ମ ଦେଇଛନ୍ତି । ଏଣୁ ମା'ଙ୍କୁ ସର୍ବତ୍ର "ବାସୁଦେବ-ସର୍ବମିତି" ଅର୍ଥରେ ନଦେଖିବା ଯାଏ ମା'ଙ୍କୁ ପ୍ରକୃତରେ କେହି ବୁଝିଛନ୍ତି ବୋଲି କହି ହେବ ନାହିଁ । ବ୍ୟକ୍ତି ଜୀବନରେ ଯାହା ବିଶ୍ୱଗତ, ସାର୍ବଜନୀନ ବ୍ୟାପ୍ତି ମଧ୍ୟରେ ତାହା ଏବଂ ବିଶ୍ୱାତୀତ ଦିବ୍ୟସ୍ଥିତିରେ ମଧ୍ୟ ତାହା । ଏଣୁ individual, universal ଏବଂ Transcendental ସ୍ତରରେ ସେଇ ଏକାମାତ୍ର ଦିବଜନନୀ ଭିନ୍ନ ଭିନ୍ନ ରୂପରେ ଏବଂ ମହିମାରେ ପ୍ରକଟିତ । ନିଜ ଗର୍ଭଧାରିଣୀଙ୍କ ଠାରେ ଦିବ୍ୟଜନନୀଙ୍କୁ ଦେଖି ପାରିବା ହିଁ ସାଧନା ।

## ୨୫-୮-୯୩

ଅପରକୁ ଜାଣିବା ଭାରି ଦୁରୂହ ବ୍ୟାପାର । ତା'ର ପ୍ରଧାନ କାରଣ ହେଲା ଯେ ସେ ଯେପରି ଦେଖାଯାଏ ପ୍ରକୃତରେ ସେ ସେପରି ନୁହେଁ । ତା'ର ସତ୍ତାର ଅପ୍ରକଟ ଅଂଶ ତୁଳନାରେ ପ୍ରକଟ ଅଂଶ ଅତ୍ୟନ୍ତ ନଗଣ୍ୟ । ଅନ୍ୟଜଣକର ବେଶ ପୋଷାକ, ବର୍ଣ୍ଣ, ଆକାର ଅବୟବ ଆଦି ତା'ର ପରିଚୟ ନୁହନ୍ତି । ନାମ, ଠିକଣା, ବୃତ୍ତି ଆଚରଣ ମଧ୍ୟ ତା'ର ପରିଚୟ ନୁହେଁ । ସେ କେତେବେଳେ କିପରି ଦେଖାଯାଏ । କେତେବେଳେ ଆକୃଷ୍ଟ କରେ ତ' ଆଉ କେତେବେଳେ ବିରକ୍ତ କରେ । ଦେଖୁବା ଲୋକର ମାନସିକ ସ୍ଥିତି ଉପରେ ଦୃଶ୍ୟର ପ୍ରଭାବଶୀଳତା କେତେକାଂଶରେ ନିର୍ଭର କରିଥାଏ । ଏଣୁ ଦେଶକାଳ ସହିତ ବ୍ୟକ୍ତି ମଧ୍ୟ ବଦଳି ଚାଲିଥାଏ । ଗୋଟିଏ ରୂପରୁ ଅନ୍ୟରୂପଟି ଭିନ୍ନ । ସେଥିପାଇଁ କୌଣସି ଗୋଟିକୁ ସେ ବୋଲି ଚିହ୍ନଟ କରିବାର ଉପାୟ ନାହିଁ । ଭିନ୍ନ ଭିନ୍ନ ପରିସ୍ଥିତି ଭେଦରେ ତା'ର ଭିନ୍ନ ଭିନ୍ନ ରୂପ ମାନଙ୍କର ସମାହାରକୁ ମଧ୍ୟ ସେ ବୋଲି କହିହେବ ନାହିଁ । ସଦାଚଞ୍ଚଳ ନଦୀଧାର ବହିଯାଉଛି । କୂଳରେ ଠିଆ ହୋଇଥିବା କୌଣସି ଗଛର ଛାଇ ତା' ଉପରେ ପଡୁଛି । ନଦୀ ଜଳଧାର ନୁହେଁ । ଗଛର ଛାଇ ଗଛ ନୁହେଁ । ସେହିପରି ବ୍ୟକ୍ତି ନାମ ନୁହେଁ, ରୂପ ନୁହେଁ ଉଭୟର ସମାହାର ମଧ୍ୟ ନୁହେଁ । ବ୍ୟକ୍ତିଟି କେବଳ ତା'ର ବର୍ତ୍ତମାନ ନୁହେଁ, ସେ ତା'ର ଅତୀତ ଓ ଭବିଷ୍ୟତ ମଧ୍ୟ । ତା'ର ଅତୀତ ବିଷୟରେ ଆଉ ଜଣେ ଜାଣିବାର ଅବକାଶ ନାହିଁ । ସେ ନିଜେ ହୁଏତ ଅଭିଜ୍ଞତା ଓ ଅନୁଭବକୁ ପ୍ରକାଶ କରିପାରେ । କିନ୍ତୁ ଅତୀତର ଶହେରୁ ନବେ ଭାଗ ଅବଚେତନାରେ ପ୍ରବେଶ କରି ସାରିଥାଏ । ବାକି ଦଶଭାଗ ସ୍ମୃତି ଧାରଣ କରି ରଖେ । ଅର୍ଥାତ୍ ଯେ କୋଡ଼ିଏ ବର୍ଷ ବଂଚିଛି ତା'ର ସ୍ମୃତିରେ ଅତି ବେଶି ହେଲେ ମାତ୍ର ଦୁଇ ବର୍ଷ ପରିମିତି ସ୍ମୃତି ସଂଚିତ ରହେ, ବାକି ଅଠର ବର୍ଷ ପରିମିତି ଅନୁଭବ ଅବଚେତନାରେ ବୁଡ଼ିଯାଏ । କୋଡ଼ିଏ ବର୍ଷ ଭିତରେ କୌଣସି ଗୋଟିଏ ହେଲେ ମୁହୂର୍ତ୍ତ ଖାଲିଯାଇ ନାହିଁ । କିନ୍ତୁ ସେ ସମସ୍ତକୁ ମନ ଧାରଣ କରି ପାରେ ନାହିଁ । ଧାରଣ କରିବା ପାଇଁ ସେପରି କିଛି ସ୍ୱାଭାବିକ ପ୍ରାକୃତିକ ବ୍ୟବସ୍ଥା ମଧ୍ୟ ନାହିଁ । ଯାହା ବି ମନେ ଅଛିବୋଲି ସେ ଭାବେ, ତାକୁ କଥାରେ କହିବା ମଧ୍ୟ ସମ୍ଭବ ନୁହେଁ । ଯେତେ ଚେଷ୍ଟା କଲେ ମଧ୍ୟ ଗୋଡ଼ରେ କଣ୍ଟା ଫୁଟିବାର ତୀବ୍ର ଯନ୍ତ୍ରଣାକୁ ଭାଷାରେ ପ୍ରକାଶ କରି ହେବନାହିଁ । ଯଦି ଜଣେ ଅହରହ ତା'ର ଅତୀତକୁ ଭାଷା ମାଧ୍ୟମରେ ପ୍ରକାଶ କରିବାକୁ ଚାହେଁ, ତା' ହେଲେ ଅନ୍ତତଃ ଦୁଇବର୍ଷ ପରିମିତ ଅନୁଭବ ଅନ୍ୟୁନ ଦୁଇବର୍ଷ ଲାଗିଯିବ ଏବଂ ସେ ଦୁଇ ବର୍ଷ ଭିତରେ ପ୍ରତି ମୁହୂର୍ତ୍ତରେ ନୂତନ ଅନୁଭବର ସଙ୍ଘାତ ହୋଇ ଚାଲିଥିବ । ଏଣୁ ଯେହେତୁ ବ୍ୟକ୍ତି ନିଜକୁ ପୂର୍ଣ୍ଣତଃ ପ୍ରକାଶ କରି ପାରିବ ନାହିଁ, ଆଉ ଜଣେ ତାକୁ ଶୁଣି ତା' ବିଷୟରେ ସମ୍ପୂର୍ଣ୍ଣ ଜାଣି ପାରିବ ନାହିଁ । ଅପରର ଅନୁଭବକୁ ଠିକ୍ ବୁଝିବାକୁ ହେଲେ ଅପର ହୋଇଯିବାକୁ ହେବ । ଅପର ସହିତ ଚେତନା ଏକାକାର ହେଲେ ହିଁ ଏହା ସମ୍ଭବ । ଏହା ଅତ୍ୟନ୍ତ ବିରଳ ଯୋଗସିଦ୍ଧ ବ୍ୟାପାର । ଅଥଚ ସେଇ ଅପରକୁ ଆମେ ଜାଣି ଯାଇଛୁ ବୋଲି ଧାରଣା କରି ବସିଥାଉ ।



## ୨୯-୮-୯୩

ଛାଟବନ୍ଧ କେତେ ପ୍ରକାର ଦାହ ରହିଛି ମନପ୍ରାଣ ଶରୀରରେ ଯେଉଁଥିରେ ଦଗ୍ଧୀଭୂତ ହେଉଥାଏ ଜୀବନ । ଅନ୍ୟକୁ ନେଇ ଚଳିବା କେଡ଼େ କଠିନ ସତେ । ସବୁବେଳେ ବିଛିନ୍ନ ହୋଇ ଯିବାର ପ୍ରବଣତା,

ଆଶଙ୍କା ଓ ପ୍ରଲୋଭନ ସହିତ ଏକାଠି ରହିବାର ଅପରିହାର୍ଯତା ମୋହ ଓ ପ୍ରୀତି ବିଚିତ୍ର ଛନ୍ଦରେ ଜୀବନର ସୁଖଦୁଃଖରେ ପ୍ରକାଶ ପାଏ । ଏଇ ଅନ୍ୟ ଜଣକ ହିଁ ଶତ୍ରୁ, ମିତ୍ର ଓ ପ୍ରଭୁ । ଅନ୍ୟ ନ ଥିଲେ ଯୁଦ୍ଧ ସମ୍ଭବ ନୁହେଁ କି ପ୍ରେମ ବି ସମ୍ଭବ ନୁହେଁ । ଅଥଚ ଏ ଅନ୍ୟଟି ଏକ ପ୍ରହେଳିକା । ତାକୁ ଆଜୀବନ ପାଖରେ ପାଇ ବୁଦ୍ଧା ବୁଝିହୁଏ ନାହିଁ । ତାର ଆଚରଣ ଉଚ୍ଚାରଣ, କ୍ରୋଧ, ଈର୍ଷା, ଅସୂୟା, ଅନୁରାଗ ବିରାଗର ଅର୍ଥ କିଛି କିଛି ନିଜକୁ ବୁଝାଇ ଜୀବନ ବିତିଯାଏ । ତାକୁ କିନ୍ତୁ ବୁଝି ହୁଏନାହିଁ । ଅନ୍ୟ ସହିତ ବିରୋଧ ବିଭେଦ କଳହ ସଂଘର୍ଷ ରକ୍ତପାତ କିଛି କିଛି ବୁଝିହୁଏ । ସେଥିରେ ଗୋଟାଏ ପ୍ରକାର ଜାନ୍ତବ ସ୍ୱଚ୍ଛତା ଓ ସରଳତା ଅଛି । ଆଖିରେ ମୁହଁରେ ମାଂସପେଶୀରେ ନଖାଗ୍ରରେ କ୍ରୋଧ, ଶାଣିତ ଅନିବାର୍ଯ୍ୟ କ୍ରୋଧ ପ୍ରଜ୍ୱଳିତ ହେଉଥାଏ । ପରିଣାମକୁ ଦୃଷ୍ଟି ନାହିଁ । କାରଣର ବିଚାର ନାହିଁ । କ୍ରୋଧ ଜଳି ଯାଉଥାଏ ଜାଳି ଯାଉଥାଏ । ଅଗ୍ନି ଲିଭିଗଲା ପରି କ୍ରୋଧ ମଧ୍ୟ ଲିଭିଯାଏ । କେବଳ ଧୂଆଁ ଓ ପାଉଁଶକୁ ନେଇ କିଛି ସମୟ ବାଷ୍ପରୋଧ ହୁଏ । ଆଖିରୁ ପାଣି ଝରିଯାଏ । ତାପରେ କେବଳ ଗୁଡ଼ିଏ ଖାର ନିସ୍ପନ୍ଦ ନଷ୍ଟପ୍ରାଣ ପଡ଼ିରହେ । କ୍ରୋଧରେ ସନ୍ତୋଷ ମିଳେ, ବିଜେତା ଅହଂର ସନ୍ତୋଷ । କ୍ରୋଧରେ ଅନୁତାପ ମଧ୍ୟ ମିଳେ । ଅପରିଣାମଦର୍ଶୀତା ଅନ୍ଧତା ହେତୁ କାହିଁକି ଏପରି କଲି ବୋଲି ପଶ୍ଚାତ୍ତାପ ଆସେ । କିନ୍ତୁ ବୁଝିହୁଏ ନାହିଁ ପ୍ରେମକୁ । ପ୍ରେମ ସହିତ ଈର୍ଷା ପ୍ରେମ ସହିତ ଅଭିମାନ ମାନ ସନ୍ଦେହ, ମିଶି ସେ ଭୂମିକୁ କୁହେଳିକାଛନ୍ନ କରି ଦିଅନ୍ତି । ଜାଣି ହୁଏ ନାହିଁ ପ୍ରେମ ସୁଖ ଦିଏ କି ଦୁଃଖ । ତେବେ ତା'ର ଅନୁପେକ୍ଷ୍ୟ ଆକର୍ଷଣ ହିଁ ତାର ବିଶେଷତ୍ୱ । ସତେବା ପ୍ରେମ ନାମଧେୟ ଏ ବିଚିତ୍ର ସଂପର୍କ ନଥିଲେ ବଂଚିବା ଅସମ୍ଭବ । ତା' ସହିତ ଅନ୍ୟାନ୍ୟ ଛାୟାକଳ୍ପ ଆସି ଘୋର କଷଣ ଦିଅନ୍ତି । ତଥାପି ପ୍ରେମ କାମ୍ୟ । ଯେତେବେଳେ ପ୍ରେମ ବସ୍ତୁ ବା ବ୍ୟକ୍ତିକୁ ଅତିକ୍ରମ କରି ଏକ ପରିବ୍ୟାପ୍ତ ଭାବରୂପ ନିଏ ସେତେବେଳେ ତାର ସ୍ୱରୂପ ପ୍ରକାଶ ପାଏ । ପ୍ରେମର ଶୀତଳ ଶାନ୍ତି ଅନୁଭୂତ ହୁଏ । କୌଣସି ଉତ୍ତାପ କୌଣସି କମ୍ପନ କୌଣସି ଜ୍ୱାଳା ନଥାଇ ଏକ ବିସ୍ତାରର ଅନୁଭବ ହୁଏ । ମନେହୁଏ ସତେବା ଏହିପରି ବ୍ୟାପିଗଲେ ପରମପଦ ପ୍ରାପ୍ତ ହୋଇଯିବ । ବିଶ୍ୱପ୍ରେମ ବୋଧହୁଏ ସେଥିପାଇଁ ରୂପାଶ୍ରୟୀ ନୁହେଁ ।



**୧୨-୯-୯୩**

ଅନ୍ୟ ସହିତ ନିଜକୁ ତୁଳନା କଲେ ପ୍ରତିଦ୍ୱନ୍ଦ୍ୱିତା ଜାତ ହୁଏ । ନିଜ ସହିତ ତୁଳନା କରିପାରିଲେ ଆଧ୍ୟାତ୍ମିକ ବିକାଶର ସମ୍ଭାବନା ଦେଖାଦିଏ । ସାଧକ ଅନ୍ୟ ସହିତ ପ୍ରତିସ୍ପର୍ଦ୍ଧା କରେନାହିଁ । ଅନ୍ୟର ଉଦାହରଣ ଲକ୍ଷ୍ୟ କରେ କିନ୍ତୁ ଅନୁକରଣ କରେନାହିଁ । କାରଣ ତାର ସମସ୍ୟା ତା ଭିତରେ । ପ୍ରତ୍ୟେକ ସାଧକ ପାଇଁ ସମସ୍ୟା ସ୍ୱତନ୍ତ୍ର, ତାର ସାମର୍ଥ୍ୟ ଓ ସମ୍ଭାବନା ମଧ୍ୟ ସ୍ୱତନ୍ତ୍ର । ସେ ଚାରିଟାରୁ ସ୍ନାନ କରି ଅଧଘଣ୍ଟାଏ ଧ୍ୟାନ କରୁଛି ବୋଲି ମୁଁ ତିନିଟାରୁ ଗାଧୋଇ ଘଣ୍ଟାଏ ଆଖିବୁଜି ବସିବାର ଅର୍ଥ କିଛି ନାହିଁ । ସେଥିରେ ବରଂ ଅହଂ ଉତ୍ତେଜିତ ହୁଏ । ପ୍ରାଣ କେନ୍ଦ୍ରରେ ଉତ୍ତାପ ସୃଷ୍ଟି ହୁଏ । ମନରେ ଦୁଶ୍ଚିନ୍ତା ଦେଖାଦିଏ । ଅନ୍ୟର ଦେଖାଦେଖି ଆଚରଣ କରିବା ଅହଂ ତୁଷ୍ଟିର ଏକ ପ୍ରୟାସ-ସେ ଯଦି ଏହା ପାରୁଛି ମୁଁ ମଧ୍ୟ ପାରିବି । ମୁଁ ତାଠାରୁ କିଛି କମ୍ ନୁହେଁ । ଏଥିରେ ଏକ ପ୍ରକାର ଉତ୍ତେଜନା ରହିଛି, ଜ୍ୱାଳା ରହିଛି । ଏହା ଆଧ୍ୟାତ୍ମିକ ମାର୍ଗର ସହାୟକ ନୁହେଁ ।

ଆଧ୍ୟାତ୍ମିକ ସାଧନାରେ ଗଭୀର ଆତ୍ମ ନିରୀକ୍ଷାର ପ୍ରୟୋଜନ ରହିଛି । ପଛକୁ ପାଦେ ଘୁଞ୍ଚି ଯାଇ ନିଜକୁ ଓ ନିଜର ସ୍ଥିତିକୁ ବୁଝିଗଲା ପରେ ଅତ୍ୟନ୍ତ ସର୍ତକତାର ସହିତ ଦୃଢ଼ ସଂକଳ୍ପ ଓ ସମର୍ପଣ ମନୋଭାବ ନେଇ ନିଜକୁ ସଂଶୋଧନ କରିବା ହେଉଛି ସାଧନା । ସାଧନାର ସ୍ତରେ ସ୍ତରେ ନିଜ ସହିତ ନିଜକୁ ତୁଳନା କରି ଅର୍ଥାତ୍ ନିଜର ପୂର୍ବାବସ୍ଥା ସହିତ ପରାବସ୍ଥାର ତୁଳନା କରି ଜାଣି ହୁଏ ଅଗ୍ରଗତି ହେଲା ନା ନାହିଁ । କେଉଁଠି ସ୍ଖଳନ ହେଲା ତ୍ରୁଟି ବିଚ୍ୟୁତି ହେଲା ଅଥବା କେଉଁଠି ଅତିକ୍ରମ କରି ହେଲା । ପୁରୁଣା ସଂସ୍କାରକୁ ପରିହାର କରିହେଲା । ଆଧ୍ୟାତ୍ମିକ ମାର୍ଗ ପାଇଁ ଅଗ୍ରଗତି ଅପେକ୍ଷା ଉର୍ଦ୍ଧ୍ୱଗତି ବେଶୀ ପ୍ରଯୁଜ୍ୟ । ପାହାଡ଼ ଚଢ଼ିଲା ବେଳେ ପ୍ରତି ପଦକ୍ଷେପ ପୂର୍ବାପେକ୍ଷା କଠିନତର । ଅଧିକ ଉଚ୍ଚକୁ ଗଲେ ଅଧିକ ବିସ୍ତାରର ଅନୁଭବ ଆସେ । ସଂକୀର୍ଣ୍ଣତାରୁ ମୁକ୍ତି ମିଳେ । ଏହା ଏକ କ୍ରମାନ୍ୱୟ ବିକାଶ । ସରିଗଲା ବୋଲି କହିହେବ ନାହିଁ । ଶରୀର ମନପ୍ରାଣ ସାଧାରଣ ପ୍ରବୃତ୍ତି ଓ ପ୍ରକୃତିକୁ ନିୟନ୍ତ୍ରଣ କରି କରି ଯେଉଁ ସିଦ୍ଧି ମିଳେ ତାହା ଯୋଗ ସାଧନରେ ମିଳି ପାରିଛି । ପୂର୍ଣ୍ଣଯୋଗରେ ଏକ ସଂପୂର୍ଣ୍ଣ ନୂତନ ସିଦ୍ଧିର ପ୍ରତିଶ୍ରୁତି ରହିଛି । ତାହାହେଲା "ରୂପାନ୍ତରିତ ମନପ୍ରାଣ ଶରୀରରେ ଭଗବତ୍ ପ୍ରାପ୍ତି ।' କଥିତ ଅଛି ଯେ ଶ୍ରୀରାମକୃଷ୍ଣ ପରମହଂସ ଏକଦା ଏକ ମାଟିଘଟକୁ ଗଂଗା କୂଳରେ ବସି ସକାଳୁ ସଂଜ ଯାଏଁ ମାଜୁଥିଲେ । ପଚାରିବାରୁ କହିଲେ ଏ ମାଟିଘଟକୁ ମାଜି ମାଜି ସୁନା କରିବାକୁ ହେବ । ଏଠି ପ୍ରଶ୍ନ ଉଠିପାରେ ଯେ ମାଟିକୁ ଯେତେ ମାଜିଲେ ତାହା ଅଧିକରୁ ଅଧିକ ଚିକ୍କଣ ହୋଇପାରେ । କିଛି ମାତ୍ରାରେ ଉଜ୍ଜଳ ଦିଶିପାରେ କିନ୍ତୁ ତାର ଉପାଦାନ ସେଇ ମାଟି ହୋଇ ରହିଥିବ । ମାଜିବା ଦ୍ୱାରା କଣ ଉପାଦାନ ପରିବର୍ତ୍ତନ ସମ୍ଭବ ? ସେହିପରି ବର୍ତ୍ତମାନ ଅବସ୍ଥାରେ ମଣିଷର ଯେଉଁ ମନପ୍ରାଣ ଶରୀର ରହିଛି ତାକୁ ଯେତେ ମାଜିଲେ ସୁଦ୍ଧା ତାହା ଅତିମାନସକୁ ଧାରଣ କରି ପାରିବ ନାହିଁ । ସେଥିପାଇଁ ଉପାଦାନ ବଦଳିବା ପ୍ରୟୋଜନ । ପ୍ରତ୍ୟେକ କୋଷାଣୁର ଚେତନା ପରିବର୍ତ୍ତିତ ହେବ । ରୂପାନ୍ତର ନୁହେଁ ବରଂ ରୂପାତିକ୍ରମଣ ଘଟିବ । There will be a cellular transformation ଅତଏବ ଏ ଯୋଗ ସାଧନା କେତେ ଦୁରୁହ କେତେ ପରିବ୍ୟାପ୍ତ ଓ କଠିନ ଏଥିରୁ ତାହା ଅନୁମାନ କରାଯାଇପାରେ ।



**୨୯-୯-୯୩**

ଅତୀତ ଓ ଭବିଷ୍ୟତ ଉଭୟ ସ୍ଥିର ଅକଳ୍ପନୀୟ ବ୍ୟାପ୍ତି କିନ୍ତୁ ପ୍ରତି ମୁହୂର୍ତ୍ତରେ ଭବିଷ୍ୟତ ନିମଜ୍ଜିତ ହେଉଥାଏ ଅତୀତରେ । ଏହି ରେଖାଟି ହିଁ ଅସ୍ଥିର କମ୍ପିତ ହେଉଥାଏ ଦୁଇଟି ସମୁଦ୍ରର ଫେନାୟିତ ଆନ୍ଦୋଳିତ ମଧ୍ୟ ରେଖା ପରି । ଏହି ଚିର କମ୍ପିତ ରେଖାଟିକୁ ଆମେ 'ବର୍ତ୍ତମାନ' ବୋଲି ଆଖ୍ୟାତ କରିଥାଉ । ଅତୀତ ଓ ଭବିଷ୍ୟତକୁ ଆମେ ଅନୁମାନରେ କଳ୍ପନା କରିବାକୁ ଚେଷ୍ଟା କରୁ । ବର୍ତ୍ତମାନକୁ ପ୍ରତ୍ୟକ୍ଷ କରୁ ସେଥିରେ ହିଁ ଭସ୍ମୀଭୂତ ହେଉଥାଉ ନିଶ୍ଚିହ୍ନ ହେବାଯାଏ । ଆମେ ହିଁ ସ୍ୱୟଂ ଅତୀତରେ ଏ ମହାପ୍ରବାହର ତାଡ଼ନାରେ ନିମଜ୍ଜିତ ହୋଇ ଚାଲିଥାଉ । ଆମର ହିଁ ଭବିଷ୍ୟତ ଅତୀତରେ ବିଲୀନ ହୋଇ ଚାଲିଥାଏ ।

ଏଣୁ ଯେକୌଣସି ଘଟଣା ପଶ୍ଚାତରେ ସମଗ୍ର ଅତୀତର ପ୍ରସ୍ତୁତି ଏବଂ ସମଗ୍ର ଭବିଷ୍ୟତର ପ୍ରତିଶ୍ରୁତି ନିହିତ ରହିଛି । ସେହି କାରଣରୁ ତାହା ଏକ ବିଶ୍ୱ ଯୋଜନା ଓ ବିଶ୍ୱଛନ୍ଦର ଅପରିହାର୍ଯ୍ୟ ଅଂଗ ହୋଇଯାଏ ।

ସର୍ବପ୍ରଥମେ କ'ଣ ଥିଲା, କହିବା ମଣିଷର ସାଧ୍ୟାତୀତ । ହୁଏତ ଅକଳନୀୟ ଅଚିନ୍ତନୀୟ ବିଶ୍ୱାତ୍ମା ହିଁ ଏକମାତ୍ର ଅଖଣ୍ଡୈକ ବିଦ୍ୟମାନ ଥିଲେ । ବେଦ କହନ୍ତି 'ସ କାମୟତ, ବହୁସ୍ୟାମ୍' ସେ କାମନା କଲେ ଅନେକ ହୋଇଯିବା ପାଇଁ । ସେହି ମୁହୂର୍ତ୍ତରେ ହିଁ ତାଙ୍କ ଇଚ୍ଛା ମୂର୍ତ୍ତିମତୀ ହୋଇ ପରମା ମାହେଶ୍ୱରୀ ରୂପେ ସେ ଦାୟିତ୍ୱ ବହନ କଲେ । କିନ୍ତୁ ସୃଷ୍ଟି ପ୍ରକ୍ରିୟାରେ 'ଉପାଦାନ କାରଣ' ନଥିଲେ କେବଳ 'ନିମିତ୍ତ କାରଣ' ଦ୍ୱାରା ସୃଷ୍ଟି ସମ୍ଭବ ନୁହେଁ । ଯେହେତୁ ସେ ଆଦି ବିନ୍ଦୁରେ ବିଶ୍ୱ ଚୈତନ୍ୟ କେବଳ ବିଦ୍ୟମାନ ଥିଲେ ତଦ୍‌ଭିନ୍ନ ଆଉ କୌଣସି ଉପାଦାନ ଉପଲବ୍ଧ ନଥିଲା । ସେ ସ୍ୱୟଂ ଉପାଦାନ କାରଣ ରୂପେ ନିଜକୁ ହିଁ ଅନେକରେ ବିଭାଜିତ କଲେ । ଏଣୁ ଯାହାକୁ ଆମେ ଜଡ଼ ବୋଲି ଆଖ୍ୟାତ କରିଥାଉ ତାହା ବ୍ରହ୍ମସ୍ୱରୂପ । 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' । ତା' ଗର୍ଭରେ ଚେତନା ସୁପ୍ତ ଅବସ୍ଥାରେ ବିଦ୍ୟମାନ । ବସ୍ତୁବାଦୀ ମାନେ ଅଣିୟାନ୍ ଭୂମିରେ ଚେତନାର ସମ୍ଭାବନାକୁ ଅସ୍ୱୀକାର କରୁ ନାହାନ୍ତି । କିନ୍ତୁ ପ୍ରମାଣ ଅଭାବରେ ସ୍ୱୀକାର ମଧ୍ୟ କରୁନାହାନ୍ତି । କିନ୍ତୁ ଇଲେକ୍ଟ୍ରନ୍‌ମାନଙ୍କର ଦକ୍ଷିଣାବର୍ତ୍ତ କିମ୍ବା ବାମାବର୍ତ୍ତ ଘୂର୍ଣନ କୌଣସି ସଚେତନତା ଦ୍ୱାରା ହେଉଥାଇପାରେ ବୋଲି ସେମାନେ ଅନୁମାନ କରୁଛନ୍ତି ।

ପ୍ରଥମ ଇଚ୍ଛାରେ ହିଁ ସମଗ୍ର ଯୋଜନା ନିହିତ ଅଛି । ଏଣୁ କଣ କିପରି ହେବ ଏବଂ କାଳାନୁକ୍ରମରେ କେତେବେଳେ ହେବ ତାହା ନିର୍ଦ୍ଧାରିତ ହୋଇ ରହିଛି । ତାକୁ କାର୍ଯ୍ୟକାରୀ କରୁଛନ୍ତି ପରମା ମାହେଶ୍ୱରୀ । 'ଯଥା ପୂର୍ବଂ ଅକଳ୍ପୟନ୍ ।' ଏଣୁ ଚେତନାର ବିକାଶ ବା ବିବର୍ତ୍ତନରେ ତାଙ୍କର ଭୂମିକା ଓ ନିଷ୍ପତ୍ତି ଚୂଡ଼ାନ୍ତ । ସେ ସ୍ୱୟଂ କହୁଛନ୍ତି ଯେ ଏକ ନୂତନ ଚେତନାର ଅବତରଣ ଘଟିଛି । ଏବଂ ତାହା ପୃଥିବୀ ପୃଷ୍ଠରେ କାର୍ଯ୍ୟ କରୁଛି । ଏଥିରେ ଅନ୍ୟଥା ଭାବିବାର କିଛି ନାହିଁ । ବରଂ ନିଜକୁ ଧନ୍ୟ ମଣିବାକୁ ହେବ ଯେ ଏଭଳି ଏକ ଅଭୂତପୂର୍ବ ଦେବମୁହୂର୍ତ୍ତରେ ଆମେ ସହଯୋଗୀ ହେବାର ସୁଯୋଗ ଲାଭ କରିଛୁ । ଆମର ସହଯୋଗ ଉପରେ ଦିବ୍ୟ ଶକ୍ତିଙ୍କ କାର୍ଯ୍ୟ ନିର୍ଭରଶୀଳ ନୁହେଁ । ନିମିତ୍ତ ହୋଇ ପାରିଲେ ଧନ୍ୟ ହେବା । ନଚେତ୍ ଆମକୁ ଉପେକ୍ଷା କରି ସେ ତାଙ୍କ କାର୍ଯ୍ୟ କରିଯିବେ 'ଋତେପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ ।' ଆମ ଅନୁଭବକୁ ନ ଆସିବାର କାରଣ ଆମର ମାଧ୍ୟମ ସ୍ୱଚ୍ଛ ଓ ପ୍ରାଞ୍ଜଳ ନୁହେଁ ।

ଅଂଧାର ରାତିରେ ବାତ୍ୟାତାଡ଼ିତ ସମୁଦ୍ରରେ ଦିଗହରା ନୌକାର ଯାତ୍ରୀ ଆମେ । ଆମ ପାଖରେ ଟ୍ରାନ୍‌ଜିଷ୍ଟର ଟିଏ କେବଳ ଆଶ୍ୱାସନା ଦେଉଛି । ଏକ ଦୃଢ଼ ସ୍ୱରରେ ସେ ଘୋଷଣା କରୁଛି ଯେ ରାତି ପାହି ଆସୁଛି । ବାତ୍ୟା ଘୁଞ୍ଚି ଯାଉଛି । ବିଶ୍ୱାସ କର, ତୋର ଭୟ କରିବାର କିଛି ନାହିଁ । ଅବଶ୍ୟ ଏ ତିମିରର ବିନାଶ ଘଟିବ । ଯାହା ଦିବ୍ୟ ଇଚ୍ଛାରେ ସଂକଳ୍ପିତ ହୋଇଚି ତାହା ଅବଶ୍ୟ କାର୍ଯ୍ୟକାରୀ ହେବ ।

ଆମେ ଆମ ଚାରିଆଡ଼େ ଅଭେଦ୍ୟ ଅଂଧାରକୁ ଦେଖି ହତାଶ ହେଉ କିନ୍ତୁ କିଏ ତୁମେ ଏପରି ବାକ୍ୟ ଉଚ୍ଚାରଣ କରୁଛ ? ତୁମେ ତ କେବଳ ଏକ ସ୍ୱର । ତୁମେ ଯାହା କହୁଛ ସେଥିରେ ମୁଁ କିପରି ପ୍ରତ୍ୟୟ କରିବି ।

"ମୁଁ ତୋ ପାଖରେ ଅଛି, ମୋ ଅଧଊର୍ଦ୍ଧ୍ୱରେ ବ୍ୟାପି ରହିଛି । ମୋତେ ବିଶ୍ୱାସ କର ମୁଁ ତୋତେ ପାରି କରିଦେବି । ଦୃଢ଼ ବିଶ୍ୱାସରେ ଜାବୁଡ଼ି ଧରି ବସିରହ । ଧୈର୍ଯ୍ୟ ଧର । ଏଥିରେ ଅଧୀର ହେଲେ କିଛି ମିଳେନାହିଁ ।" ଆମେ ଯଦି ଆଶା କରିଥାଉ ଯେ ଆମର ଅତ୍ୟନ୍ତ ନଗଣ୍ୟ ଅନାନ୍ତରିକ ସହଯୋଗର ଫଳ ସ୍ୱରୂପ ଆମେ ଏ ଜୀବଦ୍ଦଶାରେ ହିଁ ରୂପାନ୍ତରିତ ହୋଇଯିବା ଉଚିତ ତାଠାରୁ ବଳି ଆଉ ହାସ୍ୟାସ୍ପଦ କଥା କଣ

ଥାଇପାରେ । ଯଦି ଏ ବିପୁଳ ଦିବ୍ୟ ଯୋଜନାରେ ସହଯୋଗୀ ହେବାର ସୌଭାଗ୍ୟ ମିଳିଛି ତାହାହିଁ ଯଥେଷ୍ଟ । ଜୀବନବ୍ୟାପୀ ସାଧନାରେ ଯଦି ଗୋଟିଏ ମାତ୍ର ପାଦ ଆଗେଇ ପାରିଛେ ତାହା ଯଥେଷ୍ଟ । କିନ୍ତୁ ସେତିକି ଅନ୍ତତଃ ଉପଲବ୍ଧି ହେବା ଉଚିତ୍ ।

"ଅସ୍ତି ବ୍ରହ୍ମ ଇତି ଚେଦ୍ ବେଦ ପରୋକ୍ଷଜ୍ଞାନମ୍
ଅହମ୍ ବ୍ରହ୍ମ ଇତିଚେଦ୍ ବେଦ ପ୍ରତ୍ୟକ୍ଷ ଜ୍ଞାନମ୍"

ଏଣୁ କିଛି ଅନ୍ତତଃ ପ୍ରତ୍ୟକ୍ଷ ଉପଲବ୍ଧି ହେବା ଆବଶ୍ୟକ । ଆମେ ସର୍ବେଶ୍ୱରୀଙ୍କ ପାଖରେ ସମର୍ପିତ ଏବଂ ଯେତେ ଦୁର୍ବଳ ହେଲେ ମଧ୍ୟ ସାଧନାରତ । ଏତିକି ଉପଲବ୍ଧି ଭିତରେ ବିଶ୍ୱାସ, ନିଷ୍ଠା, ଆନ୍ତରିକତା ଦୃଢ଼ ହୋଇପାରିଲେ ଜୀବନ ଧନ୍ୟ ହୋଇଯିବ ।



## ୧୨-୧୦-୯୩

ଆମକୁ ଯେତେବେଳେ କୁହାଯାଏ All life is yoga ଆମେ ତାକୁ ଦୁଇ ପ୍ରକାର ବୁଝି ଥାଉ । ଗୋଟିଏ ହେଲା ଏ ଯୋଗ ପାଇଁ ସନ୍ନ୍ୟାସ ନେବା ପ୍ରୟୋଜନ ନାହିଁ । ଏଇଠି ଥାଇ ସଂସାର ଭିତରେ ହିଁ ଯୋଗ ସାଧନା କରାଯାଇପାରେ । ଏଣୁ ଖୁବ୍ ସହଜ ଓ ସରଳ । ଅନ୍ୟଟି ହେଲା ଯେ ଆମେ ସାଧାରଣ ଜୀବନରେ ଯାହା ସବୁ ସତ୍ ଅସତ୍ କର୍ମ କରିଥାଉ ସେ ସମସ୍ତ ହେଲା ଯୋଗ । ଏ ଉଭୟ ଭ୍ରମାତ୍ମକ । ଯେଉଁ ବାକ୍ୟଟି ଆମକୁ ଦିଆଯାଇଛି ବୋଧହୁଏ କୌଣସି ଗୁରୁ ଯୋଗ ସମ୍ବନ୍ଧରେ ଏହାଠାରୁ ଆଉ କଠିନତର ଏବଂ ଅଧିକ ବ୍ୟାପକ ବାକ୍ୟ ପ୍ରୟୋଗ କରି ନାହାନ୍ତି । ଏହାର ତାତ୍ପର୍ଯ୍ୟ ବୁଝିବାକୁ ହେଲେ ବୁଝିବାକୁ ହେବ ଯୋଗ କ'ଣ ଏବଂ ସମଗ୍ର ଜୀବନ କହିଲେ କ'ଣ ବୁଝାଏ ।

ସାଧାରଣ ଅର୍ଥରେ ଜୀବନ କହିଲେ ଜୀବ ରୂପେ ବଂଚିବାର ପ୍ରକ୍ରିୟାକୁ ବୁଝାଏ । ଜୀବର କ୍ରିୟା ଜୀବନ । ଏହା ସମୟ ଅନୁକ୍ରମରେ ଗୋଟିଏ ଆଦିବିନ୍ଦୁ ଓ ଗୋଟିଏ ଅନ୍ତବିନ୍ଦୁ ଦ୍ୱାରା ସୀମିତ । ଜରାୟୁରୁ ଜୀବନ ଆରମ୍ଭ ହେଉଥିଲେ ସୁଦ୍ଧା ଭୂମିଷ୍ଠ ହେବା ମୁହୂର୍ତ୍ତରୁ ହିଁ ଜୀବନର ଗଣନା କରାଯାଏ । ସେହିପରି ଶରୀରର ପତନ ମୁହୂର୍ତ୍ତ, ଯାହାକୁ ଆମେ ମୃତ୍ୟୁ କହିଥାଉ, ହେଉଛି ତାର ଅନ୍ତବିନ୍ଦୁ । ଯଦିବା ତାପରେ ମଧ୍ୟ ପ୍ରକ୍ରିୟା ଜାରି ରହିବାର ଅନେକ ତଥ୍ୟ ପ୍ରମାଣ ରହିଛି । ଜୀବନର ଏହି ଆଦି ଓ ଅନ୍ତବିନ୍ଦୁ ମଧ୍ୟରେ ଶୈଶବ କୈଶୋର ଯୌବନ ଓ ଜରା ଅବସ୍ଥା କ୍ରମାନ୍ୱୟରେ ଦେଖାଦେଇଥାଏ । ପ୍ରତ୍ୟେକ ଅବସ୍ଥାର ଅନୁଭବ ତାର ଦୃଷ୍ଟିଭଙ୍ଗୀ ଓ ମାନସିକତା ଅନ୍ୟ ଅବସ୍ଥାଠାରୁ ପୃଥକ୍ । ତଥାପି ଜୀବନର ନିରବଚ୍ଛିନ୍ନତା ଓ କ୍ରମାନ୍ୱୟତା ରହିଛି । ପ୍ରତ୍ୟେକ ଅବସ୍ଥାରେ ବର୍ଷ ମାସ ଦିନ ଦଣ୍ଡ ଭିତରେ ଏପରି ଗୋଟିଏ ମୁହୂର୍ତ୍ତ ନାହିଁ ଯେଉଁଠି ଜୀବନର ଅନୁଭବ ବା କ୍ରିୟା ନାହିଁ । ଶ୍ୱାସକ୍ରିୟାର ବିରାମ ନାହିଁ । ହୃତ୍‌କମ୍ପନର ବିରାମ ନାହିଁ । ଅଣୁପରମାଣୁ ଅହରହ ସଂଚାରିତ ହେବାରେ କ୍ରିୟା ପ୍ରକ୍ରିୟାର ବିରାମ ନାହିଁ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତିନି ପ୍ରକାର ଚେତନାଗତ ଅବସ୍ଥାରେ ଗୋଟିଏ ମୁହୂର୍ତ୍ତ କ୍ରିୟାଶୂନ୍ୟ ନୁହେଁ । "ନହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟ କର୍ମକୃତ୍ ।" ଅହରହ କର୍ମ ପ୍ରବାହ ଚାଲିଛି ଇନ୍ଦ୍ରିୟ ମାଧ୍ୟମରେ ଅହରହ ସଂସାରର ସଂଘାତ ଘଟି ଚାଲିଛି । ମନରେ ପ୍ରାଣରେ

ଶରୀରରେ ସଂଘାତର ତରଙ୍ଗ ସୃଷ୍ଟି ହୋଇ ଚାଲିଛି । ଶରୀରର ପ୍ରତ୍ୟେକ ରକ୍ତକଣାରେ ଶିରାଉପଶିରା ଗ୍ରନ୍ଥି ଉପଗ୍ରନ୍ଥିରେ ସମଗ୍ର ଜୀବନରେ ନିରବଚ୍ଛିନ୍ନ ଭାବରେ ଏ ସଂଘାତର ପ୍ରତିକ୍ରିୟା ହୋଇ ଚାଲିଛି । ପ୍ରତିକ୍ରିୟାର ପ୍ରତିକ୍ରିୟା ହୋଇ ସମୟ ଛନ୍ଦରେ ପ୍ରବାହିତ ହେଉଛି ଜୀବନର ଏକ ଆପାତ ଧାରା । ସେଥିରେ ସ୍ୱପ୍ନ ଓ ସୁଷୁପ୍ତି ଅବସ୍ଥା କଥା ଆମର ପ୍ରାୟ ଅଜ୍ଞାତ । ଜାଗ୍ରତ ଅବସ୍ଥାରେ ମଧ୍ୟ କେବଳ ଶତାଂଶ ଅନୁଭବକୁ ମନ ଅବଧାରଣା କରେ ବାକି ଅନେଶତ ଭାଗ ଅବଚେତନାରେ ଗଚ୍ଛିତ ରହିଥାଏ । ସଚେତନ ରହି ମାତ୍ର ଏକ ଶତାଂଶ କର୍ମ କରାଯାଏ । ବାକି ଅନେଶତ କର୍ମ ମନପ୍ରାଣ ଶରୀର ବିଭିନ୍ନ ଭୂମିରେ ସଂଘଟିତ ହୋଇଥାଏ ସେ ବିଷୟରେ ଆମେ ସଚେତନ ନ ରହି ।

ଯୋଗ ସାଧାରଣ ଅର୍ଥରେ ଆମ ଭିତରେ ଥିବା ବିଭୁସତ୍ତା ବା ଚୈତ୍ୟ ସତ୍ତାକୁ ଆବିଷ୍କାର କରି ତାଙ୍କ ସହିତ ଯୁକ୍ତ ହେବା ଓ ଯୁକ୍ତ ହୋଇ ରହିବା । ଏହା ଯଦି କୌଣସି ଏକ ମୁହୂର୍ତ୍ତରେ ହୋଇଗଲା ସେଇ ମୁହୂର୍ତ୍ତଟି ପାଇଁ ଜୀବନ ଧନ୍ୟ ହୋଇଗଲା । କିନ୍ତୁ କୁହାଯାଉଛି 'ଯୋଗସ୍ଥଃ କୁରୁ କର୍ମାଣି' ଯେ ସେଇ ଯୋଗଯୁକ୍ତ ଅବସ୍ଥାରେ ରହି ସଂସାରର ଯାବତୀୟ କର୍ମ କର । ତା'ର ମାନେ ପ୍ରତ୍ୟେକ ସଚେତନ ଅଚେତନ ଓ ଅବଚେତନ ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରତ୍ୟେକ କୋଷାଣୁର କ୍ରିୟା ପ୍ରତିକ୍ରିୟାକୁ ଯୋଗାଗ୍ନିରେ ଦୀପିତ କର । ଏପରି ଗୋଟିଏ ମୁହୂର୍ତ୍ତ ନ ରହୁ ଯେତେବେଳେ ମନ ପ୍ରାଣ ଶରୀରର କୌଣସି କେନ୍ଦ୍ରରେ ଚେତନା ଯୋଗଯୁକ୍ତ ନୁହେଁ । ସମଗ୍ର ଜୀବନର ପରିବ୍ୟାପ୍ତି ଓ ତାର ଗଭୀରତାକୁ ଆଚ୍ଛନ୍ନ କରି ଯୋଗ ସମପରିବ୍ୟାପ୍ତ ଓ ଗଭୀର ହେଉ । ତା'ହେଲେ ବା ହୋଇପାରିଲେ, All life is yoga ବୋଲି କହିହେବ । ଜୀବନ୍ମୁକ୍ତ ହୋଇ ଜୀବନ ବଂଚିବାଯୋଗଯୁକ୍ତ ହୋଇ ସଂସାରକୁ ସ୍ୱୀକାର କରିବା, ଜୀବନର ଆଦି କର୍ଦ୍ଦମରୁ ବିଶାଳତମ ଓ ଶୁଭ୍ରତମ ମନ ପର୍ଯ୍ୟନ୍ତ ସମସ୍ତ ବିସ୍ତାରକୁ ଯୋଗାଚ୍ଛନ୍ନ କରିବା ଏହାର ନିକଟତମ ବାଚିକ ଅର୍ଥ । କିନ୍ତୁ ପ୍ରକୃତରେ All life is yoga କହିଲେ କ'ଣ ବୁଝାଏ ତାହା କେବଳ ଅନୁଭବ ସାପେକ୍ଷ୍ୟ ।



ଜୀବନରେ ପ୍ରଗତିର ସମାପ୍ତି ଘଟିଲେ ବାର୍ଦ୍ଧକ୍ୟ ଆସିଗଲା ବୋଲି ଜଣା ପଡ଼ିଯାଏ । ଗଛଟିଏ ବଂଚିଥିବା ପର୍ଯ୍ୟନ୍ତ ନୂଆପତ୍ର ପକାଉଥାଏ । ଏହା ହିଁ ତାର ବଂଚି ରହିଥିବାର ପ୍ରମାଣ । ସେଥିପାଇଁ ଗଛ ଶିଖ ଆଡୁ ହିଁ ମରି ଆସେ । ନୂଆପତ୍ର ଉନ୍ମେଷର ପ୍ରତୀକ । ଜୀବନ ଚିରକାଳ ଉନ୍ମେଷିତ ହେଉଥାଏ । ଉନ୍ମେଷ ନହେବା ହିଁ ଜଡ଼ତା, ବାର୍ଦ୍ଧକ୍ୟ ଓ ମୃତ୍ୟୁ । ଜୀବନରେ ଯେତେବେଳେ ଅନୁଭବ ହୁଏ ଯେ ଯାହା କରିବାର ଥିଲା ସେ ସମସ୍ତ ହୋଇ ସାରିଛି ଆଉ କିଛି କରିବାର ନାହିଁ, ନୂତନ ଦିଗ୍‌ବଳୟ ଦିଶୁନାହିଁ, ନୂତନ ସ୍ୱପ୍ନ, ନୂତନ ସମ୍ଭାବନା ଦିଶୁନାହିଁ ସେତିକିବେଳେ ସ୍ଥାଣୁତ୍ୱ ଗ୍ରାସ କରିଯାଏ । ବୟସ ବାର୍ଦ୍ଧକ୍ୟର ପରିମାପକ ନୁହେଁ । ଜଣେ ଶତାୟୁ ବ୍ୟକ୍ତି ଯଦି ନିଜକୁ ଅତିକ୍ରମ କରିବାକୁ ଆହୁରି ବିକଶିତ ହେବାକୁ ନୂଆପତ୍ର ପକାଇବାକୁ ଇଚ୍ଛା ଓ ପ୍ରୟାସ କରିପାରେ, ଆଉ କିଛି କରିବା ଓ ହେବାରେ ସ୍ୱପ୍ନ ବିଭୋର ରହିପାରେ, ଭବିଷ୍ୟତକୁ ସହଜ ଓ ସ୍ୱାଭାବିକ ଭାବରେ ପାଦ ବଢ଼ାଇ ପାରେ ତାହେଲେ ତାକୁ ବୃଦ୍ଧ କୁହାଯାଇ ପାରିବ ନାହିଁ । କିନ୍ତୁ ସ୍ୱତଃ ବିକଶିତ ହେବା ଏବଂ ବିକଶିତ ହେବାକୁ ପ୍ରୟାସ କରିବା ଏକାକଥା ନୁହେଁ । ଶିଶୁଟିଏ ସ୍ୱତଃ ବିକଶିତ ହେଉଥାଏ ମନ ପ୍ରାଣ ଶରୀରରେ । ଜାଣିପାରେ ନାହିଁ ଯେ ସେ ବିକଶିତ ହେଉଛି । ସେହିପରି ଜଣେ ପରିଣତ ବୟସରେ

ସୁଦ୍ଧା ସ୍ୱାଭାବିକ ଭାବରେ ବିକଶିତ ହୋଇପାରେ । ସତୁରୀ ବର୍ଷରେ ବେହେଲା ବାଦନ ଶିଖିପାରେ, ପାହାଡ଼ ଚିତ୍ର ଆଙ୍କିପାରେ । ଅବଶ୍ୟ ଶରୀରର ଜଡ଼ଧର୍ମ ତାକୁ କିଛି ପରିମାଣରେ ବିବଶ କରିବା ସ୍ୱାଭାବିକ । ଶରୀରର ତ୍ୱକ୍ ମାଂସ ରୁଧିରାସ୍ଥି ସ୍ନାୟୁମଣ୍ଡଳ ସଚେତନ, ସକ୍ରିୟ ରହିବା ସମ୍ଭବ ନ ହୋଇପାରେ । ତଥାପି ଯଦି ମନପ୍ରାଣ ଶରୀର ସମନ୍ୱୟରେ କେବଳ ମନ ଅପରାହତ ରହେ ତେବେ ମଧ୍ୟ ଜଣେ ତରୁଣ ରହିପାରେ । ଶରୀର ସେଥିରେ ସହଯୋଗ ନ କଲେ ସୁଦ୍ଧା ବାଧା ସୃଷ୍ଟି କରିପାରେ ନାହିଁ ।

ସେଥିପାଇଁ କୁହାଯାଇଛି ଚରୈ ବୈତି ଚରୈ ବୈତି । ଅର୍ଥାତ୍ ଯେଉଁ ମାର୍ଗରେ ଏତେକାଳ ଆସିଛି ସେଥିରେ ଅହରହ ଶରୀରର ପତନ ପର୍ଯ୍ୟନ୍ତ ଜଣେ ଚାଲିପାରେ । ସେଭଳି ବ୍ୟକ୍ତିର ପତନ ହୁଏ ପରାଜୟ ନୁହେଁ ।



## ୨୫-୩-୯୪

"ମୁଁ ଅନବରତ ତୋ ପାଖେ ପାଖେ ଅଛି ।" ଏଭଳି ଗଭୀର ଆତ୍ମୀୟ ପ୍ରତିଶ୍ରୁତି ଆଉ କିଏ ଦେଇପାରେ ? ଅନବରତ କହିଲେ ମୋର ସମସ୍ତ ଆଲୋକିତ ଓ ମଳିନ ମୁହୂର୍ତ୍ତ ମାନଙ୍କରେ ମୋର କ୍ଲେଦ କର୍ଦ୍ଦମ ସତ୍ତ୍ୱେ ମୋର ପାଖେ ପାଖେ ସେ ଅଛନ୍ତି ବୋଲି ବୁଝାଉଛି । ମୁଁ ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ଅବସ୍ଥାରେ ମୋର ବହିର୍ମୁଖୀ ଇନ୍ଦ୍ରିୟ ଦ୍ୱାର ଦେଇ ବିଷୟପାନ କରୁଥାଏ । ମୋର ପ୍ରାଣ ଉଦ୍‌ବେଳିତ, ଶରୀର ଉତ୍ତେଜିତ ଓ ମନ ଆନ୍ଦୋଳିତ ହେଉଥାଏ । ଅସ୍ଥିର ଭୂମିରେ କିଭଳି ବା ତାଙ୍କର ବିମ୍ବପାତ ହୋଇପାରେ ? ସେଥିପାଇଁ ମୁଁ ତାଙ୍କ ଉପସ୍ଥିତି ଅନୁଭବ କରିପାରେ ନାହିଁ । ସମୁଦ୍ର ବେଳାରେ ବାଲିଖେଳରେ ମାତିଥିବା ବାଳୁତ ଯେପରି ଭୁଲିଯାଏ ଯେ ତା ପାଖେ ପାଖେ ତା ଉପରେ ଦୃଷ୍ଟି ନିବଦ୍ଧ ରଖି ମମତାମୟୀ ମା ବସି ରହିଛି । ସେ ଭୁଲିଯାଏ ଯେ ଅପାର ସମୁଦ୍ର ତା ପାଖରେ ଲୀଳାୟିତ ହେଉଛି । ତାର ଅନନ୍ତ ଗର୍ଭରୁ ଢେଉ ପରେ ଢେଉ ଉଠି ଆସି ବେଳାଭୂମିରେ ବିକୀର୍ଣ୍ଣ ହୋଇ ପଡୁଛନ୍ତି । ଯେକୌଣସି ମୁହୂର୍ତ୍ତରେ ତା ବାଲିଘରକୁ ସେ ସାଉଁଟି ନେଇ ଯାଇପାରେ । ସେତିକିବେଳେ ସେ କାତର ହୋଇ କାନ୍ଦି ଉଠିଲେ ମା ତାକୁ ତୋଳିନିଏ । ବୁଝେଇ ଦିଏ ବାଲିଘରର ଅର୍ଥ ଓ ସମୁଦ୍ର ଢେଉର ଧର୍ମ । ବିଚଳିତ ବାଳୁତ ସ୍ନେହସିକ୍ତ ହୋଇ ବାଲିଘର କଥା ଭୁଲିଯାଏ । କିନ୍ତୁ ପୁଣି ଆଉ ଗୋଟାଏ କ'ଣ ଦେଖି ସେଥିରେ ମାତିଯାଏ ଏବଂ ମା'କୁ ଭୁଲିଯାଏ ।

ଏଥିରେ ବାଳୁତକୁ ଦୋଷ ଦେଇ ଲାଭ କଣ ? ତାର ମାନସିକତା ତାର ଚିତ୍ତ ଚାଂଚଲ୍ୟ, ତାର ଅବୋଧତା ତାର ସ୍ୱାଭାବିକ ଲକ୍ଷଣ । ସେହିପରି ଅଜିତେନ୍ଦ୍ରିୟ ଅପରିପକ୍ୱ, ସାଧାରଣ ଚେତନାର ମଣିଷ । ସେ ବିଚରା ସଂସାରର ଆବରଣ ବିକ୍ଷେପ ଓ ସଂଘାତକୁ ବୁଝିପାରେ ନାହିଁ । କାରଣ ସେ ସେଥିରେ ନିମଗ୍ନ ରହିଥାଏ । ସେ କେମିତି Divine ଙ୍କ ଉପସ୍ଥିତି ଅନୁଭବ କରିବ ?

ପ୍ରଥମେ ସେ ସେଇ ପ୍ରତିଶ୍ରୁତି ବାକ୍ୟଟିକୁ ମନନ କରିବ । ସତେ କଣ ଦିବ୍ୟ ଜନନୀ ମୋ ଭଳି ଅକିଂଚନର ପାଖେ ପାଖେ ରହିଛନ୍ତି ? ଅବିଶ୍ୱାସ, ସନ୍ଦେହ ଦୂର ହୋଇଯିବ କେବଳ ସେ ଅଭୟ ଦାନ

କରୁଥିବା ପ୍ରତିଶ୍ରୁତିରେ । ସେ ସ୍ୱୟଂ କହୁଛନ୍ତି ଯେତେବେଳେ, ମୁଁ କାଷ୍ଠ ପାଷାଣ ପରି ତାଙ୍କୁ ଅନୁଭବ କରିପାରୁ ନଥିଲେ ସୁଦ୍ଧା ସେ ଅଛନ୍ତି । ଦେଖିଥିବା ଲୋକେ ବି କହିଛନ୍ତି "ଅସ୍ତି ଭାତି" ସେ ଅଛନ୍ତି, ତାଙ୍କଲୀଳାମାନ ବିଦ୍ୟମାନ ଅଛନ୍ତି ।

ଅବିଶ୍ୱାସ ଓ ସନ୍ଦେହର ଅବସାନ ପରେ ହୁଏତ ଆସିପାରେ ଏକ ଉଲ୍ଲାସ, ଏକ ବିସ୍ମୟାନନ୍ଦ କିମ୍ବା ଏକ ପ୍ରକାର ସଂକୋଚ, ମରି ମରି ଭାବ । ବିସ୍ମୟ ଓ ଉଲ୍ଲାସ ଏଥିପାଇଁ ଯେ "ଅହୋଭାଗ୍ୟ, ପ୍ରଭୁ ମୋ ପାଖେ ପାଖେ ରହିଛନ୍ତି । ମୁଁ ଏକାକୀ ନୁହେଁ । ଅସହାୟ ନୁହେଁ, ଦୁର୍ବଳ ହତଭାଗ୍ୟ ଅରକ୍ଷିତ ନୁହେଁ । ମୁଁ ସଂରକ୍ଷିତ, ଦିବ୍ୟ ବଳୟରେଆବୃତ, ବିପଦ୍ ମୁକ୍ତ, ପରମ ସୌଭାଗ୍ୟବନ୍ତ ।" ସଂକୋଚ ଓ ମରି ମରି ଭାବ ଏଇଥିପାଇଁ ଯେ "ଓଃ କି କୁତ୍ସିତ ଅପରିଚ୍ଛିନ୍ନ ମୋର ମନୋଭୂମି, କିପରି ଜାନ୍ତବ ଉଲଗ୍ନ ସମ୍ଭୋଗାକୁଳ ମୋରପ୍ରାଣ । କିପରି ଲୋମଶ, ସ୍ୱେଦ କ୍ଳେଦାକ୍ତ, ପୁତିଗନ୍ଧମୟ ମୋର ମେଦ ମାଂସ ଅସ୍ଥି ଶୋଣିତ ଓ ସ୍ନାୟୁର ସମାହାର ଏ ଦେହ । ମୁଁ ମଣିଷ ନାମଧେୟ ଜନ୍ତୁଟିଏ କେବଳ । ମନରେ ପ୍ରାଣରେ ଶରୀରରେ ମୋର ଆଚରଣ ବିଲକ୍ଷଣ ପ୍ରକାଶ ପାଏ ଅନ୍ଧାରରେ । ମା କଣ ସେତେବେଳେ ମଧ ମୋ ପାଖରେ ଉଭା ହୋଇ ରହିଥାନ୍ତି ? ଓଃ, ଧିକ୍ ଧିକ୍ ମୋତେ, ମୁଁ କଣ ଏତେ ଅବାରିତ କରୁଣାର ଯୋଗ୍ୟ ?"

ଆତ୍ମଧିକ୍କାର ଆସେ ଆତ୍ମ ବିଶ୍ଳେଷଣର । ତାହା ଏକ ପ୍ରାଥମିକ ସଚେତନାର ଲକ୍ଷଣ । ଏଇ 'ମରି ମରି' ଭାବରେ ଆଖିରୁ ଲୁହ ଝରିଯାଏ । କୃତଜ୍ଞତାରେ ସତ୍ତା ଭରି ଯାଏ, ଭାଷା ନ ଥାଏ ତାଙ୍କୁ ପ୍ରକାଶ କରିବା ପାଇଁ । ସାହସ ନଥାଏ ଆଖିତୋଳି ମାଙ୍କୁ ଚାହିଁ ଦେବା ପାଇଁ । ସମଗ୍ର ସତ୍ତା ତରଳି ଯାଉଥାଏ କେବଳ ଅଶ୍ରୁରେ । ଏହି ଅଶ୍ରୁରେ ଆତ୍ମାପୁରୁଷ ଅଭିଷିକ୍ତ ହୁଅନ୍ତି । ଚେତନା କମ୍ପିତ ହୁଏ । ପ୍ରସାରିତ ହୁଏ । ଭିତରେ ପଦ୍ମକଢ଼ ପାଖୁଡ଼ା ମେଲିଯାଏ । ମନ ପ୍ରାଣ ଶରୀର ଧୋଇ ଧାଇ ହୋଇ କରୁଣା ଯୋଗ୍ୟ ହୋଇଯାଏ । ଗ୍ଳାନି ଧୋଇ ହୋଇଯାଏ । ସେତିକିବେଳେ ହଠାତ୍ ବିଦ୍ୟୁତ୍‌ର ସ୍ପର୍ଶ ହେଲା ପରି ସମଗ୍ର ସତ୍ତା କଂପିତ ହୋଇ ଅନୁଭବ କରେ ଯେ ସେ ସ୍ୱୟଂ ମୋର ସମଗ୍ର କ୍ଳେଦ କର୍ଦ୍ଦମକୁ ପୋଛି ଦେଉଛନ୍ତି । କର୍ଦ୍ଦମରେ ଆପାଦମସ୍ତକ ବୁଡ଼ି ରହିଥିବା ମଣିଷଟି ଚେଷ୍ଟାକଲେ ସୁଦ୍ଧା ନିଜ ଦେହର କର୍ଦ୍ଦମକୁ ପୋଛି ପାରିବ ନାହିଁ । ପୋଛିବା କ୍ରିୟାରେ କର୍ଦ୍ଦମର ନୂଆ ନୂଆ ପ୍ରଲେପରେ ହିଁ ଆଚ୍ଛାଦିତ ହୋଇଯିବ । ଏଣୁ ଅନନ୍ତ କରୁଣାରେସେ ହିଁ ନବୋଦିତ ସୂର୍ଯ୍ୟ ଅଂଧାରକୁ ଅପସାରିତ କଲାପରି ତାଙ୍କ ଦିବ୍ୟ ନିଷ୍କଳ ସ୍ପର୍ଶରେ ସମସ୍ତ କଳୁଷକୁ ଦୂର କରିଦିଅନ୍ତି ।

ଅନାବୃତ, ମୁକ୍ତ ସୁକୁମାର ନବଜନ୍ମିତ କଳେବର ତେଣିକି ପ୍ରତ୍ୟେକ ଲୋମକୂପରେ ଦିବ୍ୟସତ୍ତାକୁ ଅନୁଭବ କରେ । ସୁରଭିତ ପବନରେ, ଫୁଟିଲା ଫୁଲ, ପତ୍ର କଢ଼ରେ, ଜଳ ସ୍ଥଳ ଆକାଶରେ, ମେଘରେ, ମନ୍ଦରରେ, ପଶୁ ପକ୍ଷୀ ମଣିଷର ବିବିଧ ରୂପରେ, ବନାନୀ, କାନ୍ତାର ଉପତ୍ୟକାରେ ସେ ଅପୂର୍ବ ଶୋଭା ଆବିଷ୍କାର କରେ । ଉର୍ଣ୍ଣନାଭ ତନ୍ତୁରେ ବୁଢ଼ିଆଣିର ପଦପାତ ଠାରୁ ମନ୍ଦ୍ରପାଦ ପର୍ଯ୍ୟନ୍ତ, ବାରିପାତ ଠାରୁ ଝର୍ଝର ପ୍ରପାତ ପର୍ଯ୍ୟନ୍ତ ନାନା ସ୍ୱର, ସ୍ୱନ, ଶବ୍ଦ, ଛନ୍ଦ, ମୂର୍ଚ୍ଛନା ତାକୁ ବିହ୍ୱଳ କରେ । ରୂପ ରସଗନ୍ଧ ସ୍ପର୍ଶ ସ୍ୱାଦରେ ସେ ନୂତନ ଅମୃତର ସନ୍ଧାନ ପାଏ ।

ତାପରେ ଏ ସମସ୍ତ ଏକ ନିର୍ଦ୍ଦିଷ୍ଟ, ଅବଧାରିତ ମୁହୂର୍ତ୍ତରେ ଦିବ୍ୟ ସାର୍ଥକତା ଲାଭ କରନ୍ତି । ତାର ଜାଗ୍ରତ ଚେତନା, ତାର ବହିର୍ମୁଖୀ ଚୈତ୍ୟ ପୁରୁଷ ହଠାତ୍ ଅନୁଭବ କରନ୍ତି ଯେ ବନ୍ଧୁପଣେ ଯେ ଚାହିଁ ହସି ଦେଉଛି, ସଂବେଦନାରେ ପିଠି ଆଉଁସି ଦେଉଛି ସେ ସେଇ । ଯେଉଁ ଅପରିଚିତ ଡାକ ନଇଁ ଆସି ମୁଣ୍ଡ ଛୁଇଁ ଯାଉଛି

ସେ ସେଇ । ଦୂର ଦିଗ୍‌ବଳୟରୁ ଅଜଣା ପକ୍ଷୀର ଡାକ ତାର । ନିଶାର୍ଦ୍ଧର ଝିଲ୍ଲୀ ସ୍ୱନ ତାର । ଯେ ପାଖରେ ଦୂରରେ ତାଙ୍କୁ ଘେରି ରହିଛନ୍ତି ସେ ସମସ୍ତ ସେ । ଯେଉଁ ଛାତ ଆବୋରି ରଖିଛି ସେ ତାର ଅଭୟମୁଦ୍ରା । ଯେଉଁ ଆସନ ତାଙ୍କୁ ବହନ କରେ ଯେଉଁ ବିଛଣା ତାଙ୍କୁ ଶୁଆଇ ଦିଏ ସେ ସବୁ ତାଙ୍କର ହିଁ ପ୍ରକାଶ ।

ଏଭଳି ମହାତ୍ମାଙ୍କ ପାଇଁ ବାସୁଦେବ ସର୍ବମିତି ଭଳି ସର୍ବତ୍ର ଜଗଜ୍ଜନନୀ ବିରାଜମାନ ହୋଇଯାନ୍ତି । "ମୁଁ ଅନବରତ ତୋ ପାଖେ ପାଖେ ଅଛି" ପ୍ରତ୍ୟକ୍ଷ ଅନୁଭବରେ ପରିଣତ ହୋଇଯାଏ । ଏଭଳି ବିରଳ ସୌଭାଗ୍ୟର ଅଧିକାରୀଙ୍କ ପାଇଁ ଏ ପ୍ରତିଶ୍ରୁତି ଏକ ଆମନ୍ତ୍ରଣ । ଅନ୍ୟମାନଙ୍କ ପାଇଁ ଏହା ଏକ ଦିବ୍ୟ ସମ୍ଭାବନା, ଏକ ଭାସ୍ୱର ଉନ୍ମୀଳନ ।



ଚେତନାରେ ନିଶ୍ଚେତନାର ଲକ୍ଷଣ ହେଉଛି ନିଦ୍ରା । ନିଦ୍ରାବସ୍ଥାରେ ଚେତନ ବ୍ୟକ୍ତି ଅଚେତନ ପଡିରହେ । ଜଡ଼ ଚେତନ ମଧ୍ୟରେବାହ୍ୟ ଆଚରଣରୁ କୌଣସି ତାରତମ୍ୟ ନଥାଏ । ଚେତନାର କ୍ରମବିକାଶରେ ଯେପରି ଏ ପର୍ଯ୍ୟନ୍ତ ପାରି ହୋଇ ଆସିଥିବା ସମସ୍ତ ପର୍ଯ୍ୟାୟ ସୂକ୍ଷ୍ମ ରୂପରେ ମଣିଷ ଭିତରେ ଧାରିତ ହୋଇରହିଛି, ସେହିପରି ଅଚେତନା ମଧ୍ୟ ନିଦ୍ରା ରୂପରେ ବୋଧହୁଏ ତା ସହିତ ଜଡ଼ିତ ହୋଇ ରହିଛି । ଯୋଗ ମାଧ୍ୟମରେ ନିଦ୍ରା ଉପରେ ବିଜୟ ପ୍ରାପ୍ତ ହେବା ବୋଧହୁଏ ଚିର ଜାଗ୍ରତ ବିଶ୍ୱ ଚୈତନ୍ୟର ନିକଟତର ହେବା । ନିଦ୍ରା ଜଡ଼ତାର ପରିପ୍ରକାଶ । ଜଡ଼ତା କେବଳ ଶରୀରର ନୁହେଁ ଏହା ମନ ପ୍ରାଣକୁ ମଧ୍ୟ ଆଚ୍ଛନ୍ନ କରି ରଖିପାରେ । ଯାହା ଗତିଶୀଳତା ବା Dynamism କୁ ସ୍ୱୀକାର କରେନାହିଁ ତାହା ଜଡ଼ତା । ସେଥିପାଇଁ ଏହା ଆଲୋକର ବିରୋଧୀ, ଜ୍ଞାନର ବିରୋଧୀ । ଶରୀରର ଜଡ଼ଧର୍ମୀତା ଥିବା ହେତୁ ତାକୁ ସହଜରେ ଜଡ଼ତା ଗ୍ରାସ କରିଯାଏ । ନିଦ୍ରା ଶରୀର ପାଇଁ ଅପରିହାର୍ଯ୍ୟ । କିନ୍ତୁ ପ୍ରାଣ ଶରୀରାଶ୍ରୟୀ ହେଲେ ସୁଦ୍ଧା ସେତେ ପରିମାଣରେ ତାର ପ୍ରଭାବର ଅଧୀନ ନୁହେଁ । ମନ ହିଁ ସର୍ବାପେକ୍ଷା ଅଧିକ ମୁକ୍ତ । ଏଣୁ ନିଦ୍ରାବସ୍ଥାରେ ମଧ୍ୟ ମନ ନିଷ୍କ୍ରିୟ ହୁଏ ନାହିଁ । ତାର ଜଡ଼ଧର୍ମୀତା କମ୍ । କେବଳ ଯେଉଁ ଅଂଶ ଶରୀର ସହିତ ଜଡ଼ିତ ସେହି ଅଂଶ ଶୋଇଯାଏ । ତଥାପି ସ୍ୱପ୍ନ ମାଧ୍ୟମରେ ମନ ସକ୍ରିୟ ରହେ । ଅର୍ଥାତ୍ ଜଡ଼ଧର୍ମୀ ନିଦ୍ରା ତାକୁ ଆୟତ୍ତ କରିପାରେ ନାହିଁ । ତଥାପି ଗଭୀର ନିଦ୍ରା ସ୍ୱପ୍ନକୁ ସୁଦ୍ଧା ଲୋପ କରିଦିଏ । ସେତେବେଳେ ଚେତନା କେନ୍ଦ୍ର ହିଁ ତା କବଳରୁ ଚିରମୁକ୍ତ ହୋଇ ରହିଥାନ୍ତି । ଚୈତ୍ୟ ସତ୍ତା ସୁଷୁପ୍ତି ଅବସ୍ଥାରେ ସୁଦ୍ଧା ଜାଗ୍ରତ ଥାନ୍ତି ଏବଂ ସେଥିପାଇଁ ଶରୀରର ଚେତନଧର୍ମୀତାକୁ ରକ୍ଷା କରିଥାନ୍ତି । ଶ୍ୱାସ କ୍ରିୟା, ରକ୍ତ ପ୍ରବାହ, ହୃତ୍ ସ୍ପନ୍ଦନକୁ ନିଦ୍ରା ମନ୍ଦୀଭୂତ କରିଦିଏ । କିନ୍ତୁ ସ୍ତବ୍ଧ କରିପାରେ ନାହିଁ । ତାହା ହୁଏତ ଜଡ଼ଧର୍ମର ଚରମ ରୂପ । ମୃତ୍ୟୁର ରୂପେ ପ୍ରକାଶ ପାଇଲେ ଚିରନିଦ୍ରା ଗ୍ରାସ କରିଯାଏ । ସେତେବେଳେ ଚୈତ୍ୟ ସତ୍ତା ତାଙ୍କର ଜଡ଼ ଅବଲମ୍ବନକୁ ପରିହାର କରନ୍ତି ।

ଅନ୍ୟ ଦିଗରୁ ଦେଖିଲେ ନିଦ୍ରା ଶରୀରକୁ ପାଳନ କରେ, ଚେତନାକ୍ଷମ କରେ । ପ୍ରତ୍ୟେକ ନିଦ୍ରାବକାଶ ପରେ ଏକ ନବଜନ୍ମର ସୁଯୋଗ ପ୍ରଦାନ କରେ । ଯଦି ମଣିଷ ମନର ସ୍ମୃତି କେନ୍ଦ୍ରରେ କିଛି ଗଚ୍ଛିତ ରହୁ ନଥାନ୍ତା ତାହେଲେ ନିଦରୁ ଉଠି ପ୍ରତ୍ୟେକ ବ୍ୟକ୍ତି ତା'ର ନୂତନ ପରିଚୟ ସଂଧାନ କରନ୍ତା । କାଳ ଉପରେ ପ୍ରଥମ ବିଜୟ ବୋଧହୁଏ ମଣିଷର ସ୍ମୃତି । ସେଥିରେ ଅତୀତ ସଂଚିତ ହୋଇ ରହିଥାଏ । ପ୍ରୟୋଜନ ହେଲେ ତାହା ପ୍ରତ୍ୟକ୍ଷ ଅନୁଭବକୁ ଆସି ମନପ୍ରାଣ ଶରୀରକୁ ପୂର୍ବବତ୍ ଆଲୋଡ଼ିତ କରେ । ନିଦ୍ରା ନଥିଲେ ଚେତନାକୁ

ଅହରହ ଜାଗ୍ରତ ରହି ଧାରଣ କରିବା ସମ୍ଭବ ହୁଅନ୍ତା ନାହିଁ । ସେଥିରେ ଶରୀରର ଅବକ୍ଷୟ ଓ ପତନ ତ୍ୱରାନ୍ୱିତ ହୋଇଯାନ୍ତା । କେବଳ ଯୋଗ ପୁଷ୍ଟ ଶରୀର ନିଦ୍ରାକୁ ଜୟକରି ସଚେତ ଓ ସକ୍ରିୟ ରହିପାରେ । ଯେଉଁପରି ଶ୍ୱାସ ଗ୍ରହଣ କରି ତାକୁ ଧାରଣ କରିହୁଏ ନାହିଁ ନିଶ୍ୱାସ ଛାଡ଼ିବାକୁ ପଡ଼େ ଏବଂ ତଦ୍ୱାରା ଶ୍ୱାସକ୍ରିୟାର ଛନ୍ଦ ପ୍ରତିଷ୍ଠା ହୁଏ । ସେହିପରି ଜାଗ୍ରତ ଓ ନିଦ୍ରାବସ୍ଥା ଏକ ଛନ୍ଦ । ଏ ଛନ୍ଦ ଭଙ୍ଗକରିବା ସହଜସାଧ୍ୟ ନୁହେଁ, ଭଙ୍ଗକରିବାର ଅନିବାର୍ଯ୍ୟତା ମଧ୍ୟ ନାହିଁ । "ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେପାନଂ ତଥା ପରେ ।"ଗ୍ରହଣ କରୁଥିବା ଅପାନ ବାୟୁରେ ଯେପରି ପ୍ରାଣବାୟୁକୁ ହବନ କରାଯାଏ ଏବଂ ତାପରେ ପ୍ରାଣବାୟୁରେ ଅପାନକୁ ହବନ କରାଯାଏ ସେହିପରି ଚେତନାରେ ଅଚେତନାକୁ ଏବଂ ଅଚେତନାରେ ଚେତନାକୁ ହବନ କରା ଚାଲିଥାଏ । ଚିର ଜାଗ୍ରତ ଚୈତନ୍ୟ ଓ ଚିର ନିଦ୍ରିତ ଅଚେତନ ମଧ୍ୟରେ ଏହା ଏକ ଅବିରାମ ଛନ୍ଦ । ଏହି ଶରୀରରେ ଏହା ଅନିବାର୍ଯ୍ୟ । କେବଳ ଚେତନାର ଅତିକ୍ରମଣ ଘଟିଲେ, ରୂପାନ୍ତିକ୍ରମଣ ଘଟିଲେ ଶରୀର ଜଡ଼ଧର୍ମୀତାର ଅବସାନ ହେଲେ ନିଦ୍ରା ଅବାନ୍ତର ହୋଇପାରେ । ଚିର ଜାଗ୍ରତ ସତ୍ତା ପ୍ରଚଣ୍ଡ ଚେତନାଦୀପ୍ତ କଳେବର ଗ୍ରହଣ କରିପାରନ୍ତି । ସେ ପର୍ଯ୍ୟନ୍ତ ନିଦ୍ରାର ଭୂମିକାକୁ ସ୍ୱୀକାର କରିବାକୁ ହେବ । ଯେଉଁପରି କ୍ରମବିକାଶ ଧାରାରେ ନିମ୍ନତର ଇତର ପ୍ରାଣୀମାନଙ୍କ ଚେତନାର କ୍ରମାନ୍ୱୟତାକୁ ଆମେ ଧାରଣ କରିଛୁ, ସେପରି ଜଡ଼ର ଜଡ଼ତାକୁ ମଧ୍ୟ ସ୍ୱୀକାର କରିଛୁ । ତାର ପ୍ରମାଣ ନିଦ୍ରା । ନିଦ୍ରାକୁ ମାତୃଶକ୍ତି ରୂପେ ମଧ୍ୟ କଳ୍ପନା କରାଯାଇଛି । କାରଣ ତାହା ଜଡ଼ଧର୍ମରେ ପୋଷଣ କରେ, ପାଳନ କରେ । ଏଣୁ 'ଯା ଦେବୀ ସର୍ବଭୂତେଷୁ ନିଦ୍ରା ରୂପେଣ ସଂସ୍ଥିତା, ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋନମଃ ।'

ଚେତନାର ମାନବ ସ୍ତରରେ ନିଦ୍ରା ଏକ ଅନିବାର୍ଯ୍ୟ ବିଧାନ । ରୂପାନ୍ତିକ୍ରମଣରେ ତାହା ମଧ୍ୟ ଅତିକ୍ରମ୍ୟ ।



## ୩-୬-୯୪

ଦୁଃଖ କ'ଣ ଶାସ୍ତି ? କୃତ କର୍ମର ଫଳଭୋଗ ? ମଣିଷର ଅପରାଧ ପାଇଁ କେହି ଜଣେ ନିୟନ୍ତାଙ୍କ ଦ୍ୱାରା ଦଣ୍ଡ ବିଧାନ ?

ପ୍ରଥମରୁ ଗୋଟିଏ ବିଷୟ ସ୍ପଷ୍ଟ ହୋଇଯିବା ଉଚିତ୍ । ମଣିଷ ଜୀବନର ଦୁଃଖ କାଳ୍ପନିକ ନୁହେଁ, ସତ୍ୟ । 'ଦୁଃଖମ୍ ସତ୍ୟମ୍ ।' ଏହା କେବଳ କ୍ଷୁଧା ତୃଷା ରୋଗ ଶୋକ, ଜନିତ ପୀଡ଼ା ଯନ୍ତ୍ରଣା ବା କଷ୍ଟ ନୁହେଁ । କାମନା ବାସନା ଜନିତ ଦୁଃଖ ମଧ୍ୟ ନୁହେଁ । କାମ୍ୟ ବା ପ୍ରିୟ ବସ୍ତୁ ନ ପାଇବା, ପାଇ ହରାଇବାର ଦୁଃଖ, ଅପ୍ରିୟ ବସ୍ତୁକୁ ପାଇ ଏବଂ ପାଇ ହରାଇ ନ ପାରିବାର ଦୁଃଖ । ଏ ସମସ୍ତ ଦୁଃଖକୁ ଚିହ୍ନିତ କରାଯାଇଛି ଏବଂ ଏହା ବ୍ୟତିରେକ ଆହୁରି ଅନେକ ଦୁଃଖକୁ ଚିହ୍ନି ହୁଏ ନାହିଁ ଅଥଚ ଭୋଗ କରିବାକୁ ହୁଏ । ବଂଚିଥିବା ପର୍ଯ୍ୟନ୍ତ ସକ୍ରିୟ ରହିବାକୁ ହୁଏ । ସେଥିରେ ସମ୍ପର୍କ ସୃଷ୍ଟି ହୁଏ । କର୍ମ ସମ୍ପାଦିତ ହୁଏ ଏବଂ ଉଭୟର ଫଳସ୍ୱରୂପ ଅନିବାର୍ଯ୍ୟ ଭାବରେ ଅସହାୟ ଦୁଃଖ ଭୋଗିବାକୁ ପଡ଼େ । ଯଦି କର୍ମ କଲେ ହିଁ ଦୁଃଖ ଭୋଗିବାକୁ ପଡ଼େ

ତେବେ ଦୁଇଟି ପ୍ରଶ୍ନର ଉତ୍ତର ଦେବାକୁ ହେବ ।

**ପ୍ରଥମ ପ୍ରଶ୍ନ -**

ପାଞ୍ଚବର୍ଷର ଅବୋଧ ଶିଶୁ ଯେ କେବଳ ଖେଳିଛି, ହସିଛି ବା କାନ୍ଦିଛି, ଯେ କର୍ମ ଅକର୍ମ ପାପ ପୁଣ୍ୟ ବିଷୟରେ ଆଦୌ ସଚେତନ ନୁହେଁ ସେ କାହିଁକି ପ୍ଲେଗ ରୋଗରେ ଛଟପଟ ହୋଇ ଦୁଃଖ ଭୋଗ କରେ ଏବଂ ମରେ ? କେଉଁ କୃତକର୍ମର ଫଳ ସ୍ୱରୂପ ତାକୁ ଏଭଳି ଦଣ୍ଡବିଧାନ କରାଯାଏ ? 'କ୍ୟାମୁ'ଙ୍କ ଉପନ୍ୟାସରେ ଏହି ପ୍ରଶ୍ନର ଉତ୍ତର ପାଦ୍ରୀ ଦେଇ ପାରିନାହିଁ । କୌଣସି ଧର୍ମର କୌଣସି ପାଦ୍ରୀ ଦେଇ ପାରିବେ ନାହିଁ । ପୂର୍ବଜନ୍ମର କୃତକର୍ମ ଏକ ଯୁକ୍ତି, ସାର୍ବଜନୀନ ଅନୁଭବ ନୁହେଁ ।

**ଦ୍ୱିତୀୟ ପ୍ରଶ୍ନ -**

(କ) ମଣିଷକୁ ଯେ ସୃଷ୍ଟି କରିଛି, ସେ ତାକୁ ଏକ ଦୁର୍ବଳ, ବହୁ ଦୋଷଦୁଷ୍ଟ ପ୍ରାଣୀଟିଏ କରି ଗଢ଼ିଛି । ଯଦି ସେ ଏ ସମସ୍ତ ବକ୍ରତା ସ୍ୱାଭାବିକ ଭାବରେ ପ୍ରକାଶ କଲା ସେଥିରେ ତାର ଦାୟିତ୍ୱ କେତେ, ଦଣ୍ଡନୀୟତା କେତେ ? ତାର ସ୍ୱଭାବ ତାକୁ ଗ୍ରାସ କରି ରଖିଥାଏ । ଏଣୁ ସୁକର୍ମ ବା କୁକର୍ମ ତା ଆୟତ୍ତରେ ହୁଏ ନାହିଁ । ସେଥିପାଇଁ ସେ ଦଣ୍ଡିତ ହେବା କଣ ନ୍ୟାୟସଙ୍ଗତ ?

(ଖ) ମଣିଷ ହୁଏତ ତାର ସଚେତନ କର୍ମ ପାଇଁ ଦାୟୀ, କିନ୍ତୁ ଜୀବନର କୌଣସି ପରିସ୍ଥିତି ପାଇଁ ଦାୟୀ ନୁହେଁ । ଦେଶକାଳ ବ୍ୟବସ୍ଥାରେ ତା ପାଇଁ ତାର ଅଣାୟତ୍ତରେ ପରିସ୍ଥିତିମାନ ସୃଷ୍ଟିହୋଇ ଚାଲିଥାନ୍ତି ଏବଂ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ସେ ଏକ ନିର୍ଦ୍ଦିଷ୍ଟ କର୍ମ କରିବାକୁ ବାଧ ହୋଇଯାଏ । ସେଥିପାଇଁ ତାର ପରିସ୍ଥିତି ତା ଅପେକ୍ଷା ଅଧିକ ଦାୟୀ । ଏଣୁ ଦୁର୍ବଳ ମଣିଷଟିଏ ପରିସ୍ଥିତିର ଦାସ ହେବା ଯେପରି ଦୋଷାବହ ନୁହେଁ ସେପରି କୌଣସି ଅପରାଧ କରିବା ମଧ୍ୟ ଅସ୍ୱାଭାବିକ ନୁହେଁ । ଏଥିପାଇଁ ତାକୁ ଦଣ୍ଡ ଦେବା କ'ଣ ଅନିବାର୍ଯ୍ୟ ?

(ଗ) ଅଥଚ ଦୁର୍ବଳ ମଣିଷକୁ କୁହାଯାଉଛି ପୁତ୍ରଶୋକରେ ଅଧୀର ନ ହୋଇ ସ୍ଥିର ହୁଅ । ଦୁଃଖରେ ନିରୁଦ୍‌ବିଗ୍ନ ରହ । ସେହିପରି ସୁଖରେ ମଧ୍ୟ ବିତସ୍ପୃହ ହୁଅ । ବା କୁହାଯାଏ କାମନାର ବିନାଶରେ ଦୁଃଖର ବିନାଶ ହେବ । କାମନାକୁ ବିନାଶ କର । ପାଦରେ ଯଦି କଣ୍ଟା ନ ଫୁଟିବାକୁ ଚାହଁ ତାହେଲେ ପାଦ ଯୋଡ଼ିକୁ ଊର୍ଦ୍ଧ୍ୱକୁ ଟେକି ରଖି ଚାଲ । ମଣିଷଟିର ଦୁର୍ବଳତାକୁ ଜାଣିଶୁଣି କଠୋର ଅଗ୍ନି ପରୀକ୍ଷାରେ ପକାଇବାର ଅର୍ଥ କ'ଣ ? ସେ ପରୀକ୍ଷାରେ ଅସଫଳ ହେଉ ଏବଂ ଅଗ୍ନିରେ ଝିଙ୍ଗି ମରୁ ? ଏହା କଣ କୌଣସି କରୁଣା ନିଧାନକୁ ଶୋଭାପାଏ ?

ମଣିଷ ଅସହାୟ ନିରୁପାୟ ଅନିବାର୍ଯ୍ୟ ଭାବରେ ଦୁଃଖ ଭୋଗୁଛି - ଭୋଗି ଆସିଛି ଏବଂ ଭୋଗିବ । ଏହା ସତ୍ୟ । କିନ୍ତୁ କାହିଁକି ଭୋଗିବ ଏ ପ୍ରଶ୍ନର ଅସଂଖ୍ୟ ଉତ୍ତର କୌଣସି ଟି ସତ୍ୟ ନୁହେଁ ।

ଏ ସମଗ୍ର ବ୍ୟବସ୍ଥାର ସଂଶୋଧନ ହୋଇ ପାରିବ କି ? ମଣିଷର ଉପାଦାନ ବଦଳି ପାରିବ କି ? ଦେଶ କାଳ ପରିସ୍ଥିତି, କାର୍ଯ୍ୟକାରଣ ନିଗଡ଼ରୁ ଦୁଃଖର ସ୍ୱାଭାବିକତା ତାର ଅନିବାର୍ଯ୍ୟତାରୁ ତ୍ରାହି ମିଳିବ କି ? ରୋଗ ଶୋକ ଜରା ମୃତ୍ୟୁ ଭୋଗ କରି ନିଃଶେଷ କରିହେବ ନାହିଁ । ଅତିକ୍ରମ କରିହେବ କି ?

ଅଦ୍ୟାବଧି ମାନବ ଜ୍ଞାନ-ବୁଦ୍ଧି, ଅନୁଭବର ଉତ୍ତର ହେଲା - 'ନା' । ଶ୍ରୀ ଅରବିନ୍ଦ କହୁଛନ୍ତି "ହଁ" । ତାଙ୍କୁ ନମସ୍କାର ।



ପ୍ରବାହରେ ଥାଇ ପ୍ରବାହକୁ ଦେଖି ହେବ କି ? ହେବ । କାରଣ ଦୃଷ୍ଟି ଏପରି ଏକ କ୍ରିୟା ଏବଂ ତାହା ଏପରି ଏକ ମାନସିକ ଓ ଶାରୀରିକ ଉପାଦାନ ଉପରେ ନିର୍ଭରଶୀଳ ଯେ ତାହା ପ୍ରବାହରେ ଥାଇ ସୁଦ୍ଧା ପ୍ରବାହ ଦ୍ୱାରା ଆଚ୍ଛନ୍ନ ହୁଏ ନାହିଁ । ଏଣୁ ଅବଗାହୀ ବ୍ୟକ୍ତି ନଦୀଧାରରେ ଥାଇ ସୁଦ୍ଧ ନଦୀସ୍ରୋତ ବିଷୟରେ ସଚେତନ । ପ୍ରବାହକୁ ଦେଖିବାର ସାଧାରଣ ଧର୍ମ ହେଉଛି ତଟସ୍ଥ ପୁରୁଷର । ସେ ପ୍ରବାହମୁକ୍ତ, ଗତିମୁକ୍ତ ଏବଂ ସ୍ଥିତିବିନ୍ଦୁ । ଗତି ଓ ସ୍ଥିତି ଆପେକ୍ଷିକ ହୋଇଥିବାରୁ ଗୋଟିକୁ ବୁଝିବା ପାଇଁ ଅନ୍ୟଟିର ସାହାଯ୍ୟ ନେବାକୁ ହୁଏ । ଗୋଟିକର ଅଭାବରେ ଅନ୍ୟଟି ଅର୍ଥ ବହନ କରେ ନାହିଁ । ଏଣୁ ଗତିକୁ ବୁଝିବାକୁ ଏବଂ ଅନୁଭବ କରିବାକୁ ହେଲେ ସ୍ଥିତିର ପ୍ରୟୋଜନ । ସଂସାର ପ୍ରବାହରେ ଜନ୍ମିଲା ପରେ ମୃତ୍ୟୁ ପର୍ଯ୍ୟନ୍ତ ଶରୀରାଶ୍ରୟୀ ସତ୍ତା ଦେଶ-କାଳ ସଂସାର ପ୍ରବାହରୁ ମୁକ୍ତ ହୋଇ ପାରିବ ନାହିଁ । କିନ୍ତୁ ଆଧାତ୍ମିକ ସାଧନାର ପରମ୍ପରା ଅନୁସାରେ ସେ ପ୍ରବାହରେ ଥାଇ ସୁଦ୍ଧା ନଥିଲା ପରି ସ୍ଥିତି ଲାଭ କରିପାରିବ । "ପଦ୍ମପତ୍ରମିବାମ୍ଭସା" ସଂସାରରେ ପ୍ରବାହିତ ହେବାର ଅର୍ଥ ଘାତ ପ୍ରତିଘାତକୁ ସ୍ୱୀକାର କରିବା, ସୁଖଦୁଃଖକୁ ଅଙ୍ଗୀକାର କରିବା କିନ୍ତୁ ତା ସହିତ ଏକ ଆଭ୍ୟନ୍ତର ଅନାସକ୍ତି ବା ଅସଂପୃକ୍ତିରେ ଜଣେ ମୁକ୍ତ ରହିପାରେ । ଏହା ଯୋଗ ସାଧନାର ଲକ୍ଷ୍ୟ । ଏ ସଂପର୍କରେ ଈଶାବାସ୍ୟୋପନିଷଦ କହିଛନ୍ତି -

ଦ୍ୱା ସୁପର୍ଣା ସଯୁଜା ଶଖାୟା
ସମାନଂ ବୃକ୍ଷଂ ପରିଷ୍ୱଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍‌ବତି
ଅନଶ୍ନନ୍ ଅନ୍ୟଃ ଅଭିଚକାଷିତି ।

ଗୋଟିଏ ବୃକ୍ଷର ଦୁଇଟି ଶାଖାରେ ଦୁଇଟି ସୁନ୍ଦର ପକ୍ଷୀ ବସିଛନ୍ତି । ଗୋଟିଏ ପିପ୍ପଳ ଫଳର ସ୍ୱାଦ ଭୋଗ କରୁଛି । ଅନ୍ୟଟି ନଖାଇ କେବଳ ଚାହିଁ ରହିଛି । ଏଠାରେ କେତେଗୁଡ଼ିଏ କଥା ବିଶେଷ ଲକ୍ଷଣୀୟ ।

୧. ବୃକ୍ଷ ଗୋଟିଏ । ତାର ଶାଖା ଦୁଇଟି ।
୨. ପକ୍ଷୀ ଯୁଗଳ ଗଛର ଅଂଶ ବିଶେଷ ନୁହନ୍ତି । ସେମାନେ ଆଗନ୍ତୁକ ।
୩. ଗୋଟିଏ ପକ୍ଷୀ ପିପ୍ପଳର ସ୍ୱାଦ ଭୋଗ କରେ । ଫଳ ଗଛର ଅଂଶ । ସ୍ୱାଦ ପକ୍ଷୀର ରୁଚି ଅନୁସାରେ ଅନୁକୂଳ ବା ପ୍ରତିକୂଳ ହୋଇପାରେ ।
୪. ଅନ୍ୟ ପକ୍ଷୀଟି ପିପ୍ପଳ ଖାଏ ନାହିଁ, କିନ୍ତୁ ନିର୍ନିମେଷ ଚାହିଁରହେ । ଏ ପକ୍ଷୀଟି ଖାଇବା କ୍ରିୟାରେ ଅସଂପୃକ୍ତ, କିନ୍ତୁ ଦେଖିବା କ୍ରିୟାରେ ସଂପୃକ୍ତ । ନଚେତ୍ ସେ ନ ଚାହିଁ ଆଖି ବୁଜି ଦେଇପାରନ୍ତା ବା ଅନ୍ୟ ଦିଗକୁ ଆଖି ଫେରାଇ ନିଅନ୍ତା । ତାହା ଯେହେତୁ ହେଉନାହିଁ, ଏକ ବିସ୍ମୟକର ପରିଣାମ ପାଇଁ କିଏ ଦାୟୀ ?

ସ୍ୱାଦ ଭୋଗୁଥିବା ପକ୍ଷୀଟି ସଂସାର ପ୍ରବାହକୁ ସ୍ୱୀକାର କରୁଥିବା ଜୀବ । ସେ ସ୍ୱାଦର ପରିଣାମ ସୁଖ ଦୁଃଖ ଭୋଗ କରେ । ଅନ୍ୟ ପକ୍ଷୀ ଫଳ ଖାଉନଥିବାରୁ ସୁଖଦୁଃଖରୁ ମୁକ୍ତ ରହେ । ସାଧାରଣତଃ ଚାହିଁ ରହିଥିବା ପକ୍ଷୀଟିକୁ ମଣିଷ ଭିତରେ ଥିବା ଅସଂପୃକ୍ତ ସାକ୍ଷୀସତ୍ତାର ପ୍ରତୀକ ବୋଲି ଗ୍ରହଣ କରାଯାଏ । ଅନ୍ୟ ପକ୍ଷୀଟି ଜୀବ ସତ୍ତା ଯେ ସୁଖଦୁଃଖ ଭୋଗ କରେ । କିନ୍ତୁ ଏକ ବିଶେଷ ସଂକେତ ଉପନିଷଦ ବାକ୍ୟରେ ରହିଛି, ତାହେଲା ଶାଖା ଦୁଇଟି ହେଲେ ସୁଦ୍ଧା ବୃକ୍ଷ ଗୋଟିଏ । ଆପାତତଃ ଦୁଇଟି ସ୍ୱତନ୍ତ୍ର ଶାଖା ଦିଶୁଥିଲେ ସୁଦ୍ଧା

ତତ୍ତ୍ୱତଃ ସେମାନେ ଗୋଟିଏ । ଏଣୁ ଶାଖାରେ ବସିଥିବା ପକ୍ଷୀ ଦୁଇଟି ପାଇଁ ମଧ୍ୟ ଏହା ପ୍ରଯୁଜ୍ୟ । ଉଭୟେ ପକ୍ଷୀ ଏବଂ ଗୋଟିଏ ବର୍ଗ ଏବଂ ଉପାଦାନର ପ୍ରାଣୀ । ହୁଏତ ଦିଶୁଥିବା ଦୁଇଟି ରୂପ ଗୋଟିଏ ପକ୍ଷୀର ହିଁ ଦୁଇଟି ଭୂମିକା । ଭୂମିକା ଦୁଇଟି ଏତେ ସ୍ୱତନ୍ତ୍ର ଯେ ଏକତ୍ର ଉଭୟ କ୍ରିୟା ଜଣକ ଦ୍ୱାରା ହୋଇପାରିବ ନାହିଁ । ଚାଖିଲା ବେଳେ ଦେଖି ପାରିବ ନାହିଁ ଏବଂ ଦେଖିଲାବେଳେ ଚାଖି ପାରିବ ନାହିଁ । କିନ୍ତୁ ଏହା ହିଁ ଲକ୍ଷ୍ୟ । ଉଭୟ ଭୂମିକାକୁ ଯୁକ୍ତ କରିବା ହିଁ ଯୋଗ । ଜୀବକୁ ପରମରେ ଯୁକ୍ତକରିବା ହିଁ ଉପନିଷଦ ବାକ୍ୟର ଲକ୍ଷ୍ୟ । ଦୁଇଟି ଶାଖା ଗୋଟିଏ ବୃକ୍ଷର ପ୍ରକାଶ ଭଳି ଦ୍ରଷ୍ଟା ଓ ଭୋକ୍ତା ଅଭିନ୍ନ - "ଜୀବ ବ୍ରହ୍ମୈବ ନା ପରମ୍ ।"

ଶ୍ରୀ ଅରବିନ୍ଦଙ୍କ ଯୁଗ୍ମ ଆତ୍ମା ବା Double soul ସ୍ମରଣ କରାଯାଇ ପାରେ । ସାକ୍ଷୀ ସତ୍ତା ଅନାସକ୍ତ କିନ୍ତୁ ଅସଂପୃକ୍ତ ନୁହେଁ । ସଂସାର ପ୍ରବାହରେ ଥାଇ ପ୍ରବାହ ବିଷୟରେ ସଚେତନ ରହିବା ହିଁ ସାଧନା । ତଟସ୍ଥ ସନ୍ନ୍ୟାସୀ ଅପେକ୍ଷା ଅବଗାହୀ ସାଧକ ହିଁ ସମର୍ଥ ଯୋଗୀ ପୁରୁଷ । ତାଙ୍କ ପାଇଁ All life is yoga ସଂସାର ଯୋଗ-ବହିର୍ଭୂତ ନୁହେଁ ଯୋଗ-ଅସମର୍ଥ ନୁହେଁ । ବରଂ ସଂସାର ହିଁ ଯୋଗର ଅଧିଷ୍ଠାନ । ତାହା ବର୍ଜନୀୟ ନୁହେଁ ଗ୍ରହଣୀୟ । କିନ୍ତୁ ଅତିକ୍ରମଣୀୟ ।



ମାର୍ଗ ଗୋଟିଏ ହୋଇପାରେ କିନ୍ତୁ ଯାତ୍ରୀ ଅନେକ । ଗୋଟିଏ ମାର୍ଗରେ କଣ କେବେହେଲେ ଏକାଧିକ ଯାତ୍ରୀ ଯିବା ସମ୍ଭବ ? ଜଣେ ମାର୍ଗରେ ଯାଇସାରିଲା ପରେ ମାର୍ଗଟି କ'ଣ ସେଇଭଳି ଥାଏ ? ପ୍ରବହମାନ ଧାରାରେ କୌଣସି ବସ୍ତୁ ସ୍ଥିର ନୁହେଁ । ଏଣୁ ଆପାତତଃ ଏ କ ଦିଶୁଥିଲେ ସୁଦ୍ଧା ମାର୍ଗ କଦାପି ଏକ ନୁହେଁ । ରହି ପାରେ ନାହିଁ । ପ୍ରତ୍ୟେକ ଯାତ୍ରୀ ପାଇଁ ମାର୍ଗ ପୃଥକ୍ ହୋଇଚାଲିଥାଏ । କୌଣସି ଦୁଇଟି ବ୍ୟକ୍ତି ଦୁଇଟି ମାର୍ଗ, ଦୁଇଟି ଲକ୍ଷ୍ୟ ଅଭିନ୍ନ ହେବା ସମ୍ଭବ ନୁହେଁ । ଯଦି ଅଭିନ୍ନତା ସମ୍ଭବ ତା ହେଲେ ସେଥିପାଇଁ କେବଳ ଗୋଟିଏ ମାତ୍ର ପରିସ୍ଥିତି ସମସ୍ତ ଦେଶକାଳ ବସ୍ତୁର ଭିନ୍ନତାକୁ ଅତିକ୍ରମ କରି, ସମସ୍ତ ଭିନ୍ନତାକୁ ଗର୍ଭସ୍ଥ କରି, "ଏକଂ ଅଦ୍ୱିତୀୟଂବା" ବିଦ୍ୟମାନ । ଭିନ୍ନତା ଅତିକ୍ରାନ୍ତ ହେଲେ ଗତି ଏବଂ ବ୍ୟାପ୍ତି ଅତିକ୍ରାନ୍ତ ହୋଇଯାଏ । ସ୍ଥାନ କାଳ ଅତିକ୍ରାନ୍ତ ହୋଇଯାଏ । ଅର୍ଥହୀନ ହୋଇଯାଏ କୌଣସି ଏକକ ବିନ୍ଦୁରେ । ତା'ର ସଂଜ୍ଞା ନାହିଁ । ନିରୂପଣ ନାହିଁ, ନାମ ଉପାଧି ସେ ଜ୍ଞାତା ଜ୍ଞାନକୁ ଏକତ୍ର ଧାରଣ କରେ ।



## ୧-୧୧-୯୪

ଅନ୍ୟ ନାମ ନାମାନ୍ତର, ଅନ୍ୟ ଘଟ ଘଟାନ୍ତର ଭଳି ଅନ୍ୟରୂପ ରୂପାନ୍ତର ଶବ୍ଦ ଅନ୍ୱିତ ହୋଇଛି । ଏଣୁ ଯେ କୌଣସି ଅନ୍ୟରୂପ ରୂପାନ୍ତର ବାଚ୍ୟ ହୋଇଥିବାରୁ ଇଂରାଜୀର Transformation କହିଲେ ଯାହା ବୁଝାଏ ତାହା ଏ ରୂପାନ୍ତର ଶବ୍ଦରେ ସୂଚିତ ହୁଏନାହିଁ । Trans ଉପପଦଟି ଅତିକ୍ରମ ଅର୍ଥରେ ବ୍ୟବହୃତ ହୁଏ ଏଣୁ Transformation ଦ୍ୱାରା ରୂପକୁ ଅତିକ୍ରମ କରିବା ବୁଝାଉଛି । ହୁଏତ ତାର ଓଡ଼ିଆ ପ୍ରତିଶବ୍ଦ 'ରୂପାନ୍ତର' ନ କରି 'ରୂପାତିକ୍ରମଣ' କଲେ ଅଧିକ ଉପଯୁକ୍ତ ହେବ ।

ସେହିପରି ଆଉ ଏକ ବହୁଳ ବ୍ୟବହୃତ ଏବଂ ତାତ୍ପର୍ଯ୍ୟପୂର୍ଣ୍ଣ ଶବ୍ଦ Supramental । ଏହାକୁ ଶ୍ରୀ ଅରବିନ୍ଦ ବିଶେଷଣ ରୂପେ ବ୍ୟବହାର ନ କରି ବିଶେଷ୍ୟ ରୂପେ ବ୍ୟବହାର କରିଛନ୍ତି । ଓଡ଼ିଆରେ ତାକୁ ଅତିମାନସ କୁହାଯାଏ । 'ଅତି' ଶବ୍ଦ, ମାତ୍ରାଧିକ୍ୟ ବୁଝାଏ । କିନ୍ତୁ Supra ଶବ୍ଦରେ ଏକ ଊର୍ଦ୍ଧ୍ୱତର ପରିତଳର ସୂଚନା ମିଳେ । କେବଳ ଊର୍ଦ୍ଧ୍ୱଭୂମିର ସୂଚନା ହେଲେ ତାହା ଇଂରାଜୀରେ Highermental କୁ ବୁଝାଇବ । ଯଦି ଅତିମାନସ ପରିବର୍ତ୍ତେ ଉତ୍ତରମାନସ କୁହାଯାନ୍ତା ତାହେଲେ ବ୍ୟବହାର ଦୃଷ୍ଟିରୁ ତାହା ଉତ୍ତରିତ ମାନସ ଏବଂ ଉତ୍ତର କାଳର ସୂଚନା ଦିଅନ୍ତା । ଅଥଚ Supra ରେ କାଳର ସୂଚନା ନାହିଁ । ତଥାପି ଉତ୍ତରଣ ଉପରେ ଆଧାରିତ ହୋଇଥିବାରୁ ଉତ୍ତରମାନସ ଅତିମାନସ ଅପେକ୍ଷା Supramental ର ଅଧିକ ନିକଟବର୍ତ୍ତୀ ମନେହୁଏ ।



**୨୪-୧୧-୯୪**

କରପତ୍ର ଯୋଡ଼ି ନମସ୍କାର କରିବା, ମସ୍ତକ ଅବନତ କରିବା କିମ୍ବା ସାଷ୍ଟାଙ୍ଗ ପ୍ରଣିପାତ ହେବା ପଶ୍ଚାତ୍‌ରେ ଏକ ଆଦିମ ପରଂପରା ଥିବା ପରି ମନେହୁଏ । ଆରଣ୍ୟକ ମଣିଷଙ୍କ ଗୋଷ୍ଠୀ ବିବାଦରେ ପରାଜିତ ଦଳପତି ନିରସ୍ତ୍ର ଅବସ୍ଥାରେ ଏହିପରି ହୁଏତ ଆତ୍ମ ସମର୍ପଣ କରି ପ୍ରାଣଭିକ୍ଷା କରୁଥିଲା । ଏଣୁ କରପତ୍ର ଯୋଡ଼ିବା ପରାଜୟର ମୁଦ୍ରା, ଭକ୍ତିର ନୁହେଁ । ଶରଣାପନ୍ନ ହେବା ଦୁର୍ବଳତାର, ଭୀରୁତାର ପରିଚୟ ଆଧାତ୍ମିକତାର ନୁହେଁ ।

ତାହେଲେ ଆଧାତ୍ମିକ ସମର୍ପଣର ମୁଦ୍ରା କଣ ? ବୋଲି ହୁଏତ ପ୍ରଶ୍ନ ହୋଇପାରେ । କିନ୍ତୁ ମୁଦ୍ରା ଏକ ବାହ୍ୟ ଆଚରଣ ହୋଇଥିବାରୁ ତା'ର ପ୍ରଯୋଜନ ଏ କ୍ଷେତ୍ରରେ ନାହିଁ କହିଲେ ଚଳେ । ଭକ୍ତି ପାଇଁ ସମ୍ମାନ ପାଇଁ ସମର୍ପଣ ଭାବ ପାଇଁ ଯେଉଁ ମାନସିକତା ଯେଉଁ ପ୍ରାଣିକ ନିବେଦନର ପ୍ରଯୋଜନ ଅଛି ତାହା ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଜଣକ ମୁହଁରୁ ତାର ହସ ବା ଚାହାଣିରୁ ତାର ମନୋଭାବ ଜାଣିହେବ । ଏଣୁ ଏ ସମସ୍ତ ମୁଦ୍ରାର ଆନୁଷ୍ଠାନିକତାରୁ ମୁକ୍ତ ହେବା ପରେ ହିଁ ଆଭ୍ୟନ୍ତର ସାଧନା ଆଚରଣମୁକ୍ତ ହୁଏ, ଅଧିକ ଆନ୍ତରିକ ହୁଏ ।

ଏହାର ଅର୍ଥ ନୁହେଁ ଯେ ସାମାଜିକତାର ସମ୍ଭ୍ରମ ଭୁଲି ଲୋକଙ୍କ ପ୍ରାଣରେ ଆଘାତ ଦେବା କୌଣସି ସାଧକର ଲକ୍ଷ୍ୟ । କରପତ୍ର ଯୋଡ଼ିବା ପଛରେ ଆଦିମ ପରମ୍ପରା ଥାଇପାରେ କିନ୍ତୁ ତାହା ବର୍ତ୍ତମାନ ଏ ଦେଶର ସଂସ୍କୃତିରେ ଅଙ୍ଗୀଭୂତ ହୋଇଗଲାଣି । ଏବଂ ତାହା ଆମର ସଂସ୍କାର । ଯଦି କୌଣସି ଯୁଗର ପରାଜୟ ମୁଦ୍ରାକୁ ଆଣି ସମର୍ପଣ ମୁଦ୍ରା ରୂପେ ବ୍ୟବହାର କରାଗଲା ସେଥିରେ କ୍ଷତି କଣ ? ଯଦି ସେ ମୁଦ୍ରା ପଶ୍ଚାତ୍‌ରେ କୌଣସି ପରାସ୍ତ ମନୋଭାବ କୌଣସି ଭୀରୁତା ନିଜ ଉପରେ ଅନାସ୍ଥାଭାବ କାର୍ଯ୍ୟ କରୁଥାଏ ତାହେଲେ ସେଥିରେ ଆଧାତ୍ମିକତା ନାହିଁ । କିନ୍ତୁ ଏ ମୁଦ୍ରା ପଶ୍ଚାତ୍‌ରେ ଯଦି ଶଠତା କପଟତା, ବାହ୍ୟ ଆଚରଣରେ ଅନ୍ୟକୁ ପ୍ରତାରିତ କରିବାର ପ୍ରବୃତ୍ତି ଥାଏ ତାହା ଆହୁରି ଘୋର ତାମସିକତା ଆଡ଼କୁ ଦ୍ୱାର ଖୋଲି ଦିଏ । ମୋଟ ଉପରେ ମୁଦ୍ରା ବାଧ୍ୟତାମୂଳକ ନୁହେଁ । ଅତ୍ୟନ୍ତ ସହଜ ସରଳ ଏବଂ ସ୍ୱାଭାବିକ ଭାବରେ ତାକୁ ଗ୍ରହଣ କରାଯାଇପାରେ ଏବଂ ସେହିପରି ପରିହାର ମଧ୍ୟ କରାଯାଇପାରେ ।

ପ୍ରତି ବସନ୍ତରେ ନୂଆପତ୍ର ପକାଏ ବୋଲି ଗଛ ବଂଚିଛି । ସେହି ପରି ନିଜକୁ ନିଜେ ଅହରହ ଅତିକ୍ରମ କରି ପାରୁଥିବା ମଣିଷ ବଂଚିଛି ବୋଲି ପ୍ରମାଣ ଦିଏ । ଦେଶକାଳର ଅସ୍ଥିର ବିନ୍ଦୁରେ ବ୍ୟକ୍ତି ମଧ୍ୟ ଅସ୍ଥିର ପ୍ରବାହଟିଏ । ଛାୟାବାଜି ପରି ସେ ପ୍ରତି ମୁହୂର୍ତ୍ତରେ ବଦଳି ଯାଉଥାଏ । ପରିବର୍ତ୍ତିତ ହେଉଥାଏ ତାର ଶରୀରର ଅସଂଖ୍ୟ ଜୀବକୋଷ, ତା'ର ସ୍ନାୟୁ ମଣ୍ଡଳର ସୂକ୍ଷ୍ମାତିସୂକ୍ଷ୍ମ ଶିରା ଉପଶିରା, ତାର ମନ ପ୍ରାଣର ବିବିଧ ଉପାଦାନ । କିନ୍ତୁ ତଦ୍ୱାରା ସେ ଅତିକମ୍ର କରେ ନାହିଁ ଅତିକ୍ରମ କରିବା ଅର୍ଥ ଦିଗ୍‌ବଳୟ ବିସ୍ତୃତ ହୋଇଯିବା । ଗୋଟିଏ ପରିତଳରୁ ଆଉ ଏକ ପରିତଳକୁ ସଂକ୍ରମି ଯିବା । ଯାହାଥିଲା ତାକୁ ଧାରଣ କରି ତାଠାରୁ ଦୀର୍ଘତର ବିଶାଳତର ହୋଇଯିବା । ଗୋଟାଏ ଭୂମିର ଶୀର୍ଷବିନ୍ଦୁରେ ପାଦ ରଖି ଆଉ ଏକ ଭୂମିକୁ ଉହୁଙ୍କି ଯିବା ।

ଗଛର ଶୁଖିଲା ପତ୍ର ଝଡ଼ି ଯାଉଥାଏ, ଜନ୍ମ ନେଉଥାଏ ନୂଆ ପତ୍ର । ଗଛର ଶିଖ ଅପହଂଚ ଉଚ୍ଚତାକୁ ସ୍ପର୍ଶ କରି ଚାଲିଥାଏ ତାକୁ ଅତିକ୍ରମ କରିଚାଲିଥାଏ । ଝରାପତ୍ରର ମୃତ୍ୟୁକୁ ଅସ୍ୱୀକାର କରି ନୂତନ ପତ୍ରର ଆବିର୍ଭାବ ଘଟୁଥାଏ । ଏ ନୂତନର ସଂଘାତ ଯେଉଁଦିନ ସରିଯାଏ ସେଇଦିନ ପାଦପଟିକୁ ମୃତ୍ୟୁ ଗ୍ରାସ କରିଯାଏ । କାରଣ ତେଣିକି ଆଉ ବଢ଼ିବାର ନାହିଁ, ଏଣୁ ବଂଚିବାର ବି ନାହିଁ । ତେଣିକି ସ୍ଥିରତା ଆସିଯାଏ । ସ୍ଥିରତା ହିଁ ସ୍ଥବିରତା, ସ୍ଥିରତା ହିଁ ମୃତ୍ୟୁ । ଜୀବନ ନୁହଇ ସ୍ଥିର ସ୍ଥିରଟି ମରଣ । ସାର୍ଥକ ଜୀବନ ଅତିକ୍ରମଣର କ୍ରମାନ୍ୱୟତା । ଗତିଶୀଳତା କାଳର ଧର୍ମ । ଅତିକ୍ରମଣ ଏକ ଚେତନାର ବିଶେଷତ୍ୱ, ଏକ ବ୍ୟତିକ୍ରମ ।

ଯେଉଁ ଭୂମିରେ ଜଣେ ବିବିଧ କାରଣରୁ ଆସି ପହଂଚି ଥାଏ ତାକୁ ସେ ପ୍ରଥମେ ଦେଖେ ଓ ଆକଳନ କରେ । ସେଥିରେ ସେ ତାର କ୍ଳୀବତା, ତାର ଅପରିଚ୍ଛନ୍ନତା ତାର କ୍ଲେଦ କର୍ଦ୍ଦମ ଦେଖେ । ଏବଂ ତାକୁ ଅତିକ୍ରମ କରିବାକୁ ସଂକଳ୍ପ କରେ । ସେ ସବୁ ଶୁଖିଲା ପତ୍ର ପରି ଝଡ଼ି ପଡ଼ିବାକୁ ଦିଏ । ସେ ଭୂମିରେ ପାଦରଖି ସେ ଉପରକୁ ହାତ ବଢ଼ାଏ । ଗତକାଲି ଯାହାଥିଲା ଆଜି ତା'ଠାରୁ ସେ ଅଧିକ ସଚେତନ । ହୁଏତ କିଛି ମାତ୍ରାରେ ଅଧିକ ସ୍ୱଚ୍ଛ ଅଧିକ **ସ୍ପଷ୍ଟ** ହୋଇ ପାରିଲେ ଦିନଟିଏ, ଅବସ୍ଥାଟିଏ, ଭୂମିଟିଏ ଅତିକ୍ରାନ୍ତ ହେଲା । ନହେଲେ ଦିନଟିଏ କେବଳ ଅତିବାହିତ ହେଲା ଜୀବଧର୍ମରେ, ଜଡ଼ଧର୍ମରେ । ଚେତନା ଦୃଷ୍ଟିରୁ ଶ୍ରୀ ଅରବିନ୍ଦଙ୍କ ଯୋଗ ଦୃଷ୍ଟିରୁ ଦିନଟିଏ ବ୍ୟର୍ଥ ଗଲା । ସୁଯୋଗଟିଏ ବ୍ୟର୍ଥ ଗଲା ।



**୧୬-୨-୯୫**

ମାନ ଅପମାନକୁ ତୁଲ୍ୟ ଜ୍ଞାନ କରିବା ସ୍ଥିତପ୍ରଜ୍ଞର ଲକ୍ଷଣ । କିନ୍ତୁ ସାଧାରଣ ସ୍ତରରେ ଉଭୟ ମାନ ଏବଂ ଅପମାନ ମଣିଷର ପ୍ରାଣ କେନ୍ଦ୍ରକୁ ଆଲୋଡ଼ିତ କରେ । ମାନ ପ୍ରାପ୍ତିରେ ଉତ୍‌ଫୁଲ୍ଲତା ଓ ସଫଳତାର ଆବେଗ ଭଳି ଅପମାନ ପ୍ରାପ୍ତିରେ ବ୍ୟଥା ଓ ବିଳାପର ଆବେଗ ସୃଷ୍ଟି ହୁଏ । ପ୍ରଥମ ଅବସ୍ଥାରେ ପ୍ରସାରିତ, ଉତ୍‌ସାରିତ ହୋଇଯିବାର ଉର୍ଦ୍ଧ୍ୱମୁଖୀ ଅନୁଭବ ଏବଂ ଦ୍ୱିତୀୟ ଅବସ୍ଥାରେ ସଙ୍କୁଚିତ ଅବନମିତ ହୋଇଯିବାର ନିମ୍ନମୁଖୀ

ଅନୁଭବ ଆସିଥାଏ । ବେଲୁନ୍‌ରେ ପବନ ପ୍ରବେଶ କରିବା ଏବଂ ସେଥିରୁ ବାହାରି ଯିବାର ଲକ୍ଷଣ ପ୍ରାଣକେନ୍ଦ୍ରରେ ଅନୁଭବ ହୁଏ । ସେଥିରେ ମନ ମଧ୍ୟ ଉତ୍ତେଜିତ ହୁଏ ଏବଂ ପ୍ରାଣର ଆବେଗକୁ ମାନସିକ କଳ୍ପନା ଓ ଉତ୍ତାପ ମିଶି ଅଧିକ ତୀବ୍ର କରନ୍ତି । ଉଭୟ ମାନ କିମ୍ବା ଅନମାନର ସାତିଶୟ ତୀବ୍ରତା ମନକୁ ବିଘୁର୍ଣ୍ଣିତ କରେ ଏବଂ ଶରୀରକୁ ଘର୍ମାକ୍ତ କରେ । ହୃତସ୍ପନ୍ଦନ, ଶ୍ୱାସକ୍ରିୟା ଆଦି ପ୍ରଖର ହୋଇଯାଏ । ଏ ସମସ୍ତ ବିକ୍ରିୟାରେ ବ୍ୟକ୍ତି ସତ୍ତା ଆକୁଳିତ ହୁଏ । ପ୍ରକୃତ ପକ୍ଷେ ମାନ ଅପମାନ ଶାରୀରିକ କିମ୍ବା ମାନସିକ ଅନୁଭବ ନୁହେଁ । ଏହାର କ୍ଷେତ୍ର ପ୍ରାଣ । ସେହିଠାରୁ ଏହା ମନ ଏବଂ ଶରୀରକୁ ସଂଚାରିତ ହୋଇଯାଏ । ଉଭୟ ମାନ ଏବଂ ଅପମାନ ଅହଂ କେନ୍ଦ୍ରରେ ଆଘାତ କରନ୍ତି । ମାନ ପ୍ରାପ୍ତିରେ ଅହଂ ଫୁଲି ଉଠେ । ମାନ ସମ୍ମାନକୁ ବହୁଗୁଣିତ କରି ଅଧିକ ତୃଷ୍ଟି ଲାଭ କରେ । ସେହିପରି ଅପମାନର ଆଘାତରେ ଅହଂ କ୍ଷତ ବିକ୍ଷତ ହୁଏ ବିକ୍ଷୁବ୍ଧ ବିଚଳିତ ହୁଏ ।

ଯଦି ମାନ ଅପମାନ ସହିତ ଅହଂ ଜଡ଼ିତ ନ ହୁଏ ତାହେଲେ ପ୍ରାଣ ବା ମନ କ୍ଷେତ୍ର ତଦ୍ୱାରା ଆକ୍ରାନ୍ତ ହେବାର କୌଣସି କାରଣ ନାହିଁ । ପ୍ରକୃତରେ ଅହଂ ହିଁ ସମ୍ମାନିତ କିମ୍ବା ଅପମାନିତ ବୋଧ କରେ । ଏପରି ବୋଧ କରିବାରେ ପ୍ରାଣର ଆବେଗ ପ୍ରକଟିତ ହୁଏ । ଯଦି ଅହଂ ମାନ ଅପମାନକୁ ଅସ୍ୱୀକାର କରି ଶିଖିଯାଏ ତାହେଲେ ପାଲ ଫିଟିଗଲେ ଅବାଧ ପବନ ନାଆକୁ ଚାଳିତ କରି ନ ପାରିଲା ପରି କୌଣସି ଉଲ୍ଲାସ ବା ଗ୍ଳାନି ପ୍ରାଣ ମନକୁ ବିକ୍ଷୁବ୍ଧ କରିପାରେ ନାହିଁ ।

ଅହଂ ମନପ୍ରାଣ ଶରୀର ମାଧ୍ୟମରେ ତାର ପରିପୁଷ୍ଟି ସାଧନ କରୁଥାଏ । ସଂସାରର ବିକ୍ଷେପକୁ ସେ ଦୁଇ ପ୍ରକାର ବିଭାଗ କରିଥାଏ । ଗୋଟିଏ ଅନୁକୂଳ ଅନ୍ୟଟି ପ୍ରତିକୂଳ । ଜୀବନଧାରଣ ପାଇଁ ମଧ୍ୟ ଏହିପରି ଦୁଇ ପକ୍ଷ ନିର୍ଣ୍ଣିତ ହୋଇଥାଏ । ଅନୁକୂଳ ପକ୍ଷ ପ୍ରାଣୀର ପୋଷଣ କରେ। ପ୍ରତିକୂଳ ପକ୍ଷ ତାର ବିରୋଧ ଏବଂ ବିନାଶ କରେ ।

ଏଣୁ ପ୍ରାଣୀ ମାତ୍ରେ ଅନୁକୂଳକୁ ଗ୍ରହଣ କରି ପ୍ରତିକୂଳକୁ ପରିହାର କରନ୍ତି । ଶରୀରଧର୍ମରେ ଏହା ନକଲେ, ଖାଦ୍ୟ, ପରିବେଶ, ସଂପର୍କ ଚିହ୍ନିତ ନ ହେଲେ ପ୍ରାଣ ଧାରଣ କରିବା ସମ୍ଭବ ହେବ ନାହିଁ । ଶରୀର କ୍ଷେତ୍ରରେ ଏହି ଅନିବାର୍ଯ୍ୟତା ପ୍ରାଣ ଓ ମନ କେନ୍ଦ୍ରରେ ମଧ୍ୟ ଅନୁକୂଳ ଓ ପ୍ରତିକୂଳ ପକ୍ଷ ସୃଷ୍ଟି କରେ । ଫଳରେ ମାନ ଅନୁକୂଳ ଓ ଅପମାନ ପ୍ରତିକୂଳ ରୂପେ ପ୍ରତୀୟମାନ ହୁଏ । ତଦ୍ୱାରା ଶରୀର ପୋଷଣ ନ ହୋଇ ଅହଂ ପୋଷଣ ହୁଏ । ଶରୀର ପ୍ରାଣ ଏବଂ ମନକୁ ଅହଂ ଆଚ୍ଛନ୍ନ କରିଥାଏ । ଅଧିକାର କରିଥାଏ । ବ୍ୟବହାର କରିଥାଏ ଏବଂ ଅହଂ ସ୍ୱୟଂ ଶରୀର ମନ ପ୍ରାଣ ବୋଲି ନିଜକୁ ଜ୍ଞାନ କରେ । ଫଳରେ ସମସ୍ତ ବିକ୍ଷେପ ବିକ୍ଷୋଭକୁ ମଧ୍ୟ ଭୋଗ କରେ । ଏଥିରୁ ମୁକ୍ତ ହେବା ପାଇଁ ଅନ୍ତର୍ମୁଖୀ ହେବା ପ୍ରୟୋଜନ । ଉଭୟ ଅନୁକୂଳ ପ୍ରତିକୂଳ ପ୍ରତି ସମପରିମାଣରେ ଅସଂପୃକ୍ତି ଆସି ପାରିଲେ ହିଁ ଏହା ସମ୍ଭବ । ଏଥିପାଇଁ ଉପାୟ ପ୍ରୟାସ ଓ ପ୍ରାର୍ଥନା



ହତାଶା କେବଳ ନିରାଶା ବା ଆଶାଶୂନ୍ୟତା ନୁହେଁ । ହତାଶାରେ ଆଶାର ହତ୍ୟା ହୋଇଥାଏ । ଆଶା ଏପରି ହତ ହେଲେ ବୋଧହୁଏ ହତାଶା ଦେଖା ଦିଏ । ହତାଶାରେ ନିରାଶାର ଶୂନ୍ୟତା ନାହିଁ, ବରଂ କିଛି ସ୍ୱପ୍ନକୁ ହରାଇବାର ଯନ୍ତଣା ଥାଏ । ବହୁ ବ୍ୟକ୍ତି ବସ୍ତୁ ବା ଘଟନାକୁ କେନ୍ଦ୍ରକରି ଆଶାର ସଂଚାର ହୋଇଥାଏ । ସେମାନଙ୍କ ସହିତ ସଂଯୋଗରୁ ହିଁ ଆଶା ଜନ୍ମ ନିଏ । ଏ ସଂଯୋଗ ପାଇଁ ବ୍ୟକ୍ତିଟିକୁ ବ୍ୟବହର କରାଯାଇଥାଏ । ଆଉ କାହାର ନିର୍ଦ୍ଦେଶରେ ଅନ୍ୟ ବ୍ୟକ୍ତି ବା ବସ୍ତୁ ସହିତ ତାର ସଂଘାତ ହୁଏ । ତା ଆୟତ୍ତରେ ନୁହେଁ । ତାର ସହଯୋଗରେ ନିଶ୍ଚୟ କିନ୍ତୁ ତାର ଇଚ୍ଛାରେ ନୁହେଁ କି ଅନିଚ୍ଛାରେ ବି ନୁହେଁ । ଅପରିଚିତକୁ ଅପରିଚିତ ସହିତ ମିଳାଏ ଆଉ ଜଣେ । ଏଣୁ ଅନୁକୂଳ ସଂଯୋଗରୁ ଆଶା ସଂଚାର ହୁଏ ସେଥିପାଇଁ ସେ ଅଜ୍ଞାତ ଶକ୍ତିର ଇଚ୍ଛା ହିଁ ମୂଳତଃ ଦାୟୀ । ତା ପରେ କିନ୍ତୁ ପିଲାହାତରୁ କାଚ କଣ୍ଢେଇଟି ଛଡ଼େଇ ନେଲେତାକୁ ଶିଳାରେ ଚୂର୍ଣ୍ଣ କରିଦେଲା ପରି ଆଶାକୁ ଧୂଳିସାତ୍ କରିଦିଆଯାଏ । ପୁଣି ସେଇ ଅଦୃଶ୍ୟ ଶକ୍ତିର ଖେଳ ପାଇଁ । We are to gods what files are to wanton children ଆମକୁ ନେଇ ଅତ୍ୟନ୍ତ କ୍ରୁର ପରିହାସ କରାଯାଏ । ଭାତଥାଳି ବାଢ଼ି ଦେଇ ସେଥିରେ ଧୂଳି ଅଜାଡ଼ି ଦିଆଯାଏ । ଏଣୁ ହୁଏତ କେହି ଜଣେ କହିଥିଲେ ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ନିଜେ ପଥର ନହେଲେ ପଥର ପଡ଼ିବାକୁ ସହିବା ସହଜ ନୁହେଁ । ଅସହାୟ କ୍ଷତ ବିକ୍ଷତ ହୋଇ ଯନ୍ତଣା ଭୋଗିଲାବେଳେ କାହାକୁ ବା ସେଥିରୁ ତ୍ରାଣ କରିବାକୁ ସେ ଦୁଃଖୀ ମଣିଷଟିଏ ଡାକିବ ? ଯାହାକୁ ଡାକିବ ତାହାରି ଇଚ୍ଛାରେ ତ ସେ ଦୁଃଖୀ । ଏହା ଏକ ବିଡ଼ମ୍ବନାର ମୁହୂର୍ତ୍ତ । ହତାଶାର କାତର ମୁହୂର୍ତ୍ତ । ନିଜ ଉପରୁ ଅନ୍ୟ ଉପରୁ ସ୍ୱୟଂ ମାଲିକ ଉପରୁ ବିଶ୍ୱାସ ଦୋହଲି ଯିବାର ମୁହୂର୍ତ୍ତ । ଏଥିରେ ପୁଣି କୁହାଯାଉଛି ବିଚଳିତ ନ ହେବାକୁ । ତଣ୍ଟିରେ ଛୁରୀ ଚାଲୁଥିବ ଅଥଚ ଜୀବ ବିଚରା ଛଟପଟ ହେବ ନାହିଁ ଏ ପୁଣି କି ପ୍ରକାର ନିର୍ଦ୍ଦେଶ ? ଏହା ସାଡ଼ିଜିମ୍ ର ଚୂଡ଼ାନ୍ତ ନିଦର୍ଶନ ନୁହେଁ ତ ?

ନାଁ ଏହା ହିଁ ତ ନିଜକୁ ଅତିକ୍ରମ କରିବାର ସାଧନା । ଓଃ ପ୍ରଭୁ ଦୁର୍ବଳ ମଣିଷଟିଏ ଉପରେ ଏପରି ପରୀକ୍ଷା କାହିଁକି ତୁମେ କର ?

କ୍ଳାନ୍ତ ନାଉରୀ ଆହୁଲା ଛାଡ଼ି ଦେଲା ପରି ଜୀବନ ସଂଗ୍ରାମରେ ବେଳେବେଳେ ନିଜ ଉପରେ ଆଉ ନିର୍ଭର କରିହୁଏ ନାହିଁ । କାରଣ ନିଜେ ନିଜକୁ ସମ୍ଭାଳିବାକୁ ସାମର୍ଥ୍ୟ ନଥାଏ । ନିଜ ଉପରୁ ଭରସା ଛାଡ଼ି ଆଖିବୁଜି ପଡ଼ିଯିବା ଏକ ଅସହାୟ କାତର ମଣିଷର ବିପର୍ଯ୍ୟୟ । ଏହା କିନ୍ତୁ ସମର୍ପଣ ନୁହେଁ । ନିଜ ଉପରୁ ବିଶ୍ୱାସ ହରାଇଥିବା ମଣିଷ ଈଶ୍ୱରଙ୍କୁ ସୁଦ୍ଧା ବିଶ୍ୱାସ କରି ପାରେ ନାହିଁ । ଏଣୁ ବିବେକାନନ୍ଦଙ୍କ ଭାଷାରେ ପ୍ରକୃତ ନାସ୍ତିକ ସେଇ ଯେ ନିଜ ଉପରୁ ବିଶ୍ୱାସ ହରାଇଛି । ସେଭଳି ଆତ୍ମବିଶ୍ୱାସହୀନ ବ୍ୟକ୍ତି ପରାସ୍ତ ମାନସିକତାର ଆକ୍ରାନ୍ତ । ଯେ ଭିତରୁ ଏପରି ହାରିଯାଏ ସେ ବାହାରେ ମଧ୍ୟ ହାରିବ ହିଁ ହାରିବ । ହାରିବା ତା'ପାଇଁ ଏକ ଅନିବାର୍ଯ୍ୟତା । କିନ୍ତୁ ଯେ ସମର୍ପଣ କରେ ସେ ପରାଜୟକୁ ସର୍ବଦା ଅସ୍ୱୀକାର କରେ । ଯାହା ପାଖରେ ସେ ସମର୍ପଣ କରୁଥାଏ ତା'ର ଅସୀମ ଶକ୍ତି ଉପରେ ତା'ର ଅଗାଧ ବିଶ୍ୱାସ । ଏଣୁ ତାକୁ ସବୁ ସମର୍ପଣ କରିଦେଇ ସେ ସମ୍ରାଟ ପରି ନିଶ୍ଚିନ୍ତ ହୋଇଯାଏ । ତେଣିକି ତାର ଆତ୍ମବିଶ୍ୱାସ ମଧ୍ୟ ପାହାଡ଼ ପରି ଅଟଳ ହୋଇଯାଏ । ତାର କେହି କିଛି ଅନିଷ୍ଟ କରିପାରିବେ ନାହିଁ ବୋଲି ଦୃଢ଼ ଧାରଣା ହୋଇଯାଏ । ତା'ର କସ୍ମିନ କାଳେ

ପରାଜୟ ନାହିଁ । କାରଣ ସର୍ବମୟକର୍ତ୍ତା ଯାହାଙ୍କ ପକ୍ଷଭୁକ୍ତ ହୋଇ ସେ ନିଜକୁ ସମର୍ପିତ କରିଥାଏ ସେ କାହାଦ୍ୱାରା ବା କିପରି ପରାଜିତ ହୋଇ ପାରିବ ? ଏଣୁ ସମର୍ପଣର ଅର୍ଥ ନୁହେଁ ନିଜକୁ ସୁଅ ମୁହଁରେ ତୃଣପରି ଛାଡ଼ିଦେବା । ବରଂ ଅନ୍ୟପକ୍ଷେ ସଚେତନ ଭାବରେ ସବୁଛାଡ଼ି ବିଶ୍ୱ ନିୟନ୍ତାଙ୍କ ପକ୍ଷଭୁକ୍ତ ହେବା । ମନୋଭାବରେ ସବୁ ହରାଇଛି ନୁହେଁ ବରଂ ସବୁ ପାଇଛିର ପ୍ରତ୍ୟୟ ରହିବ । ଏଭଳି ଭାବନା ଯେତେ ଦୃଢ଼ ହେବ ପରିଣତ ହେବ ବ୍ୟକ୍ତି ମାଧ୍ୟମରେ ସାଧାରଣ ତମ୍ବା ତାରର ଧାତୁଗୁଣ । ବିଭୁ ସେତିକି ପ୍ରକଟ ହେବେ ସାଧାରଣ ମାନବୀ ଶକ୍ତି ଅସାଧାରଣ ଦୈବୀ ଶକ୍ତିରେ ଅନ୍ୱିତ ହେବ । ସେ ସମର୍ପଣ ଅନୁପାତରେ ସମର୍ଥ ମାଧ୍ୟମରେ ବିଦ୍ୟୁତ୍ ସମ୍ପର୍କରେ ଅସାଧାରଣ ତେଜ ଓ ଶକ୍ତି ସମ୍ପନ୍ନ ହୋଇଯିବ । କେବଳ ଅହଂକାରକୁ ନିବାରଣ କରିବାର ପ୍ରୟୋଜନ ରହିପାରେ । କାରଣ ସମର୍ପଣରେ ସେ ଲୀନ ନ ହୋଇ ପ୍ରଚ୍ଛନ୍ନ ହୋଇଯାଏ । ସେଥିପାଇଁ ବେଳେବେଳେ, ଅସାଧାରଣ ଶକ୍ତି ପ୍ରକଟ ହେଲେ ସେ ନିଜେ ତାକୁ ଅଧିକାର କରିବାର ଆସ୍ପର୍ଦ୍ଧା କରିବସେ ! ତାକୁ ଜଗି ନପାରିଲେ ସେ ମାଧ୍ୟମକୁ ଶକ୍ତିର ଉତ୍ସରୁ ବିଚ୍ଛିନ୍ନ କରିଦେଇ ପାରେ । ସମର୍ପଣକୁ ବ୍ୟର୍ଥ ବା ସମାପ୍ତ କରି ଦେଇପାରେ ।



## ୧୩-୫-୯୫

କ୍ରୋଧ ଏକ ଅଗ୍ନି । ପରିପାର୍ଶ୍ୱର ପରିସ୍ଥିତି ଏକ ଉତ୍ତେଜକ ଦ୍ରବଣ । ତାକୁ ଆଶ୍ରୟ କରି କ୍ରୋଧ ପ୍ରାଣରେ ପ୍ରବେଶ କରେ । ଏବଂ ସେଠାରେ ଅଗ୍ନି ଜଳି ଉଠେ । ଶରୀରରେ ତାହା ନାନା ଲକ୍ଷଣ ଦେଇ ପ୍ରକଟିତ ହୁଏ । କ୍ରୋଧ ଏକ କମ୍ପନ ଏବଂ ଏକ ଜ୍ୱାଳା । ବାହାରୁ ଭିତରେ ପ୍ରବେଶ କରେ । ଯଦି ତା' ସହିତ କେହି ସହଯୋଗ ନ କରନ୍ତି ସେ ଆପେ ଆପେ ନିରବ ହୋଇଯାଏ । ନିର୍ବାପିତ ହୋଇଯାଏ । କିନ୍ତୁ ତାର ଧାସକୁ ସମ୍ଭାଳିବା ସେତେ ସହଜ ନୁହେଁ । କ୍ରୋଧରେ ଆବିଷ୍ଟ ବ୍ୟକ୍ତି ଅନ୍ଧ ହୋଇଯାଏ ବୋଲି କୁହାଯାଇଛି । ହିତାହିତ ଜ୍ଞାନ ହରାଇଥିବା ବ୍ୟକ୍ତି ନିଶ୍ଚୟ ଅନ୍ଧ । ଏଣୁ କ୍ରୋଧାନ୍ଧ ହେଲେ ସେ ଜାଣି ପାରେ ନାହିଁ ସେ କ'ଣ କରୁଛି । ସେତେବେଳେ ସବୁ ମର୍ଯ୍ୟାଦା ଲଙ୍ଘନ, ହୋଇଯାଇପାରେ, ସମସ୍ତ ଆଚାର ବ୍ୟବହାରର ନୀତି ବିରୋଧ ହୋଇପାରେ । ଏବଂ ଦୁଇ ପକ୍ଷ ପରସ୍ପରକୁ କ୍ରୋଧରେ ଅଧିକରୁ ଅଧିକ ଉତ୍ତେଜିତ କରି କ୍ଷତବିକ୍ଷତ କରନ୍ତି । କ୍ରୋଧ କେତେକ ନିର୍ଦ୍ଦିଷ୍ଟ ପରିଣାମ ପାଇଁ ଏକ ଅନିବାର୍ଯ୍ୟ ପ୍ରସ୍ତୁତି । ସେଗୁଡ଼ିକ ହେଲା ହିଂସା, ହତ୍ୟା, ଧ୍ୱଂସ, ସଂହାର । କ୍ରୋଧର ଏକ ଦିବ୍ୟ ରୂପ ମଧ୍ୟ ଅଛି । ତାହା ରୌଦ୍ର । ତଦ୍ୱାରା ହିରଣ୍ୟ କଶିପୁ ବିଦାରଣ ହୁଏ ମହିଷ ମର୍ଦ୍ଦନ ହୁଏ । କ୍ରୋଧ ଏକ ପ୍ରବେଗ । ତଦ୍ୱାରା ଶକ୍ତିର ଆବାହନ ହୁଏ ଏବଂ ଅସାଧାରଣ ସାମର୍ଥ୍ୟ ସାଧାରଣ ଅବୟବରେ ପ୍ରକାଶ ପାଏ । ଥରେ ଏ ଅଗ୍ନି ଜଳି ଉଠିଲେ ସହଜରେ ପ୍ରଶମିତ ହୁଏ ନାହିଁ । ସେଥିପାଇଁ କାମ ଏବଂ କ୍ରୋଧକୁ ଗୀତା ଶାସ୍ତ୍ରରେ 'ମହାଶନୋ' ବୋଲି ଅଭିହିତ କରାଯାଇଛି । ନୃସିଂହ ରୂପରେ ହିରଣ୍ୟକଶିପୁର ବିଦାରଣ କରି ସାରିଲା ପରେ ମଧ୍ୟ ପ୍ରଭୁଙ୍କ କ୍ରୋଧ ଉପଶମ ହେଲା ନାହିଁ । ଦେବତାମାନେ ଆତଙ୍କିତ ବୋଧ କଲେ । ବହୁ ପ୍ରକାର ଉପଚାର କରାଗଲା । ସ୍ତବ ପାଠ କରାଗଲା । ସ୍ୱୟଂ ମହାଲକ୍ଷ୍ମୀ ଆସି କମଳ ପୁଷ୍ପ ସହିତ ତାଙ୍କର ନିରାଜନା କଲେ । ତେବେ ମଧ୍ୟ କାଳାଗ୍ନି ପରି ନୃସିଂହଙ୍କ କ୍ରୋଧ

ଶିଖାବିସ୍ତାର କରି ଜାଳିବାକୁ ଲାଗିଲା । ପରିଶେଷରେ ବାଳକ ପ୍ରହ୍ଲାଦ କରଯୋଡ଼ି ବିନମ୍ର ପ୍ରାର୍ଥନା ଜଣାଇଲା । କାରୁଣ୍ୟର ଶୀତଳ ଜଳରାଶି ପ୍ରଭୁଙ୍କ ପ୍ରାଣରେ କ୍ରୋଧାଗ୍ନିକୁ ନିର୍ବାପିତ କରିଦେଲା । ସେ ପ୍ରହ୍ଲାଦକୁ କୋଳକୁ ଟେକିନେଇ ଲେହନ କଲେ । ତଦ୍ୱାରା ମାତୃଗୁଣର ସ୍ନିଗ୍ଧତା ଏବଂ କୋମଳତା ପ୍ରକାଶ ପାଇଲା । ପ୍ରଭୁ ଶାନ୍ତ ହେଲେ ।

ଏଣୁ କୁହାଯାଇପାରେ ଯେ କ୍ରୋଧର ବିପରୀତ ଭାବ କରୁଣା ଏବଂ କରୁଣାର ସଂଚାର ହେଲେ କ୍ରୋଧ ଶାନ୍ତ ହୋଇଯିବ । କିନ୍ତୁ କ୍ରୋଧାବିଷ୍ଟ ଥିବା ଅବସ୍ଥାରେ କରୁଣାକୁ ଆଶ୍ରୟ କରିବା ପ୍ରାୟ ଅସମ୍ଭବ ବ୍ୟାପାର । ତେବେ ଉନ୍ମତ୍ତ ଅଶ୍ୱକୁ ଲଗାମ ଟାଣି ମୁହୂର୍ତ୍ତେ ରୋଧି ଦେବା ସମ୍ଭବ ସେଇ ମୁହୂର୍ତ୍ତରେ ଶ୍ୱାସକ୍ରିୟା ମଧ୍ୟ ସ୍ତମ୍ଭିତ ହୋଇଯାଇପାରେ । ଝଡ଼ ଭିତରେ ଏକ ନିଶ୍ଚଳ କେନ୍ଦ୍ରପରି ଏ ସ୍ତବ୍ଧ ମୁହୂର୍ତ୍ତ । ସେତିକିବେଳେ ଯଦି କରୁଣାର ପ୍ରତିମୂର୍ତ୍ତି ସ୍ନେହ ମମତା ପ୍ରେମର ପ୍ରତିମୂର୍ତ୍ତି ଏବଂ ଏ ସମସ୍ତ ଠୁଳ ହୋଇଥିବା ମାତୃମୂର୍ତ୍ତିକୁ ସ୍ମରଣ କଲେ କରୁଣାର ଦ୍ୱାର ଖୋଲି ଯାଇପାରେ ଏବଂ କରୁଣାର ପ୍ଲାବନରେ କ୍ରୋଧର ଅଗ୍ନି ଅବଶ୍ୟ ନିର୍ବାପିତ ହୋଇଯିବ । କିନ୍ତୁ ସେଇ ସ୍ତବ୍ଧ ମୁହୂର୍ତ୍ତଟିକୁ ଲାଭ କରିବା ସହଜସାଧ୍ୟ ନୁହେଁ ।



**୨୧-୫-୯୫**

ଅନେକ ସମୟରେ ଶ୍ରୋତା ହିଁ ବକ୍ତାକୁ ନିୟନ୍ତ୍ରିତ କରିଥାଏ । ଶ୍ରୋତାର ଯୋଗ୍ୟତା ଏବଂ ଅଧିକାର ଭେଦରେ ବକ୍ତବ୍ୟର ଗୁଣ ପ୍ରକାଶଭଙ୍ଗୀ ଏବଂ ବାର୍ତ୍ତା ସ୍ଥିର ହୋଇଯାଏ । ସାମାନ୍ୟ ମୁକ୍ତ ଚେତନାର ବକ୍ତା କେବଳ ମାଧ୍ୟମ ହୋଇଯାଏ । ଶ୍ରୋତା ପାଇଁ ଯାହା ଉଦ୍ଦିଷ୍ଟ ତାହା ସ୍ୱତଃ ବା ଆଉ କାହାର ଇଙ୍ଗିତରେ ପ୍ରକାଶ ପାଇଯାଏ । ବକ୍ତା ସ୍ୱୟଂ ବିସ୍ମିତ ହୋଇଯାଏ ଯେତେବେଳେ ତାର ମନଜ୍ଞାନର ଊର୍ଦ୍ଧ୍ୱରେ ଥିବା କୌଣସି ଏକ ଅପୂର୍ବ ଚିନ୍ତା ନୂତନ ଏକ ଶବ୍ଦ ବଳୟ ସୃଷ୍ଟିକରି ଅବତରଣ କରିଆସେ । ସେଥିରେ ବକ୍ତା ନିଜକୁ ଧନ୍ୟ ମଣେ । କୃତାର୍ଥବୋଧ କରେ । କିନ୍ତୁ ଏ ଅପୂର୍ବ ଭାବାବତରଣର ଉପଭୋକ୍ତା ହେଉଛି ସେଇ ନିର୍ବାଚିତ ଶ୍ରୋତା । ଉଦାହରଣ ସ୍ୱରୂପ ଉତ୍ତପ୍ତ ତୃଷାର୍ତ୍ତ ଭୂମିରେ ମୁମୂର୍ଷୁ ତୃଣମାନଙ୍କ ପାଇଁ ଆକାଶରେ ମେଘର ସଂଚାରେ ହୁଏ । ଏବଂ ଝରିଆସେ ଅବିରତ ବର୍ଷା । ଭୂମି ପରିସିକ୍ତ ହୁଏ । ତୃଣରାଜି ପରିତୃପ୍ତ ହୁଅନ୍ତି । ମେଘ ବି ଘୁଚିଯାଏ ବା ନିଃଶେଷ ହୋଇଯାଏ । ଆକାଶରୁ ବର୍ଷା ଝରେ ସତ କିନ୍ତୁ ଆକାଶ ଓଦା ହୁଏ ନାହିଁ । ଆକାଶରେ ପୂରି ରହିଥିବା ବାୟୁମଣ୍ଡଳ ଶୀତଳ ହୁଏ । କିଛି କାଳପାଇଁ । କିନ୍ତୁ ଆକାଶ ନିର୍ଲିପ୍ତ ରହିଥାଏ । ସ୍ୱତଃସ୍ଫୂର୍ତ୍ତ ବକ୍ତବ୍ୟରୁ ବକ୍ତା କ'ଣ ପାଏ କି ପାଏ ନାହିଁ କହିବା କଠିନ । ହୁଏତ ବକ୍ତା ଭିତରେ ଥିବା ଶ୍ରୋତାଭାଗଟି ଉପକୃତ ହୁଏ । କିନ୍ତୁ ଯେ କେବଳ ବକ୍ତା ହିଁ ବକ୍ତା, ସେ କିଛି ପାଏନାହିଁ । ଅନ୍ୟ ସମୟରେ ଯଦି ସେଇ ବକ୍ତବ୍ୟକୁ ତାକୁ ଶୁଣାଇ ଦିଆଯାଏ ସେତେବେଳେ ସେ ଶ୍ରୋତା ହୋଇଥିବାରୁ ସମ୍ଭ୍ରମ ଆନନ୍ଦ, ବିସ୍ମୟ ଏବଂ ପୁଲକ ତା ଭିତରେ ଜାତ ହୁଏ ଏବଂ ସେ ବିଶ୍ୱାସ କରିପାରେ ନାହିଁ ଯେ ଏକଦା ଏ ସମସ୍ତ ବାକ୍ୟ ତା ମୁହଁରେ ହିଁ ଉଚ୍ଚାରିତ ହୋଇଥିଲା । ଏ ପ୍ରକ୍ରିୟା ବୋଧହୁଏ ସବୁବେଳେ ହେଉଥାଏ । ଶ୍ରୋତାର ପରିତଳ

ଓ ସ୍ଥିତିକୁ ବିଚାର କରି ବକ୍ତା ବାକ୍ୟ ଉଚ୍ଚାରଣ କରେ । ଉପସ୍ଥିତ ଶ୍ରୋତା ଅପେକ୍ଷା, ବକ୍ତାମାନସରେ ଥିବା ସେହି ଶ୍ରୋତାର ଧାରଣା, ତାର ଅବୟବ ତାର ଯୋଗ୍ୟତା ଓ ଅଧିକାରର ନିର୍ଣ୍ଣୟ ଅଧିକ ଗୁରୁତ୍ୱପୂର୍ଣ୍ଣ । ଏଣୁ ଶ୍ରୋତାର ଗୋଟିଏ କଳ୍ପିତ ବିମ୍ବକୁ ହିଁ ସମ୍ଭାଷଣ କରାଯାଇଥାଏ । ଶ୍ରୋତା ଏ ବିମ୍ବଠାରୁ ସମ୍ପୂର୍ଣ୍ଣ ପୃଥକ୍ ହେବା ଖୁବ୍ ସମ୍ଭବ । ବେଳେବେଳେ କିନ୍ତୁ ଅଦ୍ଭୁତ ଭାବରେ ଉଭୟ ଏକ ହୋଇଯାନ୍ତି ଏବଂ କଥା ଲାଖରେ ବାଜିଯାଏ । ଏହି ଅଦ୍ଭୁତ କର୍ମ ପାଇଁ ଉଭୟ ଶ୍ରୋତା ଏବଂ ବକ୍ତା ପ୍ରସ୍ତୁତ ନୁହନ୍ତି କିମ୍ବା ଦାୟୀ ନୁହନ୍ତି । ତାହା ଆଉ କୌଣସି କାହା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।



ବେଳେବେଳେ ଲାଗୁଛି ଯେ ବୋଧେ ଆଉ କିଛି ନାହିଁ କହିବାକୁ । ଭିତରେ ସବୁ ଶୂନ୍ୟ ହେଇ ଗଲାଣି । ଝର ଶୁଖିଗଲାଣି । କରୁଣାମୟୀ ହୁଏତ ବିମୁଖ ହୋଇ ଗଲେଣି । ଫଳରେ ଏ ଗଛରେ ଆଉ କିଛି ଫୁଟିବାର ନାହିଁ । ଖୁବ୍ ହତାଶ ଲାଗୁଛି ।

ବହୁକାଳ ଧରି ବାକ୍‌ଦେବୀଙ୍କର ଯେଉଁ ଅହେତୁକି କୃପା ଲାଭ କରି ମୁଁ କିଛି ଲେଖିଛି ବା କହିଛି ତାହା ବୋଧହୁଏ ଅପସାରିତ ହୋଇଗଲାଣି । ନହେଲେ ଏତେଦିନ ଅପେକ୍ଷା କଲା ପରେ କାହିଁକି କିଛି ସ୍ଫୁର ନାହିଁ । ମୁଁ ଜାଣେ ଯେ ଯାହା ଦିନେ ଆରମ୍ଭ ହୋଇଥିଲା ତା ନିଶ୍ଚୟ ଆଉଦିନେ ସରିଯିବ । କିନ୍ତୁ ଏମିତି ଠୋ କିନା ଛିଣ୍ଡିଯିବ ବୋଲି ଭାବି ନଥିଲି । ହଁ ଅବଶ୍ୟ ଅନେକ ଚିନ୍ତା ଏବଂ ଆବେଗ ବାଧକ ହେଉଚି । ମୁଁ ହୁଏତ ସହଜ ସ୍ୱାଭାବିକ ଏବଂ ସରଳ ହୋଇପାରୁନାହିଁ । ମୋର ଏକ ଉଚ୍ଚାକାଂକ୍ଷା ରହିଛି ଯେ ମୁଁ ଯାହା ଲେଖିବି ତାହା ଅନ୍ୟ ସମସ୍ତଙ୍କୁ ଅତିକ୍ରମ କରିଯିବ । ଏପରିକି ମୋତେ ମଧ୍ୟ । ଏହି ବିଚାରରେ ମୁଁ କୌଣସି ଯୋଜନାରେ ସନ୍ତୁଷ୍ଟ ହୋଇ ପାରୁନାହିଁ କିମ୍ବା ଯୋଜନା ମୋଟ ଉପରେ କରି ପାରୁନାହିଁ । କିନ୍ତୁ ଆଶା କରୁଛି ଯେ ମେଘ ଘୁଞ୍ଚିଯିବ । ଏବଂ ପୁନର୍ବାର ଶ୍ୱେତ ପଦ୍ମାସନା ଉଦ୍ଭାସିତ ହେବେ ଏ ଆକାଶରେ । ଇଚ୍ଛା ମୋର ନୁହେଁ, ତାର ହିଁ ଇଚ୍ଛା ପୂରଣ ହୁଏ । ଏଣୁ ଅପେକ୍ଷା କରିବାକୁ ହେବ, ଏବଂ ମୁଣ୍ଡପାତି ସ୍ୱୀକାର କରିବାକୁ ହେବ ତାର ନିଷ୍ପତ୍ତି ।



ଜୀବନକାଳ ଜନ୍ମ ଏବଂ ମୃତ୍ୟୁ-ସୀମିତ । ଏଥିରେ ଅନ୍ୟାନ୍ୟ ଅବସ୍ଥା ପରି ଜରା ଏକ ଅବସ୍ଥା । କୌମାର ଏବଂ ଯୌବନ ପରି ଜରା ମଧ୍ୟ ଅବଶ୍ୟମ୍ଭାବୀ । ଏ ଅବସ୍ଥାଗୁଡ଼ିକ ଶରୀରାଶ୍ରୟୀ ବା ଅନ୍ୟ ଅର୍ଥରେ କହିଲେ ଶରୀର ଏ ଅବସ୍ଥାମାନଙ୍କରେ ସ୍ୱତନ୍ତ୍ର ଲକ୍ଷଣମାନ ପ୍ରକାଶ କରିଥାଏ । ସେ ସମୟରେ ମନ ପ୍ରାଣରେ ମଧ୍ୟ ତଦନୁଯାୟୀ ଲକ୍ଷଣ ପ୍ରକାଶ ପାଏ । ଜୀବନର ପ୍ରବହମାନ ଧାରାରେ ଏ ଅବସ୍ଥାଗୁଡ଼ିକ ଅନିର୍ବାର୍ଯ୍ୟ କ୍ରମାନ୍ୱୟତା ରକ୍ଷା କରି ଆସନ୍ତି । ଯେଉଁ ଦେହ ମନ ପ୍ରାଣର କ୍ରମଶଃ ଅଭିବୃଦ୍ଧି ଘଟେ ତାର ପୁଣି ଅବକ୍ଷୟ ମଧ୍ୟ ହୁଏ । କୌମାର ଏବଂ ଯୌବନରେ ଶରୀର ବର୍ଦ୍ଧିତ ଓ ପରିପୁଷ୍ଟ ହୁଏ । ପୋଷଣ ଏବଂ ପ୍ରଜନନକ୍ଷମ ହୁଏ ଏବଂ ତାର ଜୈବିକ ଧର୍ମ ରକ୍ଷା କରେ । ତା'ପରେ ତା'ର ଅବକ୍ଷୟ ଆରମ୍ଭ ହୁଏ । ମଧ୍ୟାହ୍ନ ପରେ ଅପରାହ୍ନ ଏବଂ ସାୟାହ୍ନ ପରି ମଳିନ ଏବଂ ସଂକୁଚିତ ହୋଇ ଆସେ ଶରୀର ।

ଜରା କେବଳ ଶରୀର ଧର୍ମ ନୁହେଁ । ଏହା ମନ ପ୍ରାଣକୁ ମଧ୍ୟ ପ୍ରଭାବିତ କରେ । ଅବଶ୍ୟ କରେ । ତାର ପ୍ରଖରତା ଏବଂ ପ୍ରାଣର ପ୍ରବେଗକୁ ଶୀଥିଳ କରିଦିଏ । ଜରା ଭୟ ସଂଚାର କରେ । ଏହା ମୃତ୍ୟୁ ଭୟ । ପୁରାତନ ବସ୍ତ୍ର ପରି ଶରୀର ଜୀର୍ଣ୍ଣ ହୋଇଗଲେ, ଆତ୍ମାପୁରୁଷ ତାକୁ ତ୍ୟାଗକରି ନୂତନ ଶରୀର ଗ୍ରହଣ କରନ୍ତି । ଏହାକୁ ଦେହାନ୍ତର ପ୍ରାପ୍ତି ବୋଲି ବର୍ଣ୍ଣନା କରାଯାଇଛି । କିନ୍ତୁ ସାଧାରଣ ଅର୍ଥରେ ଏହା ମୃତ୍ୟୁ । କୌଣସି ଜୀବ ସଂସାରରେ ଜନ୍ମଲାଭ କରି ଅମର ହୋଇନାହିଁ । ତଥାପି କେହି ମରିବାକୁ ଚାହେଁ ନାହିଁ । ମରିବ ବୋଲି ବିଶ୍ୱାସ ମଧ୍ୟକରେ ନାହିଁ । ସେହି କ୍ରମରେ କେହି ଜରାଗ୍ରସ୍ତ ହେବାକୁ ମଧ୍ୟ ଚାହେଁ ନାହିଁ । ଜରା ଯେତିକି ଅନିବାର୍ଯ ସେତିକି ଅବାଂଛିତ । ସେଥିପାଇଁ ଅନନ୍ତକାଳରୁ ବହୁବିଧ ଉପାୟ ଦ୍ୱାରା ଜରାକୁ ଜୟ କରିବାକୁ ଚେଷ୍ଟା କରି ମଣିଷ ପରାସ୍ତ ହୋଇ ଆସିଛି । ଏହି ଅଭିଳାଷରୁ ହୁଏତ ସେ ଦେବତାଙ୍କର କଳ୍ପନା କରିଛି । ଯେଉଁମାନେ "ଅମରା ନିର୍ଜରା ଦେବାଃ"

ଭାରତ ଭୂମିରେ ଦୁଇଟି ସମାଧାନ ଦିଆଯାଇଛି । ପ୍ରଥମଟି ହେଲା ଯେ କୌମାର ଏବଂ ଯୌବନ ପରି ଜରା ଅପରିହାର୍ଯ୍ୟ । ଏଣୁ ତାକୁ ଅବିଚଳିତ ହୋଇ ସ୍ୱାଭାବିକ ଭାବରେ ଗ୍ରହଣ କରାଯାଉ । ଦ୍ୱିତୀୟଟି ହେଲା ଯେ ଏ ଜୀବନ-ମୃତ୍ୟୁ ଚକ୍ରକୁ ଏବଂ ଅବସ୍ଥାଚକ୍ରକୁ ଉତ୍ତୀର୍ଣ୍ଣ ହେବାପାଇଁ ଏପରି ଏକ ମାର୍ଗକୁ ଗ୍ରହଣ କରାଯାଉ ଯାହାର ଉପାଦାନ ଚିରନ୍ତନ ଆତ୍ମସତ୍ତା । ଏହା ହେଉଛି ଯୋଗମାର୍ଗ ।

ନ ତସ୍ୟ ରୋଗୋ, ନ ଜରା ନ ମୃତ୍ୟୁଃ<br>
ପ୍ରାପ୍ତସ୍ୟ ଯୋଗାଗ୍ନିମୟଂ ଶରୀରମ୍ ।

ଯାହାର ଶରୀର ଯୋଗାଗ୍ନିମୟ ହୋଇଯାଏ ତାକୁ ରୋଗ, ଜରା କିମ୍ବା ମୃତ୍ୟୁ ସ୍ପର୍ଶ କରିପାରେ ନାହିଁ । ଏହିପରି ବାକ୍ୟମାନ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କରେ ମଧ୍ୟ ରହିଛି । କିନ୍ତୁ ଏହାର ଚାକ୍ଷୁଷ ପ୍ରମାଣ ନାହିଁ । ଭାରତ ଭୂମିରେ ବହୁଯୋଗୀ ପୁରୁଷଙ୍କର ଆବିର୍ଭାବ ଘଟିଛି, କୌଣସି ଯୋଗୀ ଜରା ଓ ମୃତ୍ୟୁକୁ ଅତିକ୍ରମ କରିବାର ଦୃଷ୍ଟାନ୍ତ ଏ ଯାବତ୍ ଦେଖିବାକୁ ମିଳିନାହିଁ ।

ଜୈନମାନେ ସେହିପରି ଅର୍ହତ୍‌ଙ୍କୁ କଳ୍ପନା କରିଛନ୍ତି ଯେ ରୋଗ, ଜରା ଓ ମୃତ୍ୟୁ ଉପରେ ଜୟ ଲାଭ କରିଛନ୍ତି । ଅନ୍ୟମାନେ ତାଂକୁ ସେପରି କୌଣସି ଏକ ଅର୍ହତାଙ୍କ ଉଦାହରଣ ଦେଖାଇବାକୁ କହି ତାଙ୍କ ତଥ୍ୟକୁ ଅପ୍ରମାଣିତ କରିଛନ୍ତି ।

ଏହା ସତ୍ୟ ଯେ ମଣିଷ ଭିତରେ ଅମରତ୍ୱର ଅଭିଳାଷ ରହି ଆସିଛି । ସମସ୍ତ ଦୁଃଖ ଶୋକ ଏବଂ ମୃତ୍ୟୁ ସତ୍ତ୍ୱେ । କାହିଁକି ଓ କେଉଁ ଯୁକ୍ତିରେ ସେ ଅମର ହେବାକୁ ଚାହେଁ, ଏବଂ ଅମର ବୋଲି ବିଶ୍ୱାସ କରେ କହିହେବ ନାହିଁ । ଏହା ଏକ ସହଜାତ ବିଶ୍ୱାସ । ଯେମିତି ସେ ସତ୍ୟ କ'ଣ ସ୍ଥିର ଭାବେ ନ ଜାଣି, ଈଶ୍ୱରଙ୍କୁ ନ ଜାଣି ବିଶ୍ୱାସ କରେ, ସେମିତି ସେ ଅମରତ୍ୱରେ ମଧ୍ୟ ବିଶ୍ୱାସ କରେ । ସେହି କ୍ରମରେ ସେ ଜରାକୁ ଅସ୍ୱୀକାର କରେ, ତାକୁ ଜୟ କରିବାକୁ ପ୍ରୟାସ କରେ । ବିସ୍ମୟର କଥା ହେଲା, ଯେ ଅନ୍ୟ ଦୁଇଟି ଅବସ୍ଥା ଯଥା କୌମାର ଏବଂ ଯୌବନକୁ ସେ ପ୍ରତ୍ୟାଖ୍ୟାନ କରେନାହିଁ, ବରଂ ଯୌବନକୁ ଚିରନ୍ତନ ରଖିବାକୁ ସେ ଅଭିଳାଷ କରେ । ଏହି ଅବସ୍ଥାରେ ଜୀବନର ଆନନ୍ଦକୁ ସେ ଉପଭୋଗ କରେ ବୋଲି ବୋଧହୁଏ ତାହା ତା' ପାଇଁ ଏପରି କାମ୍ୟ ହୋଇଯାଏ । ଆନନ୍ଦ ବିରହିତ ଯୌବନକୁ ସେ ହୁଏତ ଗ୍ରହଣ କରିବାକୁ ରାଜି ହେବନାହିଁ । ଏଣୁ ଜରା ନୁହେଁ ଯୌବନ ତାର କାମ୍ୟ । ଯୌବନ ନୁହେଁ, ଭୋଗ,ଏବଂ ଆନନ୍ଦ ତାର

କାମ୍ୟ । ଜରାର ଅବାଂଛନୀୟତା ପଛରେ ସେଥିରେ ରହିଥିବା ନିରାନନ୍ଦ ବୋଧହୁଏ ଦାୟୀ । ଯଯାତି ପରି ଦଶ ସହସ୍ର ବର୍ଷ ଯୌବନ ଭୋଗ କରିବାକୁ ସେ ପ୍ରସ୍ତୁତ । କିନ୍ତୁ ଦଶବର୍ଷ ଜରା ଗ୍ରହଣ କରିବାକୁ ସେ ଚାହେଁ ନାହିଁ । ଯଦି କୌଣସି ଉପାୟରେ ଶୁକ୍ଳକେଶ ଏବଂ ପଳିତ ଚର୍ମ ସତ୍ତ୍ୱେ ଜରାବସ୍ଥାରେ ଆନନ୍ଦ ମିଳି ପାରନ୍ତା, ତାହେଲେ ସେ ହୁଏତ ଶରୀରର ଏବଂ ବିଧ ପରିବର୍ତ୍ତନକୁ ଖାତିର ନକରି ତାକୁ ଗ୍ରହଣ କରି ନିଅନ୍ତା ।

ଶରୀର ବସ୍ତୁସଂଘ ମାତ୍ର । ଯେଉଁ ପ୍ରାକୃତିକ ନିୟମରେ ତାର ଆରମ୍ଭ ହୋଇଥିଲା ସେହି ନିୟମରେ ତାର ପତନ ହେବ । ସୂର୍ଯର ଉଦୟ ଏବଂ ଅସ୍ତ ପରି ଏହା ମହାଜାଗତିକ ଅଲଘନୀୟ ନିୟମ । ଏହାର ବ୍ୟତିକ୍ରମ ନାହିଁ । ଏଣୁ "ତସ୍ମାତ୍ ଅପରିହାର୍ଯେର୍ଥେ ନ ତ୍ୱଂଶୋଚିତୁମର୍ହସି" । ଯେହେତୁ ଜୀବନଚକ୍ରରେ ଅବସ୍ଥା ଚକ୍ର ଅବଶ୍ୟମ୍ଭାବୀ ସେଥିରେ ବିଚଳିତ ହେବାର କୌଣସି କାରଣ ନାହିଁ । ତାକୁ ସ୍ୱାଭାବିକ ଏବଂ ସ୍ଥିର ଚିତ୍ତରେ ସ୍ୱୀକାର କରିବା ହିଁ ବୁଦ୍ଧିମାନ ଲକ୍ଷଣ ।

ଜରାକୁ ବିଳମ୍ବିତ କରିହୁଏ, ବାରଣ କରି ହୁଏନାହିଁ । ଜରାକୁ ପ୍ରତ୍ୟାଖ୍ୟାନ କରିହୁଏ ନାହିଁ, ଅବଜ୍ଞା କରିହୁଏ । ଆକାଶରେ ଚଳମାନ ମେଘ ଖଣ୍ଡର ଛାୟାପାତ ପରି କୌମାର, ଯୌବନ ଏବଂ ଜରା ଆସନ୍ତି ଓ ଯାଆନ୍ତି -

ଯାହା ଥରେ ଗଲେ ଆଉ ଆସେ ନାହିଁ, ତାହା ଯୌବନ
ଯାହା ଥରେ ଆସିଲେ ଆଉ ଯାଏ ନାହିଁ, ତାହା ଜରା
ଯାହା ଆସେ ନାହିଁ କି ଯାଏ ନାହିଁ ତାହା ସତ୍ୟ, ତାହାହିଁ ଶ୍ରେୟ ।

କିନ୍ତୁ ଶ୍ରୀ ଅରବିନ୍ଦ ଦୃଢ଼ ସ୍ୱରରେ ଜରା ଓ ମୃତ୍ୟୁ ଉପରେ ପୂର୍ଣ୍ଣ ବିଜୟ ଘୋଷଣା କରିଛନ୍ତି । ଅତିମାନସ ଭୂମିରେ ମୃତ୍ୟୁକୁ ଏକ ପୁରାତନ ଅଭ୍ୟାସ ପରି ବର୍ଜନ କରିହେବ, ଅତିକ୍ରମ କରିହେବ ।



କ'ଣ ଠିକ୍ କ'ଣ ଭୁଲ୍ ଏ କଥା କହି ହେବନାହିଁ । କିନ୍ତୁ ଗୋଟିଏ ନୈତିକ ମାନଦଣ୍ଡକୁ ସ୍ୱୀକାର କରିନେଲେ, ତେଣିକି ଭଲମନ୍ଦ ବିଚାର କରିବା ଏକ ପିଲାଖେଳ । ପ୍ରତ୍ୟେକ ବ୍ୟକ୍ତି ଏହିପରି ଏକ ମାନଦଣ୍ଡ ଧରି ଅନ୍ୟକୁ ବିଚାର କରୁଥାଏ । ଏଣୁ ତା ଆଖିକୁ ଯାହା ଭୁଲ୍ ଦିଶିଲା ସେ ତାର ବିରୋଧ କରେ ବା ତାକୁ ସଂଶୋଧନ କରିବାକୁ ମନ ବଳାଏ । ସେ ପ୍ରାୟ ଭୁଲିଯାଏ ଯେ ଅନ୍ୟର କାର୍ଯ୍ୟ ଉପରେ ବିଚାର କରିବା ତଥା ମନ୍ତବ୍ୟ ଦେବା ପାଇଁ ତାର ଅଧିକାର ନ ଥାଇପାରେ । ସେ କିନ୍ତୁ ମନ୍ତବ୍ୟ ଦିଏ କାରଣ ସେ ଧରିନେଇଥାଏ ଯେ ସେ ହିଁ ଠିକ୍ ଜାଣିଛି, ଭୁଲ୍ କ'ଣ, ଠିକ୍ କ'ଣ । ଏଣୁ ଅନ୍ୟକୁ ଶୁଣିବାର କିମ୍ବା ଚିଆରିବା ଅଧିକାର ତାର ଅଛି । ତା ଭିତରେ ଥିବା ଗୋଟିଏ ସବ୍ ଜାନ୍ତା ଅହଂ 'ମୁଁ ହିଁ ଠିକ୍ ବାକି ସାରା ପୃଥିବୀବାସୀ ଭୁଲ୍' ଧାରଣାର ବଶବର୍ତ୍ତୀ ହୋଇ ଅନ୍ୟର ଭୁଲ୍ ବାଛି ବସେ । ଯଦି ସେ ତାକୁ ସଂଯତ କରିନେଲା ତାହେଲେ ନିଜ ଚାରିଆଡ଼େ ଅସଂଖ୍ୟ ଭୁଲ୍ କାମ ଦେଖି ଚୁପ୍ ରହିବାକୁ ପଡ଼ିପାରେ । ଯଦି ତା ନକରି ସବୁ ଘଟଣା ଏବଂ ଆଚରଣରେ ସେ ପ୍ରତିକ୍ରିୟା ପ୍ରକାଶ କଲା ତାହେଲେ ତା ପାଇଁ ବଂଚିବା ଦୁର୍ବିସହ ହୋଇଯିବ । ଏଣୁ ପ୍ରଥମେ ନିଜ କର୍ମକ୍ଷେତ୍ରର ପରିସରକୁ ଗୋଟିଏ ରେଖା ଭିତରେ ସୀମିତ କରିବାକୁ ପଡ଼ିବ । ତା ଭିତରେ ଯାହା

ଘଟିଲା, ସେଥିରେ ସେ ଖୋଲାଖୋଲି ଭାଗନେବାକୁ ହେବ । ଏବଂ ଅନ୍ୟମାନଙ୍କ ସହିତ ମିଶି ଚଳିବାକୁ ହେବ । ତଥାପି କାହାର ଭୁଲ ବାଛିବା ପୂର୍ବରୁ ତାର ବିକଳ୍ପରେ ଠିକ୍ କ'ଣ ଜାଣିଥିବା ପ୍ରଯୋଜନ । ଏଣୁ ନିଜ କର୍ମ ପରିସର ଭିତରେ, କିଏ କ'ଣ ଭୁଲ କରିଦେଲା ନ କହି ସେ କଣ ଠିକ୍ କରି ପାରିଥାନ୍ତା ତାହା ସ୍ପଷ୍ଟ ଭାବରେ କହିଦେବା ଆବଶ୍ୟକ । ନହେଲେ ଅନ୍ୟମାନେ ପରାମର୍ଶ ପାଇଁ ଆସିଲେ ନିର୍ଭୀକ ଭାବରେ ନିଜର ସ୍ୱତନ୍ତ୍ର ମତ ସୂଚେଇ ଦେବା ଭଲ ।



ପୃଥିବୀରେ ସତେ ଏତେ ଅନ୍ଧାର ଛାଇ ରହିଛି ଯେ ମନେ ହେଉଛି ମାନବଜାତି ଏଥିରୁ ନିସ୍ତରି ପାରିବ ନାହିଁ । ଅନ୍ଧାରରେ ବିବଶ ନିରାଶ ହୋଇ ଈଶ୍ୱରଙ୍କୁ ନିନ୍ଦା କରିବା ଏକ ସ୍ୱାଭାବିକ ପ୍ରତିକ୍ରିୟା । ସେ ମୋଟ ଉପରେ ଅନ୍ଧାରକୁ Evil କୁ କାହିଁକି ସୃଷ୍ଟି କଲେ ? ଈଶ୍ୱରଙ୍କ ସପକ୍ଷରେ ବହୁ ଯୁକ୍ତି ଦିଆଯାଇଛି । ମଣିଷକୁ ବୁଝାଇ ଦିଆଯାଇଛି ଯେ ଆଲୋକ ପାଇଁ ଅନ୍ଧାର ଅନିବାର୍ଯ୍ୟ । ଆପେକ୍ଷିକ ଜଗତରେ ଉଭୟେ ସହାବସ୍ଥାନ କରନ୍ତି । ଏଣୁ ଗୋଟିକୁ ବାଦ୍ ଦେଇ ଅନ୍ୟଟିକୁ ଚିନ୍ତା କରିହେବ ନାହିଁ । ଆମେ ଅଂଧାରରେ ବୁଡ଼ି ରହିଥିବା ବେଳେ ଭୁଲିଯାଉ ଯେ ସେଇ ମୁହୂର୍ତ୍ତରେ ବିପରୀତ ଗୋଲାର୍ଧରେ ମଧ୍ୟାହ୍ନ ସୂର୍ଯ୍ୟ ଆଲୋକ ବିକୀରଣ କରୁଛି । ଅନ୍ଧାରରୁ ମୁକ୍ତି ପାଇବାକୁ ହେଲେ ଆମ ସୀମିତ ଗୋଲାର୍ଧକୁ ଅତିକ୍ରମ କରିଯିବାକୁ ହେବ । ଦୃଷ୍ଟି ଓ ଚେତନାକୁ ପ୍ରସାରିତ କରି ପାରିଲେ ଉଭୟେ ଆଲୋକ ଏବଂ ଅନ୍ଧାର ଏକତ୍ର ପରସ୍ପରକୁ ଧାରଣ କରୁଥିବାର ଅନୁଭବ ହେବ । ଏଣୁ ବିଚଳିତ ହେବାର କୌଣସି କାରଣ ରହିବ ନାହିଁ । ସୁଖ ଦୁଃଖରେ ବିଚଳିତ ନହେବା ତ' ସ୍ଥିତ ପ୍ରଜ୍ଞର ଲକ୍ଷଣ । ସ୍ଥିତ ପ୍ରଜ୍ଞ ହେବା ଯୋଗୀର ଲକ୍ଷଣ ।



ନିଜକୁ ନିଜେ ଠକିବାର ଏକ ବିଚିତ୍ର ପ୍ରବୃତ୍ତି ମଣିଷ ଭିତରେ କାମ କରେ । କୌଣସି ପ୍ରକାରେ ଦାୟିତ୍ୱ ଟାଳି ଦେବାକୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ପରିଶ୍ରମ ବା ପ୍ରୟାସ ନ କରିବାକୁ, ନିଦ୍ରା ଆଳସ୍ୟ ମୋହ ଆଦି ତାମସିକ ଗୁଣ ଗୁଡ଼ିକୁ ପ୍ରଶ୍ରୟ ଦେବାକୁ ସେ ତାର ସମସ୍ତ ବୁଦ୍ଧି ଓ ଯୁକ୍ତି କୌଶଳ ପ୍ରୟୋଗ କରିଥାଏ । ପ୍ରଥମେ ଦୀର୍ଘସୂତ୍ରିତା ପ୍ରବେଶ କରେ । ମନ ଯୁକ୍ତି କରେ, ହେଲା - ଏବେ ସବୁଦିନ କାମ କରି କରି ଆଜି ଦିନଟା ନକଲେ କ'ଣ ସୃଷ୍ଟି ଗୋଡ଼ିମାଟି ହୋଇଯିବ ? ଥାଉ, ଆଜି କାମଟାକୁ କାଲି କରିଦେଲେ ହେବ ନାହିଁ ? ତା ବାହାରେ ମୁଁ ଯେତେ କାମ ଯେମିତି ନିଷ୍ଠାର ସହିତ କରି ଆସିଛି ଆଉ କେତେ ଜଣ ଭଲା ସେମିତି କରିଛନ୍ତି ? ମତେ ତ ପୁଣି ମଝିରେ ମଝିରେ ଛୁଟି ଦରକାର । ଶୃଙ୍ଖଳା ଭାଙ୍ଗିଲେ ସିନା ଉଚ୍ଛୃଙ୍ଖଳ ବୋଲି କିଏ କହିବ । କିନ୍ତୁ ଶିକୁଳିଟାକୁ ସାମାନ୍ୟ ହୁଗୁଳା ନକଲେ ସ୍ୱାଧୀନତା କେମିତି ରହିବ ? ମଣିଷଟା କ'ଣ ଖାଲି ଯନ୍ତ୍ର ? କାନ୍ଥଘଣ୍ଟା ପରି ଟିକ୍ ଟିକ୍ ଚାଲିଥିବ ଦିନ ରାତି । ରହିଲେ ସରିଗଲା । ଛାଡ଼ ସେ ଯାହାହେଉ, ଆଜିଦିନଟା ମୁଁ କିଛି କରିବି ନାହିଁ । ଗୋଟିଏ ଦିନ ନିୟମ ନ ଭାଙ୍ଗିଲେ, ନିୟମ କେମିତି ଜାଣିବ ଯେ ମୁଁ ତାର ଦାସ ନୁହେଁ । ତା ବାହାରେ ଦିନଟେ ବ୍ୟତିକ୍ରମ ହୋଇଗଲେ କ'ଣ ଏମିତି ଆଧ୍ୟାତ୍ମିକ ପତନ ଘଟି ମୁଁ

ରସାତଳକୁ ଚାଲି ଯିବି ? ଆଉ ଗୋଟେ କଥା - କୋଉ ଉଞ୍ଚକୁ ମୁଁ ଉଠିଗଲିଣି ଯେ ପଡ଼ିଯିବା ପାଇଁ ଏତେ ଭୟ । ହେଇଯାଉ ଯାହା ହେବାର, ମୁଁ ଆଜି ଦିନଟା ଛୁଟି ନେଉଛି ।

ଯା ପରେ ଦୁଇଟି କ୍ରିୟା ଏବଂ ପ୍ରତିକ୍ରିୟା ସାଧାରଣତଃ ଦେଖା ଦେଇଥାଏ । ଗୋଟିଏ ହେଲା ବାଲୁତ ପରି ଇତସ୍ତତଃ ହାତ ମାରିବ, ମୁହଁ ମାରିବା । କ'ଣ କରିବାକୁ ଯାଇ ଆଉ କଣ କରି ବସିବା । ଅନ୍ୟଟି ହେଉଛି, ମଝିରେ ମଝିରେ ନିଜକୁ ଲୁଚେଇ ଲଜ୍ଜିତ ହେବା । ହେଃ, ଏମିତି କଣ ମୁଁ ଆଜି କରୁଛି । ବାଲୁତ ପକ୍ଷ କିନ୍ତୁ ମଡ଼େଇ ହେଲା ପରି ତାକୁ ଅବଜ୍ଞା କରେ । ଆଚରଣରେ ସୂଚେଇଦିଏ - ଯାଉନୁ - ମୁଁ ଆଜି ବନ୍ଧନ ମୁକ୍ତ - ମୋ ଇଚ୍ଛା ଯାହା ତାହା କରିବି । କାହାକୁ ସେଥିପାଇଁ ମୁଁ କୈଫୟତ୍ ଦେବାକୁ ବାଧ୍ୟ ନୁହେଁ । ସେ ହୁଏତ କିଛି ନିଷିଦ୍ଧ ଦରଜା ଖୋଲି ପକାଏ । କିଛି ନିଷିଦ୍ଧ କାର୍ଯ୍ୟ କରିପକାଏ । ବନ୍ଧୁ ଚେଷ୍ଟାରେ କାଦୁଅରେ ପଶିଯିବାର ଆଦିମ ପ୍ରବୃତ୍ତିକୁ ଯାହା ସେ ଆୟତ୍ତ କରିଥିଲା ବୋଲି ଭାବୁଥିଲା ତାହା ନଗ୍ନ ଭାବରେ ଲେଉଟି ଆସେ । କାଦୁଅରେ ନ ପଶିଲେ ବି ସେଇ ଚିନ୍ତାରେ ସେ ଲଟପଟ ହୁଏ । ଯେତେବେଳେ ସନ୍ଧ୍ୟା ନଇଁ ଆସେ ତାର ପ୍ରତିକ୍ରିୟା ପକ୍ଷ ଜାଗ୍ରତ ହୁଏ । ବ୍ୟଥିତ ବନ୍ଧୁଟିଏ ପରି ସେ ଆସି କହେ - "ଗୋଟିଏ ଅମୂଲ୍ୟ ଦିନ ହରେଇ ଦେଲୁ । ବାରବର୍ଷର ତପସ୍ୟା ଶୁଖୁଆପୋଡ଼ାରେ ଗଲା । କ'ଣ ଏମିତି ହେଲୁ ଆଜି, ଏବଂ କାହିଁକି ? ତୁଟା ଗୋଟାଏ ହତଭାଗା । ପାଦେ ଆଗେଇଲା ବେଳକୁ ଦୁଇପାଦ ଖସି ଯାଉଛୁ । ତୋ ଦେଇ କିଛି ହବ ନାହିଁ ।" ସତକୁ ସତ ତାକୁ ଲାଗେ ଯେ ସେ ତାର ଆଦିମତମ ଅବସ୍ଥାକୁ ପୁଣି ଫେରି ଯାଇଛି । ପରାସ୍ତ ଅନୁତପ୍ତ ପିଲାଟିଏ ପରି ସେ ମନମାରି ବସିଥାଏ । ଚାହୁଁଥାଏ ତାକୁ ଏ ଅବସ୍ଥାରେ କେହି ଯେମିତି ନ ଦେଖନ୍ତୁ । କିନ୍ତୁ ଜଣକ ଦୃଷ୍ଟିରେ ସେ ପଡ଼ିଯାଏ । ସେ କିଛି ନ କହି କେବଳ ତାକୁ ଚାହିଁ ରହନ୍ତି । ସେ ଚାହାଣିରେ ସେ ହୁଏତ କହୁଥାନ୍ତି "ଉଠ୍ ପୁଣି ଥରେ ଚେଷ୍ଟା କର ।"



ନିଜ ମାନଦଣ୍ଡରେ ନିଜକୁ ମାପି ସବୁବେଳେ ନ୍ୟାୟ ବିଚାର ମିଳିଲା ନାହିଁ ବୋଲି ଅଭିଯୋଗ କରିବା ଆମର ଏକ ବନ୍ଧୁ ପୁରାତନ ଅଭ୍ୟାସ । ମୋ ଯୋଗ୍ୟତା ଅନୁସାରେ ମୁଁ ଯାହା ପାଇବା କଥା ତା ମୋତେ କେବେ ମିଳିନାହିଁ । ବରଂ ତାଠାରୁ ଢ଼େର କମ୍ ମୋ ଭାଗରେ ପଡ଼ିଛି । ଅଥଚ କ ଖ ଗ ଆଦି ଗୁଡ଼ାଏ ଅଯୋଗ୍ୟ ଅପାଙ୍କ୍ତେୟ କେତେ କ'ଣ ନ ପାଇଛନ୍ତି ? ଅଭିଯୋଗ କଲେ ଦୁଇଟି ଉତ୍ତର ମିଳିଛି । ଗୋଟିଏ ପୁରୁଣା ଗୁଳାରେ ପଡ଼ିଥିବା ଶାସ୍ତ୍ରୀୟ ଆଶ୍ୱାସନା ଓ ଉପଦେଶ । ତା'ହେଲା ଅଧିକ ପାଇବାକୁ କାମନା କଲେ ଦୁଃଖ ବଢ଼େ । ଯାହା ମିଳୁଛି ସେଥିରେ ସନ୍ତୁଷ୍ଟ ରହି ଶିଖିଲେ ଦୁଃଖର ମାତ୍ରା କମିଯାଏ । ଏଣୁ ଏ ଅଭିଯୋଗ ମନୋବୃତ୍ତିଟିକୁ ଛାଡ଼ି ଦିଅ । ଦ୍ୱିତୀୟ ଉତ୍ତରଟି ଖୁବ୍ ତୀବ୍ର । ତାହା ଏହିପରି "ତୁମେ ତୁମ ଯୋଗ୍ୟତା ବିଷୟରେ ଜାଣିଲ କିପରି ? ଆଉ ଜଣକ ସହିତ ନିଜକୁ ତୁଳନା କଲାବେଳେ, ତାର ଯେଉଁ ଯେଉଁ ଅଯୋଗ୍ୟତା ଆଖିରେ ପଡ଼େ ତାକୁ ହିଁ ବିଚାର କରୁଛ । ତାର ହୁଏତ ଆଉ ଗୋଟିଏ କ'ଣ ଗୁଣ ଅଛି ବା ଯୋଗ୍ୟତା ଅଛି ଯେଉଁଥିପାଇଁ ସେ ତୁମଠାରୁ ଅଧିକ କିଛି ପାଇପାରେ । ଅବଶ୍ୟ ସେ ଅଧିକ ପାଏ କି ପାଏ ନାହିଁ ତୁମେ ଦୂରରେ ରହି ଜାଣି ପାରିବ ନାହିଁ ।

ଗୋଟିଏ ସହଜ ସରଳ ଜ୍ଞାନ ଆମର କାହିଁକି ହୋଇପାରୁନାହିଁ ? ଆମେ କାହା ବିଷୟରେ - ସେ ବ୍ୟକ୍ତି ହେଉ ବସ୍ତୁ ହେଉ ଅଥବା ବ୍ୟବସ୍ଥା ବା ଅନୁଷ୍ଠାନ ହେଉ କ'ଣ ପ୍ରକୃତରେ ଜାଣୁ ବା ଜାଣିପାରିବା ? ସେଇଭଳି ନିଜ ବିଷୟରେ ଆମର ବା କଣ ଜ୍ଞାନ ଅଛି ? ମଣିଷ ତାର ସୀମିତ ବୁଦ୍ଧି ଓ ସାମର୍ଥ୍ୟ ବଳରେ କିଛି ଜାଣିବା ଭାରି କଷ୍ଟ । ଅନ୍ୟପକ୍ଷେ Divine ବୋଲି ଯାହାକୁ ଆମେ କହୁ, ସେତ ପୂର୍ଣ୍ଣ ଜ୍ଞାନର ଅଧିକାରୀ । ଏଣୁ ମୋ ଅପେକ୍ଷା ସେ ବିଷୟରେ ସେ ହିଁ ସବୁକଥା ଜାଣନ୍ତି । ଅତଏବ କ'ଣ କାହାକୁ ଦିଆଯିବ ବା ଯିବ ନାହିଁ ସେ ନିଷ୍ପତ୍ତି ତାଙ୍କ ପୂର୍ଣ୍ଣଜ୍ଞାନରେ ହିଁ ନିଆଯାଇଥାଏ । ତାଙ୍କ ନିଷ୍ପତ୍ତି ଏବଂ ଅନୁମୋଦନ ନଥିଲେ ଏ ବିଶ୍ୱରେ କିଛି ସମ୍ଭବ ନୁହେଁ । ପ୍ରତି ପଲକ ପାତରେ ପରମ ବିଶ୍ୱରେ ଯେଉଁ ଅଜସ୍ର ଶକ୍ତି ସଂଚାଳିତ ହେଉଛି ତାହା ତାଙ୍କର ହିଁ ସ୍ପନ୍ଦନ । ଅତଏବ ତାଙ୍କ ନିଷ୍ପତ୍ତି ଉପରେ ସବୁ ଛାଡ଼ି ଦେଇ ନିଜକୁ ତାଙ୍କ ପାଖରେ ସମର୍ପି ଦେଇ ପାରିଲେ ହୁଏତ ଏ ହତାଶା ଏବଂ କ୍ଷୋଭରୁ ମୁକ୍ତି ମିଳିପାରେ ନଚେତ୍ ନିଜେ ନିଜକୁ ଅସନ୍ତୋଷର ତୁଷାଗ୍ନିରେ ଜାଳି ଜାଳି ନିଶ୍ଚିହ୍ନ ହୋଇଯିବା କଥା ।



## ୮-୩-୯୭

ଘୁଡ଼ିର ସୂତା ଛିଣ୍ଡିଗଲେ ତାହା ଯେମିତି ଶୂନ୍ୟାଶ୍ରୟୀ ହୋଇଯାଏ ଏବଂ ଅଦୃଶ୍ୟ ପବନ ତାକୁ ଟେକିଧରି ଖୁବ୍ ଆସ୍ତେ ଆସ୍ତେ ତଳକୁ ଓହ୍ଲାଇ ଆଣେ, ସେହିପରି ଆମେ ନିର୍ଭର କରୁଥିବା ଯାବତୀୟ ଖୁଣ୍ଟି ହଠାତ୍ ଉପୁଡ଼ି ପଡ଼ିଲେ ଆମେ ମଧ୍ୟ ଅଗତ୍ୟା ଚିରବର୍ତ୍ତମାନ ଅଥଚ ଅଦୃଶ୍ୟ ଶକ୍ତି ଉପରେ ଆଉଜି ପଡୁ । ନିଜ ଉପରେ, ନିଜର ବାହୁ ବଳ, ଧନ ବଳ, ଜନ ବଳ, ପ୍ରଭାବ, ପ୍ରତିପତ୍ତି ଉପରେ ଆମେ ସ୍ୱାଭାବିକ ଭାବରେ ଏବଂ ପ୍ରାୟ ଅଣାୟତ୍ତରେ ନିର୍ଭର କରି ରହିଥାଉ । ମନେ କରୁଥାଉ ଯେ ଏସବୁ ଆମ ସହିତ ଚିରକାଳ ଥିଲେ ଓ ରହିବେ । କିନ୍ତୁ ବେଳେବେଳେ ଆମ ଆଖି ଫିଟେଇ ଦେବା ପାଇଁ ମାଲିକେ ହଠାତ୍ ଆମକୁ ଆମର ସଂପୂର୍ଣ୍ଣ ଏକାକୀ ଏବଂ ଅସହାୟ ପରିଚୟ ଦେଇଦିଅନ୍ତି । "ନା, ଥାକେ ତାର ଘରେର ଆଡାଲ୍ ନା ଥାକେ ତାର ଧନ । ପଥେ ଏନେ ନିଃଶେଷେ ତାୟ କରୋ ଅକିଞ୍ଚନ ।" ଏ ବିପୁଳ ପୃଥ୍ୱୀରେ ସେ ସଂପୂର୍ଣ୍ଣ ଅପରିଚିତ ହୋଇ ଠିଆ ହୋଇଯାଏ । ସେ କାହାକୁ ଜାଣେ ନାହିଁ । କେହି ତାକୁ ଜାଣନ୍ତି ନାହିଁ । ତା ପାଖରେ ଧନ ନାହିଁ, ଅନ୍ନ ନାହିଁ, ଆଶ୍ରୟ ନାହିଁ, କାହାକୁ ଡାକି ଦେବାର ବା କାହାର ସାହାଯ୍ୟ ଲୋଡ଼ିବାର ସମ୍ଭାବନା ନାହିଁ । ସତେ ବା ସେ ଅତର୍କିତ ମୁହୂର୍ତ୍ତରେ ମହାଶୂନ୍ୟକୁ ଗଳି ପଡ଼ିଛି । ସବୁ ସଂପର୍କ ଏବଂ ସବୁ ଆଢୁଆଳ ଉଭେଇ ଯାଇଛି । 'ଏକେବାରେ ସକଲ ପର୍ଦା ଘୁଂଚାଏ ଦାଓ ତାର" । ସେ ବିଚରା ପ୍ରଥମେ ତ୍ରସ୍ତ ଚକିତ ହୋଇ ଚାରିଆଡେ ଚାହେଁ । ତା ପରେ ପରାସ୍ତ ବିପନ୍ନ ବୋଧ କରେ । ଏବଂ ବିଶ୍ୱାସ ଥାଉ ନଥାଉ ପରିସ୍ଥିତିରେ ଅନନ୍ୟୋପାୟ ହୋଇ ଇଷ୍ଟ ସ୍ମରଣ କରେ ।

ତାକୁ ଏମିତି ନିରାବରଣ କରି ଲଙ୍ଗଳା ଏକାକୀ ଛଡା କରିବାର ଉଦ୍ଦେଶ୍ୟ ଅଛି, ଏମିତି ଅନୁଭବ ସମସ୍ତଙ୍କ ପାଇଁ ସବୁବେଳେ ମିଳେ ନାହିଁ । ତାଙ୍କର ଅସୀମ ପ୍ରେମର ଭାର ବହନ କରିବାକୁ ଯାହାକୁ ସେ ଶକ୍ତି

ପ୍ରଦାନ କରନ୍ତି, ତାକୁ ହିଁ ଏହିପରି ସମସ୍ତ ବନ୍ଧନ ସମସ୍ତ ଇତର ଭାର, ଦାୟିତ୍ୱ ଏବଂ ଆନୁଗତ୍ୟ ମୁକ୍ତ କରି ଦିଅନ୍ତି । ସେ ଅବସ୍ଥାରେ ତାକୁ ସୁଯୋଗ ଦିଅନ୍ତି ଅନୁଭବ କରିବାକୁ ଏକଲା ତୁମି ସମସ୍ତେ ତାର ବିଶ୍ୱଭୁବନମୟ । ଥରେ ମାତ୍ର ଏ ମହାର୍ଘ ଅନୁଭବ ଆସିଲେ ଜୀବନ ସାର୍ଥକ ହୋଇଯାଏ । ଜାଣିହୁଏ ଯେ ଆଉ ଯାହାସବୁ ଆବରଣ ମଡେଇ ହୋଇ ଆମେ ନିଜକୁ ସୁରକ୍ଷିତ ମଣୁଥାଉ, ସେ ସବୁ ଗୋଟାଏ ମୁହୂର୍ତ୍ତରେ ବିଲୀନ ହୋଇଯାଇପାରେ କିନ୍ତୁ ସେ ସବୁ ଚାଲିଗଲାପରେ ଯାହା ଦିଗ୍ ଦିଗନ୍ତ ବ୍ୟାପୀ ପରିବ୍ୟାପ୍ତ ରହି ଆମକୁ ଆବୃତ କରିଥାଏ ତାର ଆଦୌ କମ୍ପନ ହୁଏ ନାହିଁ । ସେ ଚିରକାଳ ସେହିପରି ଅଛି ଓ ରହିବ । ତାକୁ କେବଳ ଅନୁଭବ କରିବା ପାଇଁ ସୁଯୋଗ ମିଳେ ନାହିଁ ।ନିଜ ପ୍ରୟାସରେ ନିଜ ଜାଲରୁ ମୁକ୍ତ ହେବା ସହଜ ନୁହେଁ ।ବରଂ ତାହା ଏକ ରକମ ଅସମ୍ଭବ ବ୍ୟାପାର ଏଣୁ ଯେ ସମଗ୍ର ଜଗତକୁ ନିୟନ୍ତ୍ରଣ କରନ୍ତି, ସେହିଁ କୃପା ପରବଶ ହୋଇ ବେଳେବେଳେ ଜାଲଭିତରୁ ଆମକୁ ଟୋଳି ନିଅନ୍ତି ସୁଯୋଗ ଦିଅନ୍ତି ତାଙ୍କର କୋମଳ ସ୍ପର୍ଶ ଅନୁଭବ କରିବାକୁ ସେ ବିଶାଳ ସୁରକ୍ଷାର ପ୍ରତ୍ୟୟ ମୁହୂର୍ତ୍ତକ ପାଇଁ ଆସିଗଲେ ଆଉ ଭୟ ଉଦ୍‌ବେଗ ଆତୁରତା, କିଛି ରହିବ ନାହିଁ । ମନେ ହେବ ଯଦି ମାଙ୍କ ଶକ୍ତି ତତେ ଧାରଣ କରିଛି ତେବେ ଭୟ କାହାକୁ । ଆଉ କିଏ ଏପରି ଅଛି ଯେ ତାକୁ ପ୍ରତିହତ କରି ତୋତେ ଛଡେଇ ନେଇ ପାରିବ ? ଏ ଅନୁଭବ, ଉନ୍ମୁକ୍ତ କକ୍ଷଚ୍ୟୁତ ଅନିକେତ ନିରାଶ୍ରୟ ଅସହାୟ ହେବାର ଅନୁଭବ ଅତ୍ୟନ୍ତ ମହାର୍ଘ୍ୟ କୃପାର ପରିଣାମ ।



ଶତ୍ରୁ ଆଗରେ ଅପାରଗତା ପ୍ରକାଶ ପାଇବାଠୁ ବଳି ଆଉକିଛି ଅଧିକ ଗ୍ଲାନିକାରକ ଦୁଃଖ ନାହିଁ । ନିଜକୁ ଅନ୍ୟଠାରୁ ଅଧିକ ମଣୁଥିବା ମଣିଷ ପାଇଁ ଏଭଳି ପରାଜୟ ଦିନେନା ଦିନେ ନିଶ୍ଚୟ ଘଟିବ ତାର କାରଣ ହେଲା ଯେ ସେ ତାର ବାସ୍ତବ କ୍ଷୁଦ୍ରତାକୁ ସବୁବେଳେ ସମସ୍ତଙ୍କ ପାଖରେ ଘୋଡେଇ ରଖି ପାରିବ ନାହିଁ । ତାର ସମସ୍ତ କୃତ୍ରିମ ଆବରଣ ଅତର୍କିତ ଭାବରେ ହୁଗୁଲା ମୁଖାଟିଏ ପରି ଖସି ପଡିବ । ଯେ ନିଜକୁ ବିନା କାରଣରେ ଧନାଢ୍ୟ ବୋଲି ଦେଖେଇବାକୁ ଚାହେଁ ସେ ଅବଶ୍ୟ ତାର କାଙ୍ଗାଳ ରୂପ ପ୍ରକାଶ କରିବ । ଯେ ନିଜକୁ ପଣ୍ଡିତ ବୋଲି ପ୍ରଚାର କରିବାକୁ ଚାହେଁ ସେ ତାର ହୀନତା ଓ ମୂର୍ଖତା ଦିନେ ପ୍ରକାଶ କରିଦେବ । ଦିନେ ହଠାତ୍ ସେ ଅନୁଭବ କରିବ ଯେ ତାର ସମସ୍ତ ଶତ୍ରୁ ପକ୍ଷ ଉପସ୍ଥିତ ଥିଲାବେଳେ ତାର ମିଥ୍ୟା ପାଣ୍ଡିତ୍ୟ ବା ପଣ୍ଡିତମନ୍ୟତାର କୃତ୍ରିମ ଆବରଣ ଖସି ପଡିଛି । ସେ ଲଜ୍ଜିତ,ଅପମାନିତ ବିଡମ୍ବିତ ହୋଇ ମ୍ରିୟମାଣ ବୋଧ କରିବ । ତାର ଅଂହକାର ଧୂଳିସାତ ହୋଇଯିବ । ସେ ତାର ପୂର୍ବ ଗୌରବ ଭାବି ବିଳସୁ ଥିଲାବେଳେ ହୁଏତ ଭୁଲିଯିବ କଠୋର ନିର୍ମମ ସତ୍ୟକୁ ଆଣି ତା ଆଗରେ ଠିଆ କରାଇବା ଏକ ବିଭୁକୃପା । ଏଭଳି ଏକ ପରାଜୟ ଓ ପରାଭବ ନ ଆସିଲେ ତାର ଆଖି ଫିଟିବ ନାହିଁ, କି ସେ ନିଜର ବାସ୍ତବତା ପ୍ରତି ସଚେତନ ହେବ ନାହିଁ

ଏଭଳି ବିଡମ୍ବନା ମାଲିକଙ୍କ ନିର୍ଦ୍ଦେଶରେ ହିଁ ତା ଜୀବନରେ ଦେଖାଦିଏ । କୃପାର ଅହେତୁକୀ ପ୍ଲାବନରେ, ସବୁ ନଗ୍ନ ସତ୍ୟ ପ୍ରକଟ ହୋଇଯାଏ । ଅଂହ ବୁଦ୍ଧିକୁ ମୂଳରୁ ହିଁ କଟାଯାଇଥାନ୍ତା । କିନ୍ତୁ ତାହା ଯେ ହେତୁ ହୋଇନାହିଁ, ଏପରି ନିର୍ମମ ଭାବରେ ତାକୁ ବିବସ୍ତ୍ର ନକଲେ, ତା ଆଖିରୁ ପରଳ ଖସିବ ନାହିଁ ।

ପରାଭବର ତିବ୍ରତାରେ ସେ ପୀଡା ପାଉଥିବା ବେଳେ, ବିଧି ନିନ୍ଦା କରେ, ଇଷ୍ଟ ନିନ୍ଦା କରେ । ଜାଣିପାରେ ନାହିଁ ଯେ ସେତେବେଳେ ସେ କୃତଜ୍ଞ ହେବାର ସୁଯୋଗ ହିଁ ପାଇଥାଏ । ନିଜ ବିଷୟରେ ଯଥା

ଜ୍ଞାନ ଲାଭ କରିବା ଏକ ସୌଭାଗ୍ୟ । ଏହା ସହଜରେ ମିଳେ ନାହିଁ ସବୁବେଳେ ଅଂହକାର ଏବଂ ବଡିମା ଦମ୍ଭ ଦର୍ପ ମିଶି ତିଳକୁ ତାଳ କରି ଦେଖାଉଥାନ୍ତି । କେବଳ ଏଭଳି ପ୍ରଚଣ୍ଡ ଆଘାତ ଲାଗିଲେ ହିଁ ଆବରଣ ଝଡିପଡେ । ଏହା ଯାହାଙ୍କ ଇଛା ଓ ଇଙ୍ଗିତରେ ହୁଏ ତାଙ୍କୁ ପ୍ରଣାମ କୃତଜ୍ଞତା ନିବେଦନ କରିବା ହିଁ ସଚେତନ ସନ୍ତାନର ଲକ୍ଷଣ । ଅଗାଧ ସ୍ନେହମୟୀ ଦିବ୍ୟ ଜନନୀଙ୍କର ଜୟ ହେଉ ।



## ୧-୧୨-୯୭

ପ୍ରବାହରେ କୁଟାଖିଅ ପରି ଭାସି ଯାଉଥିଲା ବେଳେ ପ୍ରବାହକୁ ଅନିବାର୍ଯ୍ୟ ଏବଂ ନିଜର ଭାସିଯିବାକୁ ସ୍ୱାଭାବିକ ବୋଲି ବିଚାରିବା ସାଧାରଣ ମଣିଷଙ୍କ ସଂଖ୍ୟା ଶହେରେ ଅନେଶତ । ସେମାନେ ଉଠିବା ପଡ଼ିବା ଭାସିବା ବୁଡ଼ିବା ସଂଗ୍ରାମ ଭିତରେ ଏତକ ମଧ୍ୟ ବୁଝି ପାରନ୍ତି ନାହିଁ ଯେ ସେମାନେ ଏକ ମହାସ୍ରୋତରେ ପଡିଛନ୍ତି । ସେଇଟା କେବଳ କାଳ ସ୍ରୋତ ନୁହେଁ । ସହସ୍ର ଖଣ୍ଡ ବିଶ୍ୱକୁ ବିଘୁର୍ଣ୍ଣିତ କରୁଥିବା ମହାଜାଗତିକ ଶକ୍ତି ନୁହେଁ । ତାହା ଏ ଶକ୍ତି ସମୂହକୁ ଦେଶ କାଳ ପ୍ରବାହକୁ ଅଣୁଗର୍ଭରୁ ଦୂରନ୍ତ ବିଶ୍ୱସୀମା ପର୍ଯ୍ୟନ୍ତ ଯାବତୀୟ ପରିସ୍ଥିତିକୁ ଏକ ପରିକଳ୍ପିତ ଛନ୍ଦରେ ନିୟନ୍ତ୍ରଣ କରୁଥିବା ଦୁର୍ଲଂଘ୍ୟ ପ୍ରଶାସକ । "ତସ୍ୟ ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟ ଚନ୍ଦ୍ର ମସୌ ବିଧୃତୌ ତିଷ୍ଠତଃ" ଯାହା କିଛି ଅନ୍ଧାର ଆଲୁଅ, ଭଲମନ୍ଦ ଛୋଟବଡ଼ ଘଟୁଛି, ତାହା ହିଁ ଏ ବିଶାଳ ବ୍ୟବସ୍ଥାରେ ଘଟିବାକୁ ବାଧ । ନିଜ ସଂକଳ୍ପରେ ଅନେକ ବିକଳ୍ପ ପନ୍ଥାରୁ ଗୋଟିକୁ ବାଛି ନେଲାବେଳେ ମନେହୁଏ ଯେ ଆମେ ହିଁ ସ୍ୱେଚ୍ଛାରେ ନିଷ୍ପତ୍ତି ନେଲୁ ଏବଂ ତଦନୁସାରେ ଘଟଣା ଘଟିଗଲା । କିନ୍ତୁ ଅ... ସଂକଳ୍ପ ପଛରେ ଆମର ଚେତନ ଅବଚେତନ ନିଶ୍ଚେତନ ଭୁମି, ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରତ୍ୟେକ କୋଷାଣୁରେ ଅଭିବ୍ୟଞ୍ଜିତ ସ୍ପନ୍ଦନ, ସେହି ପ୍ରଶାସନର ଅଧୀନ । ଏଣୁ ପାଣି ଫୋଟକାର ସ୍ୱତନ୍ତ୍ର ସ୍ଥିତି ଭଳି ଆମର ସ୍ୱତନ୍ତ୍ର ସଂକଳ୍ପ ମଧ୍ୟ ଏକ ପ୍ରତୀତି ମାତ୍ର । ଏମିତି ଦିନେ ହୁଏତ କୌଣସି ଶୁଭ ମୁହୂର୍ତ୍ତରେ ତାରି ପ୍ରଶାସନରେ ସେ ହିଁ ସେ କେବଳ ପରିବ୍ୟାପ୍ତ ରହିଥିବାର ଚିତ୍ତ ବିମୂଢ଼କାରୀ ଅନୁଭବ ଆସି ପାରେ । ଯାହାର ସେଭଳି ଅନୁଭବ ଆସେ ସେ ଏକ ଅସାଧାରଣ ନିର୍ବାଚିତ ବ୍ୟକ୍ତି । ଏ ଉପଲବ୍ଧି "ବାସୁଦେବଃ ସର୍ବଂଇତି" ବହୁ ଜନ୍ମ ଅନ୍ତେ କୌଣସି ସୁଦୁର୍ଲଭ ମହାତ୍ମାଙ୍କୁ ହିଁ ପ୍ରାପ୍ତ ହୁଏ । ଏହା ଲାଭ କଲାପରେ ସେଥିରେ ସ୍ଥିତ ରହିବା, ନିମଗ୍ନ, ଧ୍ୟାନସ୍ଥ ରହିବା ହିଁ ତାଙ୍କର ଅନନ୍ୟ ସୌଭାଗ୍ୟ କିନ୍ତୁ ଏହି ଉପଲବ୍ଧିକୁ ଅତିକ୍ରମ କରି ଏ ଅପ୍ରତିହତ ବିଶାଳ ପ୍ରବାହର ଲକ୍ଷ୍ୟ କ'ଣ ଏ ମହାଯୋଜନାର ଉଦ୍ଦେଶ୍ୟ କ'ଣ, ଗହନ ଗଭୀର ବିଶ୍ୱ ସଂକଳ୍ପ ଗର୍ଭରେ ସେ ଉତ୍ତମ ରହସ୍ୟ କ'ଣ, ଏ ବିଶ୍ୱର ବିନ୍ୟାସ ଏ ପରି କାହିଁକି ହୋଇଛି, ଅନ୍ୟ ପ୍ରକାର କାହିଁକି ହୋଇନାହିଁ, କଣ ପ୍ରକାଶ କରିବାକୁ ଏ ସୁବିଶାଳ ପ୍ରସ୍ତୁତି ଆଦି ପ୍ରଶ୍ନରେ କେହି ଯଦି ଅଥୟ ହୁଏ - ସେ ଗଭୀରତମ ଉତ୍ତମ ରହସ୍ୟକୁ ଜାଣିବାକୁ ଯଦି ସେ ବାରମ୍ବାର ରୁଦ୍ଧଦ୍ୱାରରେ ଚିତ୍କାର କରେ "କହିଦିଅ, ହେ ନିଅନ୍ତା ପୁରୁଷ, ତୁମେ କାହିଁକି ଏ ଜଡ଼ ଚେତନର ସମାହାରକୁ ଏପରି ଆବର୍ତ୍ତିତ ବିବର୍ତ୍ତିତ କରୁଛ, କହିଦିଅ, ମଣିଷକୁ ଏପରି ଅସମର୍ଥ ଅଥଚ ଅପରାଜେୟ, ଏପରି ଅଜ୍ଞାନଗ୍ରସ୍ତ ଅଥଚ ଦୁରନ୍ତ ଅଭୀପ୍ସାବନ୍ତ ଏପରି ମୃତ୍ୟୁ କବଳିତ ଅଥଚ ଅମୃତର

ଆଶାୟୀ କରି ଗଢ଼ିବାର ଉଦ୍ଦେଶ୍ୟ କଣ ?" ଏବଂ ଅହରହ ବିକ୍ଷୁବ୍ଧ ହେଉଥାଏ ନିଜକୁ ନିଜେ ପ୍ରଶ୍ନ କରେ "କ'ଣ ଏସବୁ, କ'ଣ ସେସବୁ, କ'ଣ ସେ ରହସ୍ୟ, କ'ଣ, କ'ଣ ?" ଏବଂ ଝଡ଼ି ପଡୁଥାଏ ତା ଚାରିଆଡୁ ଶିଳାଖଣ୍ଡ ପରି ଆବରଣ, ସେ କିଏ ହୋଇପାରେ ? ସେ କେବଳ ମାନବୀ ରୂପରେ ଅବତୀର୍ଣ୍ଣା ପରମା ମାହେଶ୍ୱରୀ । ସେ ତାଙ୍କର ଝୀନ ଆସ୍ତରଣକୁ ଅପସାରିତ କରି, ପରମ ରହସ୍ୟକୁ ଚାହିଁଛନ୍ତି । In a flaming moment of apocalypse. The Incarnation thrust aside its mask । ମାନବୀ ସ୍ତରରେ କିପରି ଅନୁଭବରୁ ଅନୁଭବକୁ ଉତ୍ତୀର୍ଣ୍ଣ ହେବାକୁ ହୁଏ, କିପରି ସତ୍ୟକୁ ଢାଙ୍କି ରଖିଥିବା ସୁନାର ଢାଙ୍କୁଣିକୁ ଖୋଲିଦେବାକୁ ହୁଏ, ସେଥିପାଇଁ କେତେ ଏକାଗ୍ର ଅଭିପ୍ସା କେତେ ଜ୍ୱାଳା, କେତେ ଦୃଢ଼ ସଂକଳ୍ପ, କେତେ ଅପ୍ରତିହତ ଅଦମ୍ୟ ତପସ୍ୟାର ବହ୍ନି ପ୍ରଜ୍ୱଳିତ ରଖିବାକୁ ହୁଏ, ତାକୁ ସୂଚେଇ ଦେବା ପାଇଁ ସତ୍‌ପ୍ରେମଙ୍କ ମାଧ୍ୟମରେ ମାଙ୍କର ଏ ଉଚାଟ ବାଣୀ- ଏ ଅଭିନବ ଉପଲବ୍ଧିର ଉତ୍ତରଣ, ଏ ଗଭୀର ଜିଜ୍ଞାସା ।



## ୮-୧୨-୯୭

ଆଦେଶକୁ ଅବଜ୍ଞା କରାଯାଇପାରେ, କିନ୍ତୁ ଚାଟୁବାକ୍ୟକୁ ଉପେକ୍ଷା କରିବା ସହଜ ନୁହେଁ । ଅସମର୍ଥ ବ୍ୟକ୍ତି ମୁଣ୍ଡରେ ବୋଝ ଲଦିଦେଲାବେଳେ ଯଦି ଶ୍ରୁତି ମଧୁର କିଛି ମିଥ୍ୟାବଚନ କୁହାଯାଏ, ପିଠି ଥାପୁଡେଇ ପ୍ରବରେଇ ଦିଆଯାଏ, ଅନେକେ ଏ ଫାନ୍ଦରେ ପଡିଯାନ୍ତି । ଏବଂ ବୋଝ ବୋହି ଟଳମଳ ଚାଲନ୍ତି, ଘର୍ମାକ୍ତ ହୁଅନ୍ତି । ମନକୁ ମନ ନିଜକୁ ବେକୁବ୍ କହି ଭର୍ତ୍ସନା କରନ୍ତି, କିନ୍ତୁ ବୋଝରୁ ମୁକୁଳି ପାରନ୍ତି ନାହିଁ । ସଂସାରର ବହୁ ଚତୁର ଲୋକ ଏଇ କୌଶଳରେ ନିଜ କାମଟିକୁ ଅନ୍ୟ ଦ୍ୱାରା କରେଇ ନିଅନ୍ତି, କହନ୍ତି ଆପଣଙ୍କ ଭଳି ଲୋକ ଆଉ କିଏ ଅଛି ? ଆପଣଙ୍କ ଭରସାରେ ମୁଁ ରହିଛି । ଆପଣ ଶକ୍ତିଶାଳୀ, ଆପଣ ନିଜେ ଜାଣନ୍ତି ନାହିଁ ଆପଣଙ୍କ ସାମର୍ଥ୍ୟ । ଏ ଛାର ବୋଝ ଅପଣଙ୍କୁ କଣ ବଳେଇ ଯିବ ? ଆପଣ କଣ ମୋ ଭଳି ନିରୁପାୟ ଆଶ୍ରିତକୁ ନିରାଶ କରି ଫେରାଇ ଦେଇ ପାରିବେ ? ଆପଣଙ୍କ ଯଶ ଚାରିଆଡେ ବ୍ୟାପି ଯାଉଛି । ଆପଣ ମୋର ଏ ଛୋଟ ବୋଝଟିକୁ ମୁଣ୍ଡରୁ ଓହ୍ଲାଇ ଦେଇ କଣ ଅପଯଶର ଭାଗୀ ହେବେ ? ଇତ୍ୟାଦି ଇତ୍ୟାଦି । କହିଲା ବେଳେ ଏ ଚତୁର ସୁବିଧାବାଦୀ ମାନେ ମନେ ମନେ ଖୁସି ହେଉଥାଏ ଯେ ଆସ୍ତେ ଆସ୍ତେ ସେ ବେକୁବ୍ ବେଠିଆ ଟିକୁ ମଣ କରି ନେଇଛି । ସେ ଆହୁରି ସ୍ନିଗ୍ଧ ବାକ୍ୟ ସବୁ ଉଚାରଣ କରେ । ସ୍ତବ ପାଠ କରେ । ମୁଣ୍ଡ କୋଡି ହେବାର ଲୁହ ଗଡାଇ ଅଝଟ ହେବାର ଅଭିନୟ କରେ ଏବଂ ପରିଶେଷରେ ବୋଝଟିକୁ ବୁହାଇ ଦିଏ ।

ପ୍ରାୟ ଏଇ ନ୍ୟାୟରେ ଈଶ୍ୱରଙ୍କୁ ଆମେ ଆମର ଯାବତୀୟ ସାଂସାରିକ ଦାୟିତ୍ୱର ବୋଝ ବୋହିବାକୁ ଫୁସୁଲାଇ ଥାଉ । ସେ ତ ସେଥିରେ ଧରା ଦିଅନ୍ତି ନାହିଁ । କାରଣ ସେ କଦାପି ଆମ ମାନଦଣ୍ଡ ଅନୁସାରେ ଖୋସାମଦ ପ୍ରିୟ ବେକୁବ୍ ନୁହନ୍ତି । ଫଳରେ ଆମ ଦାୟିତ୍ୱ ଆମ ମୁଣ୍ଡ ଉପରେ ଶୋଭା ପାଇଥାଏ । ତାକୁ ତୁଲେଇବା କିମ୍ବା ନ ତୁଲେଇବା ତାରତମ୍ୟରେ ଆମକୁ ପରିଣାମ ଭୋଗ କରିବାକୁ ପଡିଥାଏ । କିଛି ଆଦିମ ଗୋଷ୍ଠୀର ମଣିଷ ସେମାନଙ୍କର ଇଷ୍ଟ ଦେବଦେବୀ ମାନଙ୍କୁ ତାଙ୍କ କାମ ବରାଦ କରୁଥିଲେ । କାମ ହୋଇଗଲେ

ବଳି ଭୋଜ୍ୟ ଦେଉଥିଲେ ଏବଂ କାମ ନହେଲେ ଦେବଦେବୀଙ୍କୁ ପ୍ରହାର କରି ଦଣ୍ଡ ଦେଉଥିଲେ । ବେଳେ ବେଳେ ଅପରାଧର ଗୁରୁତ୍ୱ ବିଚାର କରି ସେମାନଙ୍କୁ ପାଣିରେ ବୁଡାଇ କିମ୍ବା ନିଆଁରେ ଜାଳି ନିପାତ କରି ଦେଉଥିଲେ । ଆମ ଭିତରେ ଏ ଆଦିମ ପ୍ରବୃତ୍ତି ଏବେ ମଧ୍ୟ ବୀଜ ରୂପରେ ବିଦ୍ୟମାନ । ଠାକୁର ଆମ କଥା ନ ଶୁଣିଲେ ଆମେ ତାଙ୍କୁ ଆମ ମନୋରଥ ପୂର୍ଣ୍ଣ କରି ଗାଳି ଦେଉ ବେଳେବେଳେ ନିତ୍ୟ ପୂଜା ବିଧିରେ ମଧ୍ୟ ବ୍ୟତିକ୍ରମ କରି ଦଣ୍ଡ ଦେବାର ମାନସିକତା ପ୍ରକାଶ କରୁ ।

ଈଶ୍ୱର ଯେ ମଣିଷର ଏକ ପରିବର୍ଦ୍ଧିତ ସଂସ୍କରଣ ନୁହନ୍ତି ଏ କଥା ବୁଝି ସୁଦ୍ଧା ବୁଝୁନା । ଯଦି ସେ ମାନବ ବା ମାନବୀ ରୂପରେ ଆମ ପାଖରେ ଦୈବାତ୍ ପହଞ୍ଚି ଯାଆନ୍ତି ତା ହେଲେ ତାଙ୍କୁ ଆମ ଅପାର ନିର୍ବୋଧତା, ମୂର୍ଖତା ଏବଂ ମାନବୀ ସାନିଧ୍ୟର ଅକଥନୀୟ ଯାତନା ଭୋଗିବାକୁ ପଡେ । ସେ ଅନନ୍ତ କ୍ଷମାଶୀଳ ହୋଇଥିବାରୁ ରାମଚନ୍ଦ୍ର ବାନର ମାନଙ୍କୁ ସହ୍ୟ କଲା ପରି ଆମକୁ ସହ୍ୟ କରନ୍ତି ଏବଂ କ୍ଷମା କରନ୍ତି । ତେଣୁ ସେ ଆମକୁ ଯେ ଆମର ନିର୍ବୋଧତା ପାଇଁ କେବଳ କ୍ଷମା କରନ୍ତି ତା ନୁହେଁ । ଆମ ପାଇଁ ଅଶେଷ କଲ୍ୟାଣର ଉତ୍ସ ଖୋଲି ଦିଅନ୍ତି । ସୌରଦୀପ୍ତ ପଥ ଉନ୍ମୋଚିତ କରିଦିଅନ୍ତି । ଆମେ ତଥାପି ନିଜ ଅଜ୍ଞାତରେ କହୁଥାଉ, ସେ ଆମ କଥା ବୁଝିଲେ ନାହିଁ ଏବଂ ସର୍ବୋପରି ଆମେ କହିବା ଅନୁସାରେ ଏ ପରମ ପରିବ୍ୟାପ୍ତ ବିଶ୍ୱର ବିନ୍ୟାସ କଲେ ନାହିଁ । ଆମ ପାଇଁ ବରାଦ ଅନୁସାରେ ଅଲୌକିକ ଯାଦୁବିଦ୍ୟା ଦେଖାଇଲେ ନାହିଁ । ହାୟରେ ମଣିଷ ।



## ୧-୧-୯୮

ନୂଆ ବର୍ଷର ପ୍ରଥମ ଦିନକୁ ସ୍ୱାଗତ ଜଣେଇବାକୁ କେତେ ପ୍ରକାରର ଉଲ୍ଲାସ ଉତ୍ସବର ପ୍ରସ୍ତୁତି । ରାତି ପାହିଲେ କିନ୍ତୁ ମାଟି ପାଣି ପବନ ସୂର୍ଯ୍ୟ ପୃଥିବୀ ଉଦ୍ଭିଦ ପଶୁ ପକ୍ଷୀ କାହାରି କିଛି ପରିବର୍ତ୍ତନ ହେଲା ପରି ଜଣା ପଡେ ନାହିଁ । ଯେମିତି ପୂର୍ବ ଦିନମାନଙ୍କରେ ଜୀବନ ଯାତ୍ରା ପାଇଁ ପରିଶ୍ରମ ଓ ସଂଘର୍ଷ ଚାଲିଥିଲା । ଏବେ ବି ତାହା ଜାରି ରହିଥାଏ । ଗାଁ ଗଣ୍ଡା, ସହର ତଳି, ମୂଲିଆ ବସ୍ତି, ଏପରିକି ସ୍ୱଳ୍ପ ଆୟ ପରିସୀମା ଭିତରେ ଥିବା କୋଟି କୋଟି ମଣିଷ, ଏ ଦିନଟି ବିଷୟରେ ସ୍ୱତନ୍ତ୍ର ଭାବରେ ଚିନ୍ତା କରିବାକୁ ସୁଯୋଗ ପାଆନ୍ତି ନାହିଁ । ତାଙ୍କ ପାଇଁ କ୍ଷୁଧା, ତୃଷା, ରୋଗ, ଦୁଃଖ ଯାତନାର ସଂଗ୍ରାମ ଓ ଅବସାଦ ଛୋଟ ଛୋଟ ଆଶା ଓ ଆନନ୍ଦର ଦିନ ଭଳି, ବର୍ଷର ଏ ପହିଲା ତାରିଖଟି ମଧ୍ୟ ଆସେ ଏବଂ ଯାଏ । ସେମାନେ ବର୍ଷର ପାଞ୍ଜି ରଖନ୍ତି ନାହିଁ, ତିଥି ବାର ତାରିଖକୁ ଗୁରୁତ୍ୱ ଦିଅନ୍ତି ନାହିଁ । ସୂର୍ଯ୍ୟ ଉଇଁଲେ ଦିନ, ଅସ୍ତ ଗଲେ ରାତି । କଣ ଫରକ ଅଛି ଡିସେମ୍ବର ୩୧ ଆଉ ତା ପରଦିନ ଜାନୁୟାରୀ ୧ ତାରିଖ ଭିତରେ । ଫରକ କେବଳ ଉତ୍ସବପ୍ରବଣ, ଭାବପ୍ରବଣ, ମଧ୍ୟବିତ୍ତ ପରିବାର, ସହରୀ ବାସିନ୍ଦା ତରୁଣ ଏବଂ ସେହିପରି କେତେକଙ୍କ ପାଇଁ । ଏମାନେ ଉଲ୍ଲାସ ଉତ୍ସବ ପାଇଁ ଆଳ ଖୋଜୁଥାନ୍ତି ଏବଂ ସେଥିପାଇଁ ନୂଆବର୍ଷର ପ୍ରଥମ ଦିନ ଭିନ୍ନ ଏକ ସୁଯୋଗ । ତାଙ୍କ ପାଇଁ ମଧ୍ୟ, ପାର୍ଟି ହୁଣ୍ଡ ଉଚ୍ଛୃଙ୍ଖଳତା ଏବଂ ଖିଆପିଆ ଭିତରେ ଏ ଦିନଟି ଭାରାକ୍ରାନ୍ତ ହୋଇ ଚାଲିଯାଏ । ତା ଆରଦିନ ସବୁ ଜୁଆରରେ ଭଟ୍ଟା ପଡି ଯାଇଥାଏ । ସମସ୍ତେ ପୁନର୍ବାର ତାଙ୍କର ଚିରାଚରିତ କକ୍ଷ ରେଖା ଉପରକୁ ଫେରି ଆସିଥାନ୍ତି ।

ନୂଆ ବର୍ଷର ଏ ଦିନଟି ସ୍ଥୂଳ ଦୃଷ୍ଟିରୁ ସିନା ଆଉ ସବୁ ଦିନ ପରି, କିନ୍ତୁ ପ୍ରକୃତରେ ତାହା ନୂଆ ଏବଂ ଅନନ୍ୟ । ଏ ଦିନଟିର ତୁଳନା ନାହିଁ । ସେମିତି ତ କୌଣସି ଦିନର ତୁଳନା ନାହିଁ । ଖାଲି ଦିନ ନୁହେଁ ପ୍ରତ୍ୟେକଟି ମୁହୂର୍ତ୍ତ ନୂଆ ଓ ଅନନ୍ୟ । ଆମେ ଆମ ଢଙ୍ଗରେ ସମୟକୁ ଭାଗ ଭାଗ କରି ଚିହ୍ନିତ କରୁ, ବର୍ଷ ମାସ, ଦିନ ଦଣ୍ଡ ମସିହା ସମ୍ବତ୍ସରେ । ଏ ଋତୁ ଚକ୍ର, କାଳଚକ୍ରର ଆବର୍ତ୍ତନ କେବଳ ଆମ ଚେତନାରେ ଆମର ସମୟ ଚେତନାର ନୂଆବର୍ଷ ଆସିବାର ଏବଂ ପୁରୁଣା ବର୍ଷ ଯିବାର ଅନୁଭବ ହୁଏ ବା ଆମେ ହିଁ ସେ ଅନୁଭବକୁ ସୃଷ୍ଟି କରିଥାଉ । ବୋଧହୁଏ ନିସ୍ତରଙ୍ଗ କାଳରେ ତରଙ୍ଗ ସୃଷ୍ଟି କରୁ ଆମେ । ଆମ ପାଇଁ ଏ ତାରିଖଟି ଏକ ଆରମ୍ଭ । ଭାବିଲେ ଆରମ୍ଭ ନ ଭାବିଲେ ନାହିଁ । ଭୂଗର୍ଭରୁ କଠିନ ପଦାର୍ଥ ମାନଙ୍କୁ ଆମେ କହୁ ଏଇଟା ହୀରା, ଏଇଟା ନୀଳା, ଏଇଟା ମାଣିକ ଓ ସେହି ଅନୁସାରେ ସୁଲ୍ଲଭ ଦୁର୍ଲ୍ଲଭ ଭେଦରେ ତାର ମୂଲ୍ୟ ନିର୍ଣ୍ଣୟ କରୁ । ସେହିପରି ଧାତୁ ପଥର ତରୁ, ତୃଣ, ମାନଙ୍କର ଦ୍ରବ୍ୟ ଗୁଣ, ଔଷଧ ଗୁଣ ଆମପାଇଁ ପ୍ରୟୋଜନ ଅନୁସାରେ ନିର୍ଣ୍ଣୟ କରୁ । ବ୍ୟକ୍ତି ମାନଙ୍କୁ କୁଟୁମ୍ବ ଭିତରେ ଚିହ୍ନଟ କରୁ ନାମିତ କରୁ ଏବଂ ସମ୍ପର୍କ ମାଧ୍ୟମରେ ଗୁରୁତ୍ୱ ନିରୂପଣ କରୁ । ଏମିତି ମୂଲ୍ୟ ଓ ଗୁରୁତ୍ୱ ଆଦି ଦେଶକାଳ ପାତ୍ର ଭେଦରେ ବଦଳିଥାନ୍ତି । ଏଣୁ ଆଜିର ଏ ଦିନଟି ସେପରି କୌଣସି ସାର୍ବଜନୀନ, ଚିରନ୍ତନ ଅର୍ଥ ବହନ କରୁ ନାହିଁ ।



## ୧-୭-୧୯୯୮

ଆକାଶଚାରୀ ପକ୍ଷୀ ସବୁବେଳେ ନିଜ ପ୍ରୟାସରେ ଉଡନ୍ତି ନାହିଁ । ଅଦୃଶ୍ୟ ବାୟୁ ମଣ୍ଡଳରେ ପ୍ରବାହିତ ହେଉଥିବା ପବନର ସ୍ରୋତ ମାନଙ୍କୁ ସେମାନେ ଚିହ୍ନିଛନ୍ତି । ସେହି ସ୍ରୋତରେ ନିଜକୁ ଉଡାଇ ଦେବାର କୌଶଳ ସେମାନେ ଜାଣନ୍ତି । ଫଳରେ ବହୁ ଊର୍ଦ୍ଧ୍ୱକୁ ଉଡୁଥିବା ପକ୍ଷୀ ମାନେ ପ୍ରାୟ ଅନାୟାସ ଚକ୍ରାକାର ଉଠୁଥିବା ପବନର ସ୍ରୋତରେ ଉଡିଯାନ୍ତି । ପକ୍ଷୀ ପବନ ମାଧ୍ୟମରେ ହିଁ ଉଡେ । ଏଣୁ ପବନକୁ ସେ ଖୁବ୍ ଚିହ୍ନେ । ପବନର ଡେଣାରେ ଆହୁଲା ମାରି ଉଡିଗଲା ବେଳେ ସେ ପବନ କଥା ଚିନ୍ତା କରେ ନାହିଁ । ବରଂ ଭାବେ ଯେ ସେ ଡେଣା ହଲାଇଲେ ହିଁ ଉଡେ । ପବନକୁ ସେ ପ୍ରତି ମୁହୂର୍ତ୍ତରେ ବ୍ୟବହାର କରେ । କିନ୍ତୁ ସେ ବିଷୟରେ ସେ ସଚେତନ ନଥାଏ । ପବନ ବୋଲି କଣ ଗୋଟାଏ ଉପାଦାନ ତାକୁ ଘେରି ରହିଛି । ତାକୁ ଭୁଇଁ ଉପରୁ ଟେକି ଧରିଛି । ସେ କଥା ସେ ଅନୁଭବ କରି ପାରେନାହିଁ । ଥିଲେ ଥାଉ ପବନ । ସେଥିରେ ତା'ର କ'ଣ ଯାଏ ଆସେ । ସେ ତ ତା'ର ଡେଣା ହଲାଇ ପକ୍ଷୀ ଜୀବନ ବଞ୍ଚୁଛି । କେଉଁଠି ସେ ଡେଣା ହଲାଉଛି କାହାପାଇଁ ଡେଣାହଲାଇ ଉଡି ପାରୁଛି ସେ ବୁଝି ପାରେ ନାହିଁ କିମ୍ବା ବୁଝିବାକୁ ଚେଷ୍ଟା କରେ ନାହିଁ । ନିର୍ବାତ ଶୂନ୍ୟରେ ଥରେ ତାକୁ ଛାଡିଦେଲେ ସେ ବୁଝନ୍ତା କ'ଣ ଗୋଟାଏ ଅଭାବ ଥିବାରୁ ସେ ମାଟି ପିଣ୍ଡୁଳା ପରି ଖସି ପଡୁଛି । ଡେଣାକୁ ଆଶ୍ରା ମିଳୁନାହିଁ - କିନ୍ତୁ ସେ ଭଳି ପରିସ୍ଥିତି ଆସେ ନାହିଁ । ସମଗ୍ର ପୃଥିବୀର କୋଣ ଅନୁକୋଣରେ ପବନ ପୂରି ରହିଛି । ପକ୍ଷୀ ମାନଙ୍କ ଭିତରୁ କେତେକ ପବନକୁ ଅନୁଭବିଛନ୍ତି । ପବନକୁ ପବନ ବୋଲି ନ ଜାଣି ତା ସହିତ ସାମିଲ ହୋଇଛନ୍ତି । ତା ସୁଅରେ ଦିଗ ବାଗ ବାରିଛନ୍ତି । ଏବଂ ତାହାରି ଉପରେ ସଂପୂର୍ଣ୍ଣ ଭରସାରେ ଅନାୟାସ ଭାସି ଜାଣିଛନ୍ତି ।

ଆମକୁ ସେମିତି କଣ ଗୋଟାଏ କୋମଳ ଶୀତଳ ଉପାଦାନ ଚାରିଆଡୁ ଘେରି ରହିଛି । ତାହାରି ପାଇଁ ଆମେ ଦେଖୁ, ଶୁଣୁ ବଞ୍ଚୁ ତାହାରି ପାଇଁ ଆଲୋକ ଆଲୋକ, ଅନ୍ଧାର ଅନ୍ଧାର, ପବନ ପବନ, ସୂର୍ଯ୍ୟ ସୂର୍ଯ୍ୟ, ପୃଥିବୀ ପୃଥିବୀ । ଆମେ ଭାବୁ ଯେ ଆମ ପ୍ରୟାସରେ ଆମେ ଆଖିରେ ଦେଖୁ କାନରେ ଶୁଣୁ । କିନ୍ତୁ ଯେଉଁ ଉପାଦାନରେ ଆମେ ବଞ୍ଚୁ ପାଣିରେ ମାଛ ଭଳି ପବନରେ ପକ୍ଷୀ ଭଳି – ସେ ଉପାଦାନର ଅନୁଭବ ଅନେକଙ୍କୁ ମିଳିଛି ।। ସେହି ଉପାଦାନ ଆମକୁ ଟେକି ଧରିଛି । ଆମକୁ ବଞ୍ଚେଇ ରଖିଛି । ଆମେ ଜନ୍ତୁ ଭଳି ହିଂସ୍ର କାତର, କ୍ଷୁଧାର୍ତ୍ତ ବିବଶ ହୋଇ ବଞ୍ଚିବା ବେଳେ କିମ୍ବା ଫୁଲକୁ ସୂର୍ଯ୍ୟକୁ, ମେଘକୁ ଅନାଇ ସ୍ନେହ ପ୍ରେମ ବିତରଣ କଲାବେଳେ, ନିର୍ବିକାର ରହି ସେ ଉପାଦାନ ଆମକୁ ଟେକି ଧରିଥାଏ । ସେ ଉପାଦାନରେ ମଧ୍ୟ ପ୍ରବାହ ଅଛି । ପ୍ରବାହର ଦିଗ ଅଛି । ସେଥିରେ ନିଜକୁ ଭସେଇ ନେଇ ଜାଣିଲେ ଅନାୟାସ ଭୁଇଁ ଛାଡି ବହୁ ଊର୍ଦ୍ଧ୍ୱକୁ ଚାଲିଯାଇ ହେବ ।

ଚେତନାର ମହାସାଗରରେ ଆମେ ଜୀବ ଗୁଡିକୁ ବଞ୍ଚିବା ନ ବଞ୍ଚିବା ଚେତନାର ଆଲୁଅ ଅନ୍ଧାରର ଖେଳ । ଏହାକୁ ଆକାଶ, ଜଳ, କିମ୍ବା ବାୟୁ ଭଳି ଉପାଦାନ ବୋଲି ବୁଝିବା ଠିକ୍ ହେବ ନାହିଁ । ଯେଉଁ ଉପାଦାନରେ ଏ ସ୍ଥୁଳ ଉପାଦାନ ଗୁଡିକ ନିର୍ମିତ ଓ ନିୟନ୍ତ୍ରିତ, ସେଇ ଅଜ୍ଞାତ ଅନାମଧେୟ ସୂକ୍ଷ୍ମ ସ୍ପନ୍ଦନମୟତା କଣ ତାହା କଥାରେ କହି ହେବ ନାହିଁ । ଯେମିତି ପବନ ପାଇଁ ଡେଣା ଡେଣା ଧର୍ମ ରକ୍ଷା କରେ, ସେହିପରି, ତାହା ପାଇଁ ଆଖି ଆଖି, କାନ କାନ, ମନ ମନ ଭୂମିକା ନିର୍ବାହ କରନ୍ତି । ଜଳ ସ୍ଥଳ ଆକାଶ ପବନରେ ତାହା ପୂରି ରହିଛି । ଯେଉଁମାନେ ତାକୁ ବାରି ପାରିଛନ୍ତି, ତାର ସୂକ୍ଷ୍ମ ପ୍ରବାହକୁ ଚିହ୍ନିଛନ୍ତି, ଏବଂ ସେଥିରେ ନିଜକୁ ଭସାଇ ଦେଇ ଜାଣିଛନ୍ତି ତାଙ୍କ ପାଇଁ ଜୀବନର ସଂଘର୍ଷ, ପ୍ରୟାସ, କ୍ଳାନ୍ତି, ଅବସାଦ, ଜ୍ୱାଳା, ପୀଡନ, ଅର୍ନ୍ତଦାହ ବହିର୍ଦାହ କିଛି ନାହିଁ । ସେମାନେ ଅତ୍ୟନ୍ତ ସହଜ ସରଳ ଅନାୟାସ ଭାସି ବୁଲନ୍ତି । ଜଳସ୍ରୋତରେ ଶୁଖିଲା ପତ୍ର ପରି କିମ୍ବା ପବନ ଭଉଁରିର କୁଟା ଭଳି ନୁହେଁ । ସେମାନେ ଖୁବ୍ ସଚେତନ ଖୁବ୍ ବିଭୋର ଏବଂ ଖୁବ୍ ଉଲ୍ଲସିତ ଅବସ୍ଥାରେ ଥାନ୍ତି । ମୋଟ ଉପରେ ଜୀବନର ଆନନ୍ଦ କଣ ସେମାନେ ଜାଣନ୍ତି । ପାଣି ଧାରରେ ହଂସ ପରି ସେମାନେ ନିର୍ବିରୋଧ ପହଁରି ଯାନ୍ତି । ସେ ଉପାଦାନରେ ଉପାଦାନକୁ ଜାଣନ୍ତି । ପଚାରିଲେ କହନ୍ତି ସେହିଁ ଚକ୍ଷୁସ୍ୟ ଚକ୍ଷୁଃ, ଶ୍ରୋତ୍ରସ୍ୟ ଶ୍ରୋତଃ, କର୍ଣ୍ଣସ୍ୟ କର୍ଣ୍ଣଃ ଇତ୍ୟାଦି । ଆମକୁ ବୁଝିବାକୁ କଠିନ ଲାଗେ କିନ୍ତୁ ସେମାନେ ଆଉ କିଭଳି ଅବା, କେଉଁ ଭାଷାରେ ତାକୁ ବୁଝେଇ ପାରିବେ ? ତାହା ଶ୍ରୋତବ୍ୟ, ନିଦିଆସିତବ୍ୟ, ବକ୍ତବ୍ୟ ନୁହେଁ ବରଂ ଅନୁଭବ୍ୟ କେବଳ ଅନୁଭବ୍ୟ ।



**୧୭-୭-୯୮**

ପୃଥିବୀରେ ଭାରା ହରଣ ପାଇଁ ଯୁଗେ ଯୁଗେ ପ୍ରଭୁ ଅବତାର ଗ୍ରହଣ କରନ୍ତି । ସେଥିପାଇଁ ସେ ଗୀତା ଶାସ୍ତ୍ରରେ ବଚନବଦ୍ଧ ହୋଇଛନ୍ତି । କିନ୍ତୁ ସେ ଦୁଇଟି ସର୍ତ୍ତରେ ଆସନ୍ତି, ପ୍ରଥମଟି ହେଲା ଯେ ଯେତେବେଳେ ଧର୍ମର ଗ୍ଲାନି ହୁଏ ଅର୍ଥାତ୍ ଜନଜୀବନରେ କେହି କାହା ଧର୍ମ ରକ୍ଷା କରନ୍ତି ନାହିଁ । ନ୍ୟାୟଧୀଶ ନ୍ୟାୟ ଦିଅନ୍ତି

ନାହି, ପ୍ରଶାସକ ଶାସନ କରନ୍ତି ନାହିଁ, ରକ୍ଷକ ରକ୍ଷା କରନ୍ତି ନାହିଁ, ଏବଂ ପୋଷକ ପୋଷଣ କରନ୍ତି ନାହିଁ, ସେତିକିବେଳେ ସର୍ତ୍ତର ପ୍ରଥମ ପାଦ ପୂରଣ ହୁଏ । କିନ୍ତୁ କେବଳ ଧର୍ମର ଗ୍ଲାନି ହେବା ଯଥେଷ୍ଟ ନୁହେଁ । କେହି କାହା ଧର୍ମରକ୍ଷା ନକଲେ ଏକ ପ୍ରକାର ଅଚଳାବସ୍ଥା ସୃଷ୍ଟି ହୁଏ । ପ୍ରୟୋଜନର ଚାପରେ ଏ ଅବସ୍ଥା ପରିବର୍ତ୍ତନ ହୋଇପାରେ, ସମ୍ପୂର୍ଣ୍ଣ ନହେଲେ ସୁଦ୍ଧା ଆଂଶିକ ରୂପେ ବଦଳି ପାରେ । ଏଣୁ ପ୍ରଭୁଙ୍କର ହସ୍ତକ୍ଷେପ କରିବାର ଯଥେଷ୍ଟ କାରଣ ନଥାଏ । ସେଥିପାଇଁ ସର୍ତ୍ତର ଦ୍ୱିତୀୟ ପାଦ କଥା କୁହାଯାଇଛି । ତାହା ହେଲା ଅର୍ଧମର ଅଭ୍ୟୁତ୍ଥାନ । ଧର୍ମର ଗ୍ଲାନି ସହିତ ତଦନୁପାତିକ ବା ତତୋଽଧିକ ଅଧର୍ମର ଅଭ୍ୟୁତ୍ଥାନ ହେଲେ ଦୁର୍ବୃର୍ତ୍ତମାନେ ଅନାଚାରୀ ଦୁରାଚାରୀ, ଦୁର୍ନୀତିଗ୍ରସ୍ତ ଅପରାଧି ହତ୍ୟାକାରୀ ଲୁଣ୍ଠନ-କାରୀମାନେ ଯେତେବେଳେ ରାଜତ୍ୱ କରନ୍ତି ସେତେବେଳେ ପୃଥିବୀର ପାପଭାରା ସୀମା ଅତିକ୍ରମ କରିଯାଏ । ସେତିକି ବେଳେ ଏ ସମସ୍ତ ଅଜ୍ଞାତ, ଅନ୍ଧକାର ବ୍ୟାପକ ଦୁରାଚାରକୁ ଦୂର କରିବା ସାଧାରଣ ମାନବୀ ଶକ୍ତିର ବହିର୍ଭୂତ ହୋଇଯାଏ । ଏଣୁ ପ୍ରଭୁ ଅବତାର ଗ୍ରହଣ କରନ୍ତି । "ଆଜ ରଖିବି ଗୋପପୁର କିଷ କରିବ ଇନ୍ଦ୍ର ଛାର ।" ଏଇଭଳି ସଂକଳ୍ପବଦ୍ଧ ହୋଇ ସେ ଆର୍ବିଭୂତ ହୁଅନ୍ତି ।

ଧରା ପୃଷ୍ଠରେ ସେ ଦିବ୍ୟ ଜନ୍ମ ଓ 'ଦିବ୍ୟ କର୍ମ' ଦ୍ୱାରା ଚିହ୍ନିତ ହୁଅନ୍ତି । ପ୍ରପୀଡିତ ପୃଥିବୀରେ ତାଙ୍କର ଦିବ୍ୟ କର୍ମର ଏକ ନିର୍ଦ୍ଦିଷ୍ଟ ଯୋଜନା ଥାଏ । ସେଥିପାଇଁ ସେ ଅଙ୍ଗୀକାରବଦ୍ଧ । ପ୍ରଥମ ପାଦରେ ସେ ସାଧୁ ମାନଙ୍କର ପରିତ୍ରାଣ କରନ୍ତି । ଯେଉଁମାନେ କାହାରି ଅହିତ କରନ୍ତି ନାହିଁ, ଅଥଚ ଆତ୍ମରକ୍ଷା ପାଇଁ ଅସମର୍ଥ । ଅସଂଖ୍ୟ ଅବୋଧ ଶିଶୁ ସରଳ ନିରୀହ ନରନାରୀ, ଅସହାୟ ପଶୁପକ୍ଷୀ, ଉଦ୍ଭିଦ ଅରଣ୍ୟ ଏହି ପର୍ଯ୍ୟାୟରେ ଅର୍ନ୍ତଭୁକ୍ତ । ସାଧୁ ସେ ଯେ ସଦାଶ୍ରୟୀ, ସଦାଚାରୀ, "ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃକରୁଣ ମେବ ଚ" । ପ୍ରଥମେ ସେ ଏମାନଙ୍କୁ ତାଙ୍କର ଆସନ୍ନ ବିପଦରୁ ତ୍ରାଣ କରନ୍ତି । ଦୁବୃତ୍ତ ମାନଙ୍କର କବଳରୁ ମୁକ୍ତ କରନ୍ତି ।

ସ୍ୱତଃ ତାଙ୍କ ଦ୍ୱିତୀୟ ପାଦ କର୍ମ ଆରମ୍ଭ ହୋଇଯାଏ । ତାହା ହେଲା 'ବିନାଶାୟ ଚ ଦୃଷ୍କୃତାମ୍' । ଯେଉଁମାନେ ଦୁର୍ମଦ, ଦୁଷ୍କର୍ମ ଦୁର୍ନ୍ନିତି ପରାୟଣ ଯେଉଁମାନଙ୍କୁ ସଂଶୋଧିତ କରିବାର ଅବକାଶ ନଥାଏ, ଯେଉଁମାନେ ଅର୍ଧମର ଅଭ୍ୟୁତ୍ଥାନ ପାଇଁ ଦାୟୀ, ସେମାନଙ୍କର ସଂହାର । ସେଥିପାଇଁ କୌଣସି ଦ୍ୱିଧା ନାହିଁ, କର୍ମ ଯୋଜନାରେ କୌଣସି ଅସ୍ପଷ୍ଟତା ନାହିଁ । ସେମାନଙ୍କୁ ବିନାଶ କରିବାକୁ ହିଁ ହେବ । ମହାପରାକ୍ରମୀ ଦଶଶିର ମାନଙ୍କର ଦଶଟା ଯାକ ମୁଣ୍ଡ ଭୂଲୁଣ୍ଠିତ ହେବ । ଏ ସଂହାର ଅନିବାର୍ଯ୍ୟ ।

ଏହାପରେ କର୍ମର ତୃତୀୟ ପାଦ । ତାହା ଏକ ପରିଣାମ । ତାହା ହେଲା ଧର୍ମର ସଂସ୍ଥାପନ । ଏ ସମଗ୍ର ବିଚାର ଗୀତା ଶାସ୍ତ୍ରରେ ଯେଉଁ ୪ଟି ପ୍ରସିଦ୍ଧ ପଂକ୍ତି ଉପରେ ଆଧାରିତ । ତାହା ଏଠାରେ ଉଦ୍ଧାର କରାଯାଇପାରେ ।

ଯଦା ଯଦା ହି ଧର୍ମସ୍ୟ ଗ୍ଲାନି ର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥
ପରିତ୍ରାଣାୟ ସାଧୁନାଂ ବିନାଶୟ ଚ ଦୃଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମୀ ଯୁଗେ ଯୁଗେ ॥

ଭାରତ ବର୍ଷରେ ଦୁଇଟି ଯାକ ସର୍ତ୍ତ ଅର୍ଥାତ୍ ଉଭୟ ଧର୍ମର ଗ୍ଲାନି ଏବଂ ଅର୍ଧମର ଅଭ୍ୟୁତ୍ଥାନ ପୂରଣ ହୋଇ ସାରିଲାଣି । ଏଣୁ ତାଙ୍କର ଆର୍ବିଭାବ ଆସନ୍ନ । ସେ ଆସି ଅସହାୟ ଆତଙ୍କିତ, ସଂତ୍ରସ୍ତ ମାନଙ୍କର ତ୍ରାଣ କରିବେ । ହିଂସ୍ର ଦୁର୍ମଦ ଆରଣ୍ୟକ ମାନଙ୍କର ବିନାଶ କରିବେ ଏବଂ ଧର୍ମର ସ୍ଥାପନ କରିବେ ।

ସେ କାହିଁକି ବାରଂବାର ଧର୍ମ ସ୍ଥାପନ କରନ୍ତି ? କାହିଁ କି ଗୋଟାଏ କାର୍ଯ୍ୟକୁ ତାଙ୍କୁ ଏକାଧିକ ବାର କରିବାକୁ ପଡେ ? ସେ ତ' ମଣିଷ ଭଳି ସୀମିତ ଜ୍ଞାନ ବା ସାମର୍ଥ୍ୟର ଅଧିକାରୀ ନୁହନ୍ତି । ଏଣୁ ଯେ ଯାହା କରନ୍ତି ତାହା ଅପୂର୍ଣ୍ଣ ବା ତ୍ରୁଟିଯୁକ୍ତ ହେବା ସମ୍ଭବ ନୁହେଁ । ତଥାପି ସେ ଯୁଗେ ଯୁଗେ ଆସନ୍ତି ଏବଂ ଧର୍ମର ଗ୍ଳାନି ଦୂର କରି ତାକୁ ପୁନରୁଜ୍ଜୀବିତ କରି ପୁନଃ ସଂସ୍ଥାପନ କରି ଫେରିଯାନ୍ତି । ଗୋଟିଏ କର୍ମକୁ ସେ ବାରମ୍ବାର କରନ୍ତି ବୋଲି ବୁଝିବା ଠିକ୍ ହେବନାହିଁ । କାଳ ପ୍ରବାହରେ ଯୁଗ ଅନୁକ୍ରମରେ ଧର୍ମର ମଧ୍ୟ ନବକଳେବର ପ୍ରୟୋଜନ ହୁଏ । ଧର୍ମ ଯୁଗାନୁସାରୀ । ଏଣୁ ଗ୍ଳାନି ଯୁକ୍ତ ଧର୍ମର ସଂଶୋଧନ ପରିମାର୍ଜନ ଏବଂ ନୂତନ ସଂସ୍କରଣ ହେବା ଅନିବାର୍ଯ୍ୟ । ଠିକ୍ ବୁଝିଲେ ଗୋଟିଏ ଯୁଗଧର୍ମ ଅନ୍ୟ ଯୁଗ ପାଇଁ ଉପଯୋଗୀ ନୁହେଁ । କିନ୍ତୁ ଯୁଗ ଅନୁସାରେ ଧର୍ମର ନିର୍ଣ୍ଣୟ ତାର ସୀମାରେଖା ପ୍ରଦାନ, ମାର୍ଗଦର୍ଶନ, କେବଳ ଅବତାର ପୁରୁଷ ହିଁ କରି ପାରିବେ । ସେଥିପାଇଁ କାଳକ୍ରମେ ।

'ସ କାଳେ ନେହ ମହତା ଯୋଗେ ନଷ୍ଟଃ ପରନ୍ତପ'

ନ୍ୟାୟରେ ଧର୍ମର ଗ୍ଳାନି ଅବଶ୍ୟମ୍ଭାବୀ । ଏଣୁ ପୁନଶ୍ଚ ଧର୍ମର ସ୍ଥାପନ ମଧ୍ୟ ଅନିବାର୍ଯ୍ୟ ।



## ୮-୧୦-୧୯୯୮

ସ୍ୱାଭାବିକ ଜୀବନ ଯାତ୍ରାବେଳେ ଛୋଟ ଛୋଟ ଅସଂଖ୍ୟ ଆକର୍ଷଣ ବିକର୍ଷଣ ମନକୁ ଆନ୍ଦୋଳିତ କରୁଥାନ୍ତି । କେତେକ ମୌଳିକ ପ୍ରବୃତି ସୁଯୋଗ ପାଇବା ମାତ୍ରେ ମନକୁ ଅଧିକାର କରି ନିଅନ୍ତି । ନାନା ପ୍ରକାର ଚିତ୍ର ଓ କାଳ୍ପନିକ ସମ୍ଭୋଗ କ୍ରିୟା ଦ୍ୱାରା ଆଚ୍ଛନ୍ନ କରନ୍ତି । ଯେତେ ବାରଣ କଲେ ସୁଦ୍ଧା ସେ ମାନନ୍ତି ନାହିଁ । କାମ ଭୋଗ ଶରୀର ଶ୍ରୟୀ ହେଲେ ମଧ ଶରୀରରେ ସୀମିତ ନୁହେଁ । ଏହା ସମପରିମାଣରେ ପ୍ରାଣ ଓ ମନକୁ ମଧ୍ୟ ସଂଶ୍ଳିଷ୍ଟ କରିଥାଏ । ଅନେକ କ୍ଷେତ୍ରରେ ଏହା ମନରେ ହିଁ ଜନ୍ମ ନିଏ । ସୁନ୍ଦର ରୂପକୁ ଆଖିରେ ଦେଖିବା ମାତ୍ରେ ମନରେ ଇଚ୍ଛା ଜାଗ୍ରତ ହୁଏ । ସ୍ଥିର ଚିତ୍ତରେ ବ୍ୟକ୍ତି ସୁନ୍ଦର ରୂପ ଦେଖି ଉଲ୍ଲସିତ ହୁଏ ଏବଂ ସେତିକିରେ ପ୍ରତିକ୍ରିୟା ସମାପ୍ତ ହୋଇଯାଏ । କିନ୍ତୁ ସାଧାରଣ ଜୀବଧର୍ମ ମଣିଷ ସୁନ୍ଦର ରୂପ ଦେଖି ସେ ରୂପକୁ କେବଳ ଦର୍ଶନୀୟ ସ୍ତରରେ ନରଖି ଅନ୍ୟାନ୍ୟ ସ୍ଥୁଳ ସ୍ତରରେ ଅଧିକାର କରିବାକୁ ଏବଂ ସେହି ସ୍ତରରେ ଭୋଗ କରିବାକୁ ଇଚ୍ଛା କରେ । ଏହା ଆଦୌ ଅନିବାର୍ଯ୍ୟ ନୁହେଁ କିନ୍ତୁ ଏହାହିଁ ହୋଇଥାଏ "ଧ୍ୟାୟତେ ବିଷୟାନ୍ ପୁଂସଃସଂଗ ସ୍ତେଷୁ ପ୍ରଜାୟତେ । ସଂଗାତ୍ ସଂଜାୟାତେ କାମଃ କାମାତ୍ କ୍ରୋଧଃଭିଜାୟତେ କ୍ରୋଧାତ୍ ଭବତି ସମ୍ମୋହ ସମ୍ମୋହାତ୍ ସ୍ମୃତିବିଭ୍ରମଃ । ସ୍ମୃତିର୍ଭ୍ରଂଶାତ୍ ବୁଦ୍ଧି ନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।" କିପରି କ୍ରମଶଃ ବିଷୟ ଭୋଗରେ ପଡି କାମ କ୍ରୋଧ ଦ୍ୱାରା ପିଡିତ ହୋଇ ମଣିଷ ପରିବେଶରେ ନାଶ ଯାଏ ତାର ବର୍ଣ୍ଣନା କରାଯାଇଛି, ଗୀତା ଶାସ୍ତ୍ରରେ ଏହି ଶ୍ଳୋକ ମାନଙ୍କରେ । ଏଥିରୁ ତ୍ରାଣ ପାଇବାର ଉପାୟ ହେଲା, ଦ୍ୱାର ଜଗି ଠିଆ ହେବା । ଇଚ୍ଛାର ଉଦୟ ହେଉ ହେଉ ମନକୁ ଆୟତ କରିବାର ଅଭ୍ୟାସ । କାମ ଭୋଗର କଳ୍ପନାକୁ ପ୍ରଶ୍ରୟ ନ ଦେବାର ସଂକଳ୍ପ । ସେଭଳି ଚିନ୍ତାକୁ ତତ୍କ୍ଷଣାତ୍ ଦୂର କରି ମନୋଭୂମିରେ ଅନ୍ୟ ଚିନ୍ତାର ଆରୋପ କରିବା ଏକ

ସାଧାରଣ ଉପାୟ । କିନ୍ତୁ ଥରେ ବ୍ୟାହାତ ହେଲେ ସେ ଚିନ୍ତା ଗୁଡ଼ିକ ଦୁଇଗୁଣ ଶକ୍ତି ନେଇ ଫେରିଆସନ୍ତି । ସେଥିପାଇଁ ନିବିଷ୍ଟ ମନରେ କୌଣସି କର୍ମ କଲେ ସେଥିରେ ମନ ପ୍ରାଣ ଶରୀର ସାଧାରଣତଃ ନିଯୁକ୍ତ ରହିଥାନ୍ତି । ତେବେ ସୁଦ୍ଧା କାମକୁ ନିଲମ୍ବିତ କରି ସେ ଚିନ୍ତା ଆସି କେତେବେଳେ ଅଲକ୍ଷରେ ମନ ପ୍ରାଣକୁ ଅଧିକାର କରିନିଏ । ସେଥିପାଇଁ ଅହରହ ଅଭ୍ୟାସର ପ୍ରୟୋଜନ ରହିଛି । ଯଦି ଜଣେ ପ୍ରବୃତିର ପ୍ରବାହରେ ଧରା ଦେଇ କୌଣସି ପ୍ରତିବାଦ କରିବ ନାହିଁ । ତାର କୌଣସି ସଂଘର୍ଷ ନାହିଁ । କିନ୍ତୁ କୌଣସି ଉତ୍ତରଣ ମଧ୍ୟ ନାହିଁ । ସେ ନିମ୍ନଭୂମିରେ ହିଁ କେବଳ ଜୀବଧର୍ମରେ ବଞ୍ଚେ ଏବଂ ମରେ ।

କିନ୍ତୁ ଯେଉଁମାନେ ଏ ନିୟମକୁ ଅସ୍ୱୀକାର କରିବାକୁ ଚାହାନ୍ତି ତାଙ୍କ ଭିତରେ ଥିବା ଭାସ୍ୱର ସତ୍ତାକୁ ଆବିଷ୍କାର କରିବାକୁ ଚାହାନ୍ତି, ତାଙ୍କ ପାଇଁ ପର୍ବତାରୋହଣରେ ପ୍ରୟୋଜନ ରହିଛି । ମନକୁ ପ୍ରଥମେ ନିରିକ୍ଷଣ କରିବାକୁ ହୁଏ । ମନ କ୍ଷେତ୍ରକୁ ଚିନ୍ତା ମାନେ ଆସନ୍ତି ଏବଂ ସେଠାରୁ ଅପସାରିତ ହୋଇଯାନ୍ତି । ମନ ସ୍ଥିର ଥାଏ ଚିନ୍ତା ହିଁ ଅସ୍ଥିର । ମନ ଚିନ୍ତା ନୁହେଁ କି ଚିନ୍ତାର ପ୍ରବାହ ମଧ୍ୟ ନୁହେଁ । ମନ ଆକାଶ ପରି ଏକ ସ୍ଥିର ବ୍ୟାପ୍ତି । ମନକୁ ନିଜ ସ୍ୱଭାବରେ ଚିନ୍ତାଶୂନ୍ୟ ଅବସ୍ଥାରେ ରହିବାକୁ ପ୍ରୟାସ କରିବାକୁ ପଡେ । ସେଥିପାଇଁ ପତଞ୍ଜଳିଙ୍କ ପ୍ରସିଦ୍ଧ ବାକ୍ୟ "ଯୋଗଃ ଚିତ୍ତବୃତ୍ତି ନିରୋଧଃ" ଚିନ୍ତା ନିରୋଧ ସ୍ୱୟଂ ଏକ ଚିନ୍ତା ରୂପରେ ଆସିପାରେ ସେଥିପାଇଁ ସାବଧାନ ରହିବାକୁ ପଡିବ । କୌଣସି ଶବ୍ଦ ଭିତ୍ତିକ ବା ଦୃଶ୍ୟ ଭିତ୍ତିକ ରୂପ ଯେପରି ସୃଷ୍ଟି ନହୁଏ ସେଥିପାଇଁ ସଜାଗ ରହିବାକୁ ହେବ । ଏ ପ୍ରୟାସରେ ଇଷ୍ଟ ସ୍ମରଣ ମନକୁ ଏକାଗ୍ର କରିବାର ସାହାର୍ଯ୍ୟ କରେ । ନିଜ ଅଣାୟତରେ ଅସଂଖ୍ୟ ଭାବନା ପରିବର୍ତ୍ତେ ମନରେ କେବଳ ଗୋଟିଏ ମାତ୍ର ଧେୟ ରୂପ ରହିବା ନିଶ୍ଚୟ ଶ୍ରେୟସ୍କର । ଇଷ୍ଟରୂପ ସ୍ଥିର ରହେ ନାହିଁ । ଇଷ୍ଟରୂପ ସ୍ପଷ୍ଟ ମଧ୍ୟ ହୁଏନାହିଁ । ବେଳେବେଳେ ଇଷ୍ଟ ରୂପ ସ୍ପଷ୍ଟ ହୁଏ କିନ୍ତୁ ଅସ୍ଥିର । ଇଷ୍ଟ ରୂପ ସଚଳ ଏବଂ କ୍ରିୟାଶୀଳ ହୋଇ ଦେଖା ଦେଇପାରେ । ତାକୁ ସ୍ଥିର କରିବା ଯଦି ଦୁଃସାଧ ଅନୁଭବ ହୁଏ ତାହେଲେ ତାର ସକ୍ରିୟ ଚଞ୍ଚଳ ରୂପ ମଧ୍ୟ ଗ୍ରହଣୀୟ । ତାର ବିରୋଧ ନକରି ଇଷ୍ଟ ରୂପକୁ ଚଳଚିତ୍ରବତ୍ କିଛି କାଳ ଦେଖିଲେ ମଧ୍ୟ ଏକାଗ୍ରତା ବ୍ୟାହାତ ହୁଏ ନାହିଁ, କାରଣ ବିଷୟ ପରିବର୍ତ୍ତନ ହୁଏ ନାହିଁ ।

ଏଭଳି ପ୍ରୟାସ କଲାବେଳେ ମନୋଭୂମିରେ ଚେତନା ସୀମିତ ରହୁଥିବାରୁ, ଶରୀରର ସ୍ଥିତି ବିସ୍ମୃତ ହୋଇଯାଏ । କ୍ରମଶଃ ଇଷ୍ଟ ରୂପ ମଧ୍ୟ ଅନ୍ତର୍ହିତ ହୋଇ କେବଳ ଏକ ବ୍ୟାପ୍ତି ରହିଯାଏ । ନିଷ୍ପନ୍ଦ, ଚିନ୍ତା ଶୂନ୍ୟ, ପ୍ରଶାନ୍ତ । ଏହି ସ୍ଥିତିକୁ ଧାରଣ କରାଯାଇପାରେ । ଯଥା ସମ୍ଭବ ଏହାକୁ ଧାରଣ କଲେ ଏକ ଗଭୀରତାର ଅନୁଭବ ଆସେ । ଏବଂ ବ୍ରାପ୍ତି ଆହୁରି ପରିବ୍ୟାପ୍ତ ହେବାର ଅନୁଭବ ହୁଏ । ଏହି ସ୍ଥିତିରେ ମା କହିଛନ୍ତି ଯେ ଏକ ଭାସ୍ୱର, ଅତିବିଶାଳ ଏବଂ କରୁଣା ପ୍ରବଣ ସତ୍ତାରେ ନିମଗ୍ନ ହୋଇ ପାରିଲେ ଯେଉଁ ଆନନ୍ଦ ମିଳେ ତାର କୌଣସି ତୁଳନା ନାହିଁ । ଏଭଳି ଏକ ସତ୍ତାକୁ କଳ୍ପନା କରିବା ଅର୍ଥାତ୍ ମାନସିକ ପ୍ରୟାସରେ ସୃଷ୍ଟି କରିବା (mental exercise) ଗୋଟିଏ କଥା । କିନ୍ତୁ ତାକୁ ସ୍ପଷ୍ଟ ଉପଲବ୍ଧି କରିବା ଅନ୍ୟ ଏକ କଥା । ଉପଲବ୍ଧି ଏକ ସିଦ୍ଧି । କିନ୍ତୁ ତାକୁ ପ୍ରଥମେ କଳ୍ପନା କରିବା ସାଧନାର ଏକ ଅଂଶ । ସେତେବେଳେ ଶରୀର ମନ ପ୍ରାଣର ସ୍ୱତନ୍ତ୍ର ବା ସାମୁହିକ ସ୍ଥିତି ପ୍ରାୟ ଅବଲୁପ୍ତ ହୋଇଯାଏ । ସେ ପ୍ରଖର, ପ୍ରୋଜ୍ଜ୍ୱଳ, ଭାସ୍ୱର ଅପରିସୀମ ବ୍ୟାପ୍ତି ହିଁ ଅନୁଭବ ରୂପେ ଉପଲବ୍ଧ ହୁଏ ।ଏହା ହିଁ ଏକମାତ୍ର କର୍ତ୍ତବ୍ୟ । ବାକି ସବୁ ନିରର୍ଥକ । ସବୁ ଔପଚାରିକତା ଏକ ପ୍ରକାର Mark Time କେବଳ ଶ୍ରମ, ମାତ୍ର ଅଗ୍ରଗତି କିଛି ନାହିଁ । କିନ୍ତୁ ଏହି ଉଜ୍ଜ୍ୱଳ ବ୍ୟାପ୍ତିରେ ନିମଗ୍ନ ହେବା ଏକମାତ୍ର ଧେୟ ଏବଂ କର୍ତ୍ତବ୍ୟ ।

ସ୍ୱପ୍ନ ମିଥ୍ୟା ନୁହେଁ । ତାହା ଏକ ପ୍ରତିବିମ୍ବ । ସ୍ୱପ୍ନଭୂମିର ପରିସୀମା ଅଛି, କିନ୍ତୁ ପାଚେରି ନାହିଁ । ଏଣୁ ସ୍ଥୂଳଚେତନା, ଅବଚେତନା ଏବଂ ନିମ୍ନଚେତନାର ବହୁ ପ୍ରକାର ଆକାର ବିକାର ସେଇଠି ଅବାଧ ପ୍ରବେଶ କରି ଯାନ୍ତି । ପବନରେ ମେଘର ଆକାର ବଦଳିଲା ପରି ଏ ସମସ୍ତ ବାସନା ବିକାର ନାନା ରୂପରେ ସ୍ୱପ୍ନ ଭୂମିରେ ଦେଖା ଦିଅନ୍ତି । ସ୍ୱପ୍ନରେ ବାସନା ଚରିତାର୍ଥ ହୁଏ । ଦୁଃଖ ଯାତନାର ସମାଧାନ ବି ହୁଏ । କିନ୍ତୁ ସ୍ୱପ୍ନ ବସ୍ତୁ ଜାଗ୍ରତ ଅବସ୍ଥାରେ ଅଦୃଶ୍ୟ ହୋଇଯାଏ । ତାହା କେବଳ ପ୍ରହେଳିକା, ବାସନା ତନ୍ତୁରେ ନିଜେ ନିଜ ପାଇଁ ଗଢ଼ିଥିବା ଭ୍ରମ । କିନ୍ତୁ ସ୍ୱପ୍ନ ଭୂମି ଏକ ଉନ୍ମୁକ୍ତ ରାଜ୍ୟ । ଯେଉଁଠାରେ ହସ୍ତ କ୍ଷେପ କରିବା ସାଧାରଣ ମଣିଷର ସାମର୍ଥ୍ୟ ବାହାରେ । ଆକାଶର ମେଘମାଳା ପରି ସ୍ୱପ୍ନ ଦେଖିହୁଏ । କିନ୍ତୁ ଛୁଇଁ ହୁଏନି । ଯେହେତୁ ଆମେ ଆମର ମୂଢ଼ତା, ଅଜ୍ଞାନ ଓ ସୀମିତ ବିଚାର ବୁଦ୍ଧି ନେଇ ସେ ରାଜ୍ୟକୁ ବିକୃତ କରି ପାରୁନା । ଅଥଚ ସେ ରାଜ୍ୟର ପ୍ରଭାବ ଆମ ଉପରେ ସ୍ପଷ୍ଟ ଭାବରେ ପଡ଼ିପାରେ, ସେଥିପାଇଁ ସୂକ୍ଷ୍ମଜଗତର ବାର୍ତ୍ତା ବହନ କରିବା ପାଇଁ ସ୍ୱପ୍ନ ଏକ ପ୍ରକୃଷ୍ଟ ମାଧ୍ୟମ । ଗୁରୁ ନିର୍ଦ୍ଦେଶ, ଭବିଷ୍ୟତ ପାଇଁ ସତର୍କ ବାଣୀ, ଦେବ ଦର୍ଶନ, ଦୁର୍ଲ୍ଲଭ ଅନୁଭବ, ସ୍ୱପ୍ନରେ ଆସେ । ଚର୍ମ ଚକ୍ଷୁରେ ଦେଖିବା ଯେହେତୁ ସମ୍ଭବ ନୁହେଁ, ସ୍ୱପରେ ହିଁ ଦିବ୍ୟଚକ୍ଷୁ ମିଳେ, ଏବଂ ଅଦୃଶ୍ୟ ଜଗତ ଦୃଶ୍ୟ ହୋଇଯାଏ । ସ୍ୱପ୍ନର ଭାଷା ଓ ଇଙ୍ଗିତ ସ୍ୱତନ୍ତ୍ର କିନ୍ତୁ ଯେ ସ୍ୱପ୍ନ ଦେଖାନ୍ତି, ସ୍ୱପ୍ନ ମାଧ୍ୟମରେ ବାଟ ଦେବାକୁ ଚାହାନ୍ତି, ସେ ତା'ର ବ୍ୟବସ୍ଥା କରି ଦିଅନ୍ତି ତାହା ଅନାଶୟ ବୁଝା ପଡେ । କେମିତି ଗୋଟାଏ ଓତଃପ୍ରୋତ ଅନୁଭବ ଆସେ । ଧରାଯାଉ ସ୍ୱପ୍ନରେ ମୁଁ ଦିଅଁ ଘରେ ବସିଛି । ହଠାତ୍ ଦୁଆର ମୁହଁରେ ତିନୋଟି ନାରୀ ମୂର୍ତ୍ତି ଦେଖାଦେଉଛନ୍ତି । ସର୍ବାଗ୍ରେ ମଝିରେ ସେ ଠିଆ ହୋଇଛନ୍ତି । ତାଙ୍କ ଉଚ୍ଚତା ସାତ ଆଠ ଫୁଟରୁ କମ୍ ନୁହେଁ । ଆଉ ଦୁ ଜଣ ସାଧାରଣ ଆକୃତିର । ମୁଁ ତାଙ୍କୁ ଦେଖି କେବଳ ଭାବୁଛି ଯେ ସେମାନେ ଆଗନ୍ତୁକ । କୌଣସି କାମରେ ଆସିଛନ୍ତି । ତେଣୁ ସେମାନଙ୍କୁ ସେମିତି ଦିଅଁଘରେ ବାହାରେ ଅପେକ୍ଷା କରିବାକୁ ଅନୁରୋଧ କରୁଛି । ଉଦ୍ଦେଶ୍ୟ ମୁଁ ନିଜେ ଯାଇ ସେଇଠି ତାଙ୍କ ସହିତ କଥାବାର୍ତ୍ତା କରିନେବି । ତଦ୍ୱାରା ବାହାର ଲୋକଙ୍କୁ ଦିଅଁଘର ପରିସର ଭିତରେ ପଶିବାକୁ ମଧ୍ୟ ମୁଁ ଚାହୁଁନାହିଁ । ଏବଂ ସେଥିପାଇଁ ବାରଣ କରୁଛି । କିନ୍ତୁ ମୋତେ ଚକିତ କରି ସେ ଯେ ଭିତରକୁ ଅବଲୀଳାକ୍ରମେ ପଶିଆସୁଛନ୍ତି ତାହା ନୁହେଁ । ସେ ଅତି ମାନବୀୟ ଆକୃତିର ସେ ନାରୀ ସିଧା ଆସି ଖଟୁଲିରେ ବସି ପଡୁଛନ୍ତି । ସିମେଣ୍ଟରେ ତିଆରି ସେ ପ୍ରଶସ୍ତ ଆସ୍ଥାନକୁ ପରିପୂର୍ଣ୍ଣ କରି ସେ ବସି ଯାଉଛନ୍ତି । ଖୁବ୍ ହାଲ୍କା ନୀଳ ସବୁଜ ରଙ୍ଗର କୋମଳ ଛିଟ ସେ ପିନ୍ଧିଛନ୍ତି ।

ତା ପରେ କେମିତି କେଜାଣି ମୁଁ ଅନୁଭବ କରୁଛି ଯେ ସେ ଆଉ କେହିନୁହେଁ । ମୁଁ, ତାଙ୍କ ଲୁଗାରେ ମୁହଁ ରଖି ଅଶ୍ରୁସଜଳ ଆଖିରେ ପଚାରୁଚି । ତୁମେ କଣ ମୋ ମା ଜଗଜ୍ଜନନୀ ମା ତୁମେ ? ଏଥିରେ ସଂଶୟ ଅପେକ୍ଷା ବିସ୍ମୟ, ପୁଲକ ଓ ଆନନ୍ଦର ମାତ୍ରା ବେଶି । ସେ କେବଳ ମୁଣ୍ଡକୁ ଆଉଁସି ଦେଉଛନ୍ତି । ଏଇତ ଉତ୍ତର । ଆକାର ଗତ ମହିମା ଏକ ଇଙ୍ଗିତ । ଭିତରକୁ ଅବାରିତ ପଶିଆସି ସିଂହାସନରେ ଅବଲୀଳାକ୍ରମେ ବସିଯିବା ଏକ ଇଙ୍ଗିତ ସବୁ ବୁଝି ହୋଇଯାଉଛି । ସ୍ୱପ୍ନ ଭୂମିରେ ସେ ଦର୍ଶନ ଦେବାକୁ ଚାହୁଛନ୍ତି । କିନ୍ତୁ ମାଧ୍ୟମ ମାନଙ୍କର ସ୍ଥୂଳତା ହେତୁ ଚେହେରା ଅଲଗା ଦେଖାଯାଉଥିଲା । ମୋ ନିଜର ଅପ୍ରସ୍ତୁତି ବାଧକ ରୂପେ ରୂପ ବୈଷମ୍ୟ ଆଣି ଦେଇଥାଇପାରେ । ସ୍ୱପ୍ନ ଭୂମିର ଉପାଦାନ ହୁଏତ ଆଉ ଅଧିକ ସ୍ପଷ୍ଟତା ଦେବାକୁ ସମର୍ଥନ ହୋଇ ଥାଇପାରେ ।

କିନ୍ତୁ ଯେଉଁ ଚେହେରା ଦିଶିଲା ତାହା ଈଷତ୍ ଶ୍ୟାମଳବର୍ଣ୍ଣା ମାନନୀୟା ମା ଟିଏର ମୁହଁ । ଏଇ ଅନୁଭବ ହିଁ ଯଥେଷ୍ଟ ।

ଆଉବେଳେ କିନ୍ତୁ ଏପରି ପରୋକ୍ଷ ମାଧ୍ୟମର ପ୍ରୟୋଜନ ନଥାଏ । ହଠାତ୍ ଈଷତ୍ ମଳୀନ ରକ୍ତ ବର୍ଣ୍ଣର ପୃଷ୍ଠ ଭୂମି ଦେଖାଯାଉଛି । ତାହା ମେଘ କି ପାଣି ଆଉ କିଛି ଜଣା ପଡୁନାହିଁ । କୌଣସି ରୂପ କିନ୍ତୁ ନାହିଁ । ହଠାତ୍ ଦୁଧଠାରୁ ବି ଆହୁରି ଧଳା, ବୀଣାବାଦିନୀ ସରସ୍ୱତିଙ୍କର ପୂର୍ଣ୍ଣ ରୂପ ଦିଶିଯାଉଛି । ଦେବୀ କୌଣସି ଉଚାସନ ଉପରେ ବସିଛନ୍ତି । ପାଦ ଦୁଇଟି ଝୁଲି ରହିଛି । ସେ ପାଦର ତୁଳନା ନାହିଁ । ତାହା କୌଣସି ବର୍ଣ୍ଣ ନୁହେଁ । ତାହା ଏକ ଆଲୋକ । ବେଳେବେଳେ ଲାଗୁଛି ଯେ ତାହା ଶଙ୍ଖ ମର୍ମରରେ ତିଆରି ଏକ ଅପୂର୍ବ ପ୍ରତିମା । ପୁଣି ଲାଗୁଛି ଯେ ସେ ଜୀବନ୍ତ ଏ ରୂପ ସ୍ଥିର ନିର୍ବାକ୍ କିନ୍ତୁ ବାର୍ତ୍ତା ଅତି ସ୍ୱଚ୍ଛ । ଦେବୀ ଦର୍ଶନ ଏକ ମାହାର୍ଘ ସୌଭାଗ୍ୟ । ସ୍ୱପ୍ନ, ସ୍ଥୁଳ ବାସ୍ତବ ନୁହେଁ । କିନ୍ତୁ ସ୍ୱପ୍ନଭୂମିର ଅନୁଭବ ଅତ୍ୟନ୍ତ ଗଭୀର ଚିରସ୍ଥାୟୀ ଓ ବାସ୍ତବ । ସେ ଆମ ନିକଟରେ ସର୍ବଦା ଉପସ୍ଥିତ ଅଛନ୍ତି । ଘେରି ରହିଛନ୍ତି ଚତୁର୍ଦ୍ଦିଗ, ଘୋଟି ରହିଛନ୍ତି ଅନ୍ତର ବାହାରେ । କିନ୍ତୁ ଅହଂ, ଅଜ୍ଞାନ, ଅପ୍ରସ୍ତୁତି, ବ୍ୟବଧାନ ସୃଷ୍ଟି କରେ । ନଦୀ ଧାରରେ ନିଜକୁ ଛାଡିଦେଇ ଶିଖିଲେ ସେ ଅନାୟାସ ଟେକି ନେଇଯିବ । କିନ୍ତୁ ନିଜେ ହସ୍ତକ୍ଷେପ କଲେ ସେ ଓହରି ଯାଏ । ସେହିପରି ନିଜ ଚେଷ୍ଟାରେ ସାଧନା କରି ପ୍ରୟାସ କରି ଆଧ୍ୟାତ୍ମିକ ଅନୁଭବ ମିଳେ ନାହିଁ ସଂପୂର୍ଣ୍ଣ ଅପ୍ରସ୍ତୁତ ଥିଲାବେଳେ ସେ ଅପ୍ରତ୍ୟାଶିତ ଆସି ଛୁଇଁ ଦେଇଯାନ୍ତି । ସେତିକି ବେଳେ ପ୍ରୟାସର ବର୍ମ ଖସି ପଡିଥାଏ । ଏପରି ଅନାବୃତ ଅବସ୍ଥା ପାଇଁ ସ୍ୱପ୍ନ ଭୂମି ଅତ୍ୟନ୍ତ ଉପାଦେୟ । ସେଇଠି ମନ, ପ୍ରାଣ ଶରୀର ଅଧିକ ଦ୍ରବଣ ଶୀଳ, ସଂବେଦନଶୀଳ ଗ୍ରହଣଶୀଳ ମନେହୁଏ ସ୍ୱପ୍ନ ଭୂମିକୁ ପ୍ରସ୍ତୁତ କରି ପାରିଲେ ସାଧନାର ପ୍ରଗତି ସହଜ ଓ ଚଞ୍ଚଳ ହୋଇପାରେ । କିନ୍ତୁ ପ୍ରସ୍ତୁତ କରିବା ତ ହସ୍ତକ୍ଷେପ ଯାହା ପ୍ରଥମ ଓ ପ୍ରଧାନ ବାଧକ । ଏଣୁ ଉଭୟ ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାରେ ତାର ଇଚ୍ଛାକୁ ଅପେକ୍ଷା କରିବା ଏବଂ ଅନନ୍ୟଚେତା ହେବାକୁ ଚେଷ୍ଟା କରିବା ବ୍ୟତିରେକ ଆଉ କ'ଣ କରାଯାଇପାରେ ?



## ୪-୧-୧୯୯୯

ଭବିଷ୍ୟତ ଅଜ୍ଞାତ ଓ ଅପ୍ରତ୍ୟାଶିତର ରାଜ୍ୟ । ଅଜ୍ଞାତ ହେଲେ ହୁଏତ ଆପତ୍ତି ନାହିଁ । କିନ୍ତୁ ହଠାତ୍ ମୁଁ ଦୁର୍ଭିକର ପର୍ଦ୍ଦା ଆଡେଇ ଅପ୍ରତ୍ୟାଶିତ ଘଟଣାଟିଏ ଆସି ସାମ୍ନାରେ ଉଭା ହୋଇଗଲେ ନିଜକୁ ଭାରୀ ଅପ୍ରସ୍ତୁତ ଆଉ ଅସହାୟ ଲାଗେ । ଆଗକୁ ଟିକିଏ ଭଲା ସୂଚନା ମିଳିଥାନ୍ତା ତରତରରେ ଗୋଟିଏକୁ ସମ୍ଭାଳିଲାବେଳେ ଆଉ ମମାଳେ ଅପ୍ରତ୍ୟାଶିତ ଆସି ଠିଆ ହୋଇଯାନ୍ତି । ଆମେ ସଚେତ ନିଶ୍ଚେତନ ଗୋଡିମାଟିର ପଡିଆ । ଯେ ଯେତେବେଳେ ଚାହିଁଲା ଓଲ୍ଟେଇ ଆସିଲା ଆମ ସ୍ୱାଭିମାନରେ ଆଘାତ ଲାଗେ ଆମେ ମାଲିକ ପାଖରେ ପ୍ରତିବାଦ କରୁ । ସେ ସବୁ ଶୁଣି ଆମକୁ କେବଳ ଚାହିଁ ରୁହନ୍ତି । ସେ ଚାହାଣିର ଅର୍ଥ ହେଲା ଆରେ ଏମିତି କଣ ହଉଛ ? ଏ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ କରିବା ଆଗରୁ ତାକୁ ଟିକିଏ ବୁଝ । ଅଜ୍ଞାତ ହେଲେ ହିଁ ତ

ଅପ୍ରତ୍ୟାଶିତ ହେବାକୁ ବାଧ । କାରଣ ତୁମ ଗଣିତ ହିସାବରେ ଅଜ୍ଞାତ ଧରା ଦିଏ ନାହିଁ । ଏହାର ଅର୍ଥ ନୁହେଁ ଯେ ଅଜ୍ଞାତ କୌଣସି ନୀତି ନିୟମ, କୌଣସି ପ୍ରଶାସନ ନ ମାନ ଉଦ୍ଭଟ ଉଚ୍ଛୃଙ୍ଖଳ ଘଟିଯାଏ । ଏ ସମଗ୍ର ବିଶ୍ୱର ନିଜର ଗୋଟାଏ ଛନ୍ଦ ଅଛି । କ୍ଷୁଦ୍ରାତି କ୍ଷୁଦ୍ର ଅଣୁଗର୍ଭରୁ ଖଣ୍ଡବିଶ୍ୱ ପର୍ଯ୍ୟନ୍ତ ସବୁକିଛି ଗୋଟିଏ ବିଧାନରେ ଚାଳିତ ହୁଏ । ସେଥିରେ ବ୍ୟତିକ୍ରମ ହୁଏ ନାହିଁ । ତୁମେ ଯେହେତୁ ସେ ପରିବ୍ୟାପ୍ତ ବିଧାନକୁ ଚିହ୍ନି ନା କି ଜାଣି ନା, ସେଥିପାଇଁ ତୁମକୁ ଆଚମ୍ବିତ ଲାଗେ । ପ୍ରକୃତରେ ଅତୀତ କିମ୍ବା ଭବିଷ୍ୟତ ବୋଲି କିଛି ନାହିଁ । ସାରା ବିଶ୍ୱ ଅହରହ ନିଜକୁ ନୂଆ କରି ବିନ୍ୟସ୍ତ କରି ଚାଲିଥାଏ । କୌଣସି ବ୍ୟକ୍ତି ପାଇଁ ନିର୍ଦ୍ଦିଷ୍ଟ କୌଣସି ଘଟଣା ନୁହେଁ ସାରା ବିଶ୍ୱ ଏହି ମୁହୂର୍ତ୍ତର ହିଁ ନୂତନ ସୃଷ୍ଟି । ସମ୍ପୂର୍ଣ୍ଣ ଅଭୂତପୂର୍ବ ଏବଂ ଅପ୍ରତ୍ୟାଶିତ । ବ୍ୟକ୍ତି ଚେତନାରେ ସୀମିତ ଦେଶ କାଳକୁ ନେଇ ତୁମେ ତୁମର ବଳୟ ରଚନା କରିଥାଅ । ଏଣୁ ଅତୀତଟିଏ ଅଣାୟତ୍ତ ଏବଂ ଭବିଷ୍ୟତଟିଏ ଅପ୍ରତ୍ୟାଶିତ ହୋଇ ଦେଖା ଦିଅନ୍ତି । ଟିକିଏ ମୁକ୍ତ ହୋଇ ଯାଅ, ଦେଖିବ, ଯାହା ଆସିଲେ ବି ତୁମେ ଆଉ ଏମିତି ଚକିତ, ବିଡ଼ମ୍ବିତ କିମ୍ବା ଆହତ ବୋଧ କରିବ ନାହିଁ । ତା ବାହାରେ ତୁମ ଇଚ୍ଛା ଓ ଇଙ୍ଗିତ ଅନୁସାରେ ଯଦି ସବୁ ପ୍ରତ୍ୟାଶିତ ହିଁ ଘଟେ, ତା' ହେଲେ ନୂତନ ବନ୍ଧୁଟିଏ ନୂତନ ସୃଷ୍ଟିଟିଏ କେଉଁଠୁ ପାଇବ ? ତୁମ ପାଖକୁ ଯଦି ମାଲିକ ଆସିବାକୁ ଚାହାନ୍ତି, ସେ କ'ଣ ଆଗରୁ ଗସ୍ତ ଖସଡ଼ା ତିଆରି କରି ତୁମକୁ ଜଣାଇ ଆସିବେ ? ଯଦି ତାହା ହୁଏ, ସେଥିରେ ଅଭୂତର ସଂଘାତ କାହିଁ, ଆଶ୍ଚର୍ଯ୍ୟର ଚମକ କାହିଁ ? ଆଖି ଫିଟେଇବା ମାତ୍ରେ ବିଶ୍ୱ ବ୍ରହ୍ମାଣ୍ଡର ରସଘନ ବିଗ୍ରହ ଦେଖି ମୁହ୍ୟମାନ, ବିଭୋର ଉନ୍ମତ୍ତ ହେବାର ଅବକାଶ କାହିଁ ? ସବୁ ପ୍ରତ୍ୟାଶିତ ହେଲେ ତୁମେ ଅନେକ ଆଶ୍ଚର୍ଯ୍ୟରୁ ବଞ୍ଚିତ ହୋଇ ଯିବ ଯେ !

ଏଣୁ ସଦା ପ୍ରସ୍ତୁତ ସଦା ଉନ୍ମୁକ୍ତ ରହି ଯାହା ଯେତେବେଳେ ଆସିଲା ତାକୁ ସ୍ୱାଗତ କରି ତାହାହିଁ ସେହି ସମୟରେ ସର୍ବୋତ୍କୃଷ୍ଟ ବ୍ୟବସ୍ଥା ବୋଲି ଗ୍ରହଣ କରି ନେବାର ମାନସିକତା ଅର୍ଜନ କରିବାକୁ ହେବ ।

ଏ... ର ଅର୍ଥ ନୁହେଁ ଯେ ଯେଉଁ ବିଧାନରେ ଜଡ଼ ବନ୍ଧା ପଡ଼ିଛି ଚେତନ ତାକୁ ଅତିକ୍ରମ କରି ପାରିବ ନାହିଁ । ଏହାର ଅର୍ଥ ନୁହେଁ ଯେ ଜରା, ଦୁଃଖ, ମୃତ୍ୟୁ ଯେପରି 'ଅପରିହାର୍ଯ୍ୟ' ରୂପେ ଗୃହୀତ ହୋଇ ଆସିଛି ଆମେ ସେପରି ତାକୁ ଗ୍ରହଣ କରିବାକୁ ବାଧ୍ୟ । ବରଂ ତାକୁ ଅବିଚଳିତ, ନିଷ୍କମ୍ପ, ନିର୍ଭୀକ ରହି ଆଉ ଏକ ସାମର୍ଥ୍ୟ ବଳରେ ଅତିକ୍ରମ କରିବାର ବିଶ୍ୱାସ ଆଣିବାହିଁ ଆମର ବିଶେଷତ୍ୱ । ଜରା ମୃତ୍ୟୁ ହିଁ ଜଗତରେ ଏ ଅବସ୍ଥାରେ ପ୍ରତ୍ୟାଶିତ ଓ ଅପରିହାର୍ଯ୍ୟ । କିନ୍ତୁ ଯେ ଆସି ତାକୁ ପ୍ରତିହତ, ପରାସ୍ତ କରିବ, ସେହିଁ ପ୍ରକୃତରେ ଅପ୍ରତ୍ୟାଶିତ । ଆମେ କ'ଣ ତାକୁ ସ୍ୱାଗତ କରି ପାରିବା ନାହିଁ ? ଏ ଅପ୍ରତ୍ୟାଶିତ ପାଇଁ ଆମର କ'ଣ ଶଙ୍କା ସଙ୍କୋଚ ପ୍ରତିବାଦ ରହିବ ? ବୋଧହୁଏ ନା !



## ଫେବୃଆରୀ ୯୯

କୌଣସି ବ୍ୟକ୍ତି ବା ବସ୍ତୁ ବିଷୟରେ ଜାଣିଛି ବୋଲି କହୁଥିବା ଲୋକ ବୋଧହୁଏ ଜାଣିବା ବି... ରେ ସୁଦ୍ଧା ଜାଣେନାହିଁ । ଜାଣିବା ଅର୍ଥ ଆମୂଳଚୂଳ ଜାଣିବା । ବ୍ୟକ୍ତିଟିର ସମଗ୍ର ଅତୀତର ଅନୁଭୂତି, ଉପଲବ୍ଧି, ତାର ଜୟ ପରାଜୟ, ମୁହୂର୍ତ୍ତ ମୁହୂର୍ତ୍ତର ଘଟଣା କିପରି ଜାଣି ହେବ ? କେବଳ ସେତିକି ନୁହେଁ, ତାର

ଭବିଷ୍ୟତ ପାଇଁ ଯାବତୀୟ ସ୍ୱପ୍ନ, ଯୋଜନା, ପରିକଳ୍ପନା ମଧ୍ୟ ତାର ବିସ୍ତାର । ତାର ଚିନ୍ତା, ତାର ଆବେଗ ସଂବେଗ, ସୁଖ ଦୁଃଖ, ସବୁ ମିଶେଇଲେ ମଧ୍ୟ ଏ ସମାହାରଠାରୁ ଆହୁରି ବୃହତ୍ତର ସେ ବ୍ୟକ୍ତି, କାରଣ ଯା ଭିତରୁ ପ୍ରତ୍ୟେକଟି ଉପାଦାନର ବହୁଶାଖା ପ୍ରଶାଖା ରହିଛି, ଏବଂ ସେ ସମସ୍ତ ସ୍ଥିର ନୁହନ୍ତି । ଏଣୁ ନିଜର ଘନିଷ୍ଠତମ ବ୍ୟକ୍ତିକୁ ମଧ୍ୟ ଜାଣିଛୁ ବୋଲି କସ୍ମିନକାଳେ କହି ହେବ ନାହିଁ । ବ୍ୟକ୍ତି ଭଳି 'ବସ୍ତୁ ମଧ୍ୟ ଦୁର୍ବଜ୍ଞେୟ । ଗୋଟିଏ ଧୂଳିକଣାର ସମସ୍ତ ରହସ୍ୟ ମଣିଷର ଜ୍ଞାନ ବଳୟର ବାହାରେ । କାରଣ ଏ ଧୂଳିକଣାଟିର ରହସ୍ୟ ଯାହା, ଏ ପରିବ୍ୟାପ୍ତ ବ୍ରହ୍ମାଣ୍ଡର ରହସ୍ୟ ମଧ୍ୟ ତାହା । ସେଥିପାଇଁ ବିଜ୍ଞାନବିଦ୍ ମାନେ ଏବେ କହିଲେଣି, ଯେ ବସ୍ତୁ ବସ୍ତୁ ନୁହେଁ, ତାହା ଏକ ଉର୍ଜ୍ଜା ରୂପ । ଏ ଉର୍ଜ୍ଜା ମଧ୍ୟ ଜଡ଼ଧର୍ମୀ ନୁହେଁ ତାହା ଚେତନ । ସମଗ୍ର ବିଶ୍ୱର ମୌଳିକ ଉପାଦାନ ହେଉଛି ମନତତ୍ତ୍ୱ । "The ultimate substance of the Universe is mind - stuff" ମଝିରେ ସତ୍ୟ କ'ଣ ବୋଲି ଆଦିମ ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ କିଛି ତତ୍ତ୍ୱବିଦ୍ କହିଲେ ଯେ ଏକ ସତ୍ୟ ନୁହେଁ, ବହୁ ସତ୍ୟ ହିଁ ସତ୍ୟ । ଏବେ ପୁଣି କହିଲେଣି ଯେ (Franz Typler) - The physics of Immortality) ଏ ପରମ ବିଶ୍ୱ ପ୍ରସାରଣଶୀଳ କିନ୍ତୁ ତାର ପୁଣି ସଂକୁଚନ ଅବଶ୍ୟମ୍ଭାବୀ । ପ୍ରସାରଣର ଶେଷ ପର୍ଯ୍ୟାୟରେ ଯେପରି ତାର ବ୍ୟାପ୍ତିର ପରିଧି ଅକଳ୍ପନୀୟ ସେପରି ସଂକୁଚନର ଚୂଡ଼ାନ୍ତ ବିନ୍ଦୁ (The Omega point) ର ସାନ୍ଦ୍ରତା, ତାର ଅନନ୍ତ ଶକ୍ତି, ଅନନ୍ତ ଉର୍ଜ୍ଜା, ଅନନ୍ତ ଚେତନା ମଧ୍ୟ ଅକଳ୍ପନୀୟ । "ଅଣୋରଣୀୟାନ୍" ଯାହା "ମହାତୋ ମହୀୟାନ୍" ମଧ୍ୟ ତାହା; ଉଭୟ ଏକତ୍ର, ସମକାଳୀନ ସତ୍ୟ । ଏ ପରମ ବିପୁଳ ଛନ୍ଦକୁ ବୁଝିବା ପାଇଁ ମଣିଷ ଏକ ସର୍ବଶକ୍ତିମାନ୍ ମାଲିକଙ୍କୁ ଖୋଜେ, କାରଣ ତାର ବୋଧଗମ୍ୟ ଖୋପ ବା Format ରେ ଏମିତି ଏକ କର୍ତ୍ତା ନଥିଲେ କର୍ମ ସମ୍ଭବ ନୁହେଁ । କିନ୍ତୁ ସାଧାରଣ ଅର୍ଥରେ ସେଠି କୌଣସି ବ୍ୟକ୍ତିତ୍ୱ ଆରୋପ କରିବା ସମୀଚୀନ ହେବ ନାହିଁ । ସେ ରୂପ କି ଅରୂପ, ତା ସ୍ଥିର କି ଚଳମାନ, ସେ ଶକ୍ତି କି ଶକ୍ତିମାନ୍ ସେ ପ୍ରକୃତରେ କ'ଣ ବାକ୍ୟରେ ପ୍ରକାଶ କରିବା ସମ୍ଭବ ନୁହେଁ । ଏଣୁ 'ତତ୍' ଶବ୍ଦରେ କେବଳ ଇଙ୍ଗିତ କରାଯାଏ । ସେ ହିଁ ଏ ସମଗ୍ର ବିଶ୍ୱରେ ଓତଃପ୍ରୋତ ଭାବରେ ବିଦ୍ୟମାନ । ସେଥିପାଇଁ ଯାହା ଯେଉଁଠି ସଂଘଟିତ ହେବ ତା ଦ୍ୱାରା, ତା'ଭିତରେ ତାହା ପାଇଁ ସଂଘଟିତ ହେବ । କାର୍ଯ୍ୟକାରଣ ବ୍ୟବସ୍ଥା ମଧ୍ୟ ସେଇ, କାର୍ଯ୍ୟ ସେ ଏବଂ କାରଣ ମଧ୍ୟ ସେ । ମଣିଷ ଭିତରେ ଆସ୍ପୃହା ରୂପେ ଯାହା ପ୍ରକାଶ ହୁଏ, କରୁଣା ବା କୃପା ରୂପେ ତାହା ତାର ଉତ୍ତରଦିଏ । ଆସ୍ପୃହା ଏକ ଆବାହନ ଏବଂ କୃପାବତରଣ ତାର ଉତ୍ତର ।

କୃପାର ସ୍ୱରୂପ କ'ଣ, ତାର ପ୍ରକଟ ରୂପ କ'ଣ ? ସ୍ଥୂଳ ଭାଷାରେ ପ୍ରକାଶ କଲେ ତାହା ଆଲୋକ ରୂପେ ଆସେ । ଆଲୋକ ପ୍ରକାଶିତ କରେ । ଆଲୋକ ଜ୍ଞାନ । କୃପାର ପ୍ରଥମ ସ୍ପର୍ଶରେ ଗଭୀର ପୁଲକ ବିସ୍ମୟ ସହିତ ଏକ ନୂତନ ଦୃଷ୍ଟି ନୂତନ ଜ୍ଞାନର ଉଦୟ ହୁଏ । ଦିଗବଳୟ ବିସ୍ତୃତ ହୁଏ । ଆତ୍ମପର ଭେଦ ଦୂର ହୁଏ । ଏକତ୍ୱର ଅନୁଭବ ଆସେ । ଫଳରେ ବିଭେଦ ଜ୍ଞାନ ଜନିତ ହିଂସା, ଦ୍ୱେଷ କ୍ରୁରତା ଦୂର ହୋଇ ଅଭେଦ ଜ୍ଞାନ ଜନିତ ଶ୍ରଦ୍ଧା ପ୍ରେମ, ଆତ୍ମୀୟତା ବୃଦ୍ଧି ପାଏ । ମା'ଙ୍କ କୃପା ହିଁ ଏହିପରି ମାନବ ଚେତନାକୁ ଲାଳନ କରି ଥାଏ ଏବଂ ତାଙ୍କ କୃପା ହେଉଛି ପରମ ପ୍ରଭୁଙ୍କର ନିଶ୍ୱରି ।



ନିଜକୁ ଏବଂ ନିଜର ଆଚରଣ, ଅଭ୍ୟାସ ଚିନ୍ତା ଓ ବ୍ୟବହାର ଆଦିକୁ କିଛି କାଳ ନିରପେକ୍ଷ ଭାବରେ ନିରୀକ୍ଷଣ କଲାପରେ ମନେହୁଏ ଯେ ଏ ଜନ୍ତୁଟିର ବିଶେଷ କିଛି ଉନ୍ନତି ହେବାର ସମ୍ଭାବନା ନାହିଁ । ସେ ଯାହା ଥିଲା, ଅର୍ଥାତ୍ ଯାହା ଯେପରି ନେଇ ଜନ୍ମିଥିଲା, ଶେଷ ଯାଏଁ ସେ ସବୁ ଅବିକୃତ ଭାବରେ ପ୍ରାୟ ଜାରି ରହିଛି । ପୁରୁଷାନୁକ୍ରମେ କେତେଗୁଡ଼ିଏ ଖୋଇ, କିଛି ରୁଚି, ଆଚରଣ ରକ୍ତରେ ମିଶି ରହିଛି । ତା'ର ଚେର ଅବଚେତନାରେ ବୁଡ଼ି ରହିଛି । ତାକୁ ଉପାଡ଼ିବା ଓ ସେ ମୌଳିକ ପ୍ରବୃତ୍ତି ଗୁଡ଼ିକୁ ଅତିକ୍ରମ କରିବା ସମ୍ଭବ ହେଲା ପରି ଲାଗୁ ନାହିଁ । ଏ ଜନ୍ମରେ ପୁରାତନ ବହୁଜନ୍ମର ଛାୟାପାତକୁ ମଧ୍ୟ ଏଡ଼ି ଯାଇ ହେବ ନାହିଁ । ନିଜ ପରିପାର୍ଶ୍ୱରେ ଜଡ଼ ଚେତନର ବେଷ୍ଟନୀ ଅହରହ ତାକୁ ପ୍ରଭାବିତ କରୁଛି । ସେଥିରୁ ସେ ମୁକ୍ତ ହୋଇ ପାରିବ ନାହିଁ । ତା ଭିତରେ ଥିବା ପ୍ରାଣୀଧର୍ମ କିଛି ଆହାର ଚାହେଁ । କିଛି ବିହାର ବା ସମ୍ଭୋଗ ଚାହେଁ । ତା ପାଇଁ ଆକର୍ଷଣ ଯୋଗାଇ ଦିଏ ପରିପାର୍ଶ୍ୱ । ତାକୁ ସେ ସ୍ୱୀକାର କଲେ କିଛି ସାର୍ଥକତା ଅନୁଭବ କରେ । ଭଲ ଖାଦ୍ୟ ଖାଇବା, ସେଥିପାଇଁ ଉପାର୍ଜନ କରିବା, ଯୋଗ୍ୟତା ଅର୍ଜନ କରିବା ଏକପ୍ରକାର ସାର୍ଥକତା । ସେହି ପରି ଶରୀର ସଂପର୍କକୁ ସ୍ୱୀକାର କରିବା, ସମ୍ଭୋଗର ଆବେଦନ ଭିତରେ ମଜ୍ଜି ରହିବା, ପରିଣାମ ସ୍ୱରୂପ କିଛି ସନ୍ତାନ ଉତ୍ପାଦନ କରିବା ମଧ୍ୟ ଏକ ପ୍ରକାର ସାର୍ଥକତା । ଏଇ ସ୍ତରରେ ରହି ଏପରି ମାନସିକତାର ସନ୍ତୋଷକୁ ପାଇବା ପାଇଁ ସେ ଉଦ୍ୟମ କରିବା ଯେତିକି ସ୍ୱାଭାବିକ ସେତିକି ଅନିବାର୍ଯ୍ୟ । କିନ୍ତୁ ମୂଳ ପ୍ରକୃତି ତାକୁ ବ୍ୟବହାର କରି ସାରିଲା ପରେ ତାର ଫାଶକୁ କିଛି ଢ଼ୁଗୁଳା କରିଦିଏ । ବୟସ ବଢ଼ିଯାଏ ଏବଂ କିଛି ମୋହ ଭଙ୍ଗ ମଧ୍ୟ ହୁଏ । ସେତିକି ବେଳେ, ଏ ଫାଶରୁ ମୁକୁଳି ଯିବା ପାଇଁ, ଏ ପ୍ରବୃତ୍ତିର ପାଚେରୀକୁ ଅତିକ୍ରମ କରିଯିବା ପାଇଁ ସେ ପ୍ରୟାସ କରିପାରେ । କିନ୍ତୁ ପ୍ରୟାସ କରିବା ମାତ୍ରେ ଫାଶ ଫିଟି ନଯାଇ ଆହୁରି ଟାଣ ହୋଇଯାଏ । ଏବଂ ସେ ଅନୁଭବ କରେ ଯେ ସେ ଯେତିକି ଭୂମି ଜୟ କରୁଛି, ପ୍ରାୟ ସେତିକି ବା ତା'ଠାରୁ ଅଧିକ ଭୂମି ହାରି ଚାଲିଛି । ବାରବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଚାଲି ଯାଉଛି । ଯେ କାଦୁଅରେ ପଡ଼ିଛି, ଏବଂ ଜାଣି ନାହିଁ, ତାହା କାଦୁଅ ବୋଲି, ତା'ର କିଛି ଅସୁବିଧା ନାହିଁ । କିନ୍ତୁ ଯାହାର ଆଖି ଫିଟି ଯାଇଛି, ସେ କାଦୁଅରୁ ମୁକୁଳିବାକୁ ନିଶ୍ଚୟ ଚେଷ୍ଟା କରିବ । ତା'ର ବିଡ଼ମ୍ବନା ହେଲା ଯେ ଗୋଟିଏ ଗୋଡ଼ କାଦୁଅରୁ ଟେକିଲା ବେଳେ ଅନ୍ୟ ଗୋଡ଼ଟି ସେଥିରେ ବୁଡ଼ି ଯାଉଥାଏ । ସେ ଗୋଡ଼କୁ ମୁକୁଳାଇଲାବେଳକୁ ମୁକ୍ତ ଗୋଡ଼ଟି କାଦୁଅକୁ ଫେରି ଯାଇଥାଏ । ତାର ଦୁଃଖ ଏଇଠି । ସେ ଚାହିଁଛି ଅର୍ଥ ଲୋଭରୁ ମୁକ୍ତ ହେବାକୁ । ଦାନ ପାତ୍ରରେ ପକାଇବା ପାଇଁ ସେ ତା ପଇସା ମୁଣାରୁ ନ୍ୟୁନତମ ମୂଲ୍ୟର ମୁଦ୍ରାଟିକୁ ଖୋଜି ଲାଗିଛି । କସ୍ମିନ୍‌କାଳେ ସେ ସମଗ୍ର ମୁଣାଟିକୁ ଦାନ ପାତ୍ରରେ ବିସର୍ଜନ କରି ପାରୁ ନାହିଁ । ସେପରି କରିବାର ଚିନ୍ତା ବି ସେ କରି ପାରୁ ନାହିଁ । ଏହା ପୂର୍ବରୁ ଏକାଧିକବାର ତାର ପଇସା ମୁଣା ଚୋରି ହୋଇ ଯାଇଛି । ସେ ତଦ୍ୱାରା ଦରିଦ୍ର ହୋଇ ଯାଇ ନାହିଁ । ପଙ୍ଗୁ ହୋଇ ଯାଇ ନାହିଁ । ସେ ତାକୁ ସହି ଯାଇଛି ଅନିବାର୍ଯ୍ୟ ଭାବରେ । ସେହି କର୍ମଟିକୁ ସଚେତନ ଭାବରେ ସ୍ୱେଚ୍ଛାରେ ଥରେ କରିବାର ସାହସ ତାର ହେଉ ନାହିଁ । ସମଗ୍ର ପଇସା ମୁଣାରେ କେତେ ବା ଅର୍ଥ ଥାଏ ? ସେ ସବୁ ବିସର୍ଜନ କରି ପାରିଲେ ଯେଉଁ ମୁକ୍ତିର ଅନୁଭବ ହୁଏ, ଯେମିତି ହାଲୁକା ଲାଗେ, ଉଲ୍ଲସିତ ଲାଗେ ତାହା ସେ ପାଇ ପାରେ ନାହିଁ । ଦାନ ପାଇଁ ଗୋଟିଏ ଗୋଡ଼ କାଦୁଅରୁ ଟେକି ଦିଏ । ଅନ୍ୟ ଗୋଡ଼ଟି

ଲୋଭଗ୍ରସ୍ତ ହୋଇ କାଦୁଅରେ ପୋତି ହୋଇଯାଏ । ଫଳରେ ସେ ନ୍ୟୂନତମ ମୂଲ୍ୟର ମୁଦ୍ରାଟିକୁ ହିଁ ଖୋଜୁଥାଏ । କଷ୍ଟ ଭୋଗୁଥାଏ । ଦାନର ପ୍ରସାର, ମୁକ୍ତି, ଜ୍ଞାନ ପରିବର୍ତ୍ତେ ଏକ ପ୍ରକାର କ୍ଷୁଦ୍ରତା, କାର୍ପଣ୍ୟ ଓ ବହୁଯୁକ୍ତି ସାପେକ୍ଷ ଆତ୍ମସନ୍ତୋଷ ପାଉଥାଏ । ମୋଟ ଉପରେ ମନେ ହୁଏ ଯେ କ୍ଷୁଦ୍ରତାରୁ ବିଶାଳତାକୁ ଅପୂର୍ଣ୍ଣରୁ ପୂର୍ଣ୍ଣତାକୁ ଅନ୍ଧକାରରୁ ଆଲୁଅକୁ କ୍ରମବିକାଶ ନାହିଁ । ଏ କ୍ଷେତ୍ରରେ ଏକ ଉଲ୍ଲମ୍ଫନର ପ୍ରୟୋଜନ ରହିଛି, ଯାହାକୁ Quantum leap କୁହାଯାଇପାରେ । "Blessed are those who take a leap towards the Future" ମା'ଙ୍କର ଏଇ ବାଣୀରେ ଉଲମ୍ଫନ କଥାର ଇଙ୍ଗିତ ରହିଛି । ଅନ୍ଧାରରୁ ଧୀରେ ଧୀରେ ଘୁଞ୍ଚି ଘୁଞ୍ଚି ଆଲୁଅରେ ପହଞ୍ଚିବାର ନାହିଁ । ସେ ଦୁଇଟି ପୃଥକ ଭୂମି, ପୃଥକ ଜଗତ, ପୃଥକ ସତ୍ୟ । ଯଦି ଅସାଧାରଣ ଶକ୍ତି ପ୍ରୟୋଗ ହୁଏ ତେବେ ଏ ପୃଥିବୀର ପ୍ରବଳ ମାଧ୍ୟାକର୍ଷଣ ବଳୟକୁ ଅତିକ୍ରମ କରି ଅନ୍ୟ ଗ୍ରହରେ ପହଞ୍ଚି ହେବ । ଶୂନ୍ୟକୁ ବହୁଗୁଣିତ କଲେ ପୂର୍ଣ୍ଣ ହୁଏ ନାହିଁ । ସୀମିତକୁ ବହୁଗୁଣିତ କଲେ ଅସୀମ ହୁଏ ନାହିଁ । ଅନ୍ଧକାରକୁ ବହୁଗୁଣିତ କଲେ ଆଲୋକ ହୁଏ ନାହିଁ । ଯେଉଁ ଅସାଧାରଣ ଶକ୍ତି ଏହି ଉଲମ୍ଫନ ଦ୍ୱାରା ଗୋଟିଏ ଚେତନ ଭୂମିକୁ ଅନ୍ୟ ଚେତନ ଭୂମିରୁ ନେଇ ଯାଇ ପାରିବେ ତାଙ୍କୁ ଆବାହନ କଲେ ତାଙ୍କ ସହିତ ସଂଯୁକ୍ତ ହୋଇ ପାରିଲେ ହୁଏତ ଏ କ୍ଳୀବ, ଦୁର୍ବଳ, ପ୍ରବୃତ୍ତି, ଅଭ୍ୟାସ, ଅବଚେତନା ଓ ପରିପାର୍ଶ୍ୱରେ ଅସହାୟ ପ୍ରାଣୀଟି ନିଜକୁ ନିଜେ ଅତିକ୍ରମ କରି ଯାଇ ପାରେ । ନତୁବା ନୁହେଁ ।



## ୯-୮-୯୯

ପଙ୍ଗୁକୁ ଗିରି ଲଙ୍ଘନ କରାଇବା ଭଳି ଅଦ୍ଭୁତ କର୍ମ ନିଜେ ଅଙ୍ଗେ ନ ଲିଭାଇଲା ପର୍ଯ୍ୟନ୍ତ ବିଶ୍ୱାସ ହୁଏ ନାହିଁ । ସେଭଳି ଘଟଣା ଘଟିବା ବେଳେ ମଧ୍ୟ ଜାଣି ହୁଏ ନାହିଁ । ଲାଗେ ସତେବା ତାହା ଅତ୍ୟନ୍ତ ସ୍ୱାଭାବିକ ଓ ସାଧାରଣ । କିନ୍ତୁ ଯେତେବେଳେ ସେ ଭୂମିରୁ ଓହ୍ଲେଇ ଆସି ଅର୍ଦ୍ଧାକାଶକୁ ଚାହିଁବାର ସୁଯୋଗ ମିଳେ, ସେତିକି ବେଳେ ଯୁଗପତ୍ ବିସ୍ମୟ ଓ କୃତକୃତ୍ୟତା ପ୍ରକାଶ ପାଏ । 'ସତେ କ'ଣ ଏ ଅଧମ ସେ ବିରଳ ରାଜ୍ୟରେ ବିଚରଣ କରୁଥିଲା ? ସେଥିପାଇଁ ତାର କ'ଣ ବା ଯୋଗ୍ୟତା ? ମାଲିକ ଚାହିଁଲେ । ଏଣୁ ହାତ ପାପୁଲିରେ ଏ କ୍ଷୁଦ୍ର ଜୀବଟିକୁ ଟେକି ନେଇ ବହୁ ଉଚ୍ଚ ମଥାନ ଉପରେ ଠିଆ କରି ଦେଇଥିଲେ । କାହିଁକି ସେ ସେପରି କରନ୍ତି ? ସେ ଏ ଦୃଶ୍ୟମାନ ଜଗତର ସର୍ବମୟ କର୍ତ୍ତା ବୋଲି ନା' ତାଙ୍କର ଅନ୍ୟ କୌଣସି ନିଭୃତ ଉଦ୍ଦେଶ୍ୟ ଥାଏ । ସେ କ'ଣ ପ୍ରଥମେ ପଙ୍ଗୁ ଭିତରେ ଗିରି ଲଙ୍ଘନ କରିବାର ଯୋଗ୍ୟତା ତିଆରି କରନ୍ତି ଓ ତା ପରେ ତାକୁ ଗିରି ଲଙ୍ଘନ କରାନ୍ତି ନା' ତା' ଭିତରେ ଅଚିହ୍ନିତ ହୋଇ ସେ ଯୋଗ୍ୟତାଟି ଥାଏ । ଏବଂ ମାଲିକ ତାହା ଦେଖାଇ ଦିଅନ୍ତି ଏମିତି ପ୍ରୟୋଗ ମାଧ୍ୟମରେ ? ତେବେ ଏତିକି ଅନ୍ତତଃ ସତ୍ୟ ଯେ ସାଧାରଣ ଭିତରେ ଅସାଧାରଣର ସଂଧାନ କରିବା କିମ୍ବା ଅସାଧାରଣକୁ ଆରୋପ କରିବା ଉଭୟ ଦିବ୍ୟ ଦୃଷ୍ଟି ଓ ଦିବ୍ୟ କୃପାର ଦୃଷ୍ଟାନ୍ତ ।

ବର୍ତ୍ତମାନ କଥା ହେଲା ଯେ ପଙ୍ଗୁ ଗିରି ଲଙ୍ଘନ କଲା ପରେ ସେ ପୁନର୍ବାର ପଙ୍ଗୁତ୍ୱକୁ ଫେରି ଆସେ ନା,

ସେ ଏକମାତ୍ର ଅନୁଭବ ପରେ ପଙ୍ଗୁତ୍ୱକୁ ମଧ୍ୟ ଲଙ୍ଘନ କରିଯାଏ ? ଅନ୍ଧକୁ ଚକ୍ଷୁଦାନ ପରେ ସେ କଦାପି ତାର ଦୃଷ୍ଟି ଫେରାଇ ନିଅନ୍ତି ନାହିଁ । ଥରେ ଦେଖି ପାରିବାର ଅନୁଭବ ତାକୁ ତେଣିକି ଅହରହ ଦେଖିବାର ସାମର୍ଥ୍ୟ ଆଣି ଦିଏ । ସେହିପରି ବାହ୍ୟ ଅବୟବ ଦୃଷ୍ଟିରୁ ଜଣେ ପଙ୍ଗୁ ଦେଖା ଯାଉଥିଲେ ସୁଦ୍ଧା ଥରେ ସେ ଗିରି ଲଙ୍ଘନ କଲା ପରେ ତାକୁ ପଙ୍ଗୁ କହିବାର ତାତ୍ପର୍ଯ୍ୟ ରହେ ନାହିଁ । ଏଣୁ ଯେ ଗିରି ଲଙ୍ଘନ କଲା ସେ ପଙ୍ଗୁ ନୁହେଁ ଏବଂ ପଙ୍ଗୁ ହୋଇ ରହେ ନାହିଁ । କିନ୍ତୁ ଏ ଦିବ୍ୟସ୍ପର୍ଶ ପୂର୍ବରୁ, ଏ ଅଘଟନ ଘଟନ ପୂର୍ବରୁ ସେ ନିଶ୍ଚୟ ପଙ୍ଗୁ ଥିଲା । ତା' ଭିତରେ ହୁଏତ' ଆଉ କ'ଣ ଯୋଗ୍ୟତା, ଆଉ କ'ଣ ଗୋଟାଏ ସମ୍ଭାବନା ହୁଏତ' ଲୁକ୍କାୟିତ ଥାଇ ପାରେ । କିନ୍ତୁ ସେ ଅବଶ୍ୟ ଗିରି ଲଙ୍ଘନର ଯୋଗ୍ୟତା ଧାରଣ କରି ନଥିଲା । ଏଣୁ ଏ ଅଦ୍ଭୁତ ଅନୁଭବ ପରେ ତା'ର ଏକମାତ୍ର ପ୍ରତିକ୍ରିୟା କୃତଜ୍ଞତା ।



## ସେପ୍ଟେମ୍ବର ୯ ୯

ଯୋଜନା ଅନୁସାରେ ସାଫଲ୍ୟ ନ ମିଳିବା ଜୀବନର ଅନ୍ୟ ଏକ ଅତ୍ୟନ୍ତ ସାଧାରଣ ସତ୍ୟ । ଅଧିକାଂଶ ବ୍ୟକ୍ତି ଅଭିଯୋଗ କରିବା ଶୁଣାଯାଏ ଯେ ସେମାନେ ଯାହା ଚାହିଁଛନ୍ତି ତାହା କେବେ ପାଇନାହାନ୍ତି । ହୁଏତ ଜୀବନ ସାଫଲ୍ୟ ଦେବା ପାଇଁ ଅନୁପଯୁକ୍ତ ବା କୁଣ୍ଠିତ, କିମ୍ବା ଯୋଜନା ଗୁଡ଼ିକ ମୂଳରୁ ହିଁ ଅଦୂରଦର୍ଶିତା ହେତୁ କ୍ଲୀବ, ପରାଜିତ ଏବଂ ବିଫଳ । ଯେ କୌଣସି ଯୋଜନା ମୁଖ୍ୟତଃ ଏକ ମାନସିକ ଚିତ୍ର । ସେଥିରେ କାର୍ଯ୍ୟକାରଣ ଉପରେ କୌଣସି ଏକ ପରିଣାମକୁ ଗଣନା କରା ହୋଇଥାଏ । କିନ୍ତୁ ଯୋଜନାଟି କାର୍ଯ୍ୟକାରୀ ହୁଏ ବାସ୍ତବ ଭୂମିରେ । ସେଠି ଦେଶ, କାଳ, ବସ୍ତୁ, ବ୍ୟକ୍ତି ଅନିବାର୍ଯ୍ୟ ଭାବରେ ନିଯୁକ୍ତ ହୁଅନ୍ତି । କିଏ କେତେ ମାତ୍ରାରେ କେତେ ପ୍ରକାରେ କର୍ମ ଧାରାକୁ ପ୍ରଭାବିତ କରନ୍ତି । ଯୋଜନା ଯେତେ ବସ୍ତୁ ନିଷ୍ଠ, ଯେତେ ଗଣିତ ସିଦ୍ଧ ହେଉ ପଛକେ ରାସ୍ତାର ଏ ଅସଂଖ୍ୟ ପ୍ରଭାବକୁ କଦାପି ଆଗରୁ ଦେଖିପାରିବ ନାହିଁ । ଏଣୁ ଯଦି ଯୋଜନା-ନିର୍ଣ୍ଣିତ ଫଳ ମୋଟା ମୋଟି ମିଳି ଗଲା ତେବେ ସେଥିରେ ସନ୍ତୁଷ୍ଟ ରହିଯିବା ଉଚିତ୍ । ଶହେରେ ଶହେ ସାଫଲ୍ୟ ଅର୍ଥାତ୍ ତା'ର ଯାଇ ସିଧା ଲକ୍ଷ୍ୟରେ ବାଜିବାର ଦୃଷ୍ଟାନ୍ତ ପ୍ରାୟ ନାହିଁ କହିଲେ ଚଳେ । ଯେଉଁ ସବୁ ଅଦୃଷ୍ଟ, (ଦେଖା ନ ହୋଇଥିବା) ଶକ୍ତି ଏପରି ବାଙ୍କ ଓ ମୋଡ଼ ଆଣିବାରେ ଦାୟୀ ସେମାନଙ୍କୁ ଆକସ୍ମିକତା ବା Chance factor ବୋଲି କୁହାଯାଏ । ଯାତ୍ରା କରୁଛୁ ଯୋଜନା ଅନୁସାରେ । ସକାଳ ୮ଟାରେ ଗାଡ଼ି ଯାଇ ନିର୍ଦ୍ଦିଷ୍ଟ ସହରରେ ପହଞ୍ଚିବ । ତା'ପରେ ୧୦ଟାରେ ଇଣ୍ଟରଭ୍ୟୁ । କିନ୍ତୁ ଘାଟି ପାରି ହେଲା ବେଳେ, ପଥର ଖସି ଆସିଛି ରାସ୍ତା ଉପରକୁ । ଗାଡ଼ି ସେଇଠି ଅଟକି ଯାଇଛି ଚାରିଘଣ୍ଟା । ସବୁ କାମ ସାରି ଗାଡ଼ି ସଜାଡ଼ି ଆସି ପହଞ୍ଚିଲା ବେଳକୁ ସଂଧ୍ୟା । ଇଣ୍ଟରଭ୍ୟୁ ହେଲା ନାହିଁ । ହୋଇଥିଲେ ଜୀବନ ଗୋଟାଏ ଧାରା ଧରିଥାନ୍ତା । ନ ହେବାରୁ ଆଉ ଗୋଟାଏ ଧାରା ଧରି ଗଲା । ପଥର ଖସିବା ପଛରେ ନିର୍ଦ୍ଦିଷ୍ଟ ଏବଂ ଅନିବାର୍ଯ୍ୟ କାର୍ଯ୍ୟ କାରଣ ରହିଛି । ସେତିକିବେଳେ ପଥର ସେଭଳି ଭାବରେ ଖସିବ ଏବଂ ବାକି ଯାହା ଘଟିଲା ଘଟିବ । ଯୋଜନାରେ ଅବଶ୍ୟ ଏ ଦୁର୍ଘଟନାକୁ ହିସାବକୁ ନିଆ ହୋଇ ନାହିଁ ।- ଏମିତି ଖୋଜି

ବସିଲେ କୌଣସି ନା କୌଣସି ଛୋଟ ବଡ଼ ବିରୋଧ ପାଇଁ ସବୁ ଯୋଜନା ଭଣ୍ଡୁର ହୋଇ ଯାଇଛି । ଏତିକିରେ ଯଦି ଅନୁସନ୍ଧାନ ସରି ଯାଏ ତାହେଲେ ଜଣା ଯିବ ଯେ ଅଦୃଶ୍ୟ ଜଗତରେ କେବଳ ବିରୋଧୀ ଶକ୍ତି ଲୁଚି ରହିଛନ୍ତି । ତାଙ୍କର ଏକମାତ୍ର କାମ ହେଲା ଆମର ସମସ୍ତ ଯୋଜନାକୁ ବିଫଳ କରି ଦେବା । କିନ୍ତୁ କଥା ପ୍ରକୃତରେ ତାହା ନୁହେଁ । ଗୋଟାଏ ଅତି ବିଶାଳ ଯୋଜନା ଭିତରେ ଅଣୁଠାରୁ ତାରା ମଣ୍ଡଳ ପର୍ଯ୍ୟନ୍ତ ଧାରିତ ହୋଇ ରହିଛନ୍ତି । ସବୁ ଶକ୍ତି ଜଡ଼ ହେଉ, ପ୍ରାଣ ହେଉ ବା ଦିବ୍ୟ ଅଦିବ୍ୟ ଯାହା ହେଉ, ନିୟନ୍ତ୍ରିତ ହେଉଛି ଗୋଟିଏ ପ୍ରାଶାସନରେ । ଏଣୁ ବିରୋଧ ପ୍ରକୃତରେ ବିରୋଧ ନୁହେଁ । ଘଟନାର ତାତ୍‌କାଳିକତା ହିଁ ତାକୁ ସେହି ରୂପ ପ୍ରଦାନ କରିଛି । ରାସ୍ତାକୁ ପଥର ଖସିବା କୋଉ ନୂଆ କଥା । ଆଉ ବେଳେ ଆଉ କେଉଁଠି ପଥର ଖସିବା ସହିତ ଆମର କୌଣସି ସମ୍ପର୍କ ନାହିଁ । କିନ୍ତୁ ସେଠି ସେତେବେଳେ ଯେଉଁ ପଥର ଖସିଲା ସେଥିରେ ସବୁ ଆନ ଆନ ହୋଇଗଲା । ଏଣୁ ଲାଗିଲା ଯେ ଏହା ପ୍ରବଳ ଶତ୍ରୁପକ୍ଷ । ରାସ୍ତାରେ ଚାଲିଲା ବେଳେ ଅସଂଖ୍ୟ ଲୋକ ଅଚିହ୍ନା ଜଣେ ଅଧେ କିଏ ଚିହ୍ନା ଭେଟ ହୋଇଯିବା ଏକ ବିରଳ ଘଟଣା । ସବୁ ଅଚିହ୍ନା କ'ଣ ବିରୋଧ ? ସେଇଠି କୌଣସି ଜଣକୁ ତାର ସ୍ଥାନ କାଳରୁ ଆମେ ବିଚ୍ୟୁତ କରି ପାରିବା ନାହିଁ । ଅଶ୍ୱତ୍ଥ ଗଛ ମୂଳେ ବାଇଗଣ ଭାର ଥୋଇ ଠିଆ ହୋଇଥିବା ଅପରିଚିତ ଚାଷୀଟିକୁ ସେତିକିବେଳେ ମୁଁ ଦେଖିବା ଅନିବାର୍ଯ୍ୟ - ଏଘଟଣାଟି ନ ଘଟିବା ପାଇଁ ମୋର ସମସ୍ତ ଅତୀତକୁ ପୁନର୍ଗଠିତ କରିବାକୁ ପଡ଼ିବ । ପ୍ରତି ମୁହୂର୍ତ୍ତ ଆଉ ଥରେ ସଂଯୋଜିତ ହେବ ସମଗ୍ର ବିଶ୍ୱ ସହିତ । ସାରା ବିଶ୍ୱ ଛନ୍ଦକୁ ଆଉଥରେ ସଜାଡ଼ିବାକୁ ପଡ଼ିବ, ଯଦି ସେ ବାଇଗଣ ବିକାଳିକୁ ମୁଁ ସେତିକିବେଳେ ସେଇଠି ଦେଖିବାକୁ ନ ଚାହେଁ । ନା, ନା' କଥାଟା ଏତେ ଜଟିଳ ବୋଧହୁଏ ନୁହେଁ । ମୁଁ ଏ ରାସ୍ତାରେ ନ ଆସି ଆର ରାସ୍ତାରେ ଆସି ପାରିଥାନ୍ତି । ହଁ ନିଶ୍ଚୟ ଆସିପାରିଥାନ୍ତି । ସେ ରାସ୍ତା କାହିଁକି ଆଉ ଅସଂଖ୍ୟ ବାଟ ଦେଇ ଆସି ପାରି ଥାନ୍ତି, ବା ମୋଟେ ଆସି ପାରି ନଥାନ୍ତି । କିନ୍ତୁ ଏ ସମସ୍ତ ଅକଳ୍ପନୀୟ ବିକଳ୍ପ ପାଇଁ ଅକଳ୍ପନୀୟ କାରଣ ବିଦ୍ୟମାନ । ମୁଁ ଯେହେତୁ "ମୁଁ", ବୟସ ଏତିକି, ପରିବାର ଏହିପରି, ସମସ୍ୟା ଏହିପରି କର୍ତ୍ତବ୍ୟ ଏହିପରି, ଏଣୁ ଏସବୁ, ଅର୍ଥାତ୍ ମୋର ସମଗ୍ର ଅତୀତର ପ୍ରତି ମୁହୂର୍ତ୍ତର ସାମଗ୍ରିକ ପରିଣାମ ସ୍ୱରୂପ ମୋତେ ସେତେବେଳେ ସେଇ ରାସ୍ତାରେ ଆସିବାକୁ ହୋଇଛି, ଏବଂ ମୁଁ ସେ ବାଇଗଣ ଚାଷୀଟିକୁ ଅଶ୍ୱତ୍ଥ ଗଛମୂଳେ ଦେଖିଛି । ମୁଁ କାହାକୁ ବଦଳାଇବି ବା କିପରି ?

ଜଣା ଯାଉଛି ସତେବା ଚାବିଦିଆ ଘଣ୍ଟାଟି ପରି ସବୁ ଘଟିଚାଲିଛି । ସୁନିର୍ଦ୍ଦିଷ୍ଟ ମାର୍ଗରେ । ତାକୁ ବଦଳାଇ ଦେବାର ସାମର୍ଥ୍ୟ କାହାର ନାହିଁ । ସବୁ ଘଟନା ଜନ୍ମ ଓ ମୃତ୍ୟୁ ଭଳି ଅପରିବର୍ତ୍ତନୀୟ । ଯଦି କୁହାଯାଏ, ନା', ଏହା ସେମିତି କିଛି ଅନିବାର୍ଯ୍ୟ ନୁହେଁ । ଏହା ଏକ ଆଦିମ ଅଭ୍ୟାସ । ଏପରି କି ମୃତ୍ୟୁ ମଧ୍ୟ ଏକ ଚିରାଚରିତ ଅଭ୍ୟାସ ଓ ଏହାକୁ ଅତିକ୍ରମ କରାଯାଇପାରେ । ଆଶ୍ୱସ୍ତ ଲାଗୁଛି ନିଶ୍ଚୟ କିନ୍ତୁ ପ୍ରତ୍ୟୟ ହେଉ ନାହିଁ । କେବଳ ଗୋଟିଏ ଯୁକ୍ତିକୁ ମନ ଗ୍ରହଣ କରିପାରେ । ତା' ହେଲା ଯେ ଯଦି କୌଣସି ଗୋଟିଏ ମାତ୍ର ପ୍ରଶାସନରେ ଏ ସବୁ ଆତଯାତ ହେଉଛନ୍ତି ସେ ପ୍ରଶାସନ ଅବାଧ, ଏବଂ ଦେଶକାଳ କାର୍ଯକାରଣର ଊର୍ଦ୍ଧ୍ୱରେ, ସେ ଯେହେତୁ ନିୟନ୍ତା, ସେ ଖେଳକୁ ଆଉଥରେ ଖେଳିପାରେ, ଓ ନିଶ୍ଚୟ ଖେଳିପାରେ । ଏତେ କାଳ ପରେ ଯଦି ସେ ଚାହେଁ ଯେ ଚେତନାର ଗୋଟାଏ ସ୍ତରରେ ମୃତ୍ୟୁ ଅପ୍ରାସଙ୍ଗିକ; ତେବେ ତାହାହିଁ ହେବ । ଆଉ ଏକ ବିନ୍ୟାସରେ ମୃତ୍ୟୁ ନ ଥିବ । କିନ୍ତୁ ସେ କେତେବେଳେ ତାହା ଚାହିଁବ, କେମିତି ହେବାକୁ ଚାହିଁବ, କାହା ମାଧ୍ୟମରେ ହେବାକୁ ଚାହିଁବ । ମାଧ୍ୟମର ପ୍ରସ୍ତୁତି କିପରି ହେବ ଓ କେମିତି ହେବ, ଏ ସବୁ ସ୍ଥିର କରିବା ତାର

ମର୍ଜି । ଖେଳ କିନ୍ତୁ ଜାରି ରହିବ । ଖେଳ ପଟା, ଖେଳର ନିୟମ, ତାର ଚାଲ୍ ସବୁ ବଦଳି ଯାଇ ପାରେ । ଏକେବାରେ ଏକ ନୂଆ ଖେଳ । ଦେଖାଯାଉ ସେ ମହାମହିମ ଖେଳାଳିଙ୍କ ମର୍ଜି କେତେବେଳେ ହେଉଛି ଏମିତି ବଦଳ ପାଇଁ ।



୧୭-୧୦-୯୯

ତାରିଖ ଅନୁସାରେ ସତୁରୀ ପୁରି ଏକସ୍ତରୀ ଚାଲିଲା । ହିସାବ ନିକାଶ ଦେଖିଲେ ଯାହା ପାଇଛି ତାହାର ତୁଳନା ନାହିଁ । ଯାହା ଦେଇଛି ତାର ଗଣନା ନାହିଁ । ଜୀବନର ସବୁ ସିଦ୍ଧି, ସବୁ ସମ୍ମାନ, ସବୁଯାକ ମୁକୁଟ କୁଣ୍ଡଳ, ସବୁ ସୁଖ, ମାଲିକଙ୍କ ଦାନ । ମୁଁ ପାଇ ଚାଲିଛି, ଅକୃପଣ, ଅକୂପାର କୃପା । କିନ୍ତୁ ମନେ ପଡୁ ନାହିଁ, କେବେ କୌଣସି ଦୁର୍ଙ୍ଗ ମୁହୂର୍ତ୍ତରେ ହାତ ଯୋଡ଼ି ମାଲିକଙ୍କୁ ଜଣାଇନାହିଁ, 'ଏ ଅଭାଜନକୁ ଏତେ ଐଶ୍ୱର୍ଯ୍ୟ ଦେଇ କୃତାର୍ଥ କରିଛ ପ୍ରଭୁ । ସେଥିପାଇଁ ମୋର କିବା ଯୋଗ୍ୟତା, କ'ଣ ବା ସାଧନା ? ହେତୁ ନଥାଇ କୃପା ବର୍ଷିଯିବା ତୁମ ପ୍ରଭୁପଣ । ସବୁ ପାଇଲା ପରେ ଅକୃତଜ୍ଞ ରହିବା, ଆହୁରି ଆହୁରି ପାଇବାକୁ ଯାଚନା କରିବା ମୋର ନାଲାଏକପଣ । ତୁମେ କୁଆଡ଼େ ଚାହିଁ ନାହିଁ, ମୁଁ ମୋର କୃତଜ୍ଞତା ବାକ୍ୟରେ ଉଚ୍ଚାରଣ କରେ । ସେଇଟା କୁଆଡ଼େ ଔପଚାରିକତା । ଦି ପଦ ମୁଖସ୍ଥ, ଘସରା ଶବ୍ଦ ଉଚ୍ଚାରଣ କରି ଅଗାଧ କରୁଣାର ସ୍ୱୀକୃତିରୁ ମୁକୁଳି ଯିବାର ଉପାୟ । ତୁମେ ବରଂ ଚାହଁ, ଏ ପ୍ରାଣିଟି ନିରବ ଆନନ୍ଦର ବିସ୍ତାରରେ ମୁହୂର୍ତ୍ତେ ସ୍ତବ୍ଧ ହୋଇଯା଼ । ଭାଷାକୁ ଅତିକ୍ରମ କରିଯାଉଥିବା ଏକ ଉଲ୍ଲାସ, ଉଚ୍ଛ୍ୱାସରେ ଉବୁଟୁବୁ ହେଉ । ତାହାହିଁ କୃତଜ୍ଞତ଼ । ସେପରି ଅନୁଭବ ପାଇଁ ଅନେକ ଅବକାଶ ଥିଲା । ତାହା ଘଟନା ସାପେକ୍ଷ ବି ନୁହେଁ, ଏମିତି ଗୋଟାଏ କଣ ଅଲୌକିକ ଆଷ୍ଚର୍ଯ୍ୟ ଘଟି ଗଲେ ବିସ୍ମୟ ସହିତ ଅନୁପମ ବିସ୍ତାର ଆସିବ ନ ହେଲେ ଆସିବ ନାହିଁ ଏହା ବି ନୁହେଁ । ଏବେ ମନେ ପଡୁଛି ଜୁନ୍ ୧୬ ରୁ ଅଗଷ୍ଟ ୪ ପର୍ଯ୍ୟନ୍ତ ଆମେରିକା ଗସ୍ତ କଥା । ସେମାନେ କ'ଣ ଔପଚାରିକତା ଦୃଷ୍ଟିରୁ କେବଳ ଶିଷ୍ଟାଚାର ରକ୍ଷା କରିବାକୁ ମୋର ଅତିଥି ସତ୍କାର କରିଥିଲେ ? ସେଥିପାଇଁ କ'ଣ ଏତେ ଗହଗହ ହେବା ଏମିତି ମୁଣ୍ଡରେ ଧରି ରଖିବା, ଏତେ ଆଦର ସମ୍ମାନ ଅଜାଡ଼ି ଦେବା ପ୍ରୟୋଜନ ଥିଲା ? ସେମାନଙ୍କ କିଏ ସେମିତି ନିୟୋଜିତ କରିଥିଲା ? ବିମାନ ବନ୍ଦରରେ ପହଞ୍ଚିବାଠାରୁ ପୁଣି ବିମାନରେ ଉଡ଼ିଯିବା ପର୍ଯନ୍ତ ଫୁଲପରି ମୋତେ କିଏ ଟୋକି ଧରି ଥିଲା ? ସେମାନେ ସମସ୍ତେ ଯେପରି ଜଣକ ଆଦେଶରେ ନିଯୁକ୍ତ ଥିଲେ, ମୁଁ ମଧ ସେହିପରି ତାହାରହିଁ ଆଦେଶରେ ମୋର ଭୂମିକା ନିର୍ବାହ କଲି । ଜୀବନରେ ସାଫଲ୍ୟ, ସମ୍ମାନ ଏକାଠି ଅଜାଡ଼ି ହେଲା । ମୁଁ ତୁମକୁ ମନେ ପକାଇଛି ସତ, କିନ୍ତୁ ମୁଁ କୃତଜ୍ଞତାରେ ଉଲ୍ଲସିତ ହୋଇନାହିଁ । ମୋ ଆଖିରୁ ଆନନ୍ଦର ଆଶ୍ରୁପାତ ହୋଇ ନାହିଁ । ନିଜର ପାରିଲାପଣ କଥା ହିଁ ଭାବିଛି । ଆଉ କ'ଣ ହୋଇଥିଲେ ଆଉରି ପ୍ରଭାବଶାଳୀ ହୋଇପାରିଥାନ୍ତା ମୋର ବକ୍ତୃତା, ଏଇଆ ଭାବି ଭାବି ରାତିରେ ନିଦ ହୋଇ ନାହିଁ । - କ'ଣ କରାଯାଏ ? ପ୍ରସ୍ତ ପ୍ରସ୍ତ ଆସ୍ତରଣ ବେଢ଼ି ରହିଛି ମୋ଼ ମନ ପ୍ରାଣ ଅବୟବକୁ । ମୋ ପାଖେ ପାଖେ ତୁମର ପରମ ଉପସ୍ଥିତିକୁ ଅନୁଭବ କରିବାର ସାମର୍ଥ୍ୟ, ସେତିକି ଶାଣିତ ସୂକ୍ଷ୍ମ ଚେତନା କାହିଁ ? ତୁମେ ଭିତରେ ବାହାରେ ପରିପୂର୍ଣ୍ଣ ବେଢ଼ି ରହିଛି, ଅଥଚ ମୁଁ କୌଣସି

ଇନ୍ଦ୍ରିୟରେ ତୁମକୁ ଅନୁଭବି ପାରୁ ନାହିଁ । ମନର କୌଣସି ଚିନ୍ତା, ପ୍ରାଣର କୌଣସି କଂପନରେ ବାରି ପାରୁ ନାହିଁ ଦେଖୁ ଦେଖୁ ଆସି ୭୦ ପୁରିଗଲା । ସମବୟସ୍କ ସବୁ କ୍ରମଶଃ ଖସିବା ଆରମ୍ଭ କଲେଣି । କେବେ ହଠାତ୍ ତୁମର ମନ ହେବ ତଲବ କରି ନେବା ପାଇଁ । ମୁଁ ଯେମିତି ଅସିଦ୍ଧ, ଅପରିପକ୍ୱ, ଉପଲବ୍ଧିହୀନ ହୋଇ ରହିଛି ସେମିତି ଯାଇ ତୁମ ପାଖରେ ଠିଆ ହେବି । ସେତେବେଳେ ବି ତୁମକୁ ଆଖି ତୋଳି ଚାହିଁ ଦେବାକୁ ଭରସା ଖଟିବ ନାହିଁ । ଏତେ କୃପାର ଐଶ୍ୱର୍ଯ୍ୟ ଭୋଗ କଲାପରେ ମୁଁ ତୁମକୁ ଏ ଜୀବନରେ ଜାଣି ପାରିଲି ନାହିଁ, ଏ ଅପରାଧବୋଧ, ଗ୍ଲାନିବୋଧରେ ମୁଁ ସଢ଼ି ଯାଉଥିବି । ତୁମେ ହୁଏତ କରୁଣାପ୍ରବଣ ହୋଇ ପୁଣିଥରେ ମୁଣ୍ଡ ଆଉଁସି ଦେବ । ମୁଁ କେବଳ ବର୍ଷିଯିବି ଲୋତକର ବନ୍ୟା । ଆଉ କ'ଣ କରି ପାରିବି ? ତୁମ ବ୍ୟବସ୍ଥାକୁ ମଥାପାତି ମାନି ନେବା ତ ଅନିବାର୍ଯ୍ୟ । ନହେଲେ କହିବାକୁ ମନ ହେଉଛି ଯେ ଯେମିତି ଆଯାଚିତ କୃପା କରି ଚାଲିଛ ସେମିତି ଅଯାଚିତ, ମୋର ଯୋଗ୍ୟତା ନିର୍ବିଶେଷରେ, ଆସି ଉଭା ହୋଇ ଯାଆନ୍ତ ନାହିଁ । ଏ ଚର୍ମଆଖି ନ ଦେଖିଲା ନାହିଁ, ତୁମକୁ ଅନୁଭବିବାକୁ କ'ଣ ଆଉ କିଛି ଉପାଦାନ ନାହିଁ ମୋ ଭିତରେ ? ଜାଗ୍ରତ ସ୍ୱପ୍ନ ସୁଷୁପ୍ତିରେ କେମିତି ଟିକିଏ ଛୁଇଁ ଦିଅନ୍ତ ନାହିଁ ? ସେଇ ଗୋଟିଏ ମାତ୍ର ସ୍ପର୍ଶରେ ଏ ଜୀବନ ଧନ୍ୟ ହୋଇଯାନ୍ତା । ସାର୍ଥକ ହୋଇ ଯାନ୍ତା ମଣିଷ ଜନ୍ମ । ସେଇଟା ମୋର ସିଦ୍ଧି କଦାପି ନୁହେଁ । ସେଥିପାଇଁ ମୋର ସାଧନା କାହିଁ ? ସେଇଟା କେବଳ ତୁମ କରୁଣାର ଚୂଡ଼ାନ୍ତ ଅବଦାନ । କହିବା କଥା ବୋଲି କହି ଦେଲି । ଏଣିକି ତୁମର ଇଚ୍ଛା । ଆଉ କେତେ କାଳ ରଖିବ ବା ନ ରଖିବ ତୁମର ଇଚ୍ଛା – କ'ଣ ଦେବ ନଦେବ ତୁମର ଇଚ୍ଛା ।



## ୨୯-୧୦-୯୯

"ଆଜି ଝଡ଼େର୍ ରାତେ ତୋମାର୍ ଅଭିସାର; ପରାନ୍ ସଖା ବନ୍ଧୁ ହେ ଆମାର୍" (ରବୀନ୍ଦ୍ର) । ଆଲୋକ ସ୍ୱୟଂ ଦୃଶ୍ୟମାନ ନୁହେଁ, କିନ୍ତୁ ସମସ୍ତ ବସ୍ତୁ ଜଗତକୁ ଦୃଶ୍ୟମାନ କରାଏ । ସେହିପରି ଏକ ପ୍ରଚଣ୍ଡ ଶକ୍ତି ପାଣି ପବନ ମେଘମାଳାକୁ ପ୍ରବଳ ବେଗରେ ବିତାଡ଼ିତ କରି ଭୂପୃଷ୍ଠରେ ପ୍ରଳୟକାଣ୍ଡ ଭିଆଣ କରେ । ଛାତ ଉଡ଼ିଯାଏ, ଗଛ ଉପୁଡ଼ିଯାଏ, ବତୀଖୁଣ୍ଟି ସାତବାଙ୍କରେ ମୁଦା ହୋଇଯାଏ । କାନ୍ଥ ଭୁସୁଡ଼ି ପଡ଼େ । ପଶୁପକ୍ଷୀ କାତର ପ୍ରାଣୀମାନେ ଅସହାୟ ମରିଯାନ୍ତି । ପ୍ରାକୃତିକ ନିୟମରେ ସମୁଦ୍ରରେ ଲଘୁଚାପ ସୃଷ୍ଟି ହେଲେ ସମୁଦ୍ରି ତୁଫାନ୍ ପ୍ରବଳ ଘୂର୍ଣ୍ଣିବାତ୍ୟାର ରୂପ ନିଏ – ସେଥିରେ ପୁଞ୍ଜିଭୂତ ଶକ୍ତି ଘୁରିଘୁରି ନିଃଶେଷ ନ ହେବା ଯାଏ, ଶକ୍ତି ଚାପରେ ପୁନର୍ବାର ସମତା ନ ଆସିବା ଯାଏଁ ତା'ର କ୍ରିୟା ଜାରି ରହେ । କିନ୍ତୁ ଜଳ, ଅଗ୍ନି, ବାୟୁ, ବିଦ୍ୟୁତ୍ କେବଳ ଶକ୍ତିର ବାହକ । ସେ ଉପାଦାନ ଗୁଡ଼ିକ ସ୍ୱୟଂ ଶକ୍ତି ନୁହନ୍ତି । ସେ ଅରୂପା ଶକ୍ତି, ଚେତନାର ସ୍ଫୁରଣ । ଚେତନା ଅନନ୍ତ । ଶକ୍ତିର ଏହି ରୂପ ସଂହାର କରେ । ସଂହାର ବେଳେ ତାର ସୃଷ୍ଟି ଧର୍ମ ବା ପାଳନ ଧର୍ମ ନଥାଏ । ଯଦି ଏକ ହିଁ ପରମା ଶକ୍ତି ସୃଷ୍ଟି ସ୍ଥିତି ଲୟ କାରିଣୀ, ସେ କିପରି କଲ୍ୟାଣମୟୀ, ମମତାମୟୀ ହେବା ସତ୍ତ୍ୱେ ଏତେ ମାତ୍ରାରେ ନିଷ୍କରୁଣ ହୋଇପାରେ ? ଜମିରେ ଧାନ, ବୁଣି, ଚାରା ହେବାଠାରୁ ଫଳଧରିବା ପର୍ଯ୍ୟନ୍ତ ପ୍ରତ୍ୟେକ ଧାନଗଛର ଲାଳନ କରୁଥିବା ଚାଷୀ ଯେତେବେଳେ ଦା' ଧରି ଫସଲ କାଟିବାକୁ ଆସେ,

ଧାନଗଛ ନିଶ୍ଚୟ ବିସ୍ମିତ ହେଉଥିବ । ଏକ'ଣ ସେଇ ଯେ ମୋତେ ଦିବାରାତ୍ର ଜଗି ବସିଥିଲା ? ସେ ଏବେ ଏମିତି ମୋତେ କାହିଁକି ସଂହାର କରୁଛି ? 'ତୁ ପରା ଶସ୍ୟ ? ତୋତେ ସେ ଏମିତି ସୃଷ୍ଟିକରେ ଲାଳନ କରେ ଏବଂ ସଂହାର କରେ, କରି ଚାଲି ଥାଏ । ସେହିପରି ପରମାଶକ୍ତିକୁ ମାନବୀଗୁଣ ଆରୋପ କରି ଆପତ୍ତି ଅଭିଯୋଗ ଦାଏର କରିବାର ଅର୍ଥ କିଛି ନାହିଁ । ସ୍ନେହ ମମତା କରୁଣା ଆଦି ବିଭିନ୍ନ ଆବେଗ ଏକ ଏକ ବନ୍ଧନ । ସେଥିରେ ବନ୍ଧା ପଡ଼ିଲେ ଜୀବ ଗୋଟାଏ ପ୍ରକାର ଆଚରଣ କରେ । ସେଥିରୁ ସେ ମୁକୁଳି ପାରେ ନାହିଁ । ପରମାଶକ୍ତି ଏ ସମସ୍ତ ଆରୋପିତ ମାନବୀ ଗୁଣ ବନ୍ଧନରୁ ମୁକ୍ତ, ସତ୍ତ୍ୱ ରଜ ତମରୁ ମୁକ୍ତ । ସୃଷ୍ଟି ଭଳି ଏହା ମଧ୍ୟ ତାଙ୍କର ସ୍ୱତଃସ୍ଫୂର୍ତ୍ତ ସ୍ୱଭାବ । ଏହାର ନିୟାମକ କିଛି ନାହିଁ । ବେଳେବେଳେ ନିଜେ ବୁଝିବାକୁ ଆମେ ଆନନ୍ଦ ଶବ୍ଦ ମାଧ୍ୟମରେ କହୁ ତାହା ଆଦି ବିସ୍ଫୋରଣରୁ ଅନ୍ତିମ ବିଲୟ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଯାହା ଘଟିଗଲା ତାକୁ ବାରଣ କରିବାକୁ କେହି ସମର୍ଥ ନୁହେଁ । ତାର ଅବାଧ ଥାଟ ଏ ଭୂଖଣ୍ଡକୁ ମର୍ଦ୍ଦିଗଲା ବେଳେ କେବଳ ମଥା ପାତି ସହିବା, କିମ୍ବା ସେଥିରେ ପେଶି ହୋଇଯିବା ଛଡ଼ା ଆଉ କ'ଣ କରି ପାରିବ ଏ ଦୁର୍ବଳ ଅସହାୟ ପ୍ରାଣୀ ? ପ୍ରବଳ ଆଗରେ ଦୁର୍ବଳର କ'ଣ ବା ଆୟତ୍ତ ? – କିନ୍ତୁ ଏ ନିଷ୍କରୁଣ ରୁକ୍ଷତା, ଏ ସଂହାରକୁ ସେହି ଦିବ୍ୟଶକ୍ତି ବୋଲି ସ୍ୱୀକାର କରିବା ଅତ୍ୟନ୍ତ କଠିନ । ସେ ଶକ୍ତି ଯେ ପ୍ରତି ସୂର୍ଯ୍ୟୋଦୟରେ ଲକ୍ଷେ ପଦ୍ମକୁ ପ୍ରସ୍ଫୁଟିତ କରେ, ପ୍ରତି ବସନ୍ତରେ ବିସ୍ତୀର୍ଣ୍ଣ ବନାନୀକୁ ସୁରଭିତ କରେ; ବର୍ଷନ୍ତ ମେଘକୁ ଇନ୍ଦ୍ରଧନୁ ମଣ୍ଡିତ କରେ – ସେଇ ଶକ୍ତି କ'ଣ ଏତେ ହିଂସ୍ର ଏତେ ମାରାତ୍ମକ ହୋଇପାରେ ? ଆଦି ସତ୍ୟ ଯଦି ଏକ, ଆଦ୍ୟାଶକ୍ତି ମଧ୍ୟ ଏକ । ଏଣୁ ସୃଷ୍ଟି ଓ ସଂହାର ଉଭୟ ଭୂମିକାରେ ସେଇ ଗୋଟିଏ ମାତ୍ର ଶକ୍ତି କ୍ରିୟାଶୀଳ । ଯାହା ହେଲା ତାହା ତା'ର ଚୂଡ଼ାନ୍ତ ରୂପ ନୁହେଁ; ସଂହାର ତା'ର ଏକ ମାତ୍ର ଭୂମିକା ନୁହେଁ । ସେ ଶକ୍ତି ବ୍ୟାପିକା ଅପରିମେୟା, ଅନନ୍ତା । ଏଣୁ ଆକାଶ ପୃଥିବୀକୁ ପ୍ରବଳ ବେଗରେ ମନ୍ଥି ପକାଉଥିବା ସେ ପରମା ଶକ୍ତିକୁ ଶତକୋଟି ପ୍ରଣାମ



## ଡ଼ିସେମ୍ବର ୯୯

ଅର୍ପଣ ଏକ କ୍ରିୟା, କିନ୍ତୁ ସମର୍ପଣ ଏକ ସ୍ଥିତି – କାୟିକ ପ୍ରାଣିକ ମାନସିକ ସ୍ଥିତି । ସମର୍ପଣ ଅବସ୍ଥାରେ କର୍ତ୍ତା ଓ କର୍ମ ଉଭୟେ ସମର୍ପିତ ହୋଇଯାନ୍ତି । ଅର୍ପଣ ଓ ସମର୍ପଣର ପ୍ରଭେଦ ପରିମାଣ ଗତ ନୁହେଁ ଅର୍ଥାତ୍ ଅଧିକ ମାତ୍ରାରେ ଅର୍ପଣକୁ ସମର୍ପଣ କୁହାଯିବ ନାହିଁ । ଅର୍ପଣ ଏକ ସଚେତନ କ୍ରିୟା, କ୍ରିୟାର କାରଣ ଓ ଲକ୍ଷ୍ୟ, ଆବେଗ ଓ ଉଦ୍ଦେଶ୍ୟ, ସ୍ପଷ୍ଟ । ସମର୍ପଣ ମଧ୍ୟ ସମପରିମାଣରେ ଏକ ସଚେତନ ସ୍ଥିତି । ସେଥିରେ ନିସ୍ପୃହତା ଥାଏ, ନିଷ୍କ୍ରିୟତା ନୁହେଁ । ନିଷ୍ଠଳ ନିରୁଦ୍‌ବିଗ୍ନତା ଥାଏ, ଉଦାସୀନତା ନୁହେଁ । ବସ୍ତୁକୁ ଦାନ କରାଯାଏ । କ୍ରିୟାକୁ ଅର୍ପଣ କରାଯାଏ । କର୍ତ୍ତାକୁ ସମର୍ପଣ କରାଯାଏ । ସମର୍ପଣ ଭାବରେ ବାଧ୍ୟତା ନାହିଁ, ବିରୋଧ ନାହିଁ, ଦ୍ୱିଧା ନାହିଁ, ସଂଶୟ ନାହିଁ । ଏଣୁ ସେଥିରେ କୌଣସି ସଂଘର୍ଷ ନାହିଁ, ଉତ୍ତାପ ନାହିଁ, ଉଦ୍ବେଗ ନାହିଁ । ସମର୍ପଣରେ ଏକ ବିସ୍ତୃତ ସମଭାବ ରହିଥାଏ । ଗଭୀର ଅଟଳ ବିଶ୍ୱାସ ନଥିଲେ ସମର୍ପଣ ସମ୍ଭବ ନୁହେଁ । ବିଶ୍ୱାସ ବଳେ ଜାତ ହୁଏ । ଏହା କୃପାର ପ୍ରଥମ ଅବଦାନ । ମାଲିକ ନିଜେ ଆମକୁ ବିଶ୍ୱାସ ବା ଶ୍ରଦ୍ଧା ପ୍ରଦାନ କରନ୍ତି । ନ ହେଲେ ଲକ୍ଷ କୋଟି ମଣିଷଙ୍କ ମଧ୍ୟରୁ କେବଳ ମୁଷ୍ଟିମେୟ ଲୋକଙ୍କ ମନରେ, ପ୍ରାଣରେ

ବିଶ୍ୱାସରେ ଜାତ ହୁଅନ୍ତା ନାହିଁ ।

ଏହିପରି ବିଶ୍ୱାସ ଆସିଲେ ସୁଦ୍ଧା ଅନେକଙ୍କର ବିଶ୍ୱାସ ଉପରେ ହିଁ ବିଶ୍ୱାସ ନ ଥାଏ । କ'ଣ ହେବ ବିଶ୍ୱାସକୁ ନେଇ ? ଯାହା ଉପରେ ବିଶ୍ୱାସ କରାଯାଏ, ସେ ତ' ଚିରକାଳ ଅନୁପସ୍ଥିତ, ସେ ସତେବା ଆଉ ଏକ ଜଗତ୍‌ର କର୍ତ୍ତା ଯାହା ସହିତ ଆମ ଏ ଧରାତଳର କୌଣସି ସଂପର୍କ ନାହିଁ । ଏପରି ବିରୋଧ ହେଲେ ମୁକ୍ତିର ବାଟ ବନ୍ଦ ହୋଇଯାଏ । ସମର୍ପଣର ପ୍ରଶ୍ନ ମଧ୍ୟ ଉଠେ ନାହିଁ ।

କିନ୍ତୁ କିଏ ଏ ବିରୋଧ କରେ ? ମଣିଷ ଭିତରର ଅହଂ ହିଁ ସମସ୍ତ ଭିତରେ ପଶି ସବୁ କଳୁଷିତ କରି ପକାଏ । ସମର୍ପଣ ଏକ ହୀନ ବଳର ପରାଜୟର ଲକ୍ଷଣ । ଏହା ନିଜ ଉପରୁ ଆସ୍ଥା ହରାଇବାର, ନିଜକୁ ଅସ୍ୱୀକାର କରୁଥିବା ଆତ୍ମଘାତୀ ପ୍ରକ୍ରିୟା । ଯଦି ବିଶ୍ୱାସ କରାଯାଏ, କିଏ ଅଧିକ ବିଶ୍ୱାସର ଯୋଗ୍ୟ ? - ଯେ ଅଚିହ୍ନିତ, ଅଜ୍ଞାତ, ଅନୁପସ୍ଥିତ ନା ଯେ ନିକଟତମ, ଘନିଷ୍ଠତମ ପ୍ରଥମ ବାସ୍ତବତା - ଅର୍ଥାତ୍ ଅଜ୍ଞେୟ ଈଶ୍ୱର ନା ବ୍ୟକ୍ତି ନିଜେ ? କାହାକୁ ଅବିଶ୍ୱାସ କଲେ ମଣିଷ ନାସ୍ତିକ ବୋଲି ଚିହ୍ନିତ ହୁଏ - ଈଶ୍ୱରଙ୍କୁ ନା ନିଜକୁ ? ଆତ୍ମବିଶ୍ୱାସ ହୀନ ନିଜ ଉପରେ ବିଶ୍ୱାସ ହରାଇଥିବା ମଣିଷ ହିଁ ଚରମ ନାସ୍ତିକ । ନିଜକୁ ବା ନିଜର ସମଗ୍ର କ୍ରିୟା, ପୁରୁଷକାର, ଯୋଗ୍ୟତା, ସାଧନା ଓ ସିଦ୍ଧିକୁ ସମର୍ପି ଦେବା ଆତ୍ମବିଶ୍ୱାସ ଥିବା ବ୍ୟକ୍ତିର ଲକ୍ଷଣ ନୁହେଁ ।

ଏହାହିଁ ଅହଂର ସ୍ୱର । ଅହଂ ବିଶ୍ୱାସକୁ ହୁଏତ ଅସ୍ୱୀକାର କରେ । ଫଳରେ ଆଉ ତେଣିକି ଅଗ୍ରସର ହେବାର ପ୍ରଶ୍ନ ଉଠେ ନାହିଁ । କିମ୍ବା ସ୍ୱୀକାର କଲେ ସୁଦ୍ଧା, ବିଶ୍ୱାସ ଯେ ଆଉ କାହାର ଅବଦାନ ଏହା ସେ ମାନିବାକୁ ପ୍ରସ୍ତୁତ ନଥାଏ । ଅହଂ ଆଖିରେ ପରଳ ମଡ଼େଇ ଦିଏ । ବିଚାରକୁ ଦିଗ୍‌ଭ୍ରାନ୍ତ କରିଦିଏ ଏବଂ ଚିନ୍ତା ଉପରେ କୁହୁଡ଼ି ଘୋଡ଼େଇ ଦିଏ ।

ସମର୍ପଣ କୌଣସି ଦୁର୍ବଳ ପରାସ୍ତ ଆତ୍ମବିଶ୍ୱାସ ହୀନ ବ୍ୟକ୍ତିର ଲକ୍ଷଣ ନୁହେଁ । ଏହା ଆତ୍ମବଳ ସମ୍ପନ୍ନ, ଦୃଢ଼, ନିଷ୍ପତ୍ତି ବ୍ୟକ୍ତିର ନିଷ୍ପତ୍ତି । ଯେ ଯାବତୀୟ କର୍ମ ବନ୍ଧନ ଓ ତାର ଆକର୍ଷଣକୁ, ମନପ୍ରାଣ ଶରୀରର ପ୍ରବଳ ପ୍ରଲୋଭନକୁ, ଅହଂର ଆସ୍ଫାଳନକୁ ପ୍ରତିରୋଧ କରି ନିଜକୁ ଓ ନିଜର ସମସ୍ତ ଅର୍ଜନକୁ ସମର୍ପଣ କରି ଦେଇ ପାରେ, ସେ କିପରି ଦୁର୍ବଳ ହୋଇ ପାରେ ? 'ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଽସି ଦଦାସି ଯତ୍ । ଯତ୍ ତପସ୍ୟସି କୌନ୍ତେୟ ତତ୍ କରୁଷ୍ୱ ମଦର୍ପଣମ୍ ॥' ଅର୍ପଣ କରିଦେବା ପାଇଁ ଯେଉଁ ସାହସ, ଶକ୍ତି, ଦୃଢ଼ତା ଓ ସଂକଳ୍ପର ପ୍ରୟୋଜନ ତାହା କୌଣସି ହୀନବଳର ଲକ୍ଷଣ ନୁହେଁ । ସମର୍ପଣ ଭାବର ସ୍ଥିରତା ପାଇଁ ଅସଂଖ୍ୟ ପ୍ରବଳ ଶକ୍ତି ମାନଙ୍କର ଆକର୍ଷଣ ବିକର୍ଷଣର ସନ୍ତୁଳନ ପ୍ରୟୋଜନ, ସମତାର ପ୍ରୟୋଜନ । ତାହା ସହଜନୁହେଁ । ତାହା ଧନପାଇଁ ଲୋଭ ନୁହେଁ କି ତ୍ୟାଗ ନୁହେଁ । ଲୋଭ ହେଲେ ନିମ୍ନପ୍ରାଣ, ତ୍ୟାଗ ହେଲେ କୃଚ୍ଛ ସଂଯମ, କୌଣସିଟି ସମର୍ପଣର ସହଯୋଗୀ ନୁହେଁ । ସମର୍ପଣ ଏକ ନିର୍ଲିପ୍ତତା, ଏକ ଚରମ ଯୋଗ ସାମର୍ଥ୍ୟ, ନିଜକୁ ନିଜେ ସମର୍ପି ଦେବାର ଅସାଧାରଣ କ୍ଷମତା ।

ଯୋଗୀ ଯୋଗ ସାଧନା କରନ୍ତି, ତପସ୍ୱୀ ତପସ୍ୟା କରନ୍ତି ମାନୀ ମାନ କରନ୍ତି । ପ୍ରେମୀ ପ୍ରେମ କରନ୍ତି, ଭକ୍ତ ଭକ୍ତି କରନ୍ତି ଏ ସମସ୍ତ କ୍ଷେତ୍ରରେ ବ୍ୟକ୍ତି ସ୍ୱତନ୍ତ୍ର ରହିଥାଏ । ଯେଉଁଠି ଏ ସ୍ୱାତନ୍ତ୍ର୍ୟ ଓ କର୍ତ୍ତୃତ୍ୱ ସଂପୂର୍ଣ୍ଣ ଲୋପ ପାଇଥାଏ, ବ୍ୟକ୍ତିର ଅବଶେଷ ଆଉ ରହେ ନାହିଁ - ତାହା ସମର୍ପଣ । ଯୋଗ ସାଧନାର ଚରମ ପରିଣତି ସମର୍ପଣ । ସମର୍ପଣ ଯୋଗୋତ୍ତୀର୍ଣ୍ଣ ପରିବ୍ୟାପ୍ତି; ଭକ୍ତି ଓ ପ୍ରେମର ପରମ ପରାକାଷ୍ଠା - ଏଣୁ ସମର୍ଥ ସାର୍ଥକ ମାନବଜନ୍ମର ପରମ ଶ୍ରେୟ ହେଉଛି ସମର୍ପଣ ।

## ୧୬.୭.୨୦୦୦

ମିଥ୍ୟା ହେଲେ ସୁଦ୍ଧା ପ୍ରଶଂସା ବା ସ୍ତୋକ ବାକ୍ୟ ଭଳି କର୍ଣ୍ଣ ରସାୟନ ଆଉ କିଛି ନାହିଁ । ମାନବ ମାତ୍ରେ ନିଜର ପ୍ରଶଂସା କୌଣସି ନା କୌଣସି କ୍ଷେତ୍ରରେ କୌଣସି ନା କୌଣସି ଲୋକଠାରୁ ଶୁଣିବାକୁ ଭଲ ପାଏ । କହିବା ଲୋକର ବିଚାରଶୀଳତା, ବିଜ୍ଞତା ବା ଯୋଗ୍ୟତା କେବେହେଲେ ପରୀକ୍ଷା କରିବାର ପ୍ରୟୋଜନ ପଡ଼ି ନାହିଁ । ସେ ମିଥ୍ୟାଚାରୀ, ଶଠ ଏବଂ ଚାଟୁକାର ହୋଇଥିଲେ ସୁଦ୍ଧା ତା ତୁଣ୍ଡରେ ପ୍ରଶଂସା ଟିକିଏ ଶୁଣିବାକୁ ମନ ଭାରି ଉତ୍କଣ୍ଠିତ ହୁଏ । ସେ ହୁଏତ ଜାଣେ ଯେ ପ୍ରଶଂସାର ବଡ଼ଭାଗ ମିଥ୍ୟା । ତେବେ ବି ସେ ସଂପୂର୍ଣ୍ଣ ପ୍ରଶଂସା ବାକ୍ୟଟିକୁ ବିନା ଦ୍ୱିଧାରେ ସ୍ୱୀକାର କରିନିଏ । ଏହି ଯୁକ୍ତିରେ, ଦେବ ମନ୍ଦିରରେ ସ୍ତବ ପାଠ କରାଯାଏ । ମଣିଷକୁ ସ୍ତବପାଠ କରି ସନ୍ତୁଷ୍ଟ କଲେ ତାହା ଚାଟୁକାରିତା, ମିଥ୍ୟା । କିନ୍ତୁ ସ୍ତୁତି ପାଠ କରି ଦେବତାକୁ ସନ୍ତୁଷ୍ଟ କଲେ ଦୁର୍ଲଭ ପୁଣ୍ୟ ଲାଭ ।

କିଏ ପ୍ରଶଂସାର ଗ୍ରହିତା ବା ଭୋକ୍ତା ? ନିଜକୁ ଅଦ୍ୱିତୀୟ ମନେ କରୁଥିବା, କାହାଠାରୁ ନ୍ୟୂନ ମନେ କରୁ ନ ଥିବା, ମନ ପ୍ରାଣ ଶରୀରକୁ ଏବଂ ସେ ଭୂମିର ସମସ୍ତ ଶ୍ରେୟକୁ ଆତ୍ମସାତ୍ କରୁଥିବା ଅହଂ । 'କୋନ୍ୟୋଽସ୍ତି ସଦୃଶୋ ମୟା' କହୁଥିବା ଏହି ଅହଂ ନିଜର ପୋଷଣ କରୁଥାଏ । ଏଣୁ ଯଦି କୌଣସି ପରିସ୍ଥିତିରେ ଆଉ କେହି ସେହି କର୍ମଟି କରେ ତାହା ତା' ପାଇଁ ପରମ ଶ୍ଳାଘ୍ୟ ହେବା ସ୍ୱାଭାବିକ । ଚାଟୁକାରର ମିଥ୍ୟା ଶ୍ରିତ ଅତିଶୟୋକ୍ତିକୁ ବୁଝି ନ ବୁଝିଲା ପରି ସେ ପାନ କରେ । ନାରୀ ଶୁଣିବାକୁ ଚାହେଁ, ସେ ସବୁଠାରୁ ସୁନ୍ଦରୀ ଏବଂ ପୁରୁଣା ଛାଡ଼ିବାକୁ ଚାହେଁ ସେ ସର୍ବାପେକ୍ଷା ବଳିଷ୍ଠ ଓ ସାହସୀ । ଯେଉଁ ଗୁଣ ବା ଶ୍ରେୟ ସେ ଅର୍ଜନ କରି ପାରେ ନାହିଁ, ଅଥଚ ଅଧିକାର କରିବାକୁ ଚାହୁଁଥାଏ, ତାହା ଯଦି ଚାଟୁକାର ତାକୁ ବିନା ଶ୍ରମରେ ପ୍ରଦାନ କରେ, ତେବେ ତାକୁ ଗ୍ରହଣ ନ କରିବା ବ୍ୟକ୍ତି ବୋଧହୁଏ କୋଟିକେ ଗୋଟିଏ ମିଳି ପାରନ୍ତି । ଏଣେ ଚାଟୁକାର ଜାଣିଥାଏ ଯେ ଆତ୍ମ ସନ୍ତୋଷରେ ପ୍ରଫୁଲ୍ଲିତ ବ୍ୟକ୍ତିଟି ତାର ବଶୀଭୂତ । ଏପରି ଅବସ୍ଥାରେ ସେ ଚାଟୁକାରର ବଚସ୍କର ହୋଇଯିବା କିଛି ବିଚିତ୍ର କଥା ନୁହେଁ ।

ମଣିଷର ଏହି ଦୁର୍ବଳତାକୁ ଦେବତାଙ୍କ ଠାରେ ଆରୋପ କରାଯାଏ । ସେଥି ପାଇଁ ଯେକୌଣସି ଗୌଣ ଦେବ ଦେବୀଙ୍କୁ ସନ୍ତୁଷ୍ଟ କରିବାକୁ ତାଙ୍କୁ ତ୍ରୈଲୋକ୍ୟନାଥ ବୋଲି ସମ୍ବୋଧନ କରାଯାଏ । ଅନ୍ୟ ସମସ୍ତ ଦେବତାଙ୍କୁ ତାଙ୍କର ଆଜ୍ଞାଧୀନ ବୋଲି ବର୍ଣ୍ଣନା କରାଯାଏ । ଲମ୍ବୋଦର ଏବଂ ଗଜେନ୍ଦ୍ରବଦନଙ୍କୁ ସୁନ୍ଦର ବୋଲି କୁହାଯାଏ । ଉଦ୍ଦେଶ୍ୟ - କେବଳ ତାଙ୍କୁ ଚାଟୁବାକ୍ୟରେ ବଶୀଭୂତ କରିବା ଏବଂ ତାଙ୍କ ଶକ୍ତି ସାମର୍ଥ୍ୟକୁ ନିଜ ଅଭିଳାଷ ପୂରଣ ପାଇଁ ନିୟୋଜିତ କରିବା । ସ୍ତବପାଠରେ ସନ୍ତୁଷ୍ଟ ହୋଇ ଦେବତାମାନେ ଆସି କହିବାର ଶୁଣା ଯାଏ । "କି ବର ମାଗୁଛୁ ମାଗ୍ ।" ବସ୍ତୁତଃ ସେଭଳି କିଛି ହୁଏ ନାହିଁ । କାରଣ ଦେବଭୂମିରେ କେହି ହେଲେ ମଣିଷ ଭଳି ବେକୁବ ନୁହନ୍ତି । ତାଙ୍କୁ ମିଛ କହି ଚାଟୁକାରିତାରେ ସନ୍ତୁଷ୍ଟ କରି ହେବ ନାହିଁ ।

ଚାଟୁକାରିତାରେ ସବୁବେଳେ କିଛି ନା କିଛି ଯାଚନା ଯୋଡ଼ି ହୋଇ ରହିଥାଏ । ଶିବଙ୍କୁ, ହନୁମାନଙ୍କୁ, ଦେବୀଙ୍କୁ ସନ୍ତୁଷ୍ଟ କରିବାର ଉଦ୍ଦେଶ୍ୟ ହେଲା, ତାଙ୍କ ହସ୍ତକ୍ଷେପରେ ଯାହାକୁ କୃପା ବୋଲି ଅର୍ଥ କରାଯାଏ, ସ୍ତାବକ ତା'ର ଯୋଗ୍ୟତା ବହିର୍ଭୂତ ଶ୍ରେୟ ପ୍ରାପ୍ତ ହୁଏ । ଏଣୁ ଯେତେବେଳେ ସେ ଜାଣେ ଯେ କୌଣସି ଭୋଗ୍ୟ ବସ୍ତୁର ସୁଖ ତାର ଯୋଗ୍ୟତା ଅନୁରୂପ ହୋଇ ନଥିବାରୁ ତା'ର ପ୍ରାପ୍ୟ ନୁହେଁ ସେତେବେଳେ ସେ

ଦୈବୀ ଶକ୍ତିର ପ୍ରୟୋଗ କରି ନିଜ ପାଇଁ ସେହି ସୁଖ ଆଦାୟ କରି ନିଏ । ପ୍ରତ୍ୟେକ ସ୍ତବ ପାଠ ପରେ ନିଶ୍ଚୟ କୁହାଯାଏ, ମୋର ଦୁଃଖ ମୋଚନ କର, ମୋର ପାପ କ୍ଷୟ କର, ମୋତେ ଧନ ଦିଅ, ଯଶ ଦିଅ, କ୍ଷମତା ଦିଅ, ଭୋଗ ଦିଅ ଏବଂ ମୁକ୍ତି ଦିଅ, ପୁଣ୍ୟ ଦିଅ, ସ୍ୱର୍ଗ ଦିଅ । ଏହିପରି ଅତିଦୀର୍ଘ ତାଲିକାଭୁକ୍ତ ଅସଂଖ୍ୟ ଯାଚନା, ସ୍ତବପାଠରେ ସଂଯୁକ୍ତ କରାଯାଇଥାଏ, ସ୍ତବ ଭିତରେ ଥାଏ ଚାଟୁକାରିତା । ଚାଟୁକାରିତାରେ ଥାଏ ମିଥ୍ୟାଚାର । ଯାଚନା ପଛରେ ଥାଏ ଅଯୋଗ୍ୟତା ଏବଂ ତତ୍‌ସତ୍ତ୍ୱେ ନିଜର ସାମର୍ଥ୍ୟ ବୃଦ୍ଧି ନ କରି, ଦେବତାର କୃପା ମାଧ୍ୟମରେ ଶ୍ରେୟ ପ୍ରାପ୍ତି ।

ଯେତେବେଳେ ସ୍ତବପାଠ ଯାଚନା ମୁକ୍ତ ହୁଏ ସେତେବେଳେ ତାହା ଦେବତାର ଯୋଗ୍ୟ ହୋଇପାରେ । ତଥାପି ସ୍ତାବକତାର ମିଥ୍ୟାଚାର ରହିଯାଏ । କିନ୍ତୁ ପ୍ରେମ ଦୃଷ୍ଟିରେ ଦେଖିଲେ ଦୋଷ ଦିଶେ ନାହିଁ ଏବଂ ଗୁଣ ବହୁଗୁଣିତ ହୋଇ ଦେଖାଦିଏ । ଦେବତାଙ୍କୁ ପ୍ରେମ କରିବା କିମ୍ବା ଭକ୍ତି କରିବା ଗୋଟିଏ ପର୍ଯ୍ୟାୟର । ଅତ୍ୟନ୍ତ ଗଭୀର ଐକାନ୍ତିକ ପ୍ରେମ ବା ଭକ୍ତିରେ ସ୍ତବପାଠ ସ୍ତାବକତାରୁ ମୁକ୍ତ ହୋଇଯାଏ । ମଣିଷ କ୍ଷେତ୍ରରେ ମଧ୍ୟ ପ୍ରେମିକ ବା ପ୍ରେମିକାଠାରୁ ପ୍ରଶଂସା ଶୁଣିଲେ ଅସ୍ୱାଭାବିକ ମନେ ହୁଏ ନାହିଁ । ମାତା ପାଇଁ ଦଗ୍ଧମୁଖୀ ଚନ୍ଦ୍ରବଦନା, - ଗୁଣ ବହୁଗୁଣିତ ହୁଏ, ସ୍ନେହ, ବାତ୍ସଲ୍ୟ, ପ୍ରେମରେ ଦୋଷ ଦିଶେ ନାହିଁ । ସେଥିରେ ମିଥ୍ୟାଚାର ନଥାଏ କାରଣ, ତାକୁ ସେତେବେଳେ ସେହିଭଳି ଦେଖାଯାଏ ଏବଂ ଚେତନାର ସେହି ସ୍ତରରେ ରହି ସେ ସତ୍ୟବଚନ ହିଁ କହିଥାଏ । ସେ କ୍ଷେତ୍ରରେ ପ୍ରଶଂସା ବାକ୍ୟ କେବଳ କର୍ଣ୍ଣ ରସାୟନ ନ ହୋଇ ପ୍ରାଣ ପୋଷକ ହୋଇଥାଏ, ଆନନ୍ଦବର୍ଦ୍ଧକ ହୋଇଥାଏ ।



**୧.୧୦.୨୦୦୦**

ଗୋଟିଏ କାର୍ଯ୍ୟର ବହୁବିଧ କାରଣ ପରି ବହୁବିଧ କାର୍ଯ୍ୟର ଗୋଟିଏ କାରଣ ମଧ୍ୟ ହୋଇପାରେ । ପୃଥିବୀର ବର୍ତ୍ତୁଳତାରୁ ମୁକ୍ତ ହୋଇଗଲେ ପୂର୍ବ ଯାହା ପଶ୍ଚିମ ତାହା, ଗୋଟିଏ ମାତ୍ର ବ୍ୟାପ୍ତିର ପାର୍ଥିବ ବିଭାଗ । ଏଣୁ ଉଦୟ ହେବା କିମ୍ବା ଅସ୍ତ ହେବା ଭିତରେ କୌଣସି ପାର୍ଥକ୍ୟ ନାହିଁ । ବସ୍ତୁତଃ ଉଭୟେ ଅଭିନ୍ନ । ତାହେଲେ ଏ ଦୁଇଟି ଜାଗତିକ ଘଟଣାର ମଧ୍ୟବର୍ତ୍ତୀ ପୂର୍ବାହ୍ନ, ଅପରାହ୍ନ କିମ୍ବା ମଧ୍ୟାହ୍ନ ଅଥବା ସାୟାହ୍ନର ସ୍ୱତନ୍ତ୍ରତା ନାହିଁ । ଗୋଟିଏ ମାତ୍ର କାଳ ବିନ୍ଦୁରେ ଏ ସମସ୍ତେ ସମାହିତ ଏବଂ ଯଦି ଏହି କାଳ ବିନ୍ଦୁ ପଶ୍ଚାତରେ କୌଣସି ଅପରିମେୟ କାରଣ ବିଦ୍ୟମାନ ତା'ହେଲେ ଏ କାଳ ବିନ୍ଦୁର ଗର୍ଭରେ ବିଦ୍ୟମାନ ଯାବତୀୟ ପୂର୍ବାହ୍ନ ମଧ୍ୟାହ୍ନ ବା ସାୟାହ୍ନ ବା ବର୍ଷମାସ ଦିନ ଦଣ୍ଡ ଲିତା, ବିଲିତା ବା ସମ୍ବତ୍ସର, ଯୁଗ ବା କଳ୍ପ । ଏ ସମସ୍ତର କାରଣ ମଧ୍ୟ ସେଇ ଗୋଟିଏ । ଦେଶ-କାଳ ସନ୍ଧି ଯଦି ଅବିଚ୍ଛେଦ୍ୟ । ତେବେ ବିଶ୍ୱ ବ୍ରହ୍ମାଣ୍ଡର ବ୍ୟାପ୍ତି ସେଇ କାଳବିନ୍ଦୁରେ ଗ୍ରଥିତ ହୋଇଥିବାରୁ ଧୂଳିକଣାରୁ ତାରାମଣ୍ଡଳ ଯାଏ, ଯାବତୀୟ ବସ୍ତୁପିଣ୍ଡ ଓ ଜୀବପିଣ୍ଡମାନଙ୍କର ସେଇ ଏକମାତ୍ର କାରଣ ହିଁ ବିଦ୍ୟମାନ । ଅସଂଖ୍ୟ ବୁଦ୍‌ବୁଦ୍‌ମାନଙ୍କର ଉତ୍ପତ୍ତି ସ୍ଥିତି ଓ ଲୟ କ୍ରିୟା ପଶ୍ଚାତ୍‌ରେ ସେହି "କାରଣ ବାରି" ହିଁ ସେମାନଙ୍କର ହେତୁ ।

ଏହାର ଅନୁସିଦ୍ଧାନ୍ତ :- ମଣିଷ ଜୀବନର ପ୍ରତି ମୁହୂର୍ତ୍ତର ଘଟଣା, ସୁଖ ଦୁଃଖ, ଜନ୍ମ ମୃତ୍ୟୁ, ସଂପଦ ବିପଦର ଆପାତ ଭିନ୍ନ ଅନୁଭବ, ଅଧିଷ୍ଠାନ, କର୍ତ୍ତା, କାରଣାଦି, ପୃଥକ ଓ ବିବିଧ ଚେଷ୍ଟା ପଶ୍ଚାତରେ ଗୋଟିଏ ମାତ୍ର କାରଣ ବିଦ୍ୟମାନ । ଏଣୁ କେହି ଯଦି ମୋତେ ଅପ୍ରତ୍ୟାଶିତ ବିପଦରେ ପକାଇ ମୋର ଶୋକର କାରଣ ହୋଇଥାଏ ସେ ହିଁ ମୋର ତ୍ରାଣ କର୍ତ୍ତା ହୋଇ ମୋତେ ବିପଦରୁ ଉଦ୍ଧାର କରେ, ଶୋକରୁ ମୁକ୍ତ କରେ । ଯେ ମୋର ଆକାଶକୁ ମେଘାଚ୍ଛନ୍ନ କରେ ସେ ହିଁ ତାକୁ ନିର୍ମଳ, ପ୍ରାଞ୍ଜଳ ଓ ନିର୍ମେଘ କରେ । ଯେଉଁ ହାତରେ ସେ ମୋତେ ପ୍ରହାର କରେ ସେଇ ହାତରେ ଶୁଶ୍ରୁଷା କରେ । ସେହିଁ ସେ ଭିନ୍ନ ଭିନ୍ନ ରୂପରେ ଓ ଭୂମିକାରେ ମୋର ସମସ୍ତ କାର୍ଯ୍ୟକାରଣକୁ ଆଚ୍ଛନ୍ନ କରି ରଖିଥାଏ । ଊର୍ଣ୍ଣନାଭ ପରି ସେ ଏ ସମସ୍ତକୁ ଜାତ କରେ ବିସ୍ତୃତ, ବିନ୍ୟସ୍ତ କରେ ଓ ଭକ୍ଷଣ କରେ ।

ତନ୍ତୁ ଊର୍ଣ୍ଣନାଭଠାରୁ ପୃଥକ୍ କୌଣସି ସତ୍ତାନୁହେଁ ତାହା ଊର୍ଣ୍ଣନାଭର ତନ୍ତୁଭୂତ ବିକାର ଓ ବିସ୍ତାର ମାତ୍ର ତାହା ଊର୍ଣ୍ଣନାଭର ଅଂଶ ବିଶେଷ । "ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ" । ଏଣୁ ଜଡ଼ ଚେତନ ସ୍ଥାବର ଜଙ୍ଗମାଦି ଯାବତୀୟ ନାନାତ୍ୱ ଲକ୍ଷଣ କେବଳ ଜଡ଼ଭୂତ ଓ ଜୀବଭୂତ ଏକକର ଅଂଶ ମାତ୍ର । ସେ ହିଁ କାର୍ଯ୍ୟ ସେ ହିଁ କାରଣ, ସେ ହିଁ ସମୁଦ୍ର ସେ ହିଁ ତରଙ୍ଗ, ସେ ହିଁ ସ୍ଥିର କାଳ ସେ ହିଁ ଅସ୍ଥିର ଜଗତ୍ । "ଅହଂ ସର୍ବସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା" । - ତତ୍ ମାତ୍ର ହିଁ ସତ୍ । ତତ୍ ଏବ ସତ୍ ।

ଜୀବନରେ ବିପରୀତ କୋଟୀର ସଂଘାତ ବିପରୀତ ପରିଣାମ । ଘନଘୋର ବିପତ୍ତି, ଏବଂ ପୁଷ୍ପିତ ସୁରଭିତ ସଂପତ୍ତି କେବଳ ଏକମାତ୍ର ଇଙ୍ଗିତରେ ପରିଚାଳିତ । ଏକମାତ୍ର କାରଣ ଦ୍ୱାରା ନିଷ୍ପନ୍ନ ବିଭିନ୍ନ କ୍ରିୟା ପ୍ରବାହ । ପୂର୍ବରୁ ପଶ୍ଚିମକୁ ବିସ୍ତୃତ ବାହୁଯୁଗଳ, ଅସ୍ତକରାଏ, ସେ ଉଦୟ ମଧ୍ୟ କରାଏ । ଅନନ୍ୟ ଅଦ୍ୱୟ କାରଣର ସଂଧାନ ପାଇବାକୁ ହେଲେ ଦେଶକାଳ ସନ୍ଧିରୁ ବିବିଧତା ଓ ନାନାତ୍ୱର ଅପରିମେୟ ଜଟିଳ ଜାଲରୁ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ ।

ଏକକ କାରଣ ସେଇ ଯେଉଁଠାରେ କାର୍ଯ୍ୟକାରଣ ଉଭୟ ସମାହିତ, ଏକତ୍ୱ ଓ ବହୁତ୍ୱ, ଉଭୟ ପ୍ରଲୀନ ଦିଗ ନାହିଁ, କାଳ ନାହିଁ, ରୂପ ନାହିଁ, ବର୍ଣ୍ଣ ନାହିଁ, ସ୍ପନ୍ଦନ ନାହିଁ, ପ୍ରବାହ ନାହିଁ, ଦ୍ରଷ୍ଟା ନାହିଁ ଦୃଶ୍ୟ ନାହିଁ । ଭେଦ ଅଭେଦ ନାହିଁ । ସେହି ଅଖଣ୍ଡୈକ ତତ୍ ହିଁ ସତ୍ । ଓଁ ତତ୍ ସତ୍ ଇତି ।

ଶ୍ରୀ ଗୁରୋର୍ପଣମସ୍ତୁ



୨୦.୧୦.୨୦୦୦

ବେଳେବେଳେ ମନେହୁଏ ଯେ ଜ୍ଞାନ ଓ ବିଶ୍ୱାସ ପରସ୍ପର ପାଇଁ ଅନିବାର୍ଯ୍ୟ ନୁହନ୍ତି । ବହୁକ୍ଷେତ୍ରରେ ଜ୍ଞାନ ନଥିଲେ ସୁଦ୍ଧା ବିଶ୍ୱାସ ଥାଏ । ବରଂ ଜ୍ଞାନ ବିଶ୍ୱାସର ଅନୁକୂଳ ନୁହେଁ । ଜ୍ଞାନ ପାଇଁ ଜିଜ୍ଞାସା, ତର୍କ ପ୍ରମାଣ, ଯୁକ୍ତି ପ୍ରତିଯୁକ୍ତିର ପ୍ରୟୋଜନ ଥାଏ । ସାଧାରଣ ଅର୍ଥରେ ଜ୍ଞାନ ମନ ପ୍ରଧାନ । କିନ୍ତୁ ବିଶ୍ୱାସ ହୃଦୟ ପ୍ରଧାନ । ଅତ୍ୟନ୍ତ ସରଳ ପ୍ରକୃତିର ଜନୈକ ଗ୍ରାମ୍ୟ ମହିଳା ଜଣେ ବିଦେଶୀ ପତ୍ରକାରଙ୍କ ପ୍ରଶ୍ନର ଉତ୍ତର ଏହିପରି ଦେଇଥିଲେ । ପ୍ରଶ୍ନ 'ସୋଭିଏତ୍ ରୁଷରେ ଈଶ୍ୱରଙ୍କୁ ବାସନ୍ଦ କରାଯାଇଛି । ତୁମେ କେମିତି ତାଙ୍କୁ ବିଶ୍ୱାସ

କରୁଛ ?' - ଉତ୍ତର - "ମୁଁ ଈଶ୍ୱରଙ୍କୁ ଜାଣେନାହିଁ । ଏଣୁ ବିଶ୍ୱାସ କରେ ।" ସେମାନେ ହୁଏତ ତାଙ୍କୁ ଜାଣନ୍ତି ଏଣୁ ବାସନ୍ଦ କରିଛନ୍ତି । ଉପସ୍ଥିତ ଜଗତ୍‌ର ସଂଘାତକୁ ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ଓ ସେମାନଙ୍କ ମାନଦଣ୍ଡରେ ଗ୍ରହଣକରି ମନ ଏକ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ବାହ୍ୟ ଜଗତକୁ ବୁଝିବାକୁ ଚେଷ୍ଟାକରେ । ସଂଗୀତର ମଧୁର ମୂର୍ଚ୍ଛନା କର୍ଣ୍ଣ ରସାୟନ । ତଦ୍ ବିଷୟକ ଜ୍ଞାନ ବସ୍ତୁନିଷ୍ଠ ନହୋଇ ରୁଚିନିଷ୍ଠ ହୋଇ ଯାଏ । ବସ୍ତୁର ସଂପର୍କରେ ଆସେ ଇନ୍ଦ୍ରିୟ । ଇନ୍ଦ୍ରିୟ ଯାହା ଅନୁକୂଳ ବା ପ୍ରତିକୂଳ ବୋଧ କଲା । ତାହା ମନକୁ ଜଣାଇ ଦିଏ । ଏବଂ ମନ ଇନ୍ଦ୍ରିୟର ସେହି ପ୍ରତିକ୍ରିୟାକୁ ଜ୍ଞାନର ଆଖ୍ୟା ଦେଇ ସଂପୃକ୍ତ ବସ୍ତୁ ବା ପରିସ୍ଥିତିକୁ ଚିହ୍ନିତ, ନାମିତ ଓ ମୂଲ୍ୟାଙ୍କିତ କରେ । ଅଧିକାଂଶ କ୍ଷେତ୍ରରେ ମନ ସେହି ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଡ଼ମ୍ବିତ ହୁଏ । ଯାହା ନାହିଁ ତାହା ଦେଖାଯାଏ । ଯାହା ଅଛି ତାହା ଦିଶେ ନାହିଁ । ମନ ଇନ୍ଦ୍ରିୟକୁ ବସ୍ତୁର ବାସ୍ତବତା ପାଇଁ ଚୂଡ଼ାନ୍ତ ପ୍ରମାଣ ରୂପେ ଗ୍ରହଣ କରିନିଏ । ଫଳରେ ବେବକୁବ୍ ଭଳି ସେ ଅପହସିତ ହୋଇଥାଏ ।

ମନ କ'ଣ ସତେ କିଛି ଜାଣେ ? ଜ୍ଞାନ କ'ଣ କେବଳ ଇନ୍ଦ୍ରିୟ-ଜନିତ ବ୍ୟାଖ୍ୟାନ ? ଇନ୍ଦ୍ରିୟ ବହିର୍ଭୂତ ଓ ମନର ଅଗୋଚର ସ୍ଥିତିକୁ ସ୍ୱୀକାର କରି ହେବ ନା ନାହିଁ ? ଯୁକ୍ତି ପ୍ରମାଣର ପ୍ରୟୋଗ କ'ଣ ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ? ଅନେକ କ୍ଷେତ୍ରରେ ପ୍ରମାଣ-ବହିର୍ଭୂତ ଅର୍ଥାତ୍ ଅପ୍ରମାଣ୍ୟକୁ ସ୍ୱୀକାର କରାଯାଏ । ଅନନ୍ତର ପ୍ରମାଣ ନାହିଁ, କାରଣ ଇନ୍ଦ୍ରିୟ ଗ୍ରାହ୍ୟତା ନାହିଁ । କିନ୍ତୁ ଅନନ୍ତ ସ୍ୱୀକାର୍ଯ୍ୟ । ଏହା ସ୍ୱୀକୃତ ହେଲେ ହିଁ ସୀମିତ ପରିମାଣ ଓ ତାର ପରିମେୟତା ଅର୍ଥପୂର୍ଣ୍ଣ ହୁଏ । ଅସାମାନ୍ୟର ସ୍ୱୀକୃତି ହିଁ ବିଶ୍ୱାସ ବିଶ୍ୱାସଜନୀତ ଜ୍ଞାନ ଗଭୀର ବିସ୍ତୃତ ଓ ସ୍ୱତଃପ୍ରମାଣ । କିନ୍ତୁ ପ୍ରମାଣ ବହିର୍ଭୂତ ସବୁ କିଛି ବିଶ୍ୱାସ ଯୋଗ୍ୟ ନୁହେଁ । କଳ୍ପନାର ଯାବତୀୟ ସୃଷ୍ଟି, ସ୍ୱପ୍ନବତ୍ ସମସ୍ତ ଅବାସ୍ତବତା, ସମସ୍ତ ଭ୍ରମ, ବିଶ୍ୱାସଯୋଗ୍ୟ ନୁହେଁ । ବିଶ୍ୱାସ ଏକ ଦୃଢ଼ ଉପଲବ୍ଧିର ଭୂମି । କୌଣସି ପ୍ରମାଣ ଦେଇ ପାରିବି ନାହଁ, କିନ୍ତୁ ମୁଁ ଅନୁଭବ କରୁଛି, ଜାଣି ପାରୁଛି ଯେ ମୁଁ ଯାହା କହୁଛି ତାହା ସତ୍ୟ । ଏହା ବିଶ୍ୱାସର ସ୍ୱର । ଯେତେବେଳେ ସବୁ ପ୍ରଶ୍ନ ନିରବିତ ହୋଇଯାଏ । ସତ୍ତା କେନ୍ଦ୍ରରୁ ଏକ ଆନ୍ତରିକ ଭଲପାଇବା, ଗ୍ରହଣ କରିବା, ସ୍ୱୀକାର କରିବାର ଭାବ ଉଚ୍ଚାରିତ ହୁଏ, ସେତିକିବେଳେ ବିଶ୍ୱାସ କରାଯାଏ । ସତ୍ୟକୁ ବିଶ୍ୱାସ କରାଯାଏ, କାରଣ ତାର ସଂଜ୍ଞା ନାହିଁ ଆୟତନ ନାହିଁ : ତାକୁ କହି ହୁଏ ନାହିଁ କି ଭାବି ହୁଏ ନାହିଁ, ଏଣୁ ବିଶ୍ୱାସ କରାଯାଏ । ବିଶ୍ୱାସରେ ବିଚାର ନାହିଁ, ଆଂଶିକତା ନାହିଁ, ବିଭାଜନ ନାହିଁ, ଦ୍ୱନ୍ଦ୍ୱ ନାହିଁ । ଇତସ୍ତତଃ କରିବାର କିଛି ନାହିଁ । ବିଶ୍ୱାସ ନିର୍ବିଚାର ଏବଂ ସଂପୂର୍ଣ୍ଣ । ବିଶ୍ୱାସର ବିକଳ୍ପ ଅବିଶ୍ୱାସ ନୁହେଁ, କାରଣ ଅବିଶ୍ୱାସ ବିଚାରାଧୀନ ସଂକଳ୍ପ । ବୁଦ୍ଧିରେ ବିଚାର କଲା ପରେ, କଳନା କଲା ପରେ ଯାହା ଗ୍ରହଣୀୟ ହୁଏ ନାହିଁ ତାକୁ ହିଁ ଅବିଶ୍ୱାସ କରାଯାଏ । କିନ୍ତୁ ବିଶ୍ୱାସ ବିଚାର ସାପେକ୍ଷ ନୁହେଁ । ଏଣୁ ଇନ୍ଦ୍ରିୟ ଓ ମନ ମାଧ୍ୟମରେ ଜାଣିବା ଗୋଟିଏ ପର୍ଯ୍ୟାୟର ଅଭିଜ୍ଞତା । ବିଶ୍ୱାସ ତା'ଠାରୁ ଭିନ୍ନ ଆଉ ଏକ ପର୍ଯ୍ୟାୟର ଅଭିଜ୍ଞତା । ଏକ ବ୍ୟାପକ ଅର୍ଥରେ ବିଶ୍ୱାସର ଉପଲବ୍ଧି ହିଁ ଜ୍ଞାନ । ବାକି ବିଚାର ତଥ୍ୟର ତଥାକଥିତ ଜ୍ଞାନ ଏକ ହିସାବ ଖାତା । କେବଳ ମସ୍ତିଷ୍କ ନାମକ ଏକ କାରଖାନାର ଅର୍ଥହୀନ ସକ୍ରିୟତା । ଇନ୍ଦ୍ରିୟ ଜଗତରେ ଭ୍ରମିବାର ଏକ ସାରଣୀ ।

ଜ୍ଞାନ ଇନ୍ଦ୍ରିୟ ସକଳକୁ ଅତିକ୍ରମ କରି ବିଶ୍ୱାସ ରାଜ୍ୟରେ ପ୍ରବେଶ କରେ । ବିଶ୍ୱାସ ଇନ୍ଦ୍ରିୟ ସକଳର ଧର୍ମକୁ ସ୍ୱୀକାର କରି ମନକୁ ତଦ୍ୱାରା ଚାଳିତ କରିବାରେ ସାହାଯ୍ୟ କରେ । ଏ ଦୁଇଟି ପ୍ରକ୍ରିୟା ପରସ୍ପର ବିରୋଧୀ ନୁହନ୍ତି ବରଂ ଦେଖିଜାଣିଲେ, ସେମାନେ ପରସ୍ପରର ପରିପୂରକ ।

ନିଜ ଉପରେ ଯେ ବିଶ୍ୱାସ କରେ, ସେ ଆଉ କାହା ଉପରେ ବିଶ୍ୱାସ କରିବାର ପ୍ରୟୋଜନ ନାହିଁ । ସେ ନିଜେ ଯାହା କରେ ତାର ଫଳ ଭୋଗ କରେ । ତାହା ଅନ୍ୟଥା ହୁଏ ନାହିଁ । ସେ ଏହି ସଂସାରରେ ବଞ୍ଚିବା ଓ ବଞ୍ଚି ରହିବା ପାଇଁ ପ୍ରଥମେ ନିଜକୁ ସ୍ୱୀକାର କରେ, ନିଜର ସ୍ୱତନ୍ତ୍ରତା, ନିଜର ସାମର୍ଥ୍ୟ ଓ ସମ୍ଭାବନାକୁ ସ୍ୱୀକାର କରେ । ଏହି ଦୃଷ୍ଟିରୁ ଦେଖିଲେ ବଞ୍ଚିବା ଏକ ଅହରହ ଜାରି ରହିଥିବା ସଂଘର୍ଷ । ନିଜେ ବଞ୍ଚିବା ନ୍ୟୂନତମ ସ୍ୱାର୍ଥ । ଅନ୍ୟକୁ ବଞ୍ଚିବାକୁ ଦେବା, ଅନ୍ୟର ପ୍ରତିରୋଧ ବା ବିରୋଧକୁ ହ୍ରାସ କରିବାର ଏକ ଉପାୟ ମାତ୍ର । ପ୍ରାଣୀମାତ୍ରେ ସ୍ୱାର୍ଥପର । ସ୍ୱାର୍ଥପର ହେବା ସ୍ୱାଭାବିକ କାରଣ ସେ ନିଜକୁ ନିଜେ ବଞ୍ଚାଇ ନପାରିଲେ ଆଉ କେହି ତାର ବଞ୍ଚିବାକୁ ଗୁରୁତ୍ୱ ଦେବେ ନାହିଁ, ଯଦି ସେଥିରେ ସେମାନଙ୍କ ନିଜର ସ୍ୱାର୍ଥ ଜଡ଼ିତ ନଥାଏ । ଅସ୍ମିତା ଚେତନାର ଆଦିବିନ୍ଦୁ । ମୁଁ ଭାବ ଅର୍ଥାତ୍ ମୁଁ ଅଛି ଏହି ଅନୁଭବ ଏକ ନିର୍ବିରୋଧ ତତ୍ତ୍ୱ । ଏହା ଉପରେ ଆଧାରିତ ଜୀବନର ସଂଘର୍ଷ ।

ଏହି ଯୁକ୍ତି ଅନୁସାରେ ଯେତେବେଳେ ସେ ନିଜକୁ କୌଣସି ପରିସ୍ଥିତିର ସମକକ୍ଷ ମଣେ ନାହିଁ ସେତେବେଳେ, ସେ ନିଜ ଉପରୁ ବିଶ୍ୱାସ ହରାଇବସେ । ତେଣିକି ସେ ହୁଏତ ଓହରି ଯାଏ, କିମ୍ବା ଆଉ କାହା ବଳରେ ପରିସ୍ଥିତିର ମୁକାବିଲା କରିବାର ଉପାୟ ଚିନ୍ତା କରେ । ଅନ୍ୟ ଉପରେ ନିର୍ଭର କରିବା ଅନ୍ୟ ଉପରକୁ ଆଉଜି ଯିବା ଦୁର୍ବଳ ପ୍ରାଣୀର ନିଜ ଉପରେ ଅନାସ୍ଥା ଭାବର ଲକ୍ଷଣ, ଅନ୍ୟ ଜଣକ ଯେ କେହି ହେଉନା କାହିଁକି । ଆତ୍ମ ବିଶ୍ୱାସର ଦୃଢ଼ତା ହରାଇ ଥିବାରୁ ସେ ଅନ୍ୟର ଆଶ୍ରୟ ଲୋଡ଼ିଥାଏ ।

ଅନ୍ୟ ଉପରେ ନିର୍ଭର କରିବାର ଅର୍ଥ ଅନ୍ୟକୁ ବିଶ୍ୱାସ କରିବା । ନିଜର ପ୍ରତିରକ୍ଷା ପାଇଁ ଧରିଥିବା ତଲୱାର ଧାରେ ବିଶ୍ୱାସ ନଥିଲେ ସେ ତାହା ଉପରେ ନିର୍ଭର କରି ବିପଦ ଭିତରେ ପଶନ୍ତା ନାହିଁ । କିନ୍ତୁ ଅନ୍ୟ ଉପରେ ବିଶ୍ୱାସ ଆତ୍ମବିଶ୍ୱାସର ବିକଳ୍ପ ନୁହେଁ । ନିଜ ଉପରୁ ସଂପୂର୍ଣ୍ଣ ବିଶ୍ୱାସ ହରାଇଥିବା ବ୍ୟକ୍ତି ଏକେ ତ ବଞ୍ଚି ପାରିବ ନାହିଁ । ଯଦି ବା ବଞ୍ଚେ ଅନ୍ୟ ଉପରେ ମଧ୍ୟ ବିଶ୍ୱାସ କରିପାରେ ନାହିଁ । ନିଜ ଉପରେ ସଂପୂର୍ଣ୍ଣ ବିଶ୍ୱାସ ହରାଇବାର ଅର୍ଥ ଅସ୍ମିତାକୁ ବିସର୍ଜନ ଦେବା, ଚେତନାର ଆଦିବିନ୍ଦୁକୁ ହରାଇବା । ତେଣିକି ସେ ଜଡ଼ ମାତ୍ର ହୋଇ ଯାଏ । ପ୍ରାଣୀ ହୋଇ ରହି ପାରେନାହିଁ ।

ତେବେ ସଂପୂର୍ଣ୍ଣ ବିଶ୍ୱାସ ହରାଇଥିବା କିମ୍ବା ସଂପୂର୍ଣ୍ଣ ଆତ୍ମବିଶ୍ୱାସରେ ଅନ୍ୟକୁ ଅସ୍ୱୀକାର କରୁଥିବା ବ୍ୟକ୍ତି ବିରଳ । କାରଣ ବ୍ୟକ୍ତିର ଉପାଦାନରେ ବିଶ୍ୱାସ ଭୂମି ଅବିଭକ୍ତ ନୁହେଁ । ଆତ୍ମବିଶ୍ୱାସ ଏକ ବୃହତ୍ତର ବିଶ୍ୱାସ ସହିତ ସଂପୃକ୍ତ ଓ ତାହା ଉପରେ ନିର୍ଭରଶୀଳ। ଅନ୍ୟକୁ ଅସ୍ୱୀକାର କରି ବହୁତ୍ୱ ଭିତରେ ବଞ୍ଚିବା ସମ୍ଭବ ନୁହେଁ । ଅନ୍ୟର ଅନିସ୍ତିତ୍ୱରେ ଏକତ୍ୱ ମଧ୍ୟ ସମ୍ଭବ ନୁହେଁ । ବଞ୍ଚିବା କେବଳ ଆତ୍ମକୈନ୍ଦ୍ରିକ ନ ହୋଇ ପରକୈନ୍ଦ୍ରିକ ହୋଇଥିବା ହେତୁ ନିଜ ପରିପାର୍ଶ୍ୱକୁ ସ୍ୱୀକାର କରିବା ଅନିବାର୍ଯ୍ୟ : ସେହି କ୍ରମରେ କିଛି ବସ୍ତୁ କିଛି ବ୍ୟକ୍ତିଙ୍କୁ ସ୍ୱୀକାର କରିବା ଅନିବାର୍ଯ୍ୟ । ମାଟି ପାଣି ପବନର ଧର୍ମକୁ ସ୍ୱୀକାର କରିବାକୁ ହେବ, ଦେଶ କାଳକୁ ସ୍ୱୀକାର କରିବାକୁ ହେବ । ନିଜର ଜନୟିତା ଜନୟିତ୍ରୁକୁ ସ୍ୱୀକାର କରିବାକୁ ହେବ । ପରିପାର୍ଶ୍ୱକୁ ସ୍ୱୀକାର ନକରି ସେ ସ୍ୱାର୍ଥପର ମଧ୍ୟ ହୋଇ ପାରିବ ନାହିଁ । କାରଣ ତାହା ଏକ ଆପେକ୍ଷିକ ଆଚରଣ । ଅନ୍ୟକୁ ଅସ୍ୱୀକାର ନ କରି ନିଜକୁ ସ୍ୱୀକାର କରି ହେବ ନାହିଁ । ଅର୍ଥାତ୍ ଅନ୍ୟକୁ ପ୍ରଥମେ ସ୍ୱୀକାର ନକରି ଅସ୍ୱୀକାର

କରି ହେବ ନାହିଁ । ଏଣୁ ସ୍ୱାର୍ଥପର ହୋଇ ବଞ୍ଚିବାର ପୃଷ୍ଠଭୂମିରୂପେ ଅନ୍ୟମାନଙ୍କୁ ଏବଂ ଅନ୍ୟମାନଙ୍କୁ ନେଇ ଗଠିତ ବିବିଧ ଅନୁଷ୍ଠାନକୁ ସ୍ୱୀକାର କରିବାକୁ ପଡ଼ିବ । ସଂପୂର୍ଣ୍ଣ ଶୂନ୍ୟ ଭୂମିରେ ନିଜର ମଧ୍ୟ ସ୍ଥିତି ନାହିଁ ।

ଏ ସଂକ୍ରାନ୍ତରେ ସ୍ୱାମୀଜୀଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ବାକ୍ୟ ଉଦ୍ଧାର କରାଯାଇପାରେ । An athaist-is not one who does not believe in God, but one who does not believe in him-self । ଈଶ୍ୱରଙ୍କୁ ବିଶ୍ୱାସ କରୁନଥିବା ବ୍ୟକ୍ତି ନାସ୍ତିକ ନୁହେଁ, ଯେ ନିଜକୁ ବିଶ୍ୱାସ କରେ ନାହିଁ ସେ ହିଁ ନାସ୍ତିକ । ନାସ୍ତିକତାର ପ୍ରସଙ୍ଗ ନ ନେଇ ବିଶ୍ୱାସ ପ୍ରସଙ୍ଗ ହିଁ ନିଆଯାଉ । ନିଜ ଉପରେ ବିଶ୍ୱାସ କରି ଈଶ୍ୱରଙ୍କୁ ଅବିଶ୍ୱାସ କରିବାର ବହୁବିଧ କାରଣ ଅଛି । ପ୍ରଥମ କାରଣ ହେଲା ଯେ ଈଶ୍ୱର ପ୍ରତ୍ୟକ୍ଷ ନୁହନ୍ତି । ଏଣୁ ଅନ୍ୟକୁ ସ୍ୱୀକାର କଲାଭଳି ତାଙ୍କୁ ସ୍ୱୀକାର କରି ହେଉ ନାହିଁ । ଦ୍ୱିତୀୟରେ ଅନ୍ୟକୁ ନିଜ ସ୍ୱାର୍ଥ ପାଇଁ ଉପଯୋଗ କଲାଭଳି ଅନିର୍ଦ୍ଦେଶ୍ୟ ଈଶ୍ୱରଙ୍କୁ ଉପଯୋଗ କରି ହୁଏ ନାହିଁ । ଏଣୁ ନିଜ ପାଇ ନିଜେ ନ୍ୟୂନତମ ନିକଟତମ ପ୍ରତ୍ୟକ୍ଷ ଏବଂ ଏକମାତ୍ର ସତ୍ୟ ହୋଇଥିବାରୁ, ତାର ଅନୁପଯୋଗୀ କାହାକୁ ସେ ଗ୍ରହଣ କରିପାରେ ନାହିଁ । ଈଶ୍ୱର କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତି ବିଶେଷ ନୁହନ୍ତି, ଏଣୁ ବିଶ୍ୱାସ ଯୋଗ୍ୟ ନୁହନ୍ତି । ଈଶ୍ୱର ଏକ ଭାବନା, ଏକ ନିରାଧାର ବିଶ୍ୱାସ ।।

ଏ ସମଗ୍ର ଯୁକ୍ତିର ଅନୁସିଦ୍ଧାନ୍ତ ହେଲା ଯେ ମଣିଷ ସ୍ୱାର୍ଥପର ପ୍ରାଣୀ, ସ୍ୱାର୍ଥପର ହେବା ସ୍ୱାଭାବିକ । ୨) ସ୍ୱାର୍ଥ ବହିଃର୍ଭୂତ କିନ୍ତୁ ସ୍ୱାର୍ଥର ଅନୁକୂଳ ଆଉ କିଛି ସ୍ୱୀକାର କରାଯାଇପାରେ । ୩) ଆତ୍ମବିଶ୍ୱାସ ଓ ଈଶ୍ୱର ବିଶ୍ୱାସ ପରସ୍ପର ବିରୋଧୀ ନୁହନ୍ତି । ଈଶ୍ୱର ଅପ୍ରତ୍ୟକ୍ଷ ହେତୁ ଈଶ୍ୱର ବିଶ୍ୱାସ ନିରାଧାର ।  । ଈଶ୍ୱର ବିଶ୍ୱାସର ଅନସ୍ତିତ୍ୱ ହେତୁ ଆତ୍ମବିଶ୍ୱାସ ହିଁ ଏକମାତ୍ର ବିଶ୍ୱାସ ।

**ଏଥିପାଇଁ ତିନୋଟି ପ୍ରତିଯୁକ୍ତି ଦିଆଯାଇପାରେ :-**

୧) ସ୍ୱାର୍ଥପରତା ମୌଳିକ ଜୀବଧର୍ମରେ ଏକ ଯାନ୍ତ୍ରିକ ବ୍ୟବସ୍ଥା । ଏହାଦ୍ୱାରା ଜୀବ ନିଜର ପାଳନ ପୋଷଣ କରିବା ଅତିରିକ୍ତ ପ୍ରଜନନ ମାଧ୍ୟମରେ ତାର ପ୍ରଜାତିକୁ ଉପଜାତ କରେ ଓ ତାର ଜୀବଧର୍ମ ନିର୍ବାହ କରେ । ଜୀବନକୁ ଉପଭୋଗ କରି ସେ ତାର ଜୀବଧର୍ମ ନିର୍ବାହ କରେ ଏବଂ କ୍ଷୟିତ ହୋଇ ବିଲୟ ପ୍ରାପ୍ତ ହୁଏ ।

ସ୍ୱାର୍ଥପରତା ଓ ସ୍ୱାର୍ଥସଚେତନତା ଏକା କଥା ନୁହେଁ । ସ୍ୱାର୍ଥପରତା ଏକ ସହଜାତ ପ୍ରବୃତ୍ତି । କେବଳ ପ୍ରବୃତ୍ତି ଦ୍ୱାରା ପରିଚାଳିତ ଜୀବ ପ୍ରବୃତ୍ତି ବିଷୟରେ ମଧ୍ୟ ସଚେତନ ନୁହେଁ । ମଣିଷ ତାର ଜୀବଧର୍ମରେ ସ୍ୱାର୍ଥପର ନିଶ୍ଚୟ, କିନ୍ତୁ ସେ ସ୍ୱାର୍ଥ ସଚେତନ । ସେ ସ୍ୱାର୍ଥକୁ ଅଗ୍ରାଧିକାର ଦିଏ ସତ କିନ୍ତୁ ସ୍ୱାର୍ଥ କ'ଣ, ତାର ପରିସର କେତେ, ସେ ଜାଣିବାକୁ ଚାହେଁ, ଜାଣିବାକୁ ସମର୍ଥ । ଏଣୁ ସ୍ୱାର୍ଥପର ହେବା ତା'ପାଇଁ ସ୍ୱାଭାବିକ ହେଲେ ସୁଦ୍ଧା ଏକାନ୍ତ ଅପରିହାର୍ଯ୍ୟ ନୁହେଁ କିମ୍ବା ଅଣାୟତ୍ତ ନୁହେଁ ।

୨) ସ୍ୱାର୍ଥ ବହିର୍ଭୂତ ଅଥଚ ସ୍ୱାର୍ଥ ସହିତ ସଂପୃକ୍ତ, ସ୍ୱାର୍ଥ ସିଦ୍ଧି ପାଇଁ ଉପଯୋଗୀ ଅନ୍ୟକୁ ସ୍ୱୀକାର କରିବା କେବଳ ସମ୍ଭବ ନୁହେଁ ତାହା ଅନିବାର୍ଯ୍ୟ । ଏଣୁ ସ୍ୱାର୍ଥର ସୀମା ଲଙ୍ଘନ କରିବା ଏବଂ ତାଦ୍ୱାରା ସ୍ୱାର୍ଥର ପରିସର ବିଷୟରେ ସଚେତନ ହେବା ମଣିଷ ପକ୍ଷରେ ସମ୍ଭବ । କେବଳ ଭୋଜନ ପ୍ରଜନନ ନ୍ୟୂନତମ ଜୀବଧର୍ମ ହେଲେ ସୁଦ୍ଧା ତାହା ସ୍ୱାର୍ଥର ସୀମା ନୁହେଁ । ଶରୀରର ଉଷ୍ଣଶୀତଳ ସ୍ପର୍ଶ ଜନିତ ସୁଖ, ପ୍ରାଣର ହର୍ଷ ଉଲ୍ଲାସ ମନର ସନ୍ତୋଷ ଆଦି ବହୁବିଧ କ୍ଷେତ୍ର ସ୍ୱାର୍ଥର ଇଲାକା ଅନ୍ତର୍ଭୁକ୍ତ । ଏଣୁ ନ୍ୟୂନତମ ସ୍ୱାର୍ଥ ଅପରିହାର୍ଯ୍ୟ ହେଲେ

ସୁଦ୍ଧା ଅନତିକ୍ରମଣୀୟ ନୁହେଁ ।

୩) ଆତ୍ମବିଶ୍ୱାସ ନିଜକୁ ଓ ନିଜର ସାମର୍ଥ୍ୟକୁ ସ୍ୱୀକାର କରି ତାହା ଉପରେ ନିର୍ଭର କରିବାର ଦୃଢ଼ତା ଓ ନିଃସଂଶୟତା । ନିଜ ଉପରେ ନିର୍ଭର କରି ଶିଖିଲେ ଅନ୍ୟଉପରେ ନିର୍ଭର କରିବାର ଦୁର୍ବଳତାକୁ ଅତିକ୍ରମ କରିହୁଏ । ଏହା ଏକ ସମର୍ଥ ଯୋଦ୍ଧାର ଲକ୍ଷଣ, ଦୃଢ଼ତା, ସାହସ ଅଭିମାନର ଲକ୍ଷଣ, କିନ୍ତୁ ଏହା ପଶ୍ଚାତ୍‌ରେ ମାତ୍ରାଧିକ ଅହଂ ଓ ଅଜ୍ଞାନ ମଧ୍ୟ ରହିଥାଏ । ଫଳରେ, ଦମ୍ଭ ଦର୍ପ, ଆସ୍ପର୍ଦ୍ଧାଦି ଏହାର ଆଶ୍ରୟରେ ପ୍ରକାଶିତ ହୁଅନ୍ତି । ଏଭଳି ବ୍ୟକ୍ତି ନାସ୍ତିକ ଓ ନିରୀଶ୍ୱରବାଦୀ ହୋଇଯିବାର ସମ୍ଭାବନା ବେଶି । ଅଜ୍ଞାନ ଓ ଅହଂ ମିଶିଲେ ଆତ୍ମବିଶ୍ୱାସ ଆତ୍ମମ୍ଭରିତାରେ ପରିଣତ ହୋଇଯାଏ । ପ୍ରକୃତ ଆତ୍ମବଶ୍ୱାସ ଆତ୍ମଜ୍ଞାନ ଉପରେ ପ୍ରତିଷ୍ଠିତ । ଯେତେବେଳେ ବ୍ୟକ୍ତି ଅନୁଭବ କରେ ଯେ ସେ ଅଖଣ୍ଡୈକ ବିଶ୍ୱଚେତନାର ଅଂଶବିଶେଷ, ଅନୁଭବ କରେ 'ଜୀବ ବ୍ରହ୍ମୈବ ନାପରମ୍' ସେତେବେଳେ ଆତ୍ମବିଶ୍ୱାସ ଓ ଈଶ୍ୱର ବିଶ୍ୱାସର ଆଉ ବିଭେଦ ରହେ ନାହିଁ । ଏଣୁ ବିରୋଧ ମଧ୍ୟ ରହେ ନାହିଁ । ଅନ୍ୟ ଉପରେ ନିର୍ଭର କରିବା ଓ ଈଶ୍ୱରଙ୍କ ଉପରେ ନିର୍ଭର କରିବା ଏକା ପ୍ରକାର ଦୁର୍ବଳତା ଏଣୁ ବର୍ଜନୀୟ ବୋଲି ସେ ଆଉ ଯୁକ୍ତି କରେ ନାହିଁ । ବରଂ ଏହା ଏକ ଅଜ୍ଞତା ବୋଲି ବୁଝିଯାଏ । ନିଜକୁ ଦିବ୍ୟ ଚେତନା ରୂପେ ଏବଂ ନିଜ ସାମର୍ଥ୍ୟର ମୂଳ ସ୍ରୋତ ଦିବ୍ୟଶକ୍ତିରେ କେନ୍ଦ୍ରୀଭୂତ କରିପାରିଲେ ଆତ୍ମବିଶ୍ୱାସ ଈଶ୍ୱର ବିଶ୍ୱାସରେ ପରିଣତ ହୋଇଯାଏ । ଈଶ୍ୱର ଅପ୍ରତ୍ୟକ୍ଷ ହୋଇପାରନ୍ତି, କିନ୍ତୁ ଅସତ୍ୟ ନୁହନ୍ତି । ଇନ୍ଦ୍ରିୟ ଗୋଚର ନହେବା ଅବା ମାନସଗୋଚର ହୋଇ ରହିବା ତ' ତାଙ୍କର ଅକଳନୀୟତା । ଜ୍ଞାନ ସାହାଯ୍ୟରେ ସେ ବୁଝିଯାଏ ଯେ ମାନବର ସୀମିତ ପରିଧି ଭିତରେ ଯାହା ମିଳେ ତାହା କଦାପି ସମଗ୍ର ସ୍ଥିତି ନୁହେଁ । Limit to knowledge is not a limit to existence. ତା' ବାହାରେ ଯେଉଁ ସତ୍ୟ ଅନାବିଷ୍କୃତ ଅଜ୍ଞାତ ରହିଯାଇଛି ତାକୁ ଅପ୍ରତ୍ୟକ୍ଷ ସ୍ୱୀକାର କରିବାର ପ୍ରସାର ଓ ଗ୍ରହଣଶୀଳତା ସେ ଅର୍ଜନ କରେ ଏଣୁ ଈଶ୍ୱରଙ୍କୁ ଉପଲବ୍ଧି କରିବାର ସାମର୍ଥ୍ୟ ମଧ୍ୟ ଅର୍ଜନ କରେ । ଉପଲବ୍ଧି ଜନିତ ବିଶ୍ୱାସ ନିଷ୍କମ୍ପ ଓ ଚିରସ୍ଥାୟୀ । ତାହାହିଁ ପ୍ରକୃତ ଆତ୍ମବିଶ୍ୱାସ ।



## ୨୪-୧୧-୨୦୦୦

ଅନାହୂତ ବା ଅବାଞ୍ଛିତ କୌଣସି ବ୍ୟକ୍ତି ବା ବସ୍ତୁ ସମ୍ମୁଖରେ ଉପସ୍ଥିତ ହୋଇଗଲେ ତାକୁ ସ୍ୱାଗତ ନକରି ପ୍ରତ୍ୟାଖ୍ୟାନ କରାଯାଏ । ନିଜ ମାର୍ଗରୁ ବଳୟରୁ ଏବଂ ଭୂମିରୁ ତାକୁ ଅନ୍ତର କରିବାର କ୍ରିୟା ହିଁ ପ୍ରତ୍ୟାଖ୍ୟାନ । ଉପେକ୍ଷା କରିବା, ସ୍ୱୀକାର ନକରିବା କିମ୍ବା ଅସମ୍ମତି ପ୍ରକାଶ କରିବା ପ୍ରତ୍ୟାଖ୍ୟାନ ନୁହେଁ । ଯଦିବା ଏ ସମସ୍ତ କ୍ରିୟା ତାହାର ଅନ୍ତର୍ଭୁକ୍ତ । ଗୋଟାଏ ପ୍ରକାର ନିର୍ଦ୍ଦିଷ୍ଟ ପରିସ୍ଥିତିରେ ପ୍ରତ୍ୟାଖ୍ୟାନ କରାଯାଏ । ଯେତେବେଳେ ସଂକଳ୍ପ ନିଆ ସରିଥାଏ, ମାର୍ଗ ଓ ଲକ୍ଷ୍ୟ ସ୍ଥିର ହୋଇ ସାରିଥାଏ, ସେତେବେଳେ ସେଥିରୁ ବିଚ୍ୟୁତ କରିବା ପାଇଁ ଯାହା ଆସି ଉପସ୍ଥିତ ହୋଇଯାଏ ତାକୁ ପ୍ରତ୍ୟାଖ୍ୟାନ କରାଯାଏ, ସେଥିରେ ପ୍ରଲୋଭନ ଥାଏ, ଭୟ ଥାଏ, ନିରୁତ୍ସାହ ଥାଏ । ତାହା ସାଧାରଣତଃ ଶତ୍ରୁ ଶିବିରରୁ ହିଁ ଆସିଥାଏ । ବିଶ୍ୱାମିତ୍ରଙ୍କ ତପସ୍ୟା ଭଙ୍ଗ କରିବାକୁ ମେନକାର ଆବିର୍ଭାବ ପରି, ଧ୍ରୁବଙ୍କ ନିଶ୍ଚଳତା ଭଙ୍ଗ କରିବାକୁ ଭୟଙ୍କର ରୂପ ଧାରଣ କରିଥିବା ମାରମାନଙ୍କ

ପରି ସେମାନେ ଆସନ୍ତି । ସଂକଳ୍ପ କରି ଲକ୍ଷ୍ୟ ମାର୍ଗରେ ପାଦ ଦେଇଥିବା ବ୍ୟକ୍ତିର କୌଣସି ନା କୌଣସି ଦୁର୍ବଳ ବିନ୍ଦୁର ଆଶ୍ରୟ ନେଇ ସେମାନେ ଆବିର୍ଭୂତ ହୁଅନ୍ତି । ପ୍ରତ୍ୟାଖ୍ୟାନ କରିବା ସହଜ ନୁହେଁ । ଯାହା ଏପରି ଆସି ସମ୍ମୁଖରେ ଠିଆ ହୋଇଯାଏ ତାହା ଏକ ଶକ୍ତିର ପ୍ରତୀକ । ଏହି ଶକ୍ତି ବ୍ୟକ୍ତିର ସଂକଳ୍ପକୁ ସାଧନାକୁ, ମାର୍ଗ ଓ ଲକ୍ଷ୍ୟକୁ ବିରୋଧ କରେ । ଏଣୁ ତାକୁ ଦୁର୍ବଳ ଅସ୍ଥିର, ପ୍ରଲୁବ୍ଧ କରି ଖସାଇ ଦେବା ହିଁ ତାର ଉଦ୍ଦେଶ୍ୟ । ଧରାଯାଉ ସାଧାରଣ ଜୀବନର ଜଣେ ସଚ୍ଚୋଟ ବ୍ୟକ୍ତି ନ୍ୟାୟ ମାର୍ଗରେ ଯିବାକୁ ଚାହେଁ । ସେ କିନ୍ତୁ ଆର୍ଥିକ ଅଭାବ ଗ୍ରସ୍ତ । ତା'ପାଖରେ ପ୍ରଲୋଭନ ପହଞ୍ଚିଯାଏ । ହାତରେ ଟଙ୍କା ନେଇ ସେ ତାକୁ କହେ । କ'ଣ ମିଳିବ ନ୍ୟାୟରୁ ବା ସତ୍ୟରୁ ? ସେଥିରୁ ଓହରି ଆସିଲେ ଏ ଧନ ତୁମର । ଧନ ମାଧ୍ୟମରେ ସୁଖ ସମ୍ଭୋଗ ତୁମର । ସେ ହୁଏ ତ' ଏହାକୁ ଉପେକ୍ଷା କରିଗଲା । ବିପକ୍ଷ କିନ୍ତୁ ଅନାୟାସରେ ଲକ୍ଷେ ଟଙ୍କା ନେଇ ପୁଣି ପହଞ୍ଚିଗଲା । କାରଣ, ସେ ଚାହେଁ, ଯେ କୌଣସି ମୂଲ୍ୟଦେଇ ଏ ସଚ୍ଚୋଟ ବ୍ୟକ୍ତିଟିକୁ କିଣି ନେବାକୁ, ତାକୁ ନ୍ୟାୟ ମାର୍ଗରୁ ବିଚ୍ୟୁତ କରିବାକୁ । କାରଣ ସେ ନ୍ୟାୟ ଓ ସତ୍ୟରଂଚିର ବିରୋଧୀ, ଆଲୋକକୁ ଅଂଧାର ବିରୋଧ କଲା ପରି । ସେ ଆଲୋକକୁ କସ୍ମିନ୍ କାଳେ ପରାସ୍ତ କରିପାରେ ନାହିଁ, କିନ୍ତୁ ଆଲୋକ ଅଭିମୁଖୀ ଯାତ୍ରୀକୁ ଅଂଧାର ଭିତରକୁ ଟାଣି ନେଇପାରେ । ଲକ୍ଷେ ଟଙ୍କାକୁ ଅଭାବଗ୍ରସ୍ତ ଲୋକଟି ଉପେକ୍ଷା କରିପାରେ ନାହିଁ । ତାର ଦୁର୍ବଳ ବିନ୍ଦୁରେ ସେ ବିଚଳିତ ବୋଧକରେ । ତଥାପି ଦୃଢ଼ତାର ସହିତ ତାକୁ ଅସ୍ୱୀକାର କରେ । ଦଶଲକ୍ଷ ଆସିଲେ ସେ ବିଭାଜିତ ହୋଇଯାଏ । ଶତ୍ରୁପକ୍ଷ ତା ଭିତରେ ପଶିଯାଏ । ସେ ଦୋଦୁଲ୍ୟମାନ ହୁଏ ଏବଂ ପରିଶେଷରେ ହୁଏତ' ହାରିଯାଏ । ମାର୍ଗରୁ ବିଚ୍ୟୁତ ହୋଇଯାଏ । ରାଜା ବିଶ୍ୱାମିତ୍ରଙ୍କ କାମନା କେନ୍ଦ୍ର ସୁନ୍ଦରୀ କାମିନୀ ମେନକାକୁ ଅସ୍ୱୀକାର କରି ପାରନ୍ତି ନାହିଁ । ଫଳରେ ତାଙ୍କର ତପୋଭଙ୍ଗ ହୁଏ । ପ୍ରତ୍ୟାଖ୍ୟାନର ଅର୍ଥ, କାମିନୀ ସହିତ କାମକେନ୍ଦ୍ରକୁ ମଧ୍ୟ ବର୍ଜନ କରିବା । ଭୟସଂଚାର କରୁଥିବା ଆକୃତିକୁ ଭୟକେନ୍ଦ୍ର ସହିତ ବର୍ଜନ କରିବା । ପ୍ରତ୍ୟାଖ୍ୟାନ ଆତ୍ମଶୋଧନର କ୍ରିୟା । ଶତ୍ରୁ ଅନୁପ୍ରବେଶ କରିବାର ସମସ୍ତ ମାର୍ଗକୁ ଯେ ଅବରୁଦ୍ଧ କରିଛି ସମସ୍ତ ଚିତ୍ତବୃତ୍ତିକୁ ନିରୋଧ କରି ପାରିଛି, ସେହି ଯୋଗୀ ପୁରୁଷ ପାଇଁ ପ୍ରତ୍ୟାଖ୍ୟାନ ସମ୍ଭବ, ସହଜ ଓ ସ୍ୱାଭାବିକ । କିନ୍ତୁ ଏହା ନିଶ୍ଚିତ ଯେ ବାଧକ ସମ୍ମୁଖରେ ଆସି ଉପସ୍ଥିତ ନ ହେବା ଯାଏଁ ପ୍ରତ୍ୟାଖ୍ୟାନର ପ୍ରଶ୍ନ ଉଠେ ନାହିଁ । ଅନୁପସ୍ଥିତକୁ ପ୍ରତ୍ୟାଖ୍ୟାନ କରବାର ଅର୍ଥ କ'ଣ ? ଅନାଗତ ବିରୋଧକୁ ବାରଣ କରିବା ପାଇଁ ଦୁର୍ଗର ଦ୍ୱାର ବନ୍ଦ କରି ଦେବା ସାବଧାନତା, ହୋଇପାରେ କିନ୍ତୁ ପ୍ରତ୍ୟାଖ୍ୟାନ ନୁହେଁ । ବାଧକ ଶକ୍ତି ସବୁଠାରେ ସବୁକାଳେ ଥାଆନ୍ତି । ନିଜେ ଗତିଶୀଳ ନ ହେବାଯାଏଁ ସେମାନଙ୍କର ଉପସ୍ଥିତି ଓ ଚାପ ଅନୁଭବ କରି ହୁଏ ନାହିଁ । ଉପରକୁ ଉଠିଲା ବେଳେ ମାଧ୍ୟାକର୍ଷଣକୁ ଅନୁଭବ କଲାପରି, ବିରୋଧୀ ଶକ୍ତିକୁ ସକ୍ରିୟ କରାଯାଏ । ପ୍ରତ୍ୟେକ କ୍ରିୟାର ସମପରିମାଣର ବିପରୀତ ପ୍ରତିକ୍ରିୟା ଥାଏ । Every action has an equal and opposite reaction. ଏଣୁ ସାଧନା କ୍ଷେତ୍ରରେ ମଧ୍ୟ ବ୍ୟବସ୍ଥା ଏହିପରି ଯେ ଆଗକୁ ଗୁଞ୍ଚିବା ଆରମ୍ଭ କରବା ମାତ୍ରେ, ବିରୋଧ ସକ୍ରିୟ ହୋଇଯାଏ । ଲୋଭ ଭୟାଦି ଆକର୍ଷଣ ବିକର୍ଷଣ ବଳରେ ସେ ପଥରୋଧ କରେ । ସ୍ୱୀକାର ନକରିବା କିମ୍ବା ଉପେକ୍ଷା କରିବା ଯଥେଷ୍ଟ ନୁହେଁ । ଦୃଢ଼ତାର ସହିତ ତାକୁ କୌଣସି ପ୍ରଶ୍ରୟ ନଦେଇ ଦେହ ମନ ପ୍ରାଣ ଭୂମିରୁ ସର୍ବତୋ ଭାବେ ଅଗ୍ରାହ୍ୟ କରିବା ହେଉଛି ପ୍ରତ୍ୟାଖ୍ୟାନ । ପ୍ରତ୍ୟାଖ୍ୟାନ କଲେ ଦୃଢ଼ତା ଦୃଢ଼ତର ହୁଏ, ପ୍ରମାଣିତ ହୁଏ । ପାଣି କାଟି ଆଗକୁ ପହଁରିଲା ପରି ବିରୋଧକୁ ପ୍ରତ୍ୟାଖ୍ୟାନ କରିବା ଦ୍ୱାରା ଅଗ୍ରଗତି ତ୍ୱରାନ୍ୱିତ ହୁଏ । ବିରୋଧ ସମ୍ମୁଖରେ ଉପସ୍ଥିତ ହେଉଥାଏ ତ ପ୍ରତ୍ୟାଖ୍ୟାତ

ହେଉଥାଏ । ଏହା କ୍ରମାଗତ ଓ ଅନବରତ ଚାଲିଥାଏ । ଏଣୁ ଅହରହ ପ୍ରତ୍ୟାଖ୍ୟାନ କରୁଥିବା ସାଧକ ପାଇଁ ଏହା ସାଧନାର ଏକ ଅପରିହାର୍ଯ୍ୟ ଅଙ୍ଗ ।

ଯେପରି ଉପସ୍ଥିତ ବିରୋଧକୁ ପ୍ରତ୍ୟାଖ୍ୟାନ କରାଯାଏ । ସେପରି ଅନୁପସ୍ଥିତ ଓ ଦୂରସ୍ଥ ଲକ୍ଷ୍ୟ ପାଇଁ ହିଁ ଆସ୍ପୃହା କରାଯାଏ । ଆସ୍ପୃହା ଅହରହ ଆବାହନ ଓ ଉତ୍ତରଣର କ୍ରିୟା । ଲକ୍ଷ୍ୟ ସାଧକକୁ ଆବାହନ କରେ ସାଧକ ଲକ୍ଷ୍ୟକୁ ଆବାହନ କରେ ଫଳରେ ଲକ୍ଷ୍ୟ ଅବତରଣ କରେ ଓ ସାଧକ ଉତ୍ତରଣ କରେ । ଏହା ଆପେକ୍ଷିକ । ଦୂରତା ହ୍ରାସ ପାଏ । ଏବଂ ପରିଶେଷରେ ଯୋଗସ୍ଥିତିରେ ସାଧକ ସାଧ୍ୟ ସହିତ ସଂଯୁକ୍ତ ହୁଏ । ତାହା ସିଦ୍ଧି । ଏଇ ଚୂଡ଼ାନ୍ତ ମୁହୂର୍ତ୍ତ ପର୍ଯ୍ୟନ୍ତ ଲକ୍ଷ୍ୟ ଦୂରସ୍ଥ ଓ ଅନୁପସ୍ଥିତ ଥାଏ । ତା ପୂର୍ବରୁ ବ୍ୟବଧାନ ହ୍ରାସ ପାଉଥାଏ ମାତ୍ର । ସାଧାରଣ ଯୁକ୍ତିରେ ବିଷୟଟି ଏହିଭଳି ଜଣାପଡ଼େ ।

କିନ୍ତୁ ସତେ କ'ଣ ଯାହା ପାଇଁ ଆସ୍ପୃହା କରାଯାଏ ସେ ଅନୁପସ୍ଥିତ ଓ ଦୂରସ୍ଥ । ଏହା ଯଦି କୌଣସି ଭୌଗଳିକ ବିନ୍ଦୁ ହୋଇଥାନ୍ତା ତା'ହେଲେ ସେପରି କହିବା ହୁଏତ ଯୁକ୍ତି ସଂଗତ ହୁଅନ୍ତା । ଧରାଯାଉ ଗୌରୀଶଙ୍କର ପର୍ବତର ଶିଖର । ସବୁ ଛାଡ଼ି ଯେତେବେଳେ ତିରିଶ ହଜାର ଫୁଟ ଅତିକ୍ରମ କରି ଏ ଶୃଙ୍ଗ ଆରୋହଣ କରିବାକୁ ମନରେ ଉଚ୍ଚାଟ ସୃଷ୍ଟି ହୁଏ । ସେତେବେଳେ ବ୍ୟକ୍ତିଟିକୁ ସେ ପର୍ବତ ଆଚ୍ଛନ୍ନ କରି ପକାଏ । ତା ଭିତରେ ପ୍ରବେଶ କରି ତାକୁ ଅଥୟ କରି ପକାଏ । ନିଜ ଭିତରେ ପ୍ରଥମେ ସେ ପର୍ବତଟିକୁ ଧାରଣ ନ କଲେ ତାକୁ ପାଇବାକୁ ଏତେ ତୀବ୍ର ଆକୁଳତା ଆସିବ ନାହିଁ । ହୋଇପାରେ, ଏ କ୍ଷେତ୍ରରେ ତାହା ଏକ ବିଜିଗୀଷା ହୋଇପାରେ ଏଥିରେ ଏକ ପ୍ରଚ୍ଛନ୍ନ ମହତ୍ତ୍ୱାକାଙ୍କ୍ଷା ବା ଉଚ୍ଚାଭିଳାଷ ଲୁଚି ରହିଛି । କିନ୍ତୁ ଏହା ସତ୍ୟ ଯେ ଯାହା ଭୌଗଳିକ ଦୃଷ୍ଟିରୁ ଅନୁପସ୍ଥିତ ଓ ଦୂରସ୍ଥ, ତାହା ପ୍ରକୃତରେ ଅତି ମାତ୍ରାରେ ଜାଗ୍ରତ ସ୍ୱପ୍ନ ସୁଷୁପ୍ତିରେ ଉପସ୍ଥିତ ଓ ନିକଟତମ ବସ୍ତୁ ।

ଯଦି କେହି ବାକି ସକଳ ବସ୍ତୁକୁ ତୁଚ୍ଛ ଜ୍ଞାନ କରି ଈଶ୍ୱରଙ୍କୁ ହିଁ ପାଇବାକୁ ଆକୁଳ ହୋଇଉଠେ, ପରିସ୍ଥିତି ଅନ୍ୟପ୍ରକାର ହୋଇଯାଏ । ଈଶ୍ୱର କୌଣସି ଭୌଗଳିକ ସୀମାରେଖାରେ ଚିହ୍ନିତ ନୁହନ୍ତି । ଏଣୁ ଦୂରତା ମାପି ହେବ ନାହିଁ । ତାଙ୍କର ଆକୃତି ନାହିଁ । ଅବୟବ ନାହିଁ ଏଣୁ ଚାକ୍ଷୁଷ ବା କଳ୍ପିତ ରୂପରେ ସେ ଦେଖା ଦେବେ ନାହିଁ । ବରଂ ସମସ୍ୟା ଆହୁରି ଜଟିଳ ହୋଇଯାଏ, ଯେତେବେଳେ କୁହାଯାଏ ଯେ ସେ ଉଭୟ ଦୂରତମ ଓ ନିକଟତମ, ସେ କ୍ଷୀପ୍ରତମ ଓ ସ୍ଥିରତମ । ସେ ଏଠି, ସେଠି ବା କେଉଁଠି ନାହାନ୍ତି, ଅଥଚ ସର୍ବତ୍ର ବିଦ୍ୟମାନ । ସେ ଅଚ୍ଛେଦ୍ୟ, ଅବିଭାଜ୍ୟ ପୂର୍ଣ୍ଣତା । ସେ ଭିତରେ ବାହାରେ ଅବିଚଳିତ ଆକାଶ ପରି ବିଦ୍ୟମାନ । ଏ ସମସ୍ତ ଶାସ୍ତ୍ର ବାକ୍ୟ । ଏହା ଶୁଣି ଜଣେ ସ୍ତବ୍ଧ, ବିମୂଢ଼ ହୋଇ ପାରେ, କିନ୍ତୁ ଏହାକୁ ଲାଭ କରିବାକୁ ସେ ଆକୃଷ୍ଟ ହେବ କି ? ହେବ ! କାରଣ ତା ଭିତରେ ଯାହା ଜାଗ୍ରତ ହୁଏ, ତାହା ଇଚ୍ଛା ନୁହେଁ, କାମନା-ବାସନା ନୁହେଁ, ଅଭିଳାଷ ନୁହେଁ ବିଜିଗୀଷା ନୁହେଁ । ତାହା ସୀମାତିକ୍ରମଣର ଅଭିପ୍ସା । ଯେଉଁ ସଂକୀର୍ଣ୍ଣ ବନ୍ଧନୀ ତାକୁ ବ୍ୟକ୍ତି ଚେତନାରେ ଆବଦ୍ଧ କରି ରଖିଛି ତାକୁ ଅତିକ୍ରମ କରିବାର ଅଭିପ୍ସା । ସେ ବନ୍ଧନୀଟି ପ୍ରକୃତରେ ଏକ ଧୂମରେଖା, ଚାହିଁଦେଲେ ହିଁ ଲିଭିଯିବ । କିନ୍ତୁ ସେ ଚାହାଣିରେ ସୌରଦୀପ୍ତି ଥିଲେ ହେଲା । ଚାହିଁ ଜାଣିଲେ ହେଲା । ଭିତରେ ଥାଇ ଯେ ଉଚ୍ଚାଟିତ କରେ, ବାହାରେ ଥାଇ ସେ ଆହ୍ୱାନ କରେ । ଏଭିତର ବାହାରର ବ୍ୟବଧାନ ଲୋପ ପାଇଯିବାର ପ୍ରକ୍ରିୟା ହିଁ ଆସ୍ପୃହା । ଏଣୁ ଏ କ୍ଷେତ୍ରରେ ଲକ୍ଷ୍ୟ ଚିରକାଳ ଉପସ୍ଥିତ ଓ ନିକଟତମ ।

ଆସ୍ପୃହା ଓ ପ୍ରତ୍ୟାଖ୍ୟାନ ଯୁଗପତ ଚାଲିଥାଏ, ଉଭୟ ଏକ ସଂଗ୍ରାମ । ସଂଗ୍ରାମ ପାଇଁ ଶକ୍ତି ଓ ସାହସ, ସାମର୍ଥ୍ୟ ଓ ବିଶ୍ୱାସର ପ୍ରୟୋଜନ । ବ୍ୟକ୍ତି ସୀମା ଭିତରେ ଶକ୍ତି ସାମର୍ଥ୍ୟ ସାହାସ ବିଶ୍ୱାସ ସବୁ ସୀମିତ । ଏଣୁ ଅସୀମ ପାଖରେ ସମର୍ପିତ ହୋଇପାରିଲେ 'Hitch my wagan to the star' ସେଠାରୁ ଅପରିମେୟ ଶକ୍ତି, ଅପରିସୀମ ସାମର୍ଥ୍ୟ ଓ ଅଗାଧ ବିଶ୍ୱାସ ସଂଚରି ଆସିବ ବ୍ରହ୍ମାଣ୍ଡରୁ ପିଣ୍ଡ ପର୍ଯ୍ୟନ୍ତ । ସେତେବେଳେ ସେ ଏକାକୀ ନୁହେଁ । ଅସହାୟ ନୁହେଁ, ଦୁର୍ବଳ ନୁହେଁ । ସେ ଏକୁଟିଆ ତସ୍କରମାନଙ୍କ ସହିତ ଲଢୁଥିବା ବିପନ୍ନ ପଥିକ ନୁହେଁ । ସେ ସମ୍ରାଟଙ୍କ ବିଶାଳ ସେନାବାହିନୀର ଅନ୍ୟତମ ଯୋଦ୍ଧା, ତା'ର ଭୟ ନାହିଁ ଦ୍ୱିଧା ନାହିଁ, ଗ୍ଲାନି ନାହିଁ, ପରାଜୟ ମଧ୍ୟ ନାହିଁ । ସେ ଏ ସଂଗ୍ରାମରେ ପ୍ରାଣପାତ କରିପାରେ କିନ୍ତୁ ପରାଜିତ ହେବନାହିଁ । କାରଣ ସେ ଯାହାର ଆଶ୍ରିତ, ଯାହା ପାଖରେ ସମର୍ପିତ ଯେ ସମସ୍ତ ଶକ୍ତିର ମୂଳାଧାର ତାର ପରାଜୟ ନାହିଁ, ସତ୍ୟର ପରାଜୟ ନାହିଁ ।



## ୮-୩-୨୦୦୦

ନିର୍ମାଲ୍ୟ କୌଣସି ବସ୍ତୁ ନୁହେଁ । ତାହା ଏକ ସିଦ୍ଧି । ନିର୍ମଳର ଭାବରୂପ ହିଁ ନିର୍ମାଲ୍ୟ (ନିର୍ମଳ+ଯ=ନିର୍ମାଲ୍ୟ) ନିର୍ମଳ ହେବା ଅର୍ଥ ମଳ ରହିତ ଦୋଷ ରହିତ, ଦୂଷଣରହିତ ହେବା । ଅର୍ଥାତ୍ କାୟ ମନୋବାକ୍ୟରେ ଶୁଦ୍ଧ ହେବା, ଭିତରେ ବାହାରେ କଳୁଷ-ବିବର୍ଜିତ ହେବା । କୌଣସି ଦୋଷ ବା କଳୁଷକୁ ବର୍ଜନ କରିବା ପୂର୍ବରୁ ସେ ବିଷୟରେ ସଚେତନ ହେବା ପ୍ରୟୋଜନ ସଚେତନ ହେବା ପୂର୍ବରୁ, ତାକୁ ଚିହ୍ନଟ କରିବା ପ୍ରୟୋଜନ । ସେଥିପାଇଁ ଅସାମାନ୍ୟ ଦୃଷ୍ଟିର ଆବଶ୍ୟକତା ରହିଛି । ହାତରେ ରଂଗ ଲାଗିଥିଲେ ତାହା ସାମାନ୍ୟ ଦୃଷ୍ଟିରେ ଦିଶିବ ଏବଂ ତାକୁ ନିର୍ମଳ କରିବାପାଇଁ ପ୍ରୟାସ କରାଯାଇ ପାରିବ । କିନ୍ତୁ ଦୃଷ୍ଟିରେ ରଂଗ ଲାଗିଥିଲେ ତାକୁ ଦେଖିବ କିଏ ? ଦୃଷ୍ଟିରେ ରଂଗ ଲାଗିବା ଅର୍ଥ ବିଚାରରେ ରଂଗ ଲାଗିବା । ମନ ଯଦି ନିର୍ମଳ ନୁହେଁ, ବିଚାର ନିର୍ମଳ ହେବ ନାହିଁ । ଏଣୁ ଦୃଷ୍ଟି ମଧ୍ୟ ନିର୍ମଳ ହେବ ନାହିଁ । ଯଦି ବିଚାରକ ଅଭିଯୁକ୍ତ ଆସାମୀର ବାପ ହୋଇଥାଏ, ତାକୁ ଦୋଷୀର ଦୋଷ କଦାପି ଦେଖାଯିବ ନାହିଁ । ପିତୃସୁଲଭ ବିଚାର ଦୃଷ୍ଟି ଉପରେ ଆବରଣ ଢାଙ୍କି ଦେବ । ଏତେ ଗଭୀର କ୍ଷେତ୍ରରେ ଯଦି ମନ ଦୂଷିତ ହୁଏ । ପ୍ରାଣ ଦୂଷିତ ହୁଏ । ତାକୁ ଚିହ୍ନଟ କରିବ କିଏ ଓ ସେ ଆଭ୍ୟନ୍ତର କ୍ଷେତ୍ରକୁ ନିର୍ମଳ କରିବ କିପରି ? ଅଶୁଦ୍ଧ ବିଚାରକୁ ଶୁଦ୍ଧ ବିଚାରରେ ହିଁ ନିର୍ମଳ କରାଯାଇପାରେ ବିଚାର ବୁଦ୍ଧିରେ ଦୋଷକୁ ଚିହ୍ନିତ କରି ବିବେକ ବୁଦ୍ଧିରେ ତାକୁ ପରାସ୍ତ କରିବାକୁ ହୁଏ । ସୁନାରେ ଖାଦ ପରି ଦୋଷ ଦୂଷିତ କ୍ଷେତ୍ରର ଶୁଦ୍ଧତା ନଷ୍ଟକରେ । ସଂହତିକୁ ଭଙ୍ଗ କରେ ଫଳରେ ତାର ତେଜ ହରଣ କରେ ତାକୁ ଦୁର୍ବଳ ନିଷ୍ପେଷ କରିଦିଏ । ଧରାଯାଉ ଆବର୍ଜନା । ତାକୁ ସାଧାରଣତଃ ସ୍ଥାନାନ୍ତରିତ କରି ଆପେକ୍ଷିକ ନିର୍ମଳତା ଲାଭ କରାଯାଏ । ଘର ଭିତର ଝାଡୁ କଲାପରେ ସବୁ ଅଳିଆ ବାହାରେ ପକାଇ ଦେଲା ପରି । ହୋଇପାରେ ତାହା ପାଚେରୀ ଆର ପାଖ ପଡ଼ୋଶୀର ଦୁଆର ମୁହଁରେ ପଡୁଛି । ତାର ସଂହତି ବ୍ୟାହତ କରୁଛି, ବା ରାଜରାସ୍ତାରେ ପଡ଼ି ଅସଂଖ୍ୟ ପଥଚାରୀଙ୍କର ବିରକ୍ତି, କ୍ରୋଧ, ଅସନ୍ତୋଷ ଅର୍ଥାତ୍ ମାନସିକ ଅସଂହତିର କାରଣ ହେଉଛି । କିନ୍ତୁ ଘର ଭିତରେ ସୀମାବଦ୍ଧ ବ୍ୟକ୍ତି ଏ ପ୍ରକାର ବାହ୍ୟ ପ୍ରଦୂଷଣ

ବିଷୟରେ ସଚେତନ ନ ଥାଏ । ଏଣୁ ନିଜର ଭୂମିକା, ଦାୟିତ୍ୱ ଓ ଦୋଷ ବିଷୟରେ ମଧ୍ୟ ସଚେତନ ନ ଥାଏ । ତାର କାରଣ ହେଲା ତାର ଅପ୍ରସାରିତ ଚେତନା । ମୁଁ ଏବଂ ମୋର ପ୍ରତ୍ୟୟ ଜନିତ ଏକ ପ୍ରକାର ଅଜ୍ଞାନ । ସେ ଭାବେ ଯେ ଘରଟି ତାର, କିନ୍ତୁ ରାଜରାସ୍ତା ତାର ନୁହେଁ । ଏଣୁ ଅପରକୁ ଅସୁବିଧାରେ ପକାଇ ନିଜର ପୁଷ୍ଟି ସାଧନ କରିବାର ଆଦିମ ଜାନ୍ତବ ପ୍ରବୃତ୍ତିରେ ସେ କୌଣସି ଦୋଷ ଥିବାର ଲକ୍ଷ୍ୟ କରି ପାରେ ନହିଁ । ମୁଁ ଏବଂ ମୋର ମିଶି ଏକ ଘନିଷ୍ଠ ବଳୟ ସୃଷ୍ଟି କରନ୍ତି । ତାକୁ ହିଁ ସନ୍ତୁଷ୍ଟ ରଖିବା ତାର ଏକମାତ୍ର ଧେୟ ଓ କାମ୍ୟ ହୋଇଯାଏ । ବାସ୍ତବରେ କିନ୍ତୁ 'ମୋର' ବୋଲି ଯାହାକୁ କହୁଥାଏ ତାହା କେବଳ ମୁଁର ହିଁ ପ୍ରସାରିତ କାୟା । ମୁଁ ଲୁଚି ରହିଥାଏ ନିର୍ଭୃତରେ । କହୁଥାଏ, ମୋର ମନ, ମୋର ପ୍ରାଣ, ମୋର କାୟା ମୋର ଅବୟବ, ସେହିପରି ମୋର ଭାଇ ବନ୍ଧୁ, କୁଟୁମ୍ବ, ପତ୍ନୀ ପୁତ୍ର । ସେହିପରି ମୋର ନାମ ଯଶ, ଖ୍ୟାତି ପ୍ରତିପତ୍ତି, ମୋର ଲାଭ କ୍ଷତି, ମୋର ସୁଖ ଦୁଃଖ । ଏବଂ ଏହିପରି ଗେଣ୍ଡା ଖୋଳ ପରି ତାର ନିର୍ଦ୍ଦିଷ୍ଟ ପୃଥିବୀ ତା'ଚରିପଟେ ଗଠିତ ହୋଇଯାଏ । ଏହାର ବହିର୍ଭୂତ ସବୁ ମତ୍‌ଭିନ୍ନ ଅପରର ରାଜ୍ୟ । ମୋର ସେଥିରେ କିଛି ନାହିଁ । ଏହା ଏକ ସାର୍ବଜନୀନ ବିଚାର, ସାର୍ବଜନୀନ ବାସ୍ତବତା । ଏଥିରେ ବକ୍ରତା ବା ତ୍ରୁଟି କେଉଁଠି ?

ବ୍ୟକ୍ତିର ଏ ପୃଥିବୀରେ ଘନିଷ୍ଠତମ ବେଢ଼ା ହେଉଛି ତାର ଶରୀର । ଏଠି ମଧ୍ୟ ତାରି ପର ଆପଣା ଭେଦ କାର୍ଯ୍ୟ କରେ । ସେ ନିଜର ବୋଲି ସମଗ୍ର ଶରୀରକୁ ଗ୍ରହଣ କରେ ନାହିଁ, ମୁହଁଟିକୁ ଯେତେ ଯତ୍ନ କରେ ପାଦ ତଳିପାକୁ ସେତେ କରେ ନାହିଁ । ଜିହ୍ୱାକୁ ସନ୍ତୁଷ୍ଟ କରିବାକୁ ସେ ଉଦରର ପ୍ରତିବାଦକୁ କର୍ଣ୍ଣପାତ କରେ ନାହିଁ । ଏଣୁ ନିଜ ଶରୀରରେ କାନ ଅପେକ୍ଷା ଆଖିକୁ, ବାଁ ଅପେକ୍ଷା ଡ଼ାହାଣକୁ, ପିଠି ଅପେକ୍ଷା ପେଟକୁ ଅଧିକ ଆପଣାର ବୋଲି ଜ୍ଞାନ କରେ । ପ୍ରାଣର ବାସନାକୁ ତୃପ୍ତ କରିବାକୁ ସେ ଶରୀରକୁ ଅତ୍ୟାଚାର କରିପାରେ । ମନର ଅଭିଳାଷ ପାଇଁ ଶରୀର ଓ ପ୍ରାଣକୁ ଉପେକ୍ଷା କରିପାରେ । ଲୋଭ ପାଇଁ, ସମ୍ଭୋଗ ପାଇଁ ସେ ବିବେକକୁ ବିସର୍ଜନ କରିପାରେ । ଏଣୁ ପର ଆପଣା ଭେଦରେ ସେ ଯେଉଁ ବ୍ୟୂହଟି ରଚନା କରିଛି ତାର ଉପାଦାନରେ ହିଁ ଦୋଷ ରହିଯାଇଛି । ସେ ନିଜଭିତରେ ସଂହତି ସୃଷ୍ଟି କରି ପାରେନାହିଁ । କାରଣ ସଂହତି ଭଂଗ କରୁଥିବା ଏ ପର ଆପଣା ଭେଦ ଜନିତ ଦୋଷ ରହିଯାଇଛି ।

ଏଣୁ ସେ ତାର ପରିବେଶକୁ ଅପର ଜ୍ଞାନରେ ଦୂଷିତ କରେ, ଅଶୁଦ୍ଧ ଚିନ୍ତାରେ ଅନ୍ୟର ମାନସକୁ ସଂକ୍ରମିତ କରେ । ଅଶୁଦ୍ଧ ଉଚ୍ଚାରଣରେ ଅପରକୁ ଆଘାତ କରେ । ଏହାର କ୍ରମବର୍ଦ୍ଧିତ ରୂପ ହେଉଛି ଭୟାବହ ବିଶ୍ୱଯୁଦ୍ଧ, ଆଣବିକ ବିସ୍ଫୋରଣ ଏବଂ ଆଣବିକ ଆବର୍ଜନା ଯାହା ପ୍ରାଣ ଜଗତକୁ ରୁଗ୍ଣ ଦୂଷିତ ଓ କ୍ଷୟିତ କରେ । ଏ ସମସ୍ତ କ୍ଳେଶ ମୂଳରେ ସେଇ ଗୋଟିଏ ମାତ୍ର ଅସାମର୍ଥ୍ୟ ଓ ଅଜ୍ଞାନ – ଅପରକୁ ଦ୍ୱେଷ କରିବା, ଶ୍ରଦ୍ଧା କରି ନପାରିବା, ତାର ହିତସାଧନ କରି ନପାରିବା ।

ଗୋଟିଏ ବର୍ଗର ପ୍ରାଣୀ ଯଦି ସେହିବର୍ଗର ଅନ୍ୟପ୍ରାଣୀଟିକୁ ସ୍ୱୀକାର କରିପାରୁଛି, ଗୋଟିଏ ମଣିଷ କ'ଣ ଅନ୍ୟ ମଣିଷକୁ ଅପରଜ୍ଞାନ ନକରି ଶ୍ରଦ୍ଧା କରିପାରିବ ନାହିଁ ? ପ୍ରଥମତଃ ନିଜର ସମଗ୍ରକାୟା ଓ ପ୍ରସାରିତ କାୟା ସ୍ୱରୂପ, ନିଜର ଆବାସ, ପରିବାର ଜ୍ଞାତି କୁଟୁମ୍ବକୁ ସତକୁ ସତ ଅଭେଦ ଜ୍ଞାନରେ ଶ୍ରଦ୍ଧା କରିପାରିବ ନାହିଁ ? ଶ୍ରଦ୍ଧାରେ ଅପର ବ୍ୟକ୍ତି ଭଳି ଅପର ବସ୍ତୁ, ସ୍ଥାବର ଜଙ୍ଗମକୁ ନଦୀ ଗିରିବନ, ପଶୁପକ୍ଷୀ ସମସ୍ତଙ୍କର ସୁଖ କାମନା କରି ପାରିବ ନାହିଁ ? କହି ପରିବ ନାହିଁ ସର୍ବେ ଭବନ୍ତୁ ସୁଖୀନୋ ସର୍ବେସନ୍ତୁ ନିରାମୟା ? – କହିପାରିବ ନାହିଁ ଦେବା ସ୍ତୃପ୍ୟନ୍ତାମ୍ ସାଗରା ସ୍ତୃପନ୍ତାମ ବନସ୍ପତୟ ସ୍ତୃପ୍ୟନ୍ତାମ, ନାଗା ସ୍ତୃନ୍ୟନ୍ତାମ୍ ଖଗା

ସ୍ପୃଶ୍ୟତାମ୍ ? ତା ଦୃଷ୍ଟିରେ କ'ଣ କେବେ ଦିଶିବ ନାହିଁ ଅନନ୍ତବ୍ରହ୍ମାଣ୍ଡକୁ ଧାରଣ କରିଥିବା ପୋଷଣ କରୁଥିବା ଶ୍ରଦ୍ଧାର ଅମୃତ ? ମଧୁବାତ ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ ?

ଏହା ଅବଶ୍ୟ ସମ୍ଭବ କାରଣ ତାହା ଏକଦା ସମ୍ଭବହୋଇ ସାରିଛି । ଋଷି ଚେତନାରେ ବିସ୍ତୃତ, ପ୍ରସାରିତ ପରିବ୍ୟାପ୍ତ ଶ୍ରଦ୍ଧାରେ ଭିତର ବାହାର ଆପ୍ଲୁତ ହୋଇପାରିଛି । ଚେତନାର ବିକାଶ ଓ ଶୁଦ୍ଧ ବିସ୍ତାରରେ ହିଁ ଏହା ସମ୍ଭବ । ଚେତନାର ବିକାଶ ହେବା ଯାହା ଅହଂ ସ୍ଫୀତ ହେବା ତାହା ନୁହେଁ । ଅହଂ ସ୍ଫୀତ ହେଲେ ସାମ୍ରାଜ୍ୟ ଅର୍ଜନ କରାଯାଏ । ଅଶେଷ ସଂଘର୍ଷ ଓ ସଂହାରର ପରିଣତି ସ୍ୱରୂପ ଅହଂର କାୟା ବିସ୍ତାର ଘଟେ । ଚେତନାର ବିସ୍ତାରରେ ଶ୍ରଦ୍ଧା ବର୍ଦ୍ଧିତ ହୁଏ, ସଂହତି ପ୍ରତିଷ୍ଠିତ ହୁଏ । ଅହଂ ନେବାକୁ ଚାହେଁ ଚେତନା ହେବାକୁ ଚାହେଁ । ଅପରକୁ ନେବା ଓ ଅପର ହୋଇଯିବା ଭିତରେ ଅନେକ ପାର୍ଥକ୍ୟ ।



**୧୦-୮-୨୦୧୧**

ସୁରକ୍ଷିତ ଦୁର୍ଗରେ ଶତ୍ରୁସେନା ପ୍ରବେଶ କରି ନପାରିବା ପରି ସଂଯତ ଦେବାର୍ପିତ ଯୋଗସମର୍ଥ ଶରୀରରେ ରୋଗ ବୈଷମ୍ୟାଦି ମୃତ୍ୟୁର ଅନୁଚର ବର୍ଗ ପ୍ରବେଶ କରିପାରନ୍ତି ନାହିଁ । ମନ ପ୍ରାଣ କ୍ଷେତ୍ରରେ ମଧ କଳୁଷ କାଳିମା ପ୍ରବେଶ କରିପାରନ୍ତି ନାହିଁ । ସାଧାରଣ ଅର୍ଥରେ ମଧ ଶରୀର ଏକ ବ୍ୟୂହ । ତାକୁ ଭେଦି ଯିବା କୌଣସି ବାହ୍ୟ ଉପାଦାନ ବା ତତ୍ତ୍ୱ ପାଇଁ ସହଜ ନୁହେଁ । ଶରୀରକୁ ସୁରକ୍ଷିତ ରଖିବା ପାଇଁ, ତାକୁ ବିକଶିତ ସୃଜନସମର୍ଥ କରିବା ପାଇଁ ପ୍ରାକୃତିକ ବ୍ୟବସ୍ଥା ରହିଛି । ବାହ୍ୟ ଆକ୍ରମଣକୁ ପ୍ରତିହତ କରିବାର ସାମର୍ଥ୍ୟକୁ ପ୍ରତିରୋଧିକା ଶକ୍ତି ବା immunity କୁହାଯାଏ । ବାୟୁମଣ୍ଡଳରେ ବହୁବିଧ ରୋଗର ଜୀବାଣୁ ଉପସ୍ଥିତ ଥିବା ସତ୍ତ୍ୱେ ସମସ୍ତେ ଆକ୍ରାନ୍ତ ହୁଅନ୍ତି ନାହିଁ । ଯାହାର ଏ ପ୍ରତିରୋଧିକା ଶକ୍ତି ଦୁର୍ବଳ, ସେ ହିଁ ଆକ୍ରାନ୍ତ ହୁଏ । ଆକ୍ରାନ୍ତ ହେବା ପରେ ମଧ ଆକ୍ରମଣକାରୀ ବାହ୍ୟ ଶକ୍ତିକୁ ବିତାଡ଼ିତ କରିବାକୁ ପ୍ରକୃତି ସଂଗ୍ରାମ ଆରମ୍ଭ କରିଦିଏ । ଅସଂଖ୍ୟ ରକ୍ତକଣିକା ଯୁଦ୍ଧ କରନ୍ତି । ଶରୀରରେ ଉତ୍ତାପ ବୃଦ୍ଧିପାଏ । ସାରା ଶରୀର ହୋଇଯାଏ ଏକ ଯୁଦ୍ଧ ଭୂମି । ଔଷଧ ସପକ୍ଷର ସହାୟକ ହୁଏ ଏବଂ ପରିଶେଷରେ ବହିଃଶତ୍ରୁ ପରାସ୍ତ ଓ ନିପାତ ହୁଏ । ଶରୀର ରୋଗମୁକ୍ତ ହୁଏ । ବଳିଷ୍ଠ ଯୌବନଦୀପ୍ତ ଶରୀର ସହଜରେ ରୋଗାକ୍ରାନ୍ତ ହୁଏ ନାହିଁ । କାରଣ ସେତେବେଳେ ଏହି ପ୍ରତିରୋଧକ ଶକ୍ତି ବିପୁଳ ପରିମାଣରେ ପ୍ରସ୍ତୁତ ଥାଏ ।

ସେହିପରି ଯୋଗସମର୍ଥ ପୁରୁଷଙ୍କର ବିଭିନ୍ନ ସ୍ତରରେ ପ୍ରଚଣ୍ଡ ଶକ୍ତି ସଂଚାରିତ ହୁଏ ମନର ସଂକଳ୍ପ ଏପରି ଦୃଢ଼ ଓ ତୀବ୍ର ହୁଏ ଯେ ମୁହୂର୍ତ୍ତକରେ ପ୍ରବେଶ କରିଥିବା ରୋଗ ବହିଷ୍କୃତ ହୋଇଥାଏ । ଇଚ୍ଛା ଶକ୍ତି ବଳରେ ଅଙ୍ଗ ପ୍ରତ୍ୟଙ୍ଗ ଯନ୍ତ୍ରଣା ବା ଅସୁସ୍ଥତା ଦୂର ହୋଇଯାଏ । ସେହିପରି ପ୍ରାଣର ବିଶ୍ୱାସ ଅସୀମ ପ୍ରଦାନ କରିପାରେ । ଏବଂ ଯଦି ଯୋଗଶକ୍ତି ଜାଗ୍ରତ ହୁଏ ସେଥିରେ ଆତ୍ମଶକ୍ତି ହିଁ ପ୍ରକଟିତ ହୁଏ ଓ ତାର କୌଣସି ସୀମା ନାହିଁ । ସେଥିପାଇଁ ସିଦ୍ଧ ଯୋଗୀ ସମସ୍ତ ପ୍ରତିକୂଳ ପରିସ୍ଥିତିରେ ଅବିଚଳିତ ଓ ଅପ୍ରଭାବିତ ଓ ଶାନ୍ତ ରହି ପାରନ୍ତି । ବିଷ ପାନ କରିସୁଦ୍ଧା ଶରୀର ବିଷଗ୍ରସ୍ତ ହୁଏ ନାହିଁ । ଅଗ୍ନିରେ ପ୍ରବେଶ କଲେ ସୁଦ୍ଧା ବି ବିସ୍ଫୋଟ ଦେଖାଯାଏ ନାହିଁ । ରୋଗ ଏବଂ ଜରା ଆୟତ୍ତାଧୀନ ହୋଇଯାଏ । ମୃତ୍ୟୁକୁ ସୁଦ୍ଧା ବାରଣ କରାଯାଇ ପାରେ, ଅପସାରିତ ଓ

ଅନାବିଳ ଯୋଗଶକ୍ତିରେ ପରାସ୍ତ କରାଯାଇପାରେ, ଏଣୁ ବ୍ୟବହାରିକ ସାଧାରଣ ଜୀବନରେ କିଛି ମାତ୍ରାରେ ଶୃଙ୍ଖଳା, ଯମ ନିୟମ ଆସନ ପ୍ରାଣାୟାମର ପାଳନ, କାୟମନୋବାକ୍ୟରେ ସଂଯମ ଈଶ୍ୱର ପ୍ରଣିଧାନ, ଧ୍ୟାନ ଧାରଣାର ଅଭ୍ୟାସ, ବିଶ୍ୱାସର ଦୃଢ଼ତା ପାଇଁ ପ୍ରୟାସ କରି ପାରିଲେ ନିରାମୟ ଦୀର୍ଘ ଜୀବନ, ସାର୍ଥକ ପରିପୂର୍ଣ୍ଣ ଜୀବନ ଏବଂ ଅପମୃତ୍ୟୁ ଅକାଳମୃତ୍ୟୁ ଆଦି ବିଘଟନରୁ ମୁକ୍ତ ହେବା ସମ୍ଭବ । ରୋଗ ପୀଡ଼ା, ଯନ୍ତ୍ରଣା, ଅଶାନ୍ତି, ମୋହ ଆଦି ସ୍ୱାଭାବିକ ନୁହେଁ । ସ୍ୱାଭାବିକ ହେଲା ନିରାମୟ ସ୍ୱାସ୍ଥ୍ୟ, ଶାନ୍ତ ସନ୍ତୁଷ୍ଟ ମନପ୍ରାଣ ପରିତୃପ୍ତ ଜୀବନ । ରୋଗ ଆସେ ଏବଂ ଯାଏ । ତଡ଼ି ଜାଣିଲେ ଚଞ୍ଚଳ ଯାଏ । ରୋଧି ଜାଣିଲେ ଆସେ ନାହିଁ ।



## ୨୯.୧୦.୨୦୦୧

ବଇଁଶିଆଳ, ଇତସ୍ତତଃ ବୁଲୁଥିବା, ବାଡ଼ବୁଦାରେ ମୁହଁ ମାରୁଥିବା ଶିଙ୍ଗକୁ ଶିଙ୍ଗ ଲଢ଼ାଉଥିବା ମଇଁଷିମାନଙ୍କୁ ଏକାଠି କରିବାକୁ ବଇଁଶୀ ବଜାଏ । ସେମାନେ ସବୁଆଡୁ କ୍ରମଶଃ ଓହରି ଆସି ଗୋଠରେ ଠିଆ ହୋଇଗଲା ପରେ ସେ ସେମାନଙ୍କୁ ନିର୍ଦ୍ଦିଷ୍ଟ ମାର୍ଗରେ ଅଡ଼େଇ ନେଇଯାଏ । ଆଉ ବଇଁଶୀ ବଜାଏ ନାହିଁ । ସେହିପରି ବିକ୍ଷିପ୍ତ ଚଞ୍ଚଳ ଇତସ୍ତତଃ ମନକୁ ଏକାଗ୍ର କରିବାକୁ କିଛି ଶୁଦ୍ଧ ସରଳ ସ୍ୱର ବା ଧ୍ୱନିର ପ୍ରୟୋଜନ ହୁଏ । ଯଦି ସ୍ତବ ବା ଗୀତ ବୋଲାହୁଏ ସେଥିରେ ମନ ବା ପ୍ରାଣ ସ୍ଥିର ହୋଇପାରନ୍ତି ନାହିଁ । କାରଣ ସ୍ତୋତ୍ର ବା ଗୀତରେ ବ୍ୟବହୃତ ଶବ୍ଦରାଜି ଅର୍ଥ ବାହକ ହୋଇ ଥିବାରୁ ମନ ସେଥିରେ ଲାଗିଯାଏ; ଏବଂ ଶବ୍ଦାର୍ଥ ଜନିତ ଆବେଗରେ ପ୍ରାଣ ସ୍ପନ୍ଦିତ ହୁଏ । ଏଣୁ ବେଣୁ ଧ୍ୱନି ଭଳି କିଛି କଥିତଭାଷା ବିବର୍ଜିତ ଛନ୍ଦମୟଧ୍ୱନି ଏ କ୍ଷେତ୍ରରେ ଅଧିକ ସହାୟକ ହୋଇଥାଏ । ଯେମିତି ଧରାଯାଉ ମା'ଙ୍କ ମ୍ୟୁଜିକ୍ । କିଛି ସମୟ ସେଥିରେ ମନୋନିବେଶ କଲେ ବଳେ ଏକାଗ୍ରତା ଆସିଯାଏ । କିନ୍ତୁ ଏକଗ୍ରତା ଧ୍ୟାନ ନୁହେଁ । ଏକାଗ୍ରମନ ଧ୍ୟାନ ସମର୍ଥ ହୋଇପାରେ କିନ୍ତୁ ଧ୍ୟାନସ୍ଥ ନୁହେଁ । ଧ୍ୟାନ ପାଇଁ କିଛି ନୀରବ ବିସ୍ତାର ଭିତରେ ନିମଜ୍ଜିତ ହେବାକୁ ପଡ଼େ । ଭିତରର କୋଳାହଳକୁ ନୀରବ କରିବାକୁ ବାହାରେ ମଧ୍ୟ ଯଥା ସମ୍ଭବ କୋଳାହଳ ନ ରହିଲେ ସୁବିଧା ହୁଏ । ବେଳେବେଳେ ସଂଗୀତ ହିଁ କୋଳାହଳର ସ୍ଥାନ ଗ୍ରହଣ କରେ । ଗୀତ ଭଜନ ସ୍ତବାଦି ଶୁଣିବା କିମ୍ବା ବୋଲିବା କୀର୍ତ୍ତନ ହୋଇପାରେ କିନ୍ତୁ ଧ୍ୟାନ ନୁହେଁ । ଧ୍ୟାନ ପାଇଁ ପ୍ରାଥମିକ ସ୍ତରରେ ନିରବତା ଏକାନ୍ତ ପ୍ରୟୋଜନ ।



## ୧୮.୧୨.୨୦୧୧

ନିନ୍ଦା ଅଥବା ସ୍ତୁତିରେ ସମ ପରିମାଣରେ ଅପ୍ରଭାବିତ ରହିବା ସ୍ଥିତପ୍ରଜ୍ଞର ଲକ୍ଷଣ । ଅନୁକୂଳ ଅଥବା ପ୍ରତିକୂଳକୁ ସମଭାବରେ ସ୍ୱୀକାର କରିବା ସମତା ଏବଂ ସମତ୍ୱର ଅନ୍ୟନାମ ଯୋଗ । ସମତ୍ୱଂ ଯୋଗ ଉଚ୍ୟତେ । ଶୀତ ତାପରେ ଅବିକ୍ରିୟ ରହିଥିବା ଶିଳାଖଣ୍ଡ ପରି ନିଶ୍ଚେତ ପଡ଼ିରହିବା ମନୁଷ୍ୟ ଭଳି ସଚେତନ ପ୍ରାଣୀ ପାଇଁ ସମ୍ଭବ ନୁହେଁ । ବାଞ୍ଛନୀୟ ମଧ୍ୟ ନୁହେଁ । ଶରୀର ପ୍ରାଣ ଓ ମନ ଭୂମିରେ ଯେଉଁ ସବୁ ସଂଘାତ

ହୁଏ ତାହା ବେଳେବେଳେ ପ୍ରୀତିକର ଏବଂ ଆଉବେଳେ ଅପ୍ରୀତିକର ମନେ ହୁଏ, ରୁଚିକର ବା ଅରୁଚିକର ଖାଦ୍ୟ ଭଳି, କର୍ଣ୍ଣକଟୁ ବା କର୍ଣ୍ଣରସାୟନ ଶବ୍ଦ ପରି ଚକ୍ଷୁଶୂଳ ବା ତଦ୍‌ବିପରୀତ ଦୃଶ୍ୟ ପରି । ଏହାର କାରଣ ହେଲା ଯେ ବ୍ୟକ୍ତି ବିଶେଷର ଏ ସମସ୍ତ ଶରୀର ପ୍ରାଣ ଓ ମନଭୂମିର ଉପାଦାନ ସ୍ୱତନ୍ତ୍ର । ଏ ଉପାଦାନ ସହିତ ମେଳ ଖାଉଥିବା ବ୍ୟକ୍ତି ବସ୍ତୁ ବା ପରିସ୍ଥିତି ଅନୁଭବ ଅନୁକୂଳ ଓ ମେଳ ଖାଉ ନଥିଲେ ପ୍ରତିକୂଳ ମନେ ହୁଏ । କିନ୍ତୁ ସମସ୍ତଙ୍କ ପାଇଁ ଅନୁକୂଳ ବା ପ୍ରତିକୂଳ ସମାନ ନୁହେଁ । କାହା ପାଇଁ କେମିତି । କାହା ପାଇଁ ଶାସ୍ତ୍ରୀୟ ସଂଗୀତ କର୍ଣ୍ଣରସାୟନ ତ ଆଉ କାହା ପାଇଁ ତାହା କର୍ଣ୍ଣକଟୁ । ଏଣୁ ରୁଚି ଭେଦରେ ଅଭିଳାଷ ଅଲଗା ଅଲଗା ହୋଇଯାଏ । ସତେବା ପ୍ରତ୍ୟେକ ଇନ୍ଦ୍ରିୟର ଅଲଗା ଅଲଗା ବରାଦ୍ ଥାଏ । ତାକୁ ତୃପ୍ତ କରିବାକୁ ଆମର ଅହରହ ପ୍ରଚେଷ୍ଟା । ସେହିପରି ମନ ପ୍ରାଣ ଶରୀରର ଅଲଗାଅଲଗା ରୁଚି ଓ ବରାଦ୍ । ସେଥିପାଇଁ ଆମର ଅଭିଳାଷ । ସେଥିପାଇଁ ଏ ଜୀବନ ସଂଗ୍ରାମ । ଶରୀର ଭୋଗ ଚାହେଁ । ପାଞ୍ଚଟି ଇନ୍ଦ୍ରିୟ ମାଧ୍ୟମରେ କେବଳ ପ୍ରୀତିକର ଅନୁଭବ ଚାହେଁ । ସୁସ୍ୱାଦୁ ଖାଦ୍ୟ, କୋମଳ ଶଯ୍ୟା ମଧୁର ସଂଗୀତ, ଶୀତଳ ସୁଗନ୍ଧ ସ୍ନାନ । ଏହିପରି ପ୍ରାଣ ଚାହେଁ ସନ୍ତୋଷ, ସଂପ୍ରୀତି, ସ୍ନେହ, ଶ୍ରଦ୍ଧା, ସମ୍ମାନ । ମନ ଚାହେଁ ସୁଖ୍ୟାତି, ପାଣ୍ଡିତ୍ୟ, କ୍ଷମତା ପ୍ରତିପତ୍ତି, ପ୍ରଭୁତ୍ୱ, ସଂପତ୍ତି ବା ସାମ୍ରାଜ୍ୟ । ଏ ସମସ୍ତର ତୃପ୍ତି ବିଧାନ କରିବା ସମ୍ଭବ ନୁହେଁ । କିନ୍ତୁ ଯେତିକି ମାତ୍ରାରେ ତାହା ମିଳେ ସେତିକି ମାତ୍ରାରେ ଜୀବନ ସାର୍ଥକ ଅନୁଭବ ହୁଏ । ଯେତିକି ମିଳେ ନାହିଁ ସେତିକି ବ୍ୟର୍ଥତା ଓ ଜ୍ୱାଳା ସହିବାକୁ ହୁଏ । ଏହିପରି ମିଳିବା ନ ମିଳିବା ଭିତରେ ବିଚଳିତ ଓ ନିୟନ୍ତ୍ରିତ ହେଉଥାଏ ଜୀବନ ।

ସାଧାରଣ ଦୃଷ୍ଟିରେ ଦେଖିଲେ ମନେ ହୁଏ ଯେ ଏ ସମସ୍ତ କାମନା ବାସନା ଅଭିଳାଷ କେବଳ ବିକ୍ଷୁବ୍ଧ, ସନ୍ତାପିତ କରନ୍ତି । ଜୀବନର ଦୁଃଖର କାରଣ ଏହି କାମନା । ଏଣୁ ବୁଦ୍ଧବାଣୀ 'କାମନାର ବିନାଶରେ ଦୁଃଖର ବିନାଶ' । ମନେହୁଏ ସତେବା ମଣିଷଟିକୁ ଏ ଜଟିଳ ଜାଲ ଭିତରେ ପକାଇ ଦିଆଯାଇଛି ତାକୁ ସନ୍ତାପିତ କରିବା ପାଇଁ । କିନ୍ତୁ ଅନ୍ୟଦୃଷ୍ଟିରେ ଦେଖିଲେ ଆଉପ୍ରକାରେ ଦେଖାଯାଏ । ଶରୀରର ଯାବତୀୟ କ୍ଷୁଧା ଆଉ ଏକ ଗଭୀର ଅନ୍ୱେଷଣର ସ୍ଥୂଳ ରୂପ । ଶରୀର ପ୍ରକୃତରେ ସୁଖ ସମ୍ଭୋଗ ପଛରେଥିବା ଆନନ୍ଦକୁ ଖୋଜୁଥାଏ । ପ୍ରାଣ ସେପରି ବିବିଧ ଅଭିଳାଷ ପଶ୍ଚାତରେ ଥିବା ଶାନ୍ତ ଚୈତନ୍ୟକୁ ଖୋଜୁଥାଏ । ମଣିଷର ସାମଗ୍ରିକ ସତ୍ତା ତାର ମୂଳ ଉପାଦାନକୁ ଖୋଜୁଥାଏ । ଏହି ଦୃଷ୍ଟିରୁ ଦେଖିଲେ ବିକ୍ଷୁବ୍ଧ ସନ୍ତାପିତ ବିଚଳିତ ମନପ୍ରାଣ ଶରୀର ପ୍ରତି କୌଣସି ହେୟଭାବ ପରିବର୍ତ୍ତେ ଏକ ଅଦ୍ଭୁତ ସଂବେଦନା ଏକପ୍ରକାର କ୍ଷମାଶୀଳ କାରୁଣ୍ୟଭାବ ଜାଗ୍ରତ ହୁଏ । ଆହା, ବିଚାରା ଚକୋର ପକ୍ଷୀଗୁଡ଼ିକ । ଧୂଳିଧୂସର ପତ୍ର ଉପରେ ପଡ଼ିଥିବା କାକର ଟୋପାଗୁଡ଼ିକୁ ଜ୍ୟୋତ୍ସ୍ନା ଖୋଜି ଖୋଜି ପିଇଯାନ୍ତି । ଜ୍ୟୋତ୍ସ୍ନା ଖୋଜୁଛନ୍ତିବୋଲି ଜାଣିପାରନ୍ତି ନାହିଁ । ଏଣୁ ନିନ୍ଦାସ୍ତୁତିରେ ଅବିଚଳିତ ରହିବା ଅର୍ଥ, ନିଜଭିତରେ ଥିବା ପ୍ରଶଂସା ପ୍ରବଣତା ବା ନିନ୍ଦା ବିମୁଖତାକୁ ଏକ ଶ୍ରଦ୍ଧାଶୀଳ କାରୁଣ୍ୟ ଭାବରେ ଏକତ୍ର ଧାରଣ କରିବା । ଏ ମନ ପ୍ରାଣ ଆଉ କ'ଣ ପାଇ ପାରେ । ସେତ ଚୈତନୀକୁ ବା ସତ୍ୟକୁ ପାଇବ ନାହିଁ । ତା'ର ଅସହାୟ ପ୍ରଚେଷ୍ଟାରେ କିଛି ବିକ୍ଷୋଭ, କିଛି ଆସକ୍ତି କିଛି ଆକର୍ଷଣ କିଛି ବିକର୍ଷଣ ଭିତରେ କେବଳ ବିକ୍ଷୁବ୍ଧ ହୋଇପାରେ । ବର୍ତ୍ତୁଳା ପୃଥିବୀ ଫାଳେ ଅନ୍ଧାର ଫାଳେ ଆଲୋକକୁ ନେଇ ଏକ ବିଭୋର ଅବସ୍ଥାରେ ନିମଗ୍ନ ରହି ନିଜ ଅକ୍ଷଦଣ୍ଡରେ ଘୂରୁଥାଏ । ଖଣ୍ଡିତ ଭୂଖଣ୍ଡରେ ଆଲୋକ ହର୍ଷ ଉଲ୍ଲାସ ଦିଏ ଅନ୍ଧାର ସେହିପରି ବିମର୍ଷ ଏକାକୀପଣ ଦିଏ । ଆଲୋକ ଅଂଧାରର ସଂଘାତରୁ ମୁକୁଳିବା ପାଇଁ ବିପୁଳ ବର୍ତ୍ତୁଳତା ଆବଶ୍ୟକ । ନିନ୍ଦା ସ୍ତୁତିକୁ ସହିଯିବା ସମାଧାନ ନୁହେଁ । ଏକ ଦୋରଙ୍ଗି ଉତ୍ତରୀ ପରି ସଶ୍ରଦ୍ଧ ଧାରଣ

କରିବା ହିଁ ସମତା । ବୈପରିତ୍ୟ ଏକ ଆପେକ୍ଷିକ ଧର୍ମ । ଏକକ ଆତ୍ମୀୟତାରେ ଭିନ୍ନତା ନାହିଁ, ବୈପରିତ୍ୟ ନାହିଁ, ଏଣୁ ସୁଖଦୁଃଖ ମଧ୍ୟ ନାହିଁ ।



## ୬.୧.୨୦୦୨

ଅହୋ ଭାଗ୍ୟ । ଅନନ୍ତ ପ୍ରତୀକ୍ଷା ପରେ ଏ ଭୂମିରେ ଦେବାବତରଣ ଘଟିଛି । ସମସ୍ତ ଅକ୍ଷମତା ଅଯୋଗ୍ୟତା ଅଜ୍ଞତା, ମୂଢ଼ତା ସତ୍ତ୍ୱେ ତିମିରାଚ୍ଛନ୍ନ ପୃଥିବୀରେ ସୂର୍ଯ୍ୟୋଦୟ ଘଟିଛି । ନିମ୍ନ ଭୂମିର ଅଧିବାସୀଙ୍କୁ କୃତାର୍ଥ, ବିସ୍ମିତ ଗୌରବିତ କରି, ଚକିତ, ରୋମାଞ୍ଚିତ, ପୁଲକିତ କରି ଯେ ଅବତୀର୍ଣ୍ଣ ହୋଇଛନ୍ତି ତାଙ୍କୁ ସ୍ୱାଗତ କରୁଛି ନିରବ, ନତଜାନୁ ପୃଥିବୀ ନିସ୍ତବ୍ଧ ଆକାଶ ପବନ ବନ ପ୍ରାନ୍ତର ଓ ବନସ୍ପତି ।

କାର୍ଯ୍ୟକାରଣ ବିବର୍ଜିତ ସ୍ୱେଚ୍ଛାରେ ଆବିର୍ଭୂତ ହେ ଦିବ୍ୟକୃପା ଜଡ଼ ଜଗତର ଅପରିମେୟ ବିସ୍ତାର ଭିତରୁ କ୍ରମଶଃ ଉଦ୍‌ବର୍ତ୍ତିତ ଚେତନାର ନବୋନ୍ମେଷ ତୁମକୁ ନମସ୍କାର ।

ଅତୀତ ବର୍ତ୍ତମାନ ଓ ଭବିଷ୍ୟତକୁ ଏକତ୍ର ଧାରଣ କରିଥିବା ମାନବ ଜାତିକୁ ମାନବୋତ୍ତର ଚେତନାର ଉନ୍ମେଷ ପର୍ଯ୍ୟନ୍ତ ଉନ୍ନତ କରି ନେଉଥିବା ହେ ପରମାଶକ୍ତି ତୁମକୁ ନମସ୍କାର ।



## ୧୪-୧-୨୦୦୨

ତୀର ତରଙ୍ଗକୁ ଶାସନ କରେ ଲାଳନ କରେ ନିୟନ୍ତ୍ରିତ କରେ । ତରଙ୍ଗ ତୀରକୁ ସ୍ୱୀକାର କରେ ସାର୍ଥକ କରେ । ତୀର ସ୍ଥିତିଶୀଳ ତରଙ୍ଗ ଗତିଶୀଳ ଏଣୁ ପରସ୍ପରକୁ ବିରୋଧ କରିବା ସ୍ୱାଭାବିକ । ତୀର ତରଙ୍ଗକୁ ଆବଦ୍ଧ କରେ, ବାଧ କରେ, ତରଙ୍ଗ ତୀରକୁ ଆଘାତ କରେ ବିଦୀର୍ଣ୍ଣ କରେ ଅଥଚ ଉଭୟେ ପରସ୍ପରକୁ ନେଇ ଚିହ୍ନିତ ହୁଅନ୍ତି, ଅନିବାର୍ଯ୍ୟଭାବରେ ସହାବସ୍ଥାନ କରନ୍ତି । ତୀର ଅଭିଭାବକ, ଶାସକ, ଶୃଙ୍ଖଳା, ପରଂପରା, ପ୍ରହରୀ ପରି ବାଟ ଜଗି ଠିଆ ରହିଥାଏ । ତରଙ୍ଗ ଉଦ୍ଦାମ ଯୌବନ ପରି ଜୀବନର ଆବେଗ ପରି, ଉଚ୍ଛୃଙ୍ଖଳ ବିଦ୍ରୋହ ପରି ପ୍ରତିବାଦ କରୁଥାଏ, ସଂଘର୍ଷ କରୁଥାଏ । ଅଥଚ ତୀର ବାହୁ ବେଢ଼େଇ ତରଙ୍ଗକୁ ପୋଷଣ କରେ ସୁରକ୍ଷିତ କରେ ଓ ତରଙ୍ଗ ସେଇ ବାହୁ ବନ୍ଧନ ଭିତରେ ଆଶ୍ଳିଷ୍ଟ ଶିଶୁସନ୍ତାନ ପରି ଚିରଚଞ୍ଚଳ ରହିଥାଏ । ଅଥୟ ହେଉଥାଏ, ପଦାଘାତ କରୁଥାଏ । ତରଙ୍ଗ ଯଦି ଉଚ୍ଚାରିତ କାବ୍ୟ ତୀର ତାର ବ୍ୟାକରଣ ତରଙ୍ଗ ଯଦି ତରୁଣ ତୀର ତାର ପ୍ରୌଢ଼ ପିତା । ତୀରକୁ ଖାଇ ଖାଇ ତରଙ୍ଗ ବର୍ଦ୍ଧିତ ହୁଏ । ତରଙ୍ଗକୁ ପୋଷଣ କରି କରି ତୀର କ୍ଷୟିତ ହୋଇଯାଏ ।

କିନ୍ତୁ ଆଉ ଏକ ମୌଳିକ ତତ୍ତ୍ୱ ଉଭୟ ତୀର ଓ ତରଙ୍ଗକୁ ସୃଷ୍ଟି କରେ । ସେ ହେଉଛି ସ୍ରୋତ । ସ୍ରୋତ ଏକ ପ୍ରବାହ । ସେ ତାର ସ୍ୱଧର୍ମରେ ଗତିଶୀଳ ହେଲେ ସ୍ୱତଃ ତରଙ୍ଗାୟିତ ହୁଏ । ତରଙ୍ଗ ସ୍ରୋତର

ପରିଚାୟକ, ସ୍ରୋତ ନୁହେଁ । ସେହିପରି ସ୍ରୋତ ପ୍ରବାହିତ ହେଲେ ତଟ ସୃଷ୍ଟି ହୋଇଯାଏ । ସ୍ରୋତ ଯେତେ ଗଭୀର ହୁଏ ତଟ ସେତେ ଉନ୍ନତ ଉଦ୍ଧତ ହୁଏ । ସ୍ରୋତ ନିଜକୁ ନିୟନ୍ତ୍ରିତ କରିବାକୁ ତଟକୁ ନିର୍ବାଚନ କରେ । ତଟ ସ୍ରୋତର ମର୍ଜିରେ ତିଆରି ହୁଏ ତଟ ସ୍ରୋତର ହିଁ ସୃଷ୍ଟି । ସ୍ରୋତ ପ୍ରବାହ । ସ୍ରୋତ ସଂସାର । ପ୍ରବହମାନତା ହିଁ ଜଗତ । ନିତ୍ୟ ପ୍ରବହମାନତା ହିଁ ନିତ୍ୟନୂତନତା । ପ୍ରବହମାନତାହିଁ କ୍ରମାନ୍ୱୟତା, କ୍ରମାନ୍ୱୟତା ହିଁ କାଳ । ପ୍ରବାହ ଗତିର ପ୍ରତୀକ, ସୃଷ୍ଟିର ପ୍ରତୀକ ତଟ ସ୍ଥିତିର ପ୍ରତୀକ ମୃତ୍ୟୁର ପ୍ରତୀକ । କିନ୍ତୁ ପ୍ରବାହର ଶଯ୍ୟା ସ୍ଥିର, ତଟଦେଶ ସ୍ଥିର । ପ୍ରବାହ ଯଦି ଜୀବନ ହୁଏ, ତାକୁ ଧାରଣ କରିଥାଏ ମୃତ୍ୟୁ, ଆବୃତ ଆଶ୍ଳିଷ୍ଟ କରିଥାଏ ମୃତ୍ୟୁ । ସ୍ରୋତ କିନ୍ତୁ ନିର୍ଭର କରେ ମୌଳିକ ଉପାଦାନ ଜଳ ଓ ତାର ଜଳୀୟ ଧର୍ମ ଉପରେ । ଜଳରଧର୍ମ ତାରଲ୍ୟ । ଆକୃତି ନଥିବାରୁ ଆଧାର ଉପରେ ନିର୍ଭରଶୀଳତା, ନିମ୍ନ ମୁଖୀତା, ପ୍ରବାହ ପ୍ରବଣତା । ଜଳ ତରଳ ଓ ଚଞ୍ଚଳ । ସମୁଦ୍ରର ବିପୁଳ ବିସ୍ତାର ଭିତରେ ସୁଦ୍ଧା ତାହା ଚଳଚଞ୍ଚଳ । ସମୁଦ୍ରର ବିପୁଳ ବିସ୍ତାର ଭିତରେ ସୁଦ୍ଧା ତାହା ଚଳଚଞ୍ଚଳ । ଜଳର ଧର୍ମ ହେଲା ନିମ୍ନଭୂମିକୁ ବହିଯିବା ଶୀତଳ କରିବା ଆର୍ଦ୍ର କରିବା ପରିତୃପ୍ତ କରିବା । ଏ ସମସ୍ତ ଧର୍ମ ଆଚରିତ ହୁଏ ସ୍ରୋତରେ, ସ୍ଥିତି ଓ ଗତି ସଂସାର ଓ ସୃଷ୍ଟିର ମୂଳ ତତ୍ତ୍ୱ । ସ୍ଥାଣୁ ପୁରୁଷ ଓ କ୍ରିୟାଶୀଳା ପ୍ରକୃତି । ପୁରୁଷ ସଂକଳ୍ପ କରେ । ସୃଷ୍ଟି କରେ ପ୍ରକୃତି । ଉଭୟର ଯୁଗ୍ମତାରେ ସଚରାଚର ନିର୍ଭର କରେ ।

ତୀର ତରଙ୍ଗର ଯୁଗ୍ମତା ସେହିପରି ଅବିଚ୍ଛେଦୀ, ବାକ ଅର୍ଥ ପରି, ପାର୍ବତୀ ପରମେଶ୍ୱର ପରି । "ବାଗର୍ଥାମିବ ସଂପୃକ୍ତୌ ବାଗର୍ଥଂ ପ୍ରତିପତ୍ତୟେ । ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ॥



## ୧୪-୯-୨୦୦୨

ସୂର୍ଯ୍ୟ ରଶ୍ମିର ବର୍ଣ୍ଣ ବଳୟରେ 'କଳା' ନାହିଁ କି 'ଧଳା' ନାହିଁ । ବା-ଘ-ନି-ସ-ହ-ଲା-ନା' ସାତଟି ବର୍ଣ୍ଣ ଏବଂ ପ୍ରତ୍ୟେକ ବର୍ଣ୍ଣର ବହୁବିଧ ରୂପ । ଏ ସାତଟିର ମିଶାମିଶି ରଂଗରେ ଏ ବିଚିତ୍ରବର୍ଣ୍ଣା ପ୍ରକୃତିର ଅକଳନୀୟ ରୂପରାଶି ପ୍ରକଟିତ । ସବୁ ବର୍ଣ୍ଣର ସମାହାର ଧଳା, ଏବଂ ସବୁବର୍ଣ୍ଣର ଅନୁପସ୍ଥିତି କଳା- ଏ ଦୁଇଟିକୁ ଠିକ୍ ଅର୍ଥରେ ରଂଗ କହିହେବ ନାହିଁ । ସବୁ ରଂଗର ସମାହାର କହିଲେ ସବୁ ରୂପର ସମାହାରକୁ ମଧ୍ୟ ବୁଝାଏ । ଏଣୁ ଏ ବିଶ୍ୱବ୍ରହ୍ମାଣ୍ଡର ସମାହାର ବୋଧହୁଏ ଧଳା । ଏବଂ ସମସ୍ତରୂପ ବିଲୀନ ହୋଇଗଲେ ବା କୌଣସି ରୂପ ପ୍ରକଟିତ ହେବା ପୂର୍ବରୁ ଯାହା ଅବଶିଷ୍ଟ ଥାଏ ତାହା କଳା, ଏଣୁ କୁହାଯାଇପାରେ, ଧଳା ହେଉଛି ଅନନ୍ତ, ଏବଂ କଳା ଅବ୍ୟକ୍ତ । ବଳଭଦ୍ର ଅନନ୍ତ । ଜଗନ୍ନାଥ ଅବ୍ୟକ୍ତ ।



ଈଶ୍ୱରଙ୍କ ଭାବ ଐଶ୍ୱର୍ଯ୍ୟ । ସେଥିରେ ତାଙ୍କର ମହିମା, ଗରିମାଦି ପ୍ରକଟିତ ହୋଇଥାଏ । ଏ ଅକଳନୀୟ ବିଶ୍ୱବ୍ରହ୍ମାଣ୍ଡର ଆଦିକର୍ତ୍ତା ଏହାକୁ ସୃଷ୍ଟି କରିଛନ୍ତି ବୋଲି, ଶାସ୍ତ୍ରେ କହନ୍ତି । କେବଳ ସୃଷ୍ଟି କରି ନାହାନ୍ତି । ତାକୁ ଧାରଣ କରିଛନ୍ତି ଏବଂ ତାର ସଂହାର ମଧ କରିଛନ୍ତି । ଜନ୍ମାଦ୍ୟସ୍ୟ ଯତଃ' - ସୂତ୍ରରେ ବେଦାନ୍ତ ଦର୍ଶନ ଏଇ କଥା ହିଁ ସୂଚନା ଦେଉଛନ୍ତି । ଏ ସୃଷ୍ଟି କରିବା, ନ କରିବା ବା ଅନ୍ୟଥା କରିବା ତାଙ୍କର ଇଚ୍ଛାଧୀନ ବୋଲି ମଧ କୁହାଯାଇଛି । "କର୍ତ୍ତୁଂ, ଅକର୍ତ୍ତୁଂ ଅନ୍ୟଥା କର୍ତ୍ତୁଂ" - ସେ ସର୍ବଶକ୍ତିମାନ ହୋଇଥିବାରୁ ସବୁ କିଛି କରିବା ନ କରିବା ତାଙ୍କ ଆୟତ୍ତାଧୀନ, - ଏହା କେବଳ ଭାରତ ନୁହେଁ ପୃଥିବୀର ଅନ୍ୟାନ୍ୟ ଧର୍ମ, ଦର୍ଶନରେ ମଧ୍ୟ ସ୍ୱୀକୃତ ହୋଇଛି । କିନ୍ତୁ ଭାରତବର୍ଷରେ ବିଶ୍ୱାସ କରାଯାଏ ଯେ ବିଶ୍ୱକର୍ତ୍ତା ଯେ ସ୍ଥାବର ଜଙ୍ଗମରେ ରେଣୁରେଣୁରେ ବିଦ୍ୟମାନ ସେ ପରିସ୍ଥିତି ଭେଦରେ ଅବତାର ଗ୍ରହଣ କରି ଧରାପୃଷ୍ଠରେ ପ୍ରକଟ ହୁଅନ୍ତି । ଏହା ଅନ୍ୟ ଧର୍ମ ବା ଦର୍ଶନରେ ଗୃହୀତ ହୁଏ ନାହିଁ । ପୃଥିବୀ ଏ ପରିବ୍ୟାପ୍ତ ବିଶ୍ୱରେ ଏକ ଧୂଳିକଣାବତ୍ । ତାହାରି ପୃଷ୍ଠରେ ମାନବ ରୂପରେ କିପରି ବିଶ୍ୱନିୟନ୍ତା ଅବତୀର୍ଣ୍ଣ ହୋଇପାରିବେ ? ପ୍ରଶ୍ନ ଯଥାର୍ଥ କିନ୍ତୁ ସର୍ବ ଶକ୍ତିମାନ୍ ଯେପରି ବିଶ୍ୱସୃଷ୍ଟି କରିଛନ୍ତି ଅଣୁଠାରୁ ମହତୋମହୀୟାନ୍ ଯାଏ ସବୁ ସୃଷ୍ଟିକରି ପାରିଛନ୍ତି, ସେ କାହିଁକି ନିଜକୁ ମାନବ ରୂପରେ ସୃଷ୍ଟି କରିପାରିବେ ନାହିଁ ? ଯଦି ତାହା କରି ନପାରନ୍ତି ସେଇ ଅନୁପାତରେ ତାଙ୍କର ସର୍ବଶକ୍ତିମୟତା ସୀମିତ ଓ ଅପ୍ରମାଣିତ ହୋଇଯାଉ ନାହିଁ କି ? -ଏଣୁ ସେ ଅବତରଣ କରିପାରନ୍ତି ଏବଂ ମୌଳିକ ଜୀବନଧର୍ମକୁ ପୁନର୍ବାର ପ୍ରତିଷ୍ଠିତ କରନ୍ତି । ବିକାଶ ଧାରାରେ ନୂତନ ଦିଗ ଉନ୍ମୋଚନ କରନ୍ତି । ପ୍ରତ୍ୟେକ ଅବତରଣର ସେଥିପାଇଁ ନିର୍ଦ୍ଦିଷ୍ଟ ଭୂମିକା ଥାଏ । ସେଥିପାଇଁ ଶ୍ରୀରାମଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ବୋଲି କୁହାଯାଏ ।

ଜଗତ୍ ବିନ୍ୟାସରେ ଦୁଇଟି ତତ୍ତ୍ୱ - ଗୋଟିଏ କ୍ଷର ତତ୍ତ୍ୱ ଅନ୍ୟଟି ଅକ୍ଷର ତତ୍ତ୍ୱ - ଏ ଦୁଇଟି ତତ୍ତ୍ୱର ଆନୁପାତିକ ସମାହାରରେ ସୃଷ୍ଟି ସ୍ଥିତିଲୟ ସବୁ ସଂଘଟିତ ହୋଇଥାଏ । କିନ୍ତୁ ଏ ଦୁଇଟି ତତ୍ତ୍ୱର ଊର୍ଦ୍ଧ୍ୱରେ ଏମାନଙ୍କୁ ସ୍ୱତନ୍ତ୍ର ରଖି ଅଥଚ ଏକତ୍ର ଧାରଣ କରି ପରମତତ୍ତ୍ୱ ବିଦ୍ୟମାନ । ଗୀତା ଶାସ୍ତ୍ରରେ ତାକୁ ଏପରି ପ୍ରକାଶ କରାଯାଇଛି ।

'ଯସ୍ମାତ୍ କ୍ଷରଂଅତୀତୋଽହଂ ଅକ୍ଷରାଦପି ଚୋତ୍ତମଃ' । ପୁରୁଷୋତ୍ତମ କହିଲେ ପରମତତ୍ତ୍ୱକୁ ବୁଝାଏ । ସେ ଅବତାରୀ, ଇଚ୍ଛା କଲେ ଅବତାର ନେଇ ପାରନ୍ତି । ପ୍ରତ୍ୟେକ ଥର ଯୁଗଧର୍ମକୁ ପ୍ରତିଷ୍ଠା କରନ୍ତି । ମାର୍ଗ ଦର୍ଶନ କରି ତିରୋହିତ ହୁଅନ୍ତି । ରାମଚନ୍ଦ୍ର ମର୍ଯ୍ୟାଦା ପ୍ରତିଷ୍ଠା କରିଥିଲେ । ପିତାର ମର୍ଯ୍ୟାଦା ପୁତ୍ରର ମର୍ଯ୍ୟାଦା, ରାଜଧର୍ମର ମର୍ଯ୍ୟାଦା ପ୍ରତିଷ୍ଠିତ ହେଲା । ଏଣୁ ସେ ମର୍ଯ୍ୟାଦା ପୁରୁଷୋତ୍ତମ । ଏଥିରେ ଗମ୍ଭୀର ଭୂମିକା ଏବଂ ଐଶ୍ୱର୍ଯ୍ୟ ପ୍ରକଟିତ ହେଲା । କିନ୍ତୁ ଐଶ୍ୱର୍ଯ୍ୟର ମହନୀୟତା ସହିତ, କିଛି ସୁକୁମାର ଭାବ ସଖ୍ୟ, ବାତ୍ସଲ୍ୟ, ଦାସ୍ୟାଦି ଭକ୍ତିଭାବ, ଏବଂ ପ୍ରେମର ରସାନନ୍ଦ ଦ୍ରବଣକୁ ଦିବ୍ୟ ଲକ୍ଷଣ ରୂପେ ଗ୍ରହଣ କରିବାର ଦୃଷ୍ଟାନ୍ତ ନଥିଲା ଏଣୁ କୃଷ୍ଣାବତାରରେ ମଧୁରଭାବ, ମାଧୁର୍ଯ୍ୟ ଲୀଳାକୁ ସ୍ୱୀକାର କରି ତାକୁ ସେ ପ୍ରତିଷ୍ଠିତ କଲେ । ଏଣୁ ଶ୍ରୀକୃଷ୍ଣଙ୍କର ଦିବ୍ୟ ଜନ୍ମ ଓ କର୍ମ ସହିତ ତାଙ୍କର ଯୋଗେଶ୍ୱର ବିଶ୍ୱରୂପର ବିଭୂତି ମିଶିଲେ

ସୁଦ୍ଧା, ତାଙ୍କୁ ମାଧୁର୍ଯ୍ୟ ପୁରୁଷୋତ୍ତମ ରୂପେ ହିଁ ଯଥାର୍ଥ ଉପଲବ୍ଧି କରାଯାଇପାରେ । ଶ୍ରୀରାମଚନ୍ଦ୍ର ମର୍ଯ୍ୟାଦାପୁରୁଷୋତ୍ତମ ଓ ଶ୍ରୀକୃଷ୍ଣଚନ୍ଦ୍ର ମାଧୁର୍ଯ୍ୟ ପୁରୁଷୋତ୍ତମ ।



୮.୧୦.୨୦୦୨

ସ୍ରୋତରେ ଥାଇ ସ୍ରୋତକୁ କଳନା କରିବା ସମ୍ଭବ ନୁହେଁ । କାରଣ ସ୍ରୋତରେ ରହିବା ଅର୍ଥ ସ୍ୱୟଂ ସ୍ରୋତ ହୋଇଯିବା । କାହାକୁ କଳିବାକୁ ବା ଜାଣିବାକୁ ଯେଉଁ ବ୍ୟବଧାନର ପ୍ରୟୋଜନ ତାହାର ଅଭାବରେ ସଂସାର ପ୍ରବାହରେ ଥାଇ ସଂସାରକୁ ଜାଣିବା ସମ୍ଭବ ହୁଏ ନାହିଁ । ସେଥିପାଇଁ କୂଳକୁ ଉଠିଯାଇ ପାରିଲେ ସ୍ରୋତକୁ ଦେଖି ହେବ, ବୁଝି ହେବ । କିନ୍ତୁ ପାଣିକୁ ନ ଓହ୍ଲେଇବା ଯାଏଁ ତାର ଶୀତଳତା ତା'ର ତାଡ଼ନାର ପ୍ରତ୍ୟକ୍ଷ ଅନୁଭବ ମିଳିବ ନାହିଁ । ନୀର ସ୍ଥିତୀ, ତୀର ସ୍ଥିତି ପରସ୍ପର ଠାରୁ ପୃଥକ । ଗୋଟିକୁ ଗ୍ରହଣ କଲେ ଅନ୍ୟଟିକୁ ଛାଡ଼ିବାକୁ ହୁଏ । କିନ୍ତୁ କୌଣସି ଗୋଟିକରୁ ବିଚ୍ୟୁତ ନ ହୋଇ ଉଭୟରେ ବିସ୍ତୃତ ହୋଇଗଲେ ଉଭୟ ସ୍ଥିତିକୁ ଧାରଣ କରି ହେବ । ତୀରରୁ ନଦୀ ଗର୍ଭ ଯାଏ ଭେଦ କରିଥିବା କୌଣସି ପାହାଡ଼ ବିଚ୍ୟୁତିରେ ନୁହେଁ, ବିସ୍ତୃତିରେ ହିଁ ଉଭୟ ନୀର ସ୍ଥିତି ଓ ତୀର ସ୍ଥିତୀକୁ ଧାରଣ କରିଥାଏ । ଏଣୁ ଯେଉଁମାନେ ଜୀବନ୍ମୁକ୍ତ, ସେମାନେ ସଂସାରରେ ଥାଇ ସୁଦ୍ଧା ସଂସାରରୁ ମୁକ୍ତ ରହିଥାନ୍ତି । ଯାହା ତାଙ୍କ ବିଶାଳ ବିସ୍ତୃତିରେ ସଂଭବ ତାହା ହଂସର ବା ପଦ୍ମପତ୍ରଟିର ନିଲିପ୍ତିରେ ମଧ୍ୟ ସଂଭବ । ପାଣିରେ ଥାଇ ସେମାନେ ନୀର ସ୍ଥିତି ଓ ଓଦା ନହୋଇ ପରିଣାମତଃ ତୀରସ୍ଥିତିରେ ମଧ୍ୟ ସେମାନେ ରହି ପାରନ୍ତି । ରାଗ ଆସକ୍ତି, ସୁଖଦୁଃଖରେ ଜଡ଼ିତ କରେ, ରଂଜିତ କରେ । ରାଗର ବିପରୀତ ବୈରାଗ୍ୟ ମୁକ୍ତ କରେ ବ୍ୟବଧାନ ସୃଷ୍ଟିକରେ । ସଂସାରରେ ଥାଇ ଅସଂସାରର ଆସ୍ୱାଦ ଦେଇପାରେ । ଏଣୁ କିଛି ବୈରାଗ୍ୟ କିଛି ଅଭ୍ୟାସ ଜାରି ରଖିଲେ ସଂସାରରେ ଥାଇ ବନ୍ଧନରୁ ମୁକ୍ତହେବା ସମ୍ଭବ ହୋଇପାରେ । ମଝିରେ ମଝିରେ ସତ୍‌ସଂଗ ଧ୍ୟାନ, ଧାରଣା, ଆଦି କର୍ମରେ ତଟଉପରକୁ ଉଠି ଆସି ହୁଏ । କିନ୍ତୁ ତାହା ତଟସ୍ଥଭାବ ନୁହେଁ, କାରଣ ସେଇଠି ରହିହୁଏ ନାହିଁ । ପୁଣି ସ୍ରୋତ ଟାଣି ନିଏ ବା ନିଜେ ସ୍ରୋତ ଭିତରକୁ ଲଂଫମାରି ଓହ୍ଲେଇ ଯାଏ ତଟକୁ ଉଠିଥିବା ବ୍ୟକ୍ତି । ତୀର ଓ ନୀର ଭିତରେ ଏପରି ଯାତାୟାତ ହେବା କୌଣସି ସ୍ଥାୟୀ ଉପଲବ୍ଧି ଦିଏ ନାହିଁ । ହଂସର ଜ୍ୟେଷ୍ଠଭାଗ ପାଣି ଉପରେ ରହିଲା ପରି, ଯଦି ଚେତନାର ଜ୍ୟେଷ୍ଠଭାଗ ପ୍ରବାହରୁ ମୁକ୍ତ ରହିପାରେ ତାହେଲେ ତାହା ଏକ ଉପଲବ୍ଧି ।



୮-୧୦-୨୦୦୨

ଅଭିଳାଷ ଓ ଆବଶ୍ୟକତା ଏକା କଥା ନୁହେଁ । ଇଂରାଜୀରେ desire ଓ need. ଭିତରେ ମଧ୍ୟ ସେଇ ପାର୍ଥକ୍ୟ । ଜଣେ ଗାଡ଼ିଟିଏ କିଣିବାକୁ ଚାହୁଁଛି । କିନ୍ତୁ ଆଉ ଜଣେ ତା'ର ବ୍ୟବସାୟରେ ବହୁ ବିସ୍ତୃତ ଗସ୍ତ

ହେତୁରୁ ଗାଡ଼ିଟିକୁ କିଣୁଛି । ଜଣକ ପାଇଁ ଏହା କେବଳ desire ଅନ୍ୟ ପାଇଁ need. ଆମେ ପ୍ରାୟ ଏହି desire ଦ୍ୱାରା ପରିଚାଳିତ ହେଉଥାଉ । ତାହା ବିଭିନ୍ନ ଶାରୀରିକ ପ୍ରାଣିକ ଓ ମାନସିକ ବୃତ୍ତି, ଓ ପ୍ରବୃତ୍ତିରୁ ଉତ୍ପନ୍ନ ହୁଏ । ସେଥିରେ, ଲାଳସା, ଲିପ୍ସା, କାମନା, ବାସନା, ଅଭିଳାଷ ଓ ସେମାନଙ୍କ ସହିତ କାମ କ୍ରୋଧ ଲୋଭ ମୋହ ଆଦି ଜଡ଼ିତ ହୋଇଥାନ୍ତି । ଏଣୁ ଏହି desire ହିଁ ଅତଳ ଘଟ ସଦୃଶତା'ର ପରିତୃପ୍ତି ନାହିଁ । ଖାଇବା କ୍ରିୟାଟି ଆବଶ୍ୟକତା ହୋଇପାରେ । ଲାଳସା ବି ହୋଇପାରେ । ଶରୀର ରକ୍ଷା ପାଇଁ ନିୟମିତ ଖାଦ୍ୟ ଗ୍ରହଣ କରିବା ଏକ ଅନିବାର୍ଯ୍ୟ ଆବଶ୍ୟକତା ବା need କିନ୍ତୁ ପ୍ରୟୋଜନର ଅତିରିକ୍ତ କୌଣସି ଖାଦ୍ୟ ଲୋଭ ବା ଜିହ୍ୱା ଲାଳସାରେ ଖାଇବା ଏକ କାମନା ବା desire । ଶରୀର ପ୍ରାଣ ମନକୁ ଆଳ କରି କାମନା କେନ୍ଦ୍ର ସର୍ବଦା ସ୍ପନ୍ଦିତ ହେଉଥାଏ । ଏବଂ ସୀମିତ ପ୍ରୟୋଜନର ଅତିରିକ୍ତ ଭୋଗ ବାସନା, ସଂଭୋଗ କ୍ଷୁଧା, ଶରୀରକୁ ଉତ୍ତପ୍ତ କରେ, ପ୍ରାଣକୁ ମଥିତ ଓ ମନକୁ ଆନ୍ଦୋଳିତ କରେ । - ଗୋଟିଏ ହସ୍ତର ଅଂଜଳିରେ ଯାହା ଖାଦ୍ୟ ରହି ପାରିବ ତାହା ହିଁ ପ୍ରାକୃତିକ ନିୟମରେ ଶରୀରର ପ୍ରୟୋଜନ । ତାହେଲେ ଜଣେ କାହିଁକି ଏତେ ମାତ୍ରାରେ ଖାଦ୍ୟ ସଂଗ୍ରହ କରେ ସଂଚୟ କରେ ? କେଉଁ ପ୍ରୟୋଜନ ଦୃଷ୍ଟିରୁ ସେ ଏପରି କରିଥାଏ ଓ ତଦ୍ୱାରା ଆଶ୍ୱସ୍ତ ଓ ସନ୍ତୁଷ୍ଟବୋଧ କରି ଥାଏ ? ସେ କେବଳ ସେଇ ଅତଳଘଟକୁ ପୂର୍ଣ୍ଣ କରିବାର ଚିରାଚରିତ ବିଫଳ ପ୍ରୟାସରେ ମାତି ଥାଏ । ପ୍ରକୃତିକ ବିଚିତ୍ର ବିଧାନରେ ମଣିଷ ଭଳି ବୁଦ୍ଧିମାନ ପ୍ରାଣୀ ଯଦି ବୁଝିଯାନ୍ତା ତା'ହେଲେ ଅନ୍ୟ ଜନ୍ତୁ ଭଳି ସେ ଆଉ ଅହରହ ଖାଦ୍ୟ ପଛରେ ଗୋଡ଼ାନ୍ତା ନାହିଁ । ସେଥିପାଇଁ ତାର ଅତୃପ୍ତ କାମନା କେନ୍ଦ୍ରକୁ ସଦା ପ୍ରଜ୍ୱଳିତ ରଖିବା ପ୍ରକୃତିର ନିୟମ । ଇତର ପ୍ରାଣୀଟିଏ ସୀମିତ ତୃପ୍ତିରେ ସ୍ଥିର ହୋଇଯାଏ । ମଣିଷ ଅସୀମ ଅତୃପ୍ତିରେ ଅସ୍ଥିର ତାପିତ ହେଉଥାଏ । ଆହୁରି ବିଚିତ୍ର କଥା ହେଲା ଯେ ଏହି ଅସ୍ଥିରତା ପଛରେ ନିଜକୁ ନିଜେ ଅତିକ୍ରମ କରିବାର ସମ୍ଭାବନା ମଧ୍ୟ ଲୁକ୍କାୟିତ ରହିଥାଏ । ମାନବ ବିକାଶର ଚାବିକାଠି ଏଇ ମୌଳିକ ଅସନ୍ତୋଷ । ଯାହା ପ୍ରାକୃତିକ ନିୟମରେ ସାଧାରଣ ପ୍ରାଣୀର ପ୍ରୟୋଜନ ବା need ମଣିଷ ପାଇଁ ତାର ପରିସର ଅନେକ ବିସ୍ତୃତ । ପ୍ରାଣୀର ନିମ୍ନତମ ପ୍ରୟୋଜନ ସ୍ୱରୂପ ଗୋଟିଏ ଗୁଂଫାରେ ସେ ସୀମିତ ରହିଗଲେ । ଏତେ ମାତ୍ରାରେ ସ୍ଥାପତ୍ୟ ଓ ନଗର ଶିଳ୍ପର ବିକାଶ ସମ୍ଭବ ହୋଇନଥାନ୍ତା । ଏଣୁ ମଣିଷ ପାଇଁ need ନିର୍ଣ୍ଣୟ କରିବା ପାଇଁ ସାଧାରଣ ନିୟମ ପ୍ରୟୋଜନ ନୁହେଁ । ସାଧାରଣ ପ୍ରାଣୀମାନବର ଦେବରମାନବ ହେବାପାଇଁ ଯେଉଁ ଅଭିପ୍ସା, ତାହା ପ୍ରାୟୋଜନ ବୋଧ ଦ୍ୱାରା ନିୟମିତ ନୁହେଁ । ମାନବ ଜୀବନର ବହୁ ଭୂମିରେ ବହୁ ପ୍ରକାର ପ୍ରୟୋଜନ ସ୍ୱୀକାର ନ କଲେ ମାନବର ବୈଶିଷ୍ଟ୍ୟକୁ ଅବଜ୍ଞା କରାହୋଇଯିବ । ଏଣୁ ଅତିରିକ୍ତ ପ୍ରୟୋଜନକୁ କେବଳ ଲାଳସା କହି ପ୍ରତ୍ୟାହାର କଲେ କିଛି ସଂଯମ ଆସିବ ନିଶ୍ଚୟ କିନ୍ତୁ ଏହାକୁ ଓ ଏହା ପଶ୍ଚାତ୍‌ରେ ଥିବା ଅଗ୍ନିକୁ ଠିକ୍ ମାର୍ଗରେ ଦୀପିତ କରି ପାରିଲେ ତାହା ମାନବ ଚେତନାର ଓ ତାର ସାମଗ୍ରିକ ବିକାଶରେ ସହାୟକ ହେବ । ଗୁରୁ ଆଶ୍ରିତ ନ ହେଲେ କାମନା ବାସନାର ଅଗ୍ନି ଓ ଆବଶ୍ୟକତାର ଇଂଧନର ସ୍ତୂପ ଭିତରୁ ଅଭିପ୍ସାର ଶିଖା ଓ ପ୍ରାପ୍ତିର ସଂକଳ୍ପକୁ ବାଛିନେବା ସହଜ ନୁହେଁ ।



## ୧-୧୨-୨୦୦୨

ବେଳେବେଳେ କିଛି ବିଶେ ନାହିଁ । ସାଧାରଣ ଜୀବଟିଏ ସାଧାରଣ ମନ ପ୍ରାଣ ଶରୀରକୁ ନେଇ ବଞ୍ଚିଛି । ମହତର ବା ବୃହତର ସମ୍ଭାବନା କିଛି ନାହିଁ । ଶରୀରର ଅବୟବ, ଇନ୍ଦ୍ରିୟ ସକଳ, କ୍ଷୁଧା ତୃଷା, ନିଦ୍ରା ଭୟ କ୍ରୋଧ, ଦ୍ୱେଷ କାମ ଲୋଭ ମୋହ ତାକୁ ବାନ୍ଧି ରଖିଛନ୍ତି । ଏଥିରୁ କ'ଣ ସେ ମୁକ୍ତ ହୋଇ ପାରିବ ? କେମିତି ? – କାହା ପାଖରୁ ? – ଫାଶ ତ' ଅସଂଖ୍ୟ । ଗୋଟିକରୁ ହୁଗୁଳିଲେ ଅନ୍ୟଟି ଭିଡ଼ି ଧରିବ । ଏଥିରେ ବନ୍ଧା ପଡ଼ିଲେ ମୁକୁଳିବାର ସଂଭବନା ନାହିଁ । କାରଣ ଶରୀର ଥିବା ପର୍ଯ୍ୟନ୍ତ ମନ ପ୍ରାଣ କେନ୍ଦ୍ରରେ ପ୍ରତି ମୁହୂର୍ତ୍ତରେ ପାଶ ସୃଷ୍ଟି ହେଉଥାଏ । ସେଥିରେ ସେ ଛନ୍ଦି ହୋଇ ଯାଉଥାଏ । ବୁଢ଼ିଆଣୀ ତା' ନିଜ ଜାଲରେ ନିଜେ ବନ୍ଦୀ ହେଲା ପରି । ଆଉ ଗୋଟିଏ ଦୃଷ୍ଟିରୁ ଜାଲ ବୁଣିବା ଓ ଜାଲରେ ଛନ୍ଦିହେବା ବୁଢ଼ିଆଣୀ ଜୀବନର ଅନିବାର୍ଯ୍ୟତା ଓ ସାର୍ଥକତା । ଏହା ନ କରି ସତେ ବୁଢ଼ିଆଣିଟି କ'ଣ ବା କରି ପାରିବ ? ଜାଲ ସେ ବୁଣେ ତା'ଭିତରେ ସ୍ୱେଚ୍ଛାରେ ଥାଏ । ସେଥିରୁ ସେ ବଞ୍ଚିବାର୍ ଉପାଦାନ ସଂଗ୍ରହ କରେ । କିନ୍ତୁ ଯେକୌଣସି ମୁହୂର୍ତ୍ତରେ ସେ ଜାଲକୁ ଅତିକ୍ରମ କରି, ଅକ୍ଳେଶରେ ଓ ଖୁବ୍ ସ୍ୱାଭାବିକ ଭାବରେ ବାହାରକୁ ଚାଲି ଯିବା ପାଇଁ ସମ୍ଭବ । ଦେଖିଲେ ମନେ ହୁଏ ସତେ ବା ଜାଲ ତାକୁ କେତେବେଳେ ବାନ୍ଧି ରଖି ନଥାଏ । ସେ ସଦାମୁକ୍ତ ଥାଇ ସ୍ୱେଚ୍ଛାରେ ଜାଲରେ ବାସ କରିଥାଏ । ଜାଲଟି ନିଶ୍ଚୟ ତାର ସର୍ଜନା । ଜାଲ ତା'ର କିନ୍ତୁ ସେ କସ୍ମିନ୍ କାଳେ ଜାଲର ନୁହେଁ । ସେ ଚାହିଁଲେ ଜାଲକୁ ପରିହାର କରି, ବର୍ଜନ କରି, ଚାଲିଯାଇପାରେ; କିମ୍ବା ଚାହିଁଲେ ଜାଲଟିକୁ ଆହରଣ କରି ଆତସ୍ତକରି ନିଜ ସହିତ ନେଇ ଯାଇପାରେ । ପରିସ୍ଥିତି ଅସ୍ୱାଭାବିକ ନହେଲେ ବୁଢ଼ିଆଣି ଜାଲ ଛାଡ଼ି ଯାଏ ନାହିଁ । ନିଜର ନିରାପତ୍ତା ବା ଉଦ୍ଧାର ପାଇଁ ବ୍ୟସ୍ତ ଥିବା ଅବସ୍ଥାରେ ସେ ଜାଲକୁ ଛାଡ଼ି ଚାଲିଯାଏ । କିନ୍ତୁ ସ୍ୱାଭାବିକ ସହଜ ଅବସ୍ଥାରେ ଜାଲଟିକୁ ସେ ଭକ୍ଷଣ କରେ, ଅର୍ଥାତ୍ ଜାଲଟିକୁ ତାର ଚୂଡ଼ାନ୍ତ ପରିଣତିରେ ପହଞ୍ଚାଇ ନିଜେ ସ୍ଥିର ରହେ । ବ୍ୟକ୍ତିକୁ ଘେରି ରହିଥିବା ସଂସାର ଜାଲ ସାଧାରଣ ଦୃଷ୍ଟିରେ ତା ଉପରେ ଆରୋପିତ ଏକ ଅବସ୍ଥା । କିନ୍ତୁ ସୂକ୍ଷ୍ମ ଦୃଷ୍ଟିରେ ଯେଉଁ ସଂସାର ବ୍ୟୂହରେ ସେ ବାସ କରେ ସୁଖ ଦୁଃଖ ହର୍ଷ ବିଷାଦ ଭୋଗକରେ ତାହା କେବଳ ତାର ସୃଷ୍ଟି । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଜଗତରେ ରହନ୍ତି, ତାର କାରଣ ହେଲା ପ୍ରତ୍ୟେକ ବ୍ୟକ୍ତି ନିଜର ସଂସାରକୁ ରଚନା କରେ । ପରିବେଶ, ପରିବେଷ୍ଟନୀର ବସ୍ତୁ ବ୍ୟକ୍ତି ଘଟଣା ଉପାଦାନକୁ କ'ଣ ସେ ସୃଷ୍ଟିକରେ ? ନା, କିନ୍ତୁ ବସ୍ତୁ, ବ୍ୟକ୍ତି ତା' ଜୀବନରେ ଯେଉଁ ଅର୍ଥ ବହନ କରନ୍ତି, ଏବଂ ସେହି କାରଣରୁ ସେମାନଙ୍କର ଅସ୍ତିତ୍ୱକୁ ସେ ସ୍ୱୀକାର କରେ, ସେହି ଅର୍ଥ ସେ ନିଜେ ପ୍ରଦାନ କରେ । ସେ ଦୃଷ୍ଟିରୁ ଗୋଟିଏ ଉଦ୍ଭିଦର ଫଳକୁ ସେ ଗ୍ରହଣକଲେ, ସେ ତା ପାଇଁ ଶସ୍ୟ ଗ୍ରହଣ ନକଲେ ତାହା ବିଷବୃକ୍ଷ । ପରିବେଶ ଓ ପରିବେଷ୍ଟନୀର ପ୍ରତ୍ୟେକ ଅଣୁର ତାତ୍ପର୍ଯ୍ୟ ତା' ପାଇଁ ସେ ନିଜେ ପ୍ରଦାନ କରେ । ତାତ୍ପର୍ଯ୍ୟ ବିନା, କୌଣସି ବ୍ୟକ୍ତି ବା ବସ୍ତୁର ସ୍ଥିତି ରହେନାହିଁ, କାରଣ ସେ ତାକୁ ସ୍ୱୀକାର କରେ ନାହିଁ, ବା ନିଜ ସଂସାରରେ ସର୍ଜନା କରେ ନାହିଁ । ଦେଶକାଳରେ ସେ ବିଚରଣ କରେ ସତ' କିନ୍ତୁ ଦେଶକାଳର ସ୍ଥିତିକୁ ସେ ତା'ଚେତନାରେ ସ୍ୱୀକାର ନ କଲେ ତା'ର ମଧ ଅସ୍ତିତ୍ୱ ନାହିଁ । ଏଣୁ ସେ ସ୍ୱୟଂ କେନ୍ଦ୍ରରେ ରହି ଏ ବିଶାଳ ବିଶ୍ୱକୁ ଅର୍ଥ ପ୍ରଦାନ କରେ । ତାହାର ପ୍ରସାରିତ ଚେତନାରେ ଏ ସମସ୍ତ ଅବଧାରିତ ହୋଇ ରହିଥାନ୍ତି । ବ୍ୟକ୍ତିର ଶାରୀରିକ ପତନ ପରେ କ'ଣ ବିଶ୍ୱର ପତନ ହୋଇଥାଏ ?

ହୁଏ, ତା'ର ଆପେକ୍ଷିକ ବିଶ୍ୱର ପତନ ହୁଏ; ଏବଂ ନିରପେକ୍ଷ ବିଶ୍ୱ ଅପ୍ରମେୟ ଅନିର୍ଦ୍ଦେଶ୍ୟ ସ୍ଥିତି ଅସ୍ଥିତି ନିର୍ବିଶେଷ ॥



**୧୩.୫.୨୦୦୩**

ପୃଥିବୀର ଦୁଇଟି ଯୁଗପତ୍ ଗତି ଗୋଟିଏ ଆହ୍ନିକ ଗତି । ଅନ୍ୟଟି ବାର୍ଷିକ ଗତି । ପୃଥିବୀ ଏକ ବର୍ତ୍ତୁଳ ପିଣ୍ଡ ତାର ଏକ ଅକ୍ଷଦଣ୍ଡ ଅଛି । ତାହା ସ୍ଥୁଳ ଦୃଷ୍ଟିରେ କୌଣସି ବସ୍ତୁରୂପ ନୁହେଁ । ତାହା ଏକ କଳ୍ପିତ ରେଖା । ତାର ଗୋଟିଏ ପ୍ରାନ୍ତରେ ଉତ୍ତର ମେରୁ ଅନ୍ୟ ପ୍ରାନ୍ତରେ ଦକ୍ଷିଣ ମେରୁ । ଏହି ଅକ୍ଷଦଣ୍ଡ ଚାରିପଟେ ଥରେ ବୁଲି ଆସିବାକୁ ପୃଥିବୀ ପୃଷ୍ଠର ଯେକୌଣସି ବିନ୍ଦୁକୁ ୨୪ ଘଣ୍ଟା ସମୟ ଲାଗେ । ନଟୁ ପରି ଅନନ୍ତକାଳରୁ ଅଦ୍ୟାବଧି ଘୂରୁଥିବା ପୃଥିବୀ ମୁହୂର୍ତ୍ତକ ପାଇଁ ସୁଦ୍ଧା ତାର ଆହ୍ନିକ ଗତିକୁ ଶିଥିଳ କରି ନାହିଁ । ଏହି 'ଗତି' ସକାଶେ ଦିନ ରାତି ହୁଏ; କାରଣ ବର୍ତ୍ତୁଳ ପୃଥିବୀର ଯେଉଁ ଭାଗ ସୂର୍ଯ୍ୟ ଆଡ଼କୁ ଖୋଲାରହେ ସେଠାରେ ଦିବାଲୋକ ଏବଂ ତାର ବିପରୀତ ଭାଗରେ ରାତ୍ରି ହୋଇଥାଏ । ଏଥିରେ ଆଦୌ ବ୍ୟତିକ୍ରମ ହୁଏ ନାହିଁ । ଅନ୍ୟ ଗତିଟି ହେଲା ବାର୍ଷିକ । ସୌରଜଗତରେ ପୃଥିବୀ ସୂର୍ଯ୍ୟ ଚାରି ପାଖେ ଗୋଟିଏ ନିର୍ଦ୍ଦିଷ୍ଟ କକ୍ଷ ରେଖା ଉପରେ ପରିକ୍ରମା କରୁଥାଏ । ଏ କକ୍ଷରେଖାରୁ ତିଳେ ମାତ୍ର ବିଚ୍ୟୁତ ହୁଏ ନାହିଁ ପୃଥିବୀ । କକ୍ଷରେଖାଟି ବୃତ୍ତ ନୁହେଁ । ଏହା ଏକ ଚେପ୍ଟା ବୃତ୍ତ ବା ଇଲିପ୍ସ । ଜ୍ୟାମିତିକ ତଥ୍ୟ ଅନୁସାରେ ଏହାର ଦୁଇଟି କେନ୍ଦ୍ର ଗୋଟିକରେ ସୂର୍ଯ୍ୟ ଅବସ୍ଥିତ ଓ ଅନ୍ୟଟି ଖାଲି । ଏଣୁ ପୃଥିବୀ ତା' କକ୍ଷରେ ପରିକ୍ରମା କଲାବେଳେ ବର୍ଷର କିଛି ସମୟ ସୂର୍ଯ୍ୟର ନିକଟବର୍ତ୍ତୀ ହୁଏ ଏ... ଅନ୍ୟ ସମୟରେ ଦୂରବର୍ତ୍ତୀ ହୁଏ । କିନ୍ତୁ ଏ କକ୍ଷ ପଥରୁ ମଧ ପୃଥିବୀ କସ୍ମିନ୍ କାଳେ ତିଳେ ମାତ୍ର ବିଚ୍ୟୁତ ହୁଏ ନାହିଁ । ପୃଥିବୀ ସୌର ଜଗତର ପରିବାର ଭୁକ୍ତ । ଏବଂ ଏ ଦୁଇଟି ଗତି ଦ୍ୱାରା ସୂର୍ଯ୍ୟପ୍ରତି ପୃଥିବୀର ଆନୁଗତ୍ୟ ପ୍ରମାଣିତ ହୁଏ । କିନ୍ତୁ ପୃଥିବୀର ବୈଶିଷ୍ଟ୍ୟ ହେଲା ଆଉ ଏକ ଆନୁଗତ୍ୟ । ତାହା ହେଲା ବହୁଦୂରବର୍ତ୍ତୀ ଅବିଚଳିତ ଧ୍ରୁବ ତାରା ପ୍ରତି ତାର ବିନମ୍ର ଏକାଗ୍ରତା । ପୃଥିବୀର ମେରୁଦଣ୍ଡ ଦକ୍ଷିଣ ମେରୁ ସହିତ ଉତ୍ତର ମେରୁକୁ ସଂଯୁକ୍ତ କରୁଥିବା ରେଖା ଚିରକାଳ ଧ୍ରୁବ ସତ୍ୟ ଆଡ଼କୁ ସମର୍ପିତ । ଅନନ୍ତ କାଳରୁ ଅଦ୍ୟାବଧି ପୃଥିବୀର ସୃଷ୍ଟି ମୁହୂର୍ତ୍ତରୁ କେବେହେଲେ ଉତ୍ତର ମେରୁ ଧ୍ରୁବ ତାରାରୁ ବିଚ୍ୟୁତ ହୋଇନାହିଁ । ପୃଥିବୀର ଆହ୍ନିକ ଗତି ଅଥବା ବାର୍ଷିକ ଗତି ସତ୍ତ୍ୱେ ଧ୍ରୁବ ପ୍ରତି ତାର ଆନୁଗତ୍ୟ ଏକ ଅବିଚଳିତ ସତ୍ୟ । ଏହି କାରଣରୁ ପୃଥିବୀର ଅକ୍ଷଦଣ୍ଡ ତାର କକ୍ଷରେଖା ସହିତ ଚିରକାଳ ଏକ ୨୩ ୧/୨ ଡ଼ିଗ୍ରି କୋଣ ଅଙ୍କନ କରି ରହିଥାଏ । ସତେବା ବହୁଉର୍ଦ୍ଧ୍ୱରେ ବହୁଦୂରରେ ଅବିଚଳିତ ବିଦ୍ୟମାନ ଥିବା ଧ୍ରୁବସତ୍ୟକୁ ବିନୟ ପୂର୍ବକ ପ୍ରଣତି ଜ୍ଞାପନ କରୁଥାଏ । ଏହି ବିନମ୍ରତା ଏହି ଦ୍ୱୈତ ଆନୁଗତ୍ୟ ହିଁ ପୃଥିବୀର ବୈଶିଷ୍ଟ୍ୟ । ତାର ଋତୁ ଚକ୍ରର ପୁନରାବୃତ୍ତ ବୈଚିତ୍ର୍ୟର କାରଣ । ଏଭଳି ଏକ କୋଣ ଅଂକନ ନ କରି ଯଦି ପୃଥିବୀର ଅକ୍ଷଦଣ୍ଡ ତାର କକ୍ଷପଥ ସହିତ ଲମ୍ବ ରୂପେ ଅବସ୍ଥିତ ହୋଇଥାନ୍ତା ତା'ହେଲେ ପୃଥିବୀରେ ଋତୁ ପରିବର୍ତ୍ତନ ହୁଅନ୍ତା ନାହିଁ । କେବଳ ଗ୍ରୀଷ୍ମ ଏବଂ ଶୀତ ସମଗ୍ର ପୃଥିବୀରେ ସମଭାବରେ ଅନୁଭୂତ ହୁଅନ୍ତା । ସୂର୍ଯ୍ୟ କେନ୍ଦ୍ରରୁ ଦୂରକୁ ଚାଲିଗଲେ ଶୀତ ଓ ନିକଟକୁ ଆସିଲେ ଗ୍ରୀଷ୍ମ ଅନୁଭୂତ ହୁଏ । କିନ୍ତୁ ଦକ୍ଷିଣ ମେରୁ ମଣ୍ଡଳ ବା ଉତ୍ତର

ମେରୁମଣ୍ଡଳ ସୂର୍ଯ୍ୟାଲୋକ ଆଡ଼କୁ ଉନ୍ମୁଖ ହୋଇ, ଋତୁଚକ୍ରକୁ ଏକ ଦୋଳାୟମାନ ପୁଷ୍ପହାର ସଦୃଶ ପୃଥିବୀ ପୃଷ୍ଠରେ ଚାଳିତ କରି ଏତେ ବୈଚିତ୍ର୍ୟ ସୃଷ୍ଟି କରି ନଥାନ୍ତା ।

ସେହିପରି ଜୀବନରେ ସଂସାର ପ୍ରତି ଆନୁଗତ୍ୟ ଅନିବାର୍ଯ୍ୟ ହୋଇ ଥିଲେ ସୁଦ୍ଧା, ସେହି ବନ୍ଧନକୁ ସ୍ୱୀକାର ପୂର୍ବକ ସତ୍ୟ ପ୍ରତି ବିନମ୍ର ଏବଂ ଅବିଚଳିତ ଆନୁଗତ୍ୟ ରହିଲେହିଁ ଏକ ମହତ୍ତର ବୃହତ୍ତର ସମ୍ଭାବନାମୟ ଜୀବନ ଉପଲବ୍ଧ ହୋଇପାରିବ । ମାନବ ଇତିହାସରେ ମହାପୁରୁଷ, କବିପୁରୁଷ, ଯୋଗୀପୁରୁଷମାନଙ୍କ ଜୀବନରେ ଏହି ଦ୍ୱୈତ ଆନୁଗତ୍ୟ ସୁସ୍ପଷ୍ଟ । ଅସ୍ପୃହାବନ୍ତ ଜୀବନରେ ସାଧାରଣ ମଣିଷର ମଧ୍ୟ, କିଛି ଉତ୍ଥାନ, କିଛି ଅସାଧାରଣ ସିଦ୍ଧି ଏହି ଦୂରସ୍ଥ ଧ୍ରୁବସତ୍ୟ ପ୍ରତି ଆନୁଗତ୍ୟର ପରିଣାମ । ଏ ଦ୍ୱିତୀୟ ଆନୁଗତ୍ୟ ନଥିଲେ ମଣିଷ କେବଳ ଜୀବଧର୍ମରେ ଦ୍ୱିପଦ ପ୍ରାଣୀଟିଏ ପରି ବଞ୍ଚିରହିଥାନ୍ତା । ଭୋଜନ ପ୍ରଜନନ ସର୍ବସ୍ୱ ଇତର ଜନ୍ତୁ ପରି ପ୍ରକୃତି ପ୍ରତି ଅନୁଗତ ହୋଇ ରହିବା ମାନବ ଧର୍ମ ନୁହେଁ । ଜଡ଼ଧର୍ମ ବା ଜୀବଧର୍ମରେ ମାନବ ସୀମିତ ହୋଇ ରହିଯିବା ତାର ଏକ ବିଡ଼ମ୍ବନା ଏକ ବୈଫଲ୍ୟ । ଏହାର ଊର୍ଦ୍ଧ୍ୱରେ ଏକ ଆଲୋକିତ ଉତ୍ତରିତ ଦେବ ଧର୍ମରେ ତାର ସମସ୍ତ ସମ୍ଭାବନାକୁ ବିକଶିତ କରିବା ହିଁ ମାନବ ଧର୍ମ ।



## ୧୧-୯-୨୦୦୩

ଭାରତବର୍ଷର ସବୁଠାରୁ ବିପଜ୍ଜନକ ବ୍ୟକ୍ତି ହେଉଛନ୍ତି ଅରବିନ୍ଦ ଘୋଷ, କାରଣ ସେ କେବେ ହେଲେ ହସନ୍ତି ନାହିଁ । ନେଭିନ୍ ସନ୍ ନାମଧେୟ ଜଣେ ବିଦେଶୀ ପତ୍ରକାର ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଶ୍ରୀ ଅରବିନ୍ଦଙ୍କୁ ଦେଖି ଏହି ମନ୍ତବ୍ୟ ଦେଇଥିଲେ । ହିମାଦ୍ରୀ ପରି ଶ୍ରୀ ଅରବିନ୍ଦଙ୍କ ବିଶାଳ ବ୍ୟକ୍ତିତ୍ୱ ପରବର୍ତ୍ତୀ କାଳରେ ତାଙ୍କର ଅନ୍ତରଂଗ ପରିସରରେ ମଧ୍ୟ ସମ୍ଭ୍ରମ ଜନିତ ଭୀତି ସଂଚାର କରୁଥିଲା । ସେ ତାଙ୍କର ଅନବଦ୍ୟ କୌତୁକ ପରିହାସ ପାଇଁ, ଚଟୁଳ ରସିକତା ପାଇଁ ବନ୍ଧୁ ପରିଜନଙ୍କ ପାଖରେ ପରିଚିତ ଥିଲେ । ତତ୍ ସତ୍ତ୍ୱେ ତାଙ୍କ ପାଖ ପଶିବାକୁ କାହାରି ସାହସ ହେଉ ନଥିଲା । ସାଧକମାନଙ୍କୁ ସହଜ କରିବାକୁ ଯାଇ ସେ ନିଜେ ସହଜ ହୋଇଯାଉଥିଲେ । ତାଙ୍କଠାରୁ ଅନ୍ୟମାନଙ୍କର ଦୂରନ୍ତ ବ୍ୟବଧାନକୁ ନିଜେ ଅତିକ୍ରମ କରି ତାଙ୍କ ପାଖକୁ ଚାଲିଆସୁଥିଲେ । କିନ୍ତୁ ପର ମୁହୂର୍ତ୍ତରେ ପୁଣି ଆକାଶ ପରି ବିଶାଳ ଗମ୍ଭୀର ହୋଇଯାଉଥିଲେ, ଘୁଞ୍ଚି ଯାଉଥିଲେ ଅପହଞ୍ଚ ଦିଗନ୍ତକୁ । ଏକଦା ଜଣେ ଶ୍ରୋତା କୌଣସି ଏକ ପାଠଚକ୍ରରେ ପଚାରିଲେ "ଶ୍ରୀ ଅରବିନ୍ଦ ଓ ଶ୍ରୀ ମା" ବାରଂବାର ଆମକୁ କହିଛନ୍ତି ଯେ ସେମାନେ ଏକ ଓ ଅଭିନ୍ନ ସତ୍ତା, ଆଦୌ ପୃଥକ୍ ନୁହନ୍ତି । ତେବେ କାହିଁକି ଯେତେବେଳେ ଦେଖିଲେ ଶ୍ରୀମା ହସୁଥାନ୍ତି, ଏତେ ଆପଣାର ମନେ ହୁଅନ୍ତି । ତାଙ୍କ ପାଖ ଛାଡ଼ିବାକୁ ମନ ହୁଏ ନାହିଁ । ତାଙ୍କୁ ଛୁଇଁ ଦେବାକୁ ତାଙ୍କ ସ୍ପର୍ଶ ପାଇବାକୁ ଇଚ୍ଛା ହୁଏ । ଅଥଚ ଶ୍ରୀ ଅରବିନ୍ଦଙ୍କ ପାଖ ପଶିବାକୁ ଡ଼ରମାଡ଼େ ପ୍ରଣାମ କରି ମା'ଙ୍କ ପାଖକୁ ଫେରି ଆସିବାକୁ ପ୍ରବୃତ୍ତି ହୁଏ । ଗୋଟିଏ ଚେତନା ଗୋଟିଏ ସତ୍ତାରେ ଏତେ ଭିନ୍ନତା କାହିଁକି ଦେଖାଯାଏ ?" ଯେଉଁ ଉତ୍ତର ମିଳିଥିଲା ତାହା ପ୍ରାୟ ଏହିପରି, "ପ୍ରଶାନ୍ତ ମହାସାଗରର ବ୍ୟାପ୍ତି ଗୋଟିଏ କିନ୍ତୁ ରୂପ ଦୁଇଟି । ଗୋଟିଏ ତାର ଚିର ଦୋଳାୟିତ, ହାସ୍ୟମୟ, ଲାସ୍ୟମୟ ତରଙ୍ଗ ଏବଂ ଅନ୍ୟଟି ତାର ଗଭୀର, ଗମ୍ଭୀର ନିସ୍କମ୍ପ ଗର୍ଭ । କେନ୍ଦ୍ରରେ ପ୍ରଶାନ୍ତ ମହାସାଗର ସତକୁସତ ପ୍ରଶାନ୍ତ,

ଶୀତଳ ଓ ବିଶାଳ, କିନ୍ତୁ ବେଳାଭୂମିରେ ସେଇ ପ୍ରଶାନ୍ତ ମହାସାଗର ଚଳଚଞ୍ଚଳ ଲୀଳାମଧୁର । ତାର ଗର୍ଭ ଯେପରି ଅକଳନୀୟ ମହାଦେଶମାନଙ୍କ ତଟଦେଶରେ ବିସ୍ତୃତ ତରଙ୍ଗମାଳା ମଧ ତଦ୍ରୂପ ଅକଳନୀୟ । କିନ୍ତୁ ଉଭୟେ ଏକ ଏବଂ ଅଭିନ୍ନ ସତ୍ତା । ରୂପ ଭିନ୍ନ ଆଚରଣ ଭିନ୍ନ । ଶ୍ରୀ ଅରବିନ୍ଦ ସାଗରର ଶାନ୍ତ ଶୀତଳ ସମାହିତ ଗଭୀର ଗର୍ଭ; ଶ୍ରୀମା ବିସ୍ତୃତ ବେଳାଭୂମିରେ ଲୀଳାୟିତ ତରଙ୍ଗମାଳା । ତରଙ୍ଗ ଆକୃଷ୍ଟ କରେ, ସିକ୍ତ ଶୀତଳ କରେ, ପ୍ରୀତି ସଂଚାର କରେ । ସାଗର ଗର୍ଭ ଅଭିଭୂତ କରେ ସ୍ତବ୍ଧ ବିହ୍ୱଳ କରେ ଭୀତି ସଂଚାର କରେ ।"

ଶାସ୍ତ୍ର କହନ୍ତି ଯେ ସୃଷ୍ଟି ତତ୍ତ୍ୱରେ ପୁରୁଷ ପଙ୍ଗୁ ଓ ନିଷ୍କ୍ରିୟ ଦ୍ରଷ୍ଟା, ପ୍ରକୃତି ଅଂଧ ଓ କ୍ରିୟାଶୀଳ । ପୁରୁଷ ଅଚଳ ଶକ୍ତିମାନ ପ୍ରକୃତି ଚଳମାନ ଶକ୍ତି । ବସ୍ତୁ ବିଜ୍ଞାନ ମଧ ଦୁଇଟି ଅବସ୍ଥାକୁ ସ୍ୱୀକାର କରେ ଦୁଇଟି ତତ୍ତ୍ୱକୁ ସ୍ୱୀକାର କରେ ଗୋଟିଏ Dynamic ଅନ୍ୟଟି Static ଏ ଦୁଇଟି ତତ୍ତ୍ୱ ଦୁଇଟି ଶକ୍ତି । ଏମାନଙ୍କର ସମନ୍ୱୟରେ ଏ ପରମ ପରିବ୍ୟାପ୍ତ ବିଶ୍ୱ ରଚିତ ଧାରିତ ଓ ବିଲୟ ପ୍ରାପ୍ତ ହୁଏ । ବିଜ୍ଞଜନମାନେ, ଦ୍ରଷ୍ଟାପୁରୁଷମାନେ କହନ୍ତି । ଏକ ଏବଂ ଅଦ୍ୱିତୀୟ ଚେତନା ହିଁ, ସ୍ୱେଚ୍ଛାରେ ଚାହିଁଲେ "ଜାୟା ମେଽସ୍ୟାତ୍" ଏବଂ ଦୁଇରେ ବିଭାଜିତ ହେଲେ । ସ୍ଥିତିରେ ଗତି ସଂଚାର କଲେ । ଗତିଶୀଳତାରେ ସେହି ଚେତନା ହିଁ କ୍ରମ ବିବର୍ତ୍ତିତହୋଇ ବିସ୍ତୃତ ହୋଇଗଲା । – ଉଭୟ ଗତି ଓ ସ୍ଥିତୀର ସମନ୍ୱୟ ହିଁ ପୂର୍ଣ୍ଣରୂପ । ଉଭୟଙ୍କର ଆଦିବିନ୍ଦୁ ସେଇ ଏକ ଓ ଅନନ୍ୟ ଚେତନା । ଏଣୁ ଶ୍ରୀ ଅରବିନ୍ଦ ଓ ଶ୍ରୀ ମା'ଙ୍କୁ ଏକ ଏବଂ ଅଭିନ୍ନ ଚେତନା ରୂପେ ବୁଝିବା ହିଁ ତାଙ୍କର ସ୍ୱରୂପକୁ ବୁଝିବା ।



## ୧୨.୧୨.୨୦୦୩

ଦୃଷ୍ଟି ପ୍ରସାରିତ ହୋଇ ଯେଉଁଠି ଅଟକିଯାଏ ତାହା ଦିଗନ୍ତ । ଦୃଷ୍ଟିର ସୀମା ହିଁ ଦିଗନ୍ତ । ସେହିପରି ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କ ମଧ ସୀମା ନିର୍ଦ୍ଧାରିତ ହୋଇ ରହିଛି । ସୀମା ସ୍ପର୍ଶ କଲେ ଦିଗନ୍ତର ଅନୁଭବ ହୁଏ । ବିସ୍ତାରର ଅନୁଭବ ହୁଏ । କିନ୍ତୁ ସୀମାକୁ ଅସୀମର ଦ୍ୱାର ଦେଶରେ ପହଞ୍ଚାଇ ଦିଏ ଦିଗନ୍ତ । ଦିଗନ୍ତ ସସୀମ ଓ ଅସୀମର ମଧରେଖା । ପୃଥିବୀ ଓ ଆକାଶର ସ୍ପର୍ଶରେଖା । ଦିଗନ୍ତ ପୃଥିବୀର ନୁହେଁ, କି ଆକାଶର ବି ନୁହେଁ ଅଥଚ ଉଭୟକୁ ଅଦ୍ଭୁତ ଭାବରେ ଧାରଣ କରିଥାଏ । ଦିଗନ୍ତ ବସ୍ତୁ ନୁହେଁ, ବିନ୍ଦୁ ନୁହେଁ । ଅଥଚ ତା'ର ସ୍ଥିତି ପଞ୍ଚ ମହାଭୂତ ପରି ଅନସ୍ୱୀକାର୍ଯ୍ୟ । ତାହା ସ୍ଥିର ପ୍ରତୀୟମାନ ହେଲେ ସୁଦ୍ଧା, ତାହା ସଦା ଅପସୃୟମାଣ, ସଦା ପ୍ରସରଣଶୀଳ । ଯେତେ ପ୍ରବଳ ବେଗରେ ଯେତେକାଳ ଗତି କଲେ ମଧ ଦିଗନ୍ତକୁ ଅତିକ୍ରମ କରି ହୁଏ ନାହିଁ । ତାହା ଚିରକାଳ ଆମକୁ ପରିବେଷ୍ଟିତ କରି ରଖିଥାଏ । ଦେଖାଯାଏ ନିରବଚ୍ଛିନ୍ନ ବଳୟ ପରି। ସେଥିପାଇଁ ଦିଗନ୍ତକୁ ଆମେ ଦିଗ୍‌ବଳୟ କହିଥାଉ । ଆମେ ଉପରକୁ ଉଠିଲେ ତାହା ପ୍ରସାରିତ ହୋଇଯାଏ । ଗତିକଲେ ଅପସାରିତ ହୋଇଯାଏ । ପୃଥିବୀ ପୃଷ୍ଠରେ ଯେଉଁଠାରେ ଯେତେବେଳେ ଦେଖିଲେ ଦିଗନ୍ତ ଆମକୁ ଘେରି ରହିଥାଏ । ପୃଥିବୀ ଯେପରି ଆମ ପାଦତଳୁ ଅପସରିଯାଏ ନାହିଁ, ଆକାଶ ଆମ ମୁଣ୍ଡ ଉପରୁ ଘୁଞ୍ଚିଯାଏ ନାହିଁ ଦିଗନ୍ତ ମଧ ଆମକୁ କସ୍ମିନ୍ କାଳେ ଛାଡ଼ି ଯାଏ ନାହିଁ । ବିଜ୍ଞାନ କହେ ଯେ ଦିଗନ୍ତ ବୋଲି କିଛି ନାହିଁ । ପୃଥିବୀ ବର୍ତ୍ତୁଳ ହୋଇଥିବାରୁ ତାର ପୃଷ୍ଠ ଦେଶରେ ଠିଆ ହୋଇଥିବା ବ୍ୟକ୍ତିକୁ ଭୂମି ବୃତ୍ତାକାର

ଦେଖାଯାଏ ଏବଂ ଏହି ବୃତ୍ତର କେନ୍ଦ୍ରରେ ସେ ନିଜେ ରହିଥାଏ । କେନ୍ଦ୍ର ଘୁଞ୍ଚିଗଲେ ତା ସହିତ ବୃତ୍ତଟି ମଧ୍ୟ ଘୁଞ୍ଚି ଯାଉଥାଏ । ବିଜ୍ଞାନ ଯାହା କହେ ତାହା ଠିକ୍ କିନ୍ତୁ ଯଥେଷ୍ଟ ନୁହେଁ । ଦିଗନ୍ତ ନାହିଁ ବୋଲି କହିଦେଲେ ଦିଗନ୍ତ ଲିଭିଯାଏ ନାହିଁ । ତାହା ଚିରକାଳ ଉଚ୍ଚାଟିତ କରୁଥାଏ । ଆବାହନ କରୁଥାଏ । ସୀମା ଭିତରେ ସ୍ୱଚ୍ଛନ୍ଦ, ସୁରକ୍ଷିତ, ସାର୍ଥକ ଭାବେ ବଞ୍ଚିବାର ସୁଯୋଗ ସୃଷ୍ଟି କରିଥାଏ । ପରିବାର, ପରିବେଶ ଗୋଷ୍ଠୀ, ଦେଶ, ସଂସ୍କୃତି, ବିଶ୍ୱାସର ନିବିଡ଼ତା ଆପଣାପଣ ପାଇଁ ଯେଉଁ ନିର୍ଦ୍ଦିଷ୍ଟ ସୀମାର ବଳୟ ଅନିବାର୍ଯ୍ୟ, ତାହା ହିଁ ଦିଗନ୍ତ । ଅନ୍ୟପକ୍ଷେ ତାକୁ ଅତିକ୍ରମ କରି ଯିବାକୁ ନିରବ ଆହ୍ୱାନ ମଧ୍ୟ କରୁଥାଏ । ଅସୀମ ଅକଳନୀୟ ଅଜ୍ଞେୟ ନିଶ୍ଚୟ କିନ୍ତୁ ଦିଗନ୍ତର ମାୟାବଳୟ ଉପରେ ସେ ନିସ୍ପନ୍ଦ ଠିଆ ରହିଥାଏ । ଜ୍ଞାତ ଭୂମିରୁ ଅଜ୍ଞାତକୁ ଲଙ୍ଘିଯିବା ପାଇଁ ଅସୀମକୁ ଆବିଷ୍କାର କରିବାକୁ ଉଚ୍ଚାଟିତ କରୁଥାଏ ଦିଗନ୍ତ । ଦିଗନ୍ତର ଏ ଆବାହନ ଏକ ଅନୁପେକ୍ଷ ଆକର୍ଷଣ । ସେଥିପାଇଁ ସମସ୍ତ ଅଗ୍ରଗତି, ପ୍ରଗତି, ଉଦ୍ଭାବନ ଉଦବର୍ତ୍ତନ ସମ୍ଭବ ହୁଏ ।

ଦୃଷ୍ଟିର ଦିଗନ୍ତ ପରି ବିଚାର, ବିମର୍ଶ, ବିତର୍କ ଓ ମନସ୍କତାର ମଧ୍ୟ ଦିଗନ୍ତ ଅଛି । ଦିଗନ୍ତ ଏ ପାରି ତର୍କ, ସେପାରି ବିଶ୍ୱାସ । ମଧ୍ୟରେଖା ଏକ ରହସ୍ୟ । ଦିଗନ୍ତ ଏକ ରହସ୍ୟ । ସେଥିରେ ଦୁଇଟି ଉପାଦାନ ଏକତ୍ର ଅବସ୍ଥାନ କରନ୍ତି । ଗୋଟିଏ ଅସ୍ଥିର ଉପାଦାନ, ଜୀବନର ଜଗତର ଗତିଶୀଳ ପୃଥିବୀର । ଅନ୍ୟଟି ସ୍ଥିର ଉପାଦାନ ଆକାଶର ଅନ୍ତରୀକ୍ଷର ପରମବ୍ୟୋମର ।

ଦିଗନ୍ତ ଦେଶକାଳ-ସାପେକ୍ଷ ନୁହେଁ, କୌଣସି ସ୍ଥାନ ବା କୌଣସି ସମୟରେ ତାହା ବାଂଧି ହୋଇ ରହିନାହିଁ । ସେଥିପାଇଁ ତାହା ସବୁକାଳର ସବୁ ସ୍ଥାନର । ଦିବା ରାତ୍ରିରେ ତାହା ସମପରିମାଣରେ ଉପସ୍ଥିତ । ରାତିରେ ତାହା ଅସ୍ପଷ୍ଟ ନିଶ୍ଛିଦ୍ର ପ୍ରାୟ । କିନ୍ତୁ ଦିନ ରାତ୍ରିର ସଂଧି କାଳରେ, ତାହା ସ୍ପଷ୍ଟ ଓ ସ୍ୱର୍ଣ୍ଣାଭ । ଅସୀମ ଗର୍ଭରୁ ଅନାଗତ ଆଲୋକର ବିଜ୍ଞପ୍ତିରେ ଭାସ୍ୱର ।

ଚେତନାର ସୀମାନ୍ତରେ ସେହିପରି ନବୋଦୟର ଉଷାଲୋକ ଦେଖାଦିଏ, ଅସୀମର ପ୍ରତିଶ୍ରୁତି ପରି, ଆଶୀର୍ବାଦ ପରି । ସୀମାକୁ ଅସୀମାୟିତ କରୁଥିବା, ସ୍ୱର୍ଣ୍ଣାଭ ଦିଗନ୍ତ କ'ଣ ମାନବର ଚେତନା ଭୂମିରେ ଶ୍ରୀ ଅରବିନ୍ଦଙ୍କ ସହିତ ତୁଳନୀୟ ନୁହେଁ ? ଅବଶ୍ୟ ତୁଳନୀୟ ।



## ୨୬.୨.୨୦୦୪

ଜୀବନ କେଉଁ ମହାସମୁଦ୍ରରୁ ଉଦୟ ହୁଏ ଏବଂ କେଉଁଠି ଅସ୍ତଯାଏ ତାହା ମଣିଷର ବୁଦ୍ଧି ପାଇଁ ଏବେ ମଧ୍ୟ ଏକ ଅସମାହିତ ପ୍ରଶ୍ନ । ଗୀତାଶାସ୍ତ୍ର ଉଭୟକୁ ଅବ୍ୟକ୍ତ ବୋଲି ଅଭିହିତ କରିଛନ୍ତି । ଅବ୍ୟକ୍ତାଦିନି ଭୂତାନି ବ୍ୟକ୍ତ ମଧ୍ୟାନି ଭାରତ । ଅବ୍ୟକ୍ତ ନିଧନା ନୈବ ତାତ କା ପରିବେଦନା' । ଯାହା ଅଛି ତାହା ଏକଦା ନଥିଲା ଓ ଏକଦା ରହିବ ନାହିଁ । ଏଣୁ ତାର ଆଦି ଅନ୍ତ ଅବ୍ୟକ୍ତ । ମଧ୍ୟବର୍ତ୍ତୀ ବ୍ୟବଧାନ ହିଁ ତାର ବ୍ୟକ୍ତ ଅବସ୍ଥା । କିନ୍ତୁ ପ୍ରଶ୍ନ ହେଉଛି ତାର ଆଦି ଅବ୍ୟକ୍ତ ଓ ଅନ୍ତ ଅବ୍ୟକ୍ତ କ'ଣ ଏକ ଓ ଅଭିନ୍ନ ? ଯଦି 'ହଁ' ତା'ହେଲେ ଯେଉଁ ବିନ୍ଦୁରୁ ବ୍ୟକ୍ତ ହେବାର ଧାରା ଆରମ୍ଭ ହୁଏ, ବୃତ୍ତାକାରରେ କ'ଣ ସେହି ବିନ୍ଦୁକୁ ଫେରି ଆସି ସେହି ଅବ୍ୟକ୍ତରେ ଝାସଦିଏ ? ଯଦି 'ନା' ତାହେଲେ ଦୁଇଟି ଅବ୍ୟକ୍ତ ଉଭୟ ପ୍ରାନ୍ତରେ ଅବସ୍ଥିତ ଥିବାରୁ ସେମାନଙ୍କର ପ୍ରକାର

ଓ ପ୍ରକୃତି ଭିନ୍ନ ? ପରିଦୃଶ୍ୟମାନ ଜଗତ୍‌ର ଏକ ଅଲଂଘନୀୟ ଶୃଙ୍ଖଳା ବିଦ୍ୟମାନ । ଅଣୁ ଗର୍ଭରୁ ତାରାମଣ୍ଡଳ ପର୍ଯ୍ୟନ୍ତ ସବୁ ସ୍ଥିତି ଓ ଗତି ଏକ ସାର୍ବଭୌମ ବିଧାନରେ ପରିଚାଳିତ । ମନେ ହୁଏ ଏ ଜଗତ୍‌ର ମୌଳିକ ଲକ୍ଷଣ ହେଲା ଗତି । ସ୍ଥିତି କେବଳ ଆପେକ୍ଷିକ ମାତ୍ରାଭେଦ । ଆଉ ଏକ ବିଶେଷ ଲକ୍ଷଣ ହେଲା ଯେ ଗତି ବୃତ୍ତାକାର । ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ । କାଳଚକ୍ର, ଋତୁଚକ୍ର, ଜୀବନଚକ୍ର । ବୋଧହୁଏ କୌଣସି ଗତିକୁ ଅନନ୍ତକାଳ ପର୍ଯ୍ୟନ୍ତ ଜାରି ରଖିବା ପାଇଁ ପୁନରାବୃତ୍ତି ଅନିବାର୍ଯ୍ୟ, ମେରୁଦଣ୍ଡ ଚାରିପଟେ ପୃଥିବୀର ଘୂର୍ଣ୍ଣନ ପରି ସୂର୍ଯ୍ୟ ଚାରିପଟେ କକ୍ଷପଥରେ ଆବର୍ତ୍ତନ ପରି । ପୁନରାବୃତ୍ତି ଦ୍ୱାରା ତାହା ପୁନରୁଜ୍ଜୀବିତ ହେଉଥାଏ । ସୂର୍ଯ୍ୟ ଅସ୍ତ ଯାଇ ଉଦୟ ହେଉଥାଏ ଏବଂ ପୁଣି ଅସ୍ତ ହେଉଥାଏ । ସେଥିପାଇଁ ଜନ୍ମ ଓ ମୃତ୍ୟୁକୁ ମଧ୍ୟ ଚକ୍ରାକାର ପରସ୍ପରର ଅନୁବର୍ତୀ ବୋଲି କୁହାଯାଏ । 'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମ ମୃତସ୍ୟଚ' । ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ ଏବଂ ମରିଗଲେ ଜନ୍ମ ଅନିବାର୍ଯ୍ୟ । ଏଥିରୁ କୌଣସି ଗୋଟିଏ ଭାଗକୁ ନେଇ ବିଧିବିଧାନ ଚଳିବ ନାହିଁ । ଯଦି ଧରାଯାଉ ମାନି ନିଆଗଲା ଯେ ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ଜୀବନ କେବଳ ଏକ ମୃତ୍ୟୁ ଅଭିମୁଖୀ ଯାତ୍ରା, ଏକରୈଖିକ, ତାହେଲେ ସେଇ ନ୍ୟାୟରେ ସୂର୍ଯ୍ୟ ମଧ୍ୟ ଉଦୟ ହେଲେ ଅସ୍ତ ହେବା ଅନିବାର୍ଯ୍ୟ ଏବଂ ଅସ୍ତ ହିଁ ଚୂଡ଼ାନ୍ତ ପରିସମାପ୍ତି । କିନ୍ତୁ ମହାଜାଗତିକ ବିଧାନରେ ଯେପରି ପୃଥିବୀର ଆହ୍ନିକ ଘୂର୍ଣ୍ଣନରେ ସୂର୍ଯ୍ୟ ଉଦୟ ହୁଏ ସେପରି ମୃତ୍ୟୁ ପରେ ମଧ୍ୟ ଜନ୍ମ ହେବା ସ୍ୱାଭାବିକ ଓ ଅପରିହାର୍ଯ୍ୟ ।

ଆଉଟିକିଏ ବିଚାର କଲେ ବୁଝାଯିବ ଯେ ସୂର୍ଯ୍ୟାସ୍ତ କୌଣସି ଏକକ ଘଟଣା ନୁହେଁ, ତାହା ଏକ ଆପେକ୍ଷିକ ସ୍ଥିତି । ସୂର୍ଯ୍ୟାଲୋକରେ ପୃଥିବୀ ଗୋଲକର ଅର୍ଦ୍ଧେକ ଆଲୋକିତ ହୁଏ । ଏବଂ ଏହି ଆଲୋକିତ ଗୋଲାର୍ଦ୍ଧର ଉଭୟ ପ୍ରାନ୍ତର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଏକ ସ୍ଥାୟୀ ଅବସ୍ଥା - ପୃଥିବୀର ଘୂର୍ଣ୍ଣନ ହେତୁ ଏହି ଆଲୋକର ଦିଗ୍‌ବଳୟ ଘୁଞ୍ଚିଯାଉଥାଏ ଏବଂ ଏହି ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ଚିତ୍ର ଘୁଞ୍ଚି ଚାଲିଥାଏ ଦେଶରୁ ଦେଶକୁ । ପ୍ରକୃତରେ କହିବାକୁ ଗଲେ ସୂର୍ଯ୍ୟାସ୍ତ ନାହିଁ କି ସୂର୍ଯ୍ୟୋଦୟ ନାହିଁ । କେବଳ, ସୂର୍ଯ୍ୟ ଅଛି, ପୃଥିବୀ ଅଛି, ଆଲୋକ ଅଛି ପୃଥିବୀର ଘୂର୍ଣ୍ଣନ ଅଛି । ସେଥିପାଇଁ ଦିବାରାତ୍ରି ପ୍ରହର, ଦଣ୍ଡର ପ୍ରତୀତି ସୃଷ୍ଟି ହେଉଛି । ଅର୍ଥାତ୍ ପ୍ରତି ମୁହୂର୍ତ୍ତରେ ପୃଥିବୀ ପୃଷ୍ଠରେ ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ମଧ୍ୟାହ୍ନ, ମଧ୍ୟରାତ୍ରି ଆଦି ସମସ୍ତ ଅବସ୍ଥା ଏକତ୍ର ସଂଘଟିତ ହେଉଛି । ସୂର୍ଯ୍ୟୋଦୟ ସହିତ ଦିନର ସମସ୍ତ ମୁହୂର୍ତ୍ତ ସହିତ ସୂର୍ଯ୍ୟାସ୍ତ ମଧ୍ୟ ଗ୍ରଥିତ ହୋଇରହିଛି ।

ସେହିପରି ମୃତ୍ୟୁ କୌଣସି ସ୍ୱତନ୍ତ୍ର, ଘଟଣା ନୁହେଁ । ମୃତ୍ୟୁ ଜୀବନ ଏକ ଅବିଚ୍ଛେଦୀ, ନିରବଚ୍ଛିନ୍ନ ଧାରା । ପ୍ରତିଟି ପ୍ରଶ୍ୱାସ ଜୀବନ ଓ ପ୍ରତି ନିଃଶ୍ୱାସ ମୃତ୍ୟୁ । ଜୀବନ, ସୂର୍ଯ୍ୟପରି ପ୍ରତି ମୁହୂର୍ତ୍ତରେ ଉଦୟ ଓ ଅସ୍ତ ହେଉଥାଏ । ଏଣୁ ଜନ୍ମ ଓ ମୃତ୍ୟୁ ହେଉଥାଏ । ପ୍ରତ୍ୟେକ କୋଷାଣୁର ସେହିପରି ଆବର୍ତ୍ତନ ହେଉଥାଏ, ଯେପରି ଏ ଶରୀରର ଏଣୁ ଜନ୍ମ ଓ ମୃତ୍ୟୁ ବିଷୟକ ସାଧାରଣ ଧାରଣା ଯାହା ଜୀବନ ଧାରାର ଦୁଇଟି ପ୍ରାନ୍ତବିନ୍ଦୁ ରୂପେ ସେମାନଙ୍କୁ କଳ୍ପନା କରେ ତାହା ଏକ ଭ୍ରମ । ମୃତ୍ୟୁର ଭୟାବହତା, କେବଳ ଏହି ଭ୍ରମ ସକାଶେ ସୃଷ୍ଟି ହୋଇଥାଏ । ମୃତ୍ୟୁ ଯଦି ଭୟାବହ ତାହେଲେ ଜୀବନ ମଧ୍ୟ ତଦ୍ରୂପ ଭୟାବହ ହେବା ଉଚିତ୍ । କିନ୍ତୁ ତାହା ହୁଏ ନାହିଁ । ବରଂ ଜୀବନ ପ୍ରତି ପ୍ରଗାଢ଼ ମୋହ ହେତୁରୁ ହିଁ, ତାର ଅବସାନ ସ୍ୱରୂପ ମୃତ୍ୟୁକୁ ଜୀବନର ପରିପନ୍ଥୀ, ପରିସମାପ୍ତି ଏକ ଦୁର୍ବାର ଶତ୍ରୁରୂପେ କଳ୍ପନା କରାଯାଏ । ମୃତ୍ୟୁ ପ୍ରକୃତରେ ଜୀବନର ପରିପୂରକ । ଏକ ଦ୍ୱିଗୁଣ ରଜ୍ଜୁରେ ଛନ୍ଦି ହୋଇ ରହିଥାଏ ଜୀବନ ଓ ମୃତ୍ୟୁ ।

ପୂର୍ବାହ୍ନରେ ଆଲୋକର କ୍ରମବର୍ଦ୍ଧନ ହେଉଥାଏ । ସେତେବେଳେ ଉତ୍ଥାନ ମୁଖ୍ୟ, ଆଲୋକ ମୁଖ୍ୟ, ପତନ ଓ ଅଂଧକାର ଅତ୍ୟନ୍ତ ଗୌଣ । ଜୀବନର ପ୍ରାକ୍ କାଳରେ ସେହିପରି ତାହା ବିକାଶପ୍ରଧାନ ପ୍ରକାଶ - ପ୍ରଧାନ ପ୍ରାଣ-ପ୍ରଧାନ । ଉପସ୍ଥିତ ଥିଲେ ସୁଦ୍ଧା ମୃତ୍ୟୁ ଅତ୍ୟନ୍ତ ଗୌଣ । କୈଶୋର ଯୌବନର ବର୍ଦ୍ଧିଷ୍ଣୁ ଉଦ୍ଦାମତାରେ ମୃତ୍ୟୁ ଅପସାରିତ ଅସ୍ୱୀକୃତ ହେଉଥାଏ । ପରାସ୍ତ ଉପେକ୍ଷିତ ହେଉଥାଏ । ଏଣୁ ମୃତ୍ୟୁ ମଧ ଛାୟା ଭଳି ଆଲୋକ ପଛରେ ଲୁଚିଯାଏ । ଏଣୁ ଜୀବଦ୍ଦଶାର ପ୍ରଥମାର୍ଦ୍ଧ ଜୀବନ ପ୍ରଧାନ । କିନ୍ତୁ ସେହିଭଳି ଅପରାର୍ଧ ମୃତ୍ୟୁ ପ୍ରଧାନ । ଭାଗମାପରେ ଦ୍ୱିଗୁଣ ରଜ୍ଜୁରେ ମୃତ୍ୟୁ ମୁଖୀ ଜୀବନ ଗୌଣ ହୋଇଯାଏ - ପରିଶେଷରେ ସାୟାହ୍ନ ଓ ସଂଧ୍ୟା ଆସେ ଏବଂ ସୂର୍ଯ୍ୟାସ୍ତ ହୋଇଯାଏ । ମୃତ୍ୟୁ ହୋଇଯାଏ । କିନ୍ତୁ ଶେଷ ନିଃଶ୍ୱାସ ପୂର୍ବରୁ ଶେଷ ପ୍ରଶ୍ୱାସ ପର୍ଯ୍ୟନ୍ତ ଯେତେ କ୍ଷୀଣ ହେଲେ ସୁଦ୍ଧା ଜୀବନ ଥାଏ । ମୃତ୍ୟୁଦ୍ୱାରା ଆକ୍ରାନ୍ତ ଅଧିକୃତ, ପରାସ୍ତ ହୋଇଥାଏ ।

ଏହା ଏକ ଅନିବାର୍ଯ୍ୟ, ଅଲଂଘନୀୟ ଦୁର୍ଧର୍ଷ ବିଧାନ । ଯାହାକୁ ପ୍ରାଣୀର ନିୟତି ବା Destiny ବୋଲି ସ୍ୱୀକାର କରାଯାଇଛି । ଏହାକୁ ଲଙ୍ଘନ କରିବା ତାର ସାଧ୍ୟାତୀତ । କାରଣ ଜୀବନର ଉପାଦାନ ହିଁ ମୃତ୍ୟୁ । ମୁହୂର୍ତ୍ତ ମୁହୂର୍ତ୍ତର ଅବସାନ ହେଉ ନଥିଲେ, ସେହି ବିନ୍ଦୁରେ ମୁହୂର୍ତ୍ତ ମୁହୂର୍ତ୍ତର ଉଦ୍‌ଭବ ହେଉ ନଥିଲେ ଜୀବନ ଧାରାର କ୍ରମାନ୍ୱୟତା ରହି ନଥାନ୍ତା । ବଞ୍ଚିବାର ଅନୁଭବ ଏଇ ମୁହୂର୍ତ୍ତରୁ ମୁହୂର୍ତ୍ତକୁ ସଂଚରି ଯିବାର ହିଁ ଅନୁଭବ । ଜନ୍ମ-ଜରା-ମୃତ୍ୟୁର ଲୌହ ବଂଧନୀ ଭିତରେ ଆବଦ୍ଧ ରହିବା ହିଁ ପ୍ରାଣୀମାତ୍ର ମନୁଷ୍ୟର ଅବଧାରିତ ନିୟତି । ପକ୍ଷୀଟିଏ ପଶୁଟିଏ, ଗଛଟିଏ ଗୁଳ୍ମଟିଏ ପରି ସାଧାରଣ ମଣିଷ ଜୀବଧର୍ମରେ ବଂଚି ରହେ, ନିର୍ବିରୋଧ ନିଶ୍ଚେତନ ଜଡ଼ବତ୍ । ଅଥଚ ପୃଥିବୀରେ ମଣିଷର ଆବିର୍ଭାବ ହେବା ଦିନଠାରୁ ସଭ୍ୟତା ସଂସ୍କୃତି ଦେଶକାଳ ନିର୍ବିଶେଷରେ ଏଇ ମୃତ୍ୟୁକୁ ଅତିକ୍ରମ କରି ଅମରତ୍ୱର ଅଭିଳାଷ ସେ ପୋଷଣ କରି ଆସିଛି । ବାରଂବାର ଚେଷ୍ଟାକରି ବାରଂବାର ବିଡ଼ମ୍ୱିତ ହୋଇଛି । ମରଣଶୀଳ ଶରୀର ଧାରଣ କରି ଏ ମର୍ତ୍ତ୍ୟମଣ୍ଡଳରେ ଅମର ହେବା ଯୁକ୍ତିସିଦ୍ଧ ମନେ ନହେଲେ ସୁଦ୍ଧା, ପ୍ରତି ମୁହୂର୍ତ୍ତରେ ଅସଂଖ୍ୟ ଜୀବ ମୃତ୍ୟୁବରଣ କରୁଥିଲେ ସୁଦ୍ଧା ଆଶ୍ଚର୍ଯଜନକ ଭାବରେ ସେ ବଞ୍ଚିଥିବା ଯାଏଁ ଅମର ହେବାର ଇଚ୍ଛାକୁ ତ୍ୟାଗ କରିପାରି ନାହିଁ । କାହିଁକି ଏପରି ହୁଏ ତା' ମଧ ସେ ବୁଝିପାରିନାହିଁ । ବିଜ୍ଞଜନମାନେ କହନ୍ତି ଯେ ସେ ତା' ମରଶରୀର ନୁହେଁ, ସେ ସେଥିରେ ବାସ କରୁଥିବା ଅମର ଆତ୍ମା । ପୁରୁଣା ବସ୍ତ୍ର ପରିହାର କରି ନୂତନକୁ ଗ୍ରହଣ କଲାପରି ଆତ୍ମା ଘଟରୁ ଘଟାନ୍ତର କୁ ପ୍ରବେଶ କରୁଥାଏ । ତାର ଜନ୍ମ ନାହିଁ, ଏଣୁ ମୃତ୍ୟୁ ନାହିଁ ଅବକ୍ଷୟ ନାହିଁ, କି ଅଭିବୃଦ୍ଧି ନାହିଁ । ମର ଶରୀର ପରି ଏ ସମସ୍ତ ମର୍ତ୍ତ୍ୟମଣ୍ଡଳ ମଧ ମୃତ୍ୟୁର ଅଧୀନ । ଏଠାରୁ ମୁକ୍ତ ହୋଇ ଜଣେ ଆତ୍ମା ସ୍ୱରୂପରେ ଅମରତ୍ୱ ଲାଭ କରିପାରେ । ଅମର ଆତ୍ମାକୁ ଅମରତ୍ୱ ଲାଭ ହେବାର ବିଶେଷ କିଛି ଅର୍ଥ ହେଉନାହିଁ । କେବଳ ଏ ପୃଥିବୀ ଏ ଜଳସ୍ଥଳ ଆକାଶ, ଏ ସ୍ଥାବରଜଂଗମର ଇହଧାମକୁ ଯେଉଁଠି ଅଛି ସେଇଠି ଛାଡ଼ି ଦେଇ, କେବଳ ଆତ୍ମାଟିକୁ ମୁକ୍ତ କରିନେବାରେ ବାହାଦୁରୀ ବି କିଛି ନାହିଁ ।

କିନ୍ତୁ ଏ ବିଶାଳ ବିଶ୍ୱକୁ ଯଦି ଏକ ସୃଷ୍ଟି ଏକ କ୍ରମବର୍ଦ୍ଧମାନ ଏକଦା କ୍ରମବିବର୍ତ୍ତନଶୀଳ, ଏକ ସୁପରିକଳ୍ପିତ ସୁପରିଚାଳିତ ବ୍ୟବସ୍ଥା ବୋଲି ସ୍ୱୀକାର କରାଯାଏ, ତା'ହେଲେ ଯାହାର ଇଚ୍ଛାରେ, ଇଙ୍ଗିତରେ ଓ ନିର୍ଦ୍ଦେଶରେ ଏହା ହୋଇଥାଏ ତା'ର ସର୍ବଭୌମ ନିରଙ୍କୁଶ, ଇଚ୍ଛା ଓ ସାମର୍ଥ୍ୟକୁ ମଧ ସ୍ୱୀକାର କରିବାକୁ ହେବ । ସେ କେବଳ ବାଲୁଦ ସ୍ୱଭାବରେ କିଛି ଗଢ଼ିଦେଇ ଭାଙ୍ଗିବାରେ ଓ ଭାଙ୍ଗିଦେଇ ପୁଣି ଗଢ଼ିବାରେ ଏ ଅନନ୍ତକାଳ

ନିଜକୁ ନିଯୁକ୍ତ କରି ନଥିବେ ଏପରି ଭାବିବା ଯୁକ୍ତିସଂଗତ ମନେ ହୁଏ । ଆଉ ମଧ୍ୟ ସେ କର୍ତ୍ତୁଂ ଅକର୍ତ୍ତୁଂ ଅନାଥା କର୍ତ୍ତୁଂ, ଅର୍ଥାତ୍ ଏପରି କରିବା ନକରିବା କିମ୍ବା ଅନ୍ୟଥା କରିବା ପାଇଁ ସମର୍ଥ ଏହା ମଧ୍ୟ ସ୍ୱୀକାର୍ଯ୍ୟ । ଯେଉଁ ବ୍ୟବସ୍ଥାରେ ଜନ୍ମ ମୃତ୍ୟୁର ଅଲଂଘ୍ୟ ବିଧାନ ରହିଛି । ସେ ବ୍ୟବସ୍ଥା ପରିବର୍ତ୍ତେ ଅନ୍ୟ ବିକଳ୍ପ ବ୍ୟବସ୍ଥା ସେ କରିପାରନ୍ତେ । ସେଠାରେ ହୁଏତ ଉଦୟ ଅସ୍ତ ପରି ଜନ୍ମ ଓ ମୃତ୍ୟୁ ଏତେ ଅପରିହାର୍ଯ୍ୟ ମନେ ହୁଅନ୍ତେ ନାହିଁ । - କିନ୍ତୁ ସେଭଳି ସାମର୍ଥ୍ୟ ଥିବା ସତ୍ତ୍ୱେ ସେ ତାହା ପ୍ରୟୋଗ ନକରି ଏହି ବ୍ୟବସ୍ଥା ଜାରି ରଖିବାକୁ ଯଦି ନିଷ୍ପତ୍ତି ନେଇଛନ୍ତି ତାକୁ ଅସ୍ୱୀକାର କରିବାର କିଛି ଅର୍ଥ ବା ପ୍ରୟୋଜନ ମଧ୍ୟ ନାହିଁ ।

କିନ୍ତୁ କେବଳ ଆବର୍ତ୍ତନ ନ ହୋଇ ଯଦି ବିବର୍ତ୍ତନ ହେଉଥାଏ । ଚକ୍ରବତ୍ ପୁନରାବୃତ୍ତି ଭିତରେ ଏକ ନୂତନ ଉନ୍ମେଷ ଘଟୁଥାଏ, ନୂତନ ଉତ୍ଥାନ ହୋଇ ଚାଲିଥାଏ, ଏବଂ ଜଡ଼ ଜଗତରେ ପ୍ରାଣ ମନ ବିକଶିତ ହେଉଥାନ୍ତି, ଅନ୍ତର୍ନିହିତ ଚେତନା ଅଧିକରୁ ଅଧିକ ବିକଶିତ ହୋଇ ଚାଲିଥାଏ, ତେବେ ସୃଷ୍ଟି ପ୍ରକ୍ରିୟାର ଆଦି ବିନ୍ଦୁରେ ଏ ଜଡ଼ ବିସ୍ତାରରେ ଝାସଦେଇ ସମାହିତ ହୋଇଥିବା ଚେତନା, ନିମଗ୍ନ ନିଶ୍ଚଳ ସନାତନ ଚେତନା ଜଡ଼କୁ ଜଡ଼ତ୍ୱକୁ ମୁକ୍ତ କରି ସ୍ୱୟଂ ସଂପୂର୍ଣ୍ଣ ପ୍ରକାଶିତ ହେବାର ସମ୍ଭାବନା ମଧ୍ୟ ଦେଖାଯାଉଛି । କେବେ ହେବ କିପରି ହେବ, କହିହେବ ନାହିଁ, କିନ୍ତୁ ଅବଶ୍ୟ ହେବ ଏହା ଅନ୍ତତଃ ମଣିଷର ସୀମିତ ବୁଦ୍ଧିରେ ବିଚାରସିଦ୍ଧ ।

ପ୍ରେମରୁ ସୃଷ୍ଟି ଓ ମୃତ୍ୟୁରେ ସଂହାର ହୁଏ । ଯେ ସର୍ଜନା କରନ୍ତି ସେ ହିଁ ସଂହାର କରନ୍ତି, ସେ ଆନନ୍ଦଘନ, ପ୍ରେମଘନ ବିଗ୍ରହ ଏବଂ ସେହିଁ । "ମୃତ୍ୟୁଃ ସର୍ବହରଶ୍ଚାହଂ ଉଦ୍ଭବଶ୍ଚ ଭବିଷ୍ୟତାମ୍" । ଏଣୁ ସମସ୍ତ ଜଗତ୍‌କୁ ଗ୍ରାସ କରି ସର୍ବାନ୍ତକ, ସର୍ବଶକ୍ତିମାନ, ଅଧୀଶ୍ୱର ବୋଲି ଭାବୁଥିବା ମୃତ୍ୟୁ ବା ଏହିରୂପେ ମୃତ୍ୟୁର ଚିତ୍ର ଅଂକନ କରୁଥିବା ମଣିଷ, ଯେତେବେଳେ ଅପରାଜେୟ ପ୍ରେମମୟତାକୁ ଦେଖିପାରେ ଜାଜ୍ଜଲ୍ୟମାନ ଶାଶ୍ୱତ ପ୍ରେମର ବିଶ୍ୱମୟତାକୁ ସ୍ୱୀକାର କରେ । ମୃତ୍ୟୁର ସଂହାରକୁ ପରାସ୍ତ କରି ଜୀବନ ବୀଜାଙ୍କୁରକୁ ଅହରହ ଅଂକୁରିତ କରୁଥାଏ, ଯାହା ପାଇଁ ସୃଷ୍ଟି ବିଲୟ ପ୍ରାପ୍ତ ନହୋଇ ସୁସଂବଦ୍ଧ, ହୋଇ କ୍ରମ ବର୍ଦ୍ଧମାନ ହୋଇ ଚାଲିଛି, ସେତିକିବେଳେ ମୃତ୍ୟୁ ଏକ ପ୍ରେମ ପରିଚାଳିତ ଅବୟବ ରୂପେ, ବିଭୁଆଜ୍ଞାର ଭୃତ୍ୟ ରୂପେ ନିଜର ଭୂମିକାରେ ସନ୍ତୁଷ୍ଟ ରହେ । ତାର ରୂପାନ୍ତର ହୁଏ ପ୍ରେମରେ, ସର୍ବମୟ, ସର୍ବଶକ୍ତିମାନ ପ୍ରେମରେ ।



## ୭.୪.୨୦୦୪

ଦେଶ ଓ କାଳ space and time, ଏକ ଅବିଭକ୍ତ ଯୁଗ୍ମତତ୍ତ୍ୱ ରୂପେ ସ୍ୱୀକୃତି ଲାଭ କରିଛି । ଆମର ବା ଯେକୌଣସି ବ୍ୟକ୍ତି ଅଥବା ବସ୍ତୁର ସ୍ଥିତିକୁ ସେହି ସମୟ ବା ସ୍ଥାନଠାରୁ ପୃଥକ୍ କରି ହେବ ନାହିଁ । ଘଟନା ଏକ ନିର୍ଦ୍ଦିଷ୍ଟ ସମୟରେ ଏବଂ ସମପରିମାଣରେ ନିର୍ଦ୍ଦିଷ୍ଟ ଏକ ସ୍ଥାନରେ ଘଟେ । ଘଟନାରୁ ଘଟିବା ସ୍ଥାନ ବା ଘଟିବା ସମୟକୁ ବିଚ୍ଛିନ୍ନ କରି ହେବ ନାହିଁ । ଦେଶକାଳର ଏ ଯୁଗ୍ମ ସ୍ଥିତିକୁ space time continuum ବା ଦେଶକାଳ ଅନବଚ୍ଛିନ୍ନତା ବୋଲି ନାମିତ କରାଯାଇଛି । ଆମ ଜୀବଦ୍ଦଶାର ପ୍ରତ୍ୟେକ ବିନ୍ଦୁ ଏହି ଅନବଚ୍ଛିନ୍ନତାର

ରେଖା ଉପରେ ଅଙ୍କିତ ହୋଇ ଚାଲିଥାଏ । ପ୍ରକୃତରେ କିନ୍ତୁ ଏହି ଅନବଚ୍ଛିନ୍ନତା ଏକ ବ୍ୟାପ୍ତି; ମହାକାଶ ଓ ମହାକାଳର ଯୁଗ୍ମ ସ୍ବରୂପ । ସେହି ବ୍ୟାପ୍ତି ଭିତରେ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ପିଣ୍ଡ ପରି ତରୁତୃଣ ପଶୁ ପକ୍ଷୀ ପରି ଆମେ ନିଜ ନିଜର ଏକକ ରେଖା ଅଂକନ କରିଥାଉ । ସେହି ବ୍ୟାପ୍ତିରେ ପବନ ବହେ, ଗଛର ଶାଖା ଦୋଳାୟିତ ହୁଏ । ପତ୍ର ଝରିଯାଏ । ସେହିପରି ଆମର ଶୈଶବ, ଯୌବନ ବାର୍ଦ୍ଧକ୍ୟ ମଧ ମୁହୂର୍ତ୍ତ ମୁହୂର୍ତ୍ତର ଘଟନାକୁ ନେଇ ପ୍ରକଟିତ ହୁଅନ୍ତି ଏବଂ ଅନ୍ତର୍ହିତ ହୁଅନ୍ତି । ଦେଶକାଳ ଅନବଚ୍ଛିନ୍ନତା ଉପରେ କୌଣସି ଛାୟାପାତ ହୁଏ ନାହିଁ । ତାହା ଅବିକୃତ ଅକମ୍ପିତ ରହେ ତାର ଅପରିମିତ ବିସ୍ତାରରେ ।

ଦେଶକାଳ ଅନବଚ୍ଛିନ୍ନତା ଭଳି ଆଉ ଏକ ଅନବଚ୍ଛିନ୍ନତାକୁ ମଧ ସ୍ୱୀକାର କରାଯାଏ । ତାହାହେଲା Death life continuum ବା ଜୀବନ ମରଣ ଅନବଚ୍ଛିନ୍ନତା । ଜୀବନ ଓ ମରଣ ଅଭିନ୍ନ ଏବଂ ପରସ୍ପରଠାରୁ ଅବିଚ୍ଛିନ୍ନ । ଅର୍ଥାତ୍ ଆମେ ଯାହାକୁ ଜୀବନର ପ୍ରକ୍ରିୟା ବା ପ୍ରବାହ ବୋଲି ବୁଝୁ । ତାହା ହିଁ ମରଣର ପ୍ରକ୍ରିୟା । ସାଧାରଣ ଅର୍ଥରେ ଜୀବନ ଏକ ପ୍ରଶ୍ୱାସରୁ ଆରମ୍ଭ ହୋଇ ଏକ ନିଃଶ୍ୱାସରେ ସରିଯାଏ । ଏହି ଆଦିବିନ୍ଦୁ ଓ ଆନ୍ତବିନ୍ଦୁର ବ୍ୟବଧାନ ହିଁ ଆମର ଜୀବଦ୍ଦଶା । ଏ ସମଗ୍ର ବ୍ୟବଧାନରେ ଗୋଟିଏ ମାତ୍ର ଅବିରତ ଛନ୍ଦରକ୍ଷା ହୋଇଥାଏ ତାହାହେଲା ପ୍ରଶ୍ୱାସ ଓ ନିଶ୍ୱାସର ଛନ୍ଦ । ଅର୍ଥାତ୍ ଜୀବନ ଓ ମରଣର ଛନ୍ଦ । ପ୍ରତ୍ୟେକ ପ୍ରଶ୍ୱାସ ଜୀବନ ଓ ପ୍ରତ୍ୟେକ ନିଃଶ୍ୱାସ ମୃତ୍ୟୁ । ଏ ଦୁଇଟି ମଧରୁ କାହାରି ହେଲେ ସ୍ୱତନ୍ତ୍ର ସତ୍ତାନାହିଁ । ପ୍ରଶ୍ୱାସ ନଥିଲେ ନିଃଶ୍ୱାସ ନାହିଁ; ନିଃଶ୍ୱାସ ନଥିଲେ ପ୍ରଶ୍ୱାସ ନାହିଁ । ଗୋଟିଏ ଅନ୍ୟଟି ଉପରେ ନିର୍ଭରଶୀଳ, ଅନ୍ୟର ପରିପୂରକ । ସେହିପରି ଜୀବନ ନ ଥାଇ ମୃତ୍ୟୁ ବା ମୃତ୍ୟୁ ନଥାଇ ଜୀବନ ସମ୍ଭବ ନୁହେଁ ।

ଯଦି ଜୀବନ ଓ ମୃତ୍ୟୁ ଏକତ୍ର ଅଭିନ୍ନ ରୂପେ ବିଦ୍ୟମାନ ତାହେଲେ ଏଇ ବିଦ୍ୟମାନତା ବା ସ୍ଥିତିର ସ୍ୱରୂପ କ'ଣ ହୋଇପାରେ ? ସୃଷ୍ଟି-ସ୍ଥିତି-ଲୟ ଏ ପରିବ୍ୟାପ୍ତ ବିଶ୍ୱର ଆଦିମ ଛନ୍ଦ । ଏହା ବୃତ୍ତାକାର ଗତିର ସଂକେତ ଦେଇଥାଏ । ପ୍ରଥମେ ସୃଷ୍ଟି - ତାପରେ ସ୍ଥିତି ଓ ଶେଷରେ ବିଲୟ ଏଇଭଳି ଗୋଟାଏ କ୍ରମାନ୍ୱୟତା ଥିଲା ପରି ଲାଗେ । କିନ୍ତୁ ଜୀବନ ଓ ମୃତ୍ୟୁ ଅର୍ଥାତ୍ ସୃଷ୍ଟି ଓ ବିଲୟ ଯଦି ଏକତ୍ର ଓ ଅଭିନ୍ନ ତା' ହେଲେ ସ୍ଥିତି ହେଉଛି ସେ ଦୁହିଁଙ୍କର ଯୁଗ୍ମସ୍ଥିତି । ଏ ସ୍ଥିତି କିନ୍ତୁ ସ୍ଥିର ନୁହେଁ, ତାହା ଏକ ଅସ୍ଥିର ଚଳମାନ, କ୍ଷୟଶୀଳ ସ୍ଥିତି । ଆମେ ପ୍ରତି ମୁହୂର୍ତ୍ତରେ ଗତିଶୀଳ ଏବଂ କ୍ଷୟଶୀଳ । ଏଣୁ ଯାହା ସ୍ଥିତି ପରି ଦେଖାଯାଏ, ତାହା ଏକ ଚଳମାନ ଅବସ୍ଥା । ସୃଷ୍ଟିସ୍ଥିତିଲୟ ଏକତ୍ର ଅହରହ ସଂଘଟିତ ତାହା ହେଲେ ସ୍ଥିତି କାହିଁ ଜଗତ୍‌ରେ ? 'ଯତଃ ସର୍ବାଣି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି ଯଂପ୍ରୟନ୍ତି ଅଭିସଂବିଶନ୍ତି' - ବା ଜନ୍ମାଦ୍ୟସ୍ୟ ଯତଃ' ଯେଉଁଠାରୁ ସମସ୍ତ ଜାତ ହୁଏ, ଯେଉଁଠାରେ ଧାରିତ ହୁଏ ଓ ବିଲୟ ପ୍ରାପ୍ତ ହୁଏ ସେ ଏ ଜଟିଳ ଛନ୍ଦ ଓ ପ୍ରକ୍ରିୟାର କାରଣ ରୂପ । ସୂର୍ଯ୍ୟର ଉଦୟ ଅସ୍ତକୁ ଏକକ ବ୍ୟାପ୍ତିରେ ଧାରଣ କରିଥିବା ଆକାଶ ପରି ସେ ଏ ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡକୁ ଆଦିରୁ ଅନ୍ତ ପର୍ଯ୍ୟନ୍ତ ଧାରଣ କରିଥାନ୍ତି । ସେ ସ୍ଥିତି ନୁହନ୍ତି କି ଅସ୍ଥିତି ନୁହନ୍ତି । ସେ କିନ୍ତୁ ସ୍ୱୟଂ କଂପିତ ହୁଅନ୍ତି ଏବଂ କାମନା କରନ୍ତି । କାମନା ହିଁ ସୃଷ୍ଟି କାମନା ହିଁ ଆନନ୍ଦ । ଆନନ୍ଦ ହିଁ କରୁଣା ଶ୍ରଦ୍ଧା ଓ ପ୍ରେମ । ସେ ମଧ କାମନା କରନ୍ତି ବିଲୟ । ବିଲୟ ହିଁ ଆନନ୍ଦ, କରୁଣା, ଶ୍ରଦ୍ଧା ଓ ପ୍ରେମ । ନିଃଶ୍ୱାସ ପ୍ରଶ୍ୱାସ ପରି ଉଦୟ ଅସ୍ତପରି ନିବର୍ତ୍ତନ ବିବର୍ତ୍ତନ ପରି ବିଶ୍ୱଛନ୍ଦ ପ୍ରକଟ କରନ୍ତି ।

ଗୋଟିଏ ଜ୍ୟାମିତିକ ରେଖାର ଦୈର୍ଘ୍ୟ ଅଛି, ପ୍ରସ୍ଥ ନାହିଁ । ସେହିପରି କୌଣସି ଏକ ଜ୍ୟାମିତିକ କ୍ଷେତ୍ରର ଦୈର୍ଘ୍ୟ ଅଛି ପ୍ରସ୍ଥ ମଧ ଅଛି । ଅଥଚ ଏକ ବିନ୍ଦୁର ଦୈର୍ଘ୍ୟ ନାହିଁ କି ପ୍ରସ୍ଥ ମଧ୍ୟ ନାହିଁ । ବସ୍ତୁ ଜଗତରେ

କାୟାହୀନତା ନାହିଁ । ଆକୃତିରେ ବସ୍ତୁ ଚିହ୍ନିତ ହୁଏ ସୀମିତ ବି ହୁଏ । କିନ୍ତୁ ଆକାଶର ବ୍ୟାପ୍ତି ଅଛି, ଆକୃତି ନାହିଁ, ପବନର ବେଗ ଅଛି ରୂପ ନାହିଁ । ଆଲୋକ ବା ତେଜର କ୍ରିୟା ଅଛି ପରିମାଣ ଅଛି, କିନ୍ତୁ ଆକୃତି ନାହିଁ । ଏଣୁ ଆଲୋକିତ ବସ୍ତୁ ଯେପରି ଆଲୋକର, କଂପିତ ପତ୍ର ଯେପରି ପବନର ଓ ସକଳ ବସ୍ତୁର ସ୍ଥିତି ଓ ପାରସ୍ପାରିକ ଦୂରତା ଯେପରି ଆକାଶର ସୂଚନା ଦିଏ; ସେହିପରି କୌଣସି ଚେତନ ପ୍ରାଣୀର ଆଚରଣ ଓ ଆଚରଣ ଗୋଟିଏ ରୂପ-ଗୁଣ-ବିହୀନ ତତ୍ତ୍ୱର ସୂଚନା ଦିଏ । ଅରୂପ ତତ୍ତ୍ୱର ରୂପ ନଥାଇ ପାରେ କିନ୍ତୁ ଗୁଣ ଅଛି ଯଥା ପବନର ପ୍ରବାହ, ଆଲୋକର ପ୍ରସରଣଶୀଳତା - କିନ୍ତୁ ପ୍ରାଣତତ୍ତ୍ୱ ଯାହା ପ୍ରାଣୀକୁ ସାକାର କରେ ସ୍ୱୀକାର କରେ, ଜୀବନ ମରଣ ଅନବଚ୍ଛିନ୍ନତା ଭିତରେ ପାରିକରେ ଏବଂ ବିଲୀନ କରେ ତାହା ଜଡ଼ ତତ୍ତ୍ୱ ରୂପେ ଜଡ଼କୁ ଧାରଣ ଓ ପୋଷଣ କରି ତାକୁ ଦେଶକାଳ ଅନବଚ୍ଛିନ୍ନତା ଭିତରେ ମଧ୍ୟ ପାରି କରେ । ସୃଷ୍ଟିସ୍ଥିତିଲୟ ପ୍ରକ୍ରିୟାର ଆଦି ଉତ୍ସ ଆଦି ସ୍ପନ୍ଦନ ଓ କାମନା ସେଇ । ବିବର୍ତ୍ତନର ଧାରାରେ ଯାହା ପ୍ରକଟିତ ହୁଏ ତାହା ତା'ର ହିଁ ଅବଧାରିତ ବିଧାନ । ସେ ସ୍ୱୟଂ ସ୍ୱୟଂପ୍ରେରିତ ହୋଇ ଯଦି ଉପସ୍ଥିତ ବିଧାନକୁ ଅତିକ୍ରମ କରିବାକୁ କାମନା କରନ୍ତି ତା'ହେଲେ ଅନ୍ୟ ଏକ ବିଧାନରେ ଜୀବନମରଣ ଅନବଚ୍ଛିନ୍ନତା ପ୍ରକଟିତ ହୋଇପାରେ କାୟାରୂପର ରୂପାନ୍ତର ହୋଇପାରେ ।



## ୧୭.୬.୨୦୦୪

ସୂର୍ଯ୍ୟାଭିଳାଷୀ ପତଙ୍ଗ ଯଦି ଅର୍ଦ୍ଧାକାଶରେ ଭସ୍ମୀଭୂତ ହୋଇଯାଏ ତା'ହେଲେ ତାହା ତାର ବିଫଳତା ନା ସଫଳତା ବୋଧହୁଏ ଉଭୟ । ବିଫଳତା ଏଇଥିପାଇଁ ଯେ ସେ ତା'ର ଲକ୍ଷ୍ୟରେ ପହଞ୍ଚିବାର ବହୁପୂର୍ବରୁ ଜଳିଗଲା । ଯେକୌଣସି ଉଦ୍ୟମରେ ଲକ୍ଷ୍ୟସ୍ଥଳରେ ନ ପହଞ୍ଚିବା ହିଁ ତ' ବିଫଳତା । ସେଇ ଦୃଷ୍ଟିରୁ ବୋଧହୁଏ ଏହା ଏକ ବିଫଳତା । କିନ୍ତୁ ଧରାତଳର ସାମାନ୍ୟ ପତଙ୍ଗ ଯେ ସୂର୍ଯ୍ୟାଭିଳାଷୀ ହୋଇପାରିଲା ଏବଂ ଭୂତଳ ଅତିକ୍ରମ କରି ଅର୍ଦ୍ଧାକାଶ ପର୍ଯ୍ୟନ୍ତ ଯାଇପାରିଲା ଏହା କିଛି କମ୍ ସଫଳତା ନୁହେଁ । ଊର୍ଦ୍ଧ୍ୱଗାମୀ ହୋଇ ସେ ଯାତ୍ରାକାଳର ପ୍ରତି ମୁହୂର୍ତ୍ତରେ ସୂର୍ଯ୍ୟ ଅଭିମୁଖରେ ହିଁ ଗତି କରୁଥିଲା । ତାର ସମଗ୍ର ପଥ ସୌରଦୀପ୍ତ । ପତଙ୍ଗର ସୂର୍ଯ୍ୟାପ୍ରାପ୍ତି ଘଟି ଚାଲିଥିଲା ସେ ଭସ୍ମୀଭୂତ ହେବା ପର୍ଯନ୍ତ । ପତଙ୍ଗ ଜୀବନର ସୀମିତ ସାମର୍ଥ୍ୟର ଚରମ ଉପଯୋଗ କରି ସେ ସୂର୍ଯ୍ୟ ଉଦ୍ଦେଶ୍ୟରେ ନିଜକୁ ନିଜେ ଅତିକ୍ରମ କରି ଚାଲିଥିଲା । ଲକ୍ଷ୍ୟ ଦିଗରେ ପ୍ରତ୍ୟେକ ପଦକ୍ଷେପ ସାର୍ଥକ । ଏଣୁ ମନ୍ତ୍ର ସାଧନ କରୁକରୁ ଯଦି ଶରୀରର ପତନ ହୋଇଗଲା, ତାହାହିଁ, ଚରମ ସାର୍ଥକତା । ପତଙ୍ଗ ତା'ର ମାଟି ପାଣି ପବନର ପୃଥ୍ୱୀକୁ ଛାଡ଼ିଗଲା । ତେଣେ ସୂର୍ଯ୍ୟର ବଳୟରେ ପହଞ୍ଚି ପାରିଲା ନାହିଁ । ଏଣୁ ଉଭୟ ପକ୍ଷ ହରାଇ ମଝିରେ ଭାସୁଥିବା ମେଘଖଣ୍ଡ ପରି ସେ ବିନଷ୍ଟ ହୋଇଗଲା କି ? "କଚ୍ଚିନ୍ନୋଽଭୟ ବିଭ୍ରଷ୍ଟ ଛିନ୍ନାଭ୍ରଂ ଇବ ନଶ୍ୟତି" । ଏ ଶଂକା ଦୂର କରିବାକୁ କୁହାଯାଇଛି । "ନହି କଲ୍ୟାଣ କୃତ୍ କଶ୍ଚିଦ୍ ଦୁର୍ଗତିଂ ତାତ ଗଚ୍ଛତି ।" ଆଲୋକିତ ମାର୍ଗରେ ସାମାନ୍ୟ ତମ ପଦକ୍ଷେପ ମଧ୍ୟ ବ୍ୟର୍ଥ ଯାଏ ନାହିଁ । ଖଣ୍ଡିତ ଯାତ୍ରାର ପରିଣାମ ସ୍ୱରୂପ ଯାତ୍ରୀ ପୁନଶ୍ଚ ସେହି ଅର୍ଦ୍ଧାକାଶରୁ ହିଁ ତାର ପରବର୍ତ୍ତୀ ପର୍ଯ୍ୟାୟର ଯାତ୍ରା ଆରମ୍ଭ କରେ । ଅସୀମ ଯାତ୍ରା ପଥ । ସୀମିତ ସାମର୍ଥ୍ୟ ଓ ସମ୍ଭାବନାର ଯାତ୍ରୀ । ଏଣୁ ଅର୍ଦ୍ଧାକାଶରେ

ପହଞ୍ଚିବା ସେଠାରେ ଜଳିଯିବା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । - ପତଙ୍ଗର ସୂର୍ଯ୍ୟାଭିଳାଷ ହିଁ ଅସାଧାରଣ ଗୁରୁତ୍ୱପୂର୍ଣ୍ଣ । ସାଧାରଣ ମାନଦଣ୍ଡରେ ସଫଳତା ବା ବିଫଳତା ନିର୍ଣ୍ଣୟ କରିବା ଏକ ଗୌଣ ବିଚାର ।



**୨୪.୭.୨୦୦୪**

ଅତୀତ ଆଜି ପାଇଁ ସ୍ମୃତି ଓ ଭବିଷ୍ୟତ ମଧ୍ୟ ଆଜିପାଇଁ ସ୍ୱପ୍ନ । ଏ ବ୍ୟବସ୍ଥାରୁ ଯଦିଓ ଆଜି ଅନୁପସ୍ଥିତ ରହିଯାଏ ତେବେ କୌଣସି ଚିହ୍ନିତ ନାମିତ ପରିଭାଷିତ କାଳଖଣ୍ଡ ରହିବ ନାହିଁ । ଅତୀତ ଓ ଭବିଷ୍ୟତ, ସେହି କାରଣରୁ ବର୍ତ୍ତମାନ ଉପରେ ନିର୍ଭରଶୀଳ । ବର୍ତ୍ତମାନ ହିଁ ଉପସ୍ଥିତ କାଳ । ବାକି ଅତୀତ ଓ ଭବିଷ୍ୟତ ଅନୁପସ୍ଥିତ କାଳ । ଅନୁପସ୍ଥିତ ଉପରେ କୌଣସି ଆୟତ୍ତ ନାହିଁ । ବର୍ତ୍ତମାନରେ ଥାଇ ଅତୀତକୁ ସାମାନ୍ୟତମ ବିଚଳିତ କରିହେବ ନାହିଁ କିମ୍ବା ଭବିଷ୍ୟତକୁ ସାମାନ୍ୟତମ ନିୟନ୍ତ୍ରଣ କରି ହେବ ନାହିଁ । ଅଥଚ ଏ ଅନୁପସ୍ଥିତ କାଳ ହିଁ ଉପସ୍ଥିତକୁ ସର୍ବଦା ଗ୍ରାସ କରିଥାଏ । ଯେକୌଣସି ଅବସ୍ଥାରେ ଅତୀତର ସ୍ମୃତି ଘାରି ରଖିଥାଏ । ତା'ର ପରିଣାମ ସ୍ୱରୂପ କ୍ଷୋଭ ଦୁଃଖ, ଅନୁତାପ, ଆତ୍ମ ଧିକ୍କାର, କିମ୍ବା ଆତ୍ମସନ୍ତୋଷ, ଉଲ୍ଲାସ ଓ ସୁଖ ପ୍ରାପ୍ତି ହେଉଥାଏ । କେବଳ ସ୍ମୃତିବିଳାସରେ । ଏ ସମସ୍ତ ପ୍ରତିକ୍ରିୟା ପାଇଁ କୌଣସି ବାସ୍ତବ ଉପାଦାନ ନଥାଏ । କିନ୍ତୁ ମନ ଜଗତରେ ଅତୀତ ପୁନଶ୍ଚ ଜାଗ୍ରତ ହୋଇ ସେହି ସେହି ପରିସ୍ଥିତି ଆଉଥରେ ସୃଷ୍ଟି କରିଦିଏ । ବାରଂବାର ଅସଂଖ୍ୟବାର ସେହି ଅନୁଭବରେ ଜଣେ ପ୍ରବେଶ କରୁଥାଏ ଓ ତାର ଫଳ ଭୋଗ କରୁଥାଏ । ବର୍ତ୍ତମାନ ଅତୀତାଚ୍ଛନ୍ନ ହୋଇଯାଏ । ଏଣୁ ନିଷ୍ଫଳ ହୋଇ ପାରି ହେଉଥାଏ । ସେହିପରି ଭବିଷ୍ୟତର ସ୍ୱପ୍ନ ମଧ୍ୟ ବର୍ତ୍ତମାନକୁ ଆଚ୍ଛନ୍ନ କରେ । ସେଥିରେ ଆଶା ଆଶଙ୍କା ଆବେଗ ଉଦ୍‌ବେଗ ସୃଷ୍ଟି ହୁଅନ୍ତି । ଘଟନା କ'ଣ ହୋଇପାରେ କେବଳ ଅନୁମାନ କଳ୍ପନା କରି ସେଥିରେ ଚିତ୍ତ ନିମଗ୍ନ ହୋଇରହେ । ସେତେବେଳେ ମଧ୍ୟ ବର୍ତ୍ତମାନ ନିଷ୍ଫଳ ପାରି ହେଉଥାଏ ।

ପାରିହେବା ଅର୍ଥ ଏକ ଗତି ବା ପ୍ରବାହର ଅନୁଭବ ଦେବା । ଗୋଟାଏ ବର୍ଷର ଅନୁପସ୍ଥିତ କାଳରୁ ଆଉ ଗୋଟାଏ ବର୍ଷର ଅନୁପସ୍ଥିତ କାଳକୁ ସବୁ ପାରି ହେଇଯାଇଥିବାର ପ୍ରତ୍ୟୟ ହିଁ ଏହି ପ୍ରବାହ-ବା କାଳ ପ୍ରବାହର ପ୍ରତ୍ୟୟ ।

ବ୍ୟକ୍ତି, ବସ୍ତୁ ଅଥବା ଘଟଣାର ଅନୁପସ୍ଥିତିରୁ ଉଦୟ ହେବା ଉପସ୍ଥିତିରେ ପାରିହେବା ଓ ପୁନଶ୍ଚ ଅନୁପସ୍ଥିତିରେ ବିଲୀନ ହେବା ଏକ ମହାଜାଗତିକ ବିଧାନ । ଏ ପ୍ରବାହର ଅନିବାର୍ଯ୍ୟତା ଓ କ୍ରମାନ୍ୱୟତାକୁ ଚିନ୍ତା ଓ ଚେତନାରେ ଏକ ଅବଧାରିତ ନିୟମ ରୂପେ ଆମେ ଗ୍ରହଣ କରିବାରେ ଅଭ୍ୟସ୍ତ । ଏଣୁ କୌମାର ଯୌବନ ଜରା ଭଳି ଦେହାନ୍ତର ପ୍ରାପ୍ତିକୁ ଆମେ ସ୍ୱୀକାର କରି ନେଇଛୁ । ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା । ତଥା ଦେହାନ୍ତର ପ୍ରାପ୍ତି ....।।" ସ୍ୱୀକାର କରି ନେବା ଅର୍ଥ ଗୋଟିଏ ଅବସ୍ଥାରେ ଥାଇ ଅନ୍ୟ ଅବସ୍ଥାକୁ ଅପେକ୍ଷା କରି ବସିବା । ଜୀବନର ମଧ୍ୟାହ୍ନ ଢ଼ଳିଗଲା ବେଳେ ବାର୍ଦ୍ଧକ୍ୟ ତାର ସବୁ ଲକ୍ଷଣ ନେଇ କ୍ରମଶଃ ପ୍ରକଟିତ ହୁଏ । ସେତେବେଳେ ମୃତ୍ୟୁ ପାଇଁ ଆମେ ପ୍ରସ୍ତୁତ ହୋଇଯାଉ । ଭାବୁ ଏହାତ ବିଧି ବିଧାନ, ଅପରିହାର୍ଯ୍ୟ, ଅନିବାର୍ଯ୍ୟ । ଏହାର ବିକଳ୍ପ ନାହିଁ । ଏ ଦୃଢ଼ ପ୍ରତ୍ୟୟ ପ୍ରତ୍ୟେକ କୋଷାଣୁ ଭିତରେ

ବିଦ୍ୟମାନ୍ । ଶରୀର ଉଦୟ ହେଲା ଦିନଠାରୁ ତା'ର ଅବସାନ ଅବଧାରିତ ହୋଇରହିଛି । ଶରୀରର ଉପାଦାନ ପଞ୍ଚମହାଭୂତ କ୍ଷୟଶୀଳ ନୁହନ୍ତି । କ୍ଷିତି ଆପ ତେଜ ମରୁତ୍ ଓ ବ୍ୟୋମ ଏ ବିଶାଳ ବିଶ୍ୱରେ ଅକ୍ଷୟ ତତ୍ତ୍ୱ । କିନ୍ତୁ ଏମାନଙ୍କର ଏ ଶରୀର ରୂପୀ ବିନ୍ୟାସ ଏ ଗଠନ (composition) କ୍ଷୟଶୀଳ । ଏହା ଦିନେ ଅବିନ୍ୟସ୍ତ ହେବ । ତାର ବିଘଟନ (decomposition) ହେବ । ପାଣି ଉପାଦାନରେ ଗଠିତ ବୁଦ୍ବୁଦର ଅବସାନ ପରେ ପାଣି ତତ୍ତ୍ୱ ନିର୍ବିକାର ସ୍ଥିର ରହିବ । ସେହିପରି ଶରୀର ପତନ ପରେ ତାର ଉପାଦାନ ପଞ୍ଚମହାଭୂତ ପୁନଶ୍ଚ ବିଶ୍ୱ ଉପାଦାନ ରୂପେ ସ୍ୱସ୍ଥାନରେ ଅବସ୍ଥାନ କରିବେ ।

ଏ ସମସ୍ତ ତତ୍ତ୍ୱ ଏକତ୍ର ହୋଇ ଶରୀର ରୂପ ପ୍ରକଟିତ ହେବାର କ'ଣ କାରଣ ଥାଇପାରେ । ସେମାନେ ଯାହା ଆଦେଶରେ ବିଶ୍ୱ ଉପାଦାନ ହୋଇ ରହିଛନ୍ତି ତାହାର ହିଁ ଆଦେଶରେ, ତା'ର ଖାତିରରେ ତାହାରି ସ୍ୱସ୍ୱରୂପକୁ ଅବଲମ୍ବନ କରି ଶରୀର ରୂପେ ଗଠିତ ହୁଅନ୍ତି । ସେ ଅବିନାଶୀ ତତ୍ତ୍ୱ ଶରୀରକୁ ପରିଧେୟ ପରି ଗ୍ରହଣ କରି ପୁଣି ତାକୁ ପରିହାର କରିଦିଏ । ହୁଏତ ସମଗ୍ର ବିଶ୍ୱକୁ ନିଜ କ୍ଷରଣରୁ ସେ ସୃଷ୍ଟି କରେ । ବୁଢ଼ିଆଣୀ ତାର ଜାଲ ବୁଣିଲାପରି ବା ନିଜେ ଇଚ୍ଛାକରି ବିଶ୍ୱ ରୂପରେ ପ୍ରକଟିତ ହୁଏ । ସ୍ରଷ୍ଟା ନିଜେ ହିଁ ସୃଷ୍ଟି ହୋଇଯାଏ । ସେହି ନିୟମରେ ଜୀବ ତତ୍ତ୍ୱ ଚାରିପଟେ କାୟା ନିର୍ମାଣ ହୋଇଥାଏ । କେନ୍ଦ୍ର ଚେତନା ଅଶରୀରୀ କିନ୍ତୁ ଶରୀରକୁ ତାର ଅବୟବକୁ ନିଜର ଓଜଃ ଶକ୍ତିରେ ଏକତ୍ର ଧାରଣ କରି ରହେ । ଶରୀରକୁ ଅଧିକରୁ ଅଧିକ ଚେତନାବାହୀ କରିବାକୁ ଜୀବଜଗତରେ ଦୀର୍ଘକାଳବ୍ୟାପୀ ବିବର୍ତ୍ତନର ଧାରାରେ ବହୁବିଧ ରୂପ ଗ୍ରହଣ କରି ଚାଲିଥାଏ । ଏ ଧାରାରେ ମଧ୍ୟ ଏକ କ୍ରମାନ୍ୱୟତା ପରିଲକ୍ଷିତ ହୁଏ – କୌଣସି ଏକ ପରିଣାମ ଆଡ଼କୁ ଏ ବିବର୍ତ୍ତନର ଧାରା ଇଙ୍ଗିତ କରୁଥିବା ପରି ଜଣାଯାଏ । ଶରୀରକୁ ଅଧିକରୁ ଅଧିକ ଚେତନାବାହୀ କରିବାର ପ୍ରକ୍ରିୟା ଚାଲିଥିବ ଯେଉଁ ପର୍ଯ୍ୟନ୍ତ ସ୍ୱୟଂ ଶରୀର ହିଁ ଚେତନାରେ ପରିଣତ ହୋଇ ନ ଯାଇଛି । ଅବିନାଶୀ ତତ୍ତ୍ୱ ଓ ଅବକ୍ଷୟୀ ଚେତନା ଏକତ୍ର ଏକ ଅବିନାଶୀ, ଅମୃତ ବିନ୍ୟାସରେ ପ୍ରକଟିତ ହୋଇ ନଯାଇଛି ।

ଯଦି ଏ ବିଶାଳ ବିଶ୍ୱର ନିୟନ୍ତା ଅନୁପସ୍ଥିତରୁ ଉପସ୍ଥିତକୁ ଗତି କରିବାକୁ ନିଷ୍ପତ୍ତି ନେଇଥାନ୍ତି, ସେ ଅକଳ୍ପନୀୟ ଯୋଜନାରେ ଅନନ୍ତକାଳ, ଅଗଣିତ ବିଶ୍ୱଖଣ୍ଡ ମଥିତ ହେଉଥାନ୍ତି ଏବଂ ପୃଥିବୀ ବୋଲି ନଗଣ୍ୟ ଗ୍ରହପିଣ୍ଡରେ ଜୀବ ଜଗତର ବିବର୍ତ୍ତନ ସଂଘଟିତ ହେଉଥାଏ, ତାହେଲେ ତାକୁ ନତଜାନୁ ସ୍ୱୀକାର କରିନେବା ଏବଂ ସେ ମହାପ୍ରବାହରେ ନିଜକୁ ନିର୍ବିରୋଧ ସମର୍ପଣ କରି ଦେବା ହିଁ ଏକମାତ୍ର ପନ୍ଥା । ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।



## ୧୦.୯.୨୦୦୪

ମଣିଷ ଭଳି ନିବିଡ଼ ଓ ଜଟିଳ ଭାବରେ ଏକ ସାମାଜିକ ପ୍ରାଣୀ ପାଇଁ କୌଣସି କାରଣରୁ ଏକୁଟିଆ ରହିବାକୁ ହେଲେ ତାକୁ ଡ଼ରମାଡ଼େ । ସେ ଅସୁସ୍ଥ ବୋଧକରେ ଅସହାୟ, ବିପନ୍ନ ବୋଧକରେ । କିନ୍ତୁ ଏକକ ସତ୍ତାରେ ସଂପୂର୍ଣ୍ଣ ଅସଂପୃକ୍ତ ଏକଲାପଣ ହିଁ ତାର ମୌଳିକ ବାସ୍ତବତା । ଜୀବନର ସାୟାହ୍ନରେ, ଯେତେବେଳେ ବନ୍ଧୁ ପରିବାର ଆତ୍ମୀୟମାନେ ଅନିବାର୍ଯ୍ୟ ଭାବରେ ଦୂରକୁ ଦୂରକୁ ଘୁଞ୍ଚିଯାନ୍ତି ସେ ଏଇ ନିର୍ମମ ସତ୍ୟକୁ ଅନୁଭବ

କରେ । ସେ ବୁଝିଯାଏ ଯେ ଯେଉଁମାନଙ୍କୁ ସେ ଜଡ଼େଇ ଧରିଥିଲା ନିଜେ ସେମାନଙ୍କ ସହିତ ଜଡ଼ିତ ହୋଇଥିଲା, ଜୀବନର ସମସ୍ତ ଆପଣାପଣ, ଭଣ୍ଟତା ସାର୍ଥକତା ତାଙ୍କୁ ନେଇ ସେ ସର୍ଜନା କରିଥିଲା, ସୁଖ ଦୁଃଖ, ସଂଘର୍ଷ ସଂଘାତ ଭୋଗିଥିଲା ସେମାନେ ଅପସରି ଯାଇଛନ୍ତି ନିଜନିଜର ବେଷ୍ଟନୀ ଭିତରକୁ । ସେମାନେ ଆଉ ପୂର୍ବବତ୍ ତା'ସହିତ ଜଡ଼ିତ ହୋଇ ରହିପାରିବେ ନାହିଁ, ସେ ବି ତାଙ୍କ ସହିତ ଜଡ଼ିତ ହୋଇପାରିବ ନାହିଁ । ମଝିରେ ପଶିଆସି ବ୍ୟବଧାନ ସୃଷ୍ଟି କରୁଥିବା ଅଥଳ ଜଳରାଶିକୁ ଲଂଘିଯାଇ ଗୋଟିଏ ଦ୍ୱୀପଖଣ୍ଡକୁ ଆଉ ଗୋଟିଏ ଦ୍ୱୀପଖଣ୍ଡରେ ଯୋଡ଼ିବା ସଂଭବ ନୁହେଁ । ଏକଦା ସେମାନେ ଗୋଟିଏ ଭୂଖଣ୍ଡ ପରି ଦେଖାଯାଉଥିଲେ ସତ କିନ୍ତୁ ସେତେବେଳେ ମଧ୍ୟ ସେମାନେ ସ୍ୱତନ୍ତ୍ର ସତ୍ତା-ବିଭାଜକ ପ୍ରଣାଳୀଟି କ୍ରମଶଃ ମଝିରେ ପ୍ରବେଶକରି ସେମାନଙ୍କୁ ପୃଥକ୍ ପୃଥକ୍ ଦ୍ୱୀପଖଣ୍ଡରେ ପରିଣତ କରିଦେଲା । ନୂତନ ଦ୍ୱୀପଖଣ୍ଡ କଛିକାଳ ଦ୍ୱୀପପୁଞ୍ଜ ସୃଷ୍ଟିକରି ପୁଣି ପୃଥକ୍ ହୁଏ । ପୁରାତନ, ବିଚ୍ଛିନ୍ନ ହୋଇ ଜଳରାଶିରେ କ୍ରମଶଃ ନିମଗ୍ନ ହୋଇଯାଏ ।

କିନ୍ତୁ ବେଳେବେଳେ ମନେହୁଏ ଯେ ସେ ସାୟାହ୍ନର ମଣିଷଟି ପ୍ରକୃତରେ ଆଦୌ ଏକୁଟିଆ ନୁହେଁ, ଅସହାୟ ନୁହେଁ । ସ୍ନେହ, ମମତା ଶ୍ରଦ୍ଧାର ଯେଉଁ ଦ୍ରବଣ ନେଇ ସେ ତା'ପରିବାର, ସମାଜ, କୁଟୁମ୍ବଙ୍କୁ ଏକାଠି ଜଡ଼େଇ ରଖିଥିଲା, ସେମାନେ ସମସ୍ତେ ଅପସରି ଗଲେ ମଧ୍ୟ ସେଇ ଦ୍ରବଣ ତା' ଭିତରୁ କ୍ଷରିତ ହେଉଥାଏ । ଫଳରେ ଅପରିଚିତ କେହି ଜଣେ ତା'ହାତରୁ ଖସି ପଡ଼ିଥିବା ବାଡ଼ିଟିକୁ ତଳୁ ଉଠାଇ ଧରାଇ ଦିଏ । ସେହିପରି କେହି ଜଣେ ଅଯାଚିତ କୁଶଳ ପୁଚ୍ଛା କରେ । କହେ "ମୁଁ ସବୁଦିନ ମୋ ପାଇଁ କ୍ଷୀର ଆଣି ଯାଏ, ଆପଣଙ୍କ ପାଇଁ ନେଇଆସିବି, ଆଉ ଯାହାକହିବେ ସେଇଆଡୁ ନେଇ ଆସିବି ମୋତେ ଝୋଲାଟା ଦିଅନ୍ତୁ ।" ନିର୍ଜନ ବେଳା ଭୂମିରେ ସମୁଦ୍ରରୁ ଉଠିଆସି ଅପରିଚିତ ଜୀବମାନେ ବିଚରଣ କରନ୍ତି । ଏକାକୀପଣକୁ ପ୍ରତିକାର କଲାପରି ଗୁଞ୍ଜରି ଉଠନ୍ତି । ସେଇ ଗୋଟିଏ ଦ୍ରବଣ । ରୂପ ଭିନ୍ନ । ପରିସ୍ଥିତି ଭିନ୍ନ ହେଲେ କ'ଣ ହେଲା ସେମାନଙ୍କ ଭିତରେ ଆଉଜଣକୁ ସେ ଆବିଷ୍କାର କରେ । କୋଉଠି ଥିଲ ଏତେ କାଳ ? ବୋଲି ପଚାରିଲେ ସେ ହସି ଦେଇ ଉତ୍ତର ଦିଏ - ମୁଁ ତ ଚିରକାଳ ତମରି ପାଖରେ । ତମେ ମତେ ଦେଖି ନ ଦେଖିଲା ପରି ଭ୍ରମି ଯାଅ । ମୁଁ ହିଁ, ନାନା ରୂପରେ ପାଖେଇ ଆସେ, ଦୂରେଇଯାଏ । ମୁଁ ପରା ତୁମକୁ ଘେରିରହିଥିବା ସମୁଦ୍ର, ମୋତେ ଚିହ୍ନିଗଲେ ତମେ ଆଉ କେତେବେଳେ ଏକାକୀ ବୋଧ କରିବ ନାହିଁ । ମୁଁ ହିଁ ତମର ପତ୍ନୀ ପୁତ୍ର, ସୋଦର ବନ୍ଧୁ ରୂପରେ ତୁମକୁ ଜଡେଇ ରଖିଥିଲି । ଏବେ ପରିଚିତକୁ ଆଡ଼େଇ ନେଇ ଅପରିଚିତ ହୋଇ ଆସିଛି ।

ସେ ଅସହାୟ ଦୁଃଖୀ ଏକାକୀ ମଣିଷଟିର ହଠାତ୍ ସବୁ ଖାଲି ଜାଗା ଭରପୁର ହୋଇଯାଏ, ଉଛୁଳି ଯାଏ । ତାର ଦିଗ୍‌ବଳୟ ବିସ୍ତୃତ ହୋଇଯାଏ, ସଂପର୍କ ପ୍ରସାରିତ ହୋଇଯାଏ । ସମସ୍ତଙ୍କୁ ହରାଇ ଦେଲା ପରେ ହିଁ ସେ ସାରା ପୃଥିବୀକୁ ପାଇଯାଏ । ତାକୁ ଯଦି କିଏ ପଚାରେ "ଆପଣ ଏକୁଟିଆ ରହୁଛନ୍ତି କି ତେଡ଼େ ବଡ଼ ଘରେ, ତେଡ଼େବଡ଼ ସହରରେ, ପୃଥିବୀରେ ?" ସେ ସୂର୍ଯ୍ୟୋଦୟ ଭଳି ହସିଦେଇ ଉତ୍ତର ଦିଏ "ମୁଁ ଏତେ ସାନ୍ନିଧ୍ୟ, ଏତେ ଘନିଷ୍ଠତାରେ କେବେ ନଥିଲି । I am in great company !!"



ତିନି ଭୁବନରେ ମୋର କିଛି କରିବାର ନାହିଁ । "ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ୍" ଅବଶ୍ୟ-କରଣୀୟ କର୍ମର ନାମ କର୍ତବ୍ୟ । ପରିସ୍ଥିତି, ସଂପର୍କ, ଦାୟିତ୍ୱ, ଅଲଂଘ୍ୟ ଆଦେଶ ଆଦି କର୍ତ୍ତବ୍ୟ ନିରୂପଣ କରିଥାନ୍ତି । ଏକ ସାଧାରଣ ସାମାଜିକ ପ୍ରାଣୀ କର୍ତ୍ତବ୍ୟ ସୃଷ୍ଟି କରୁଥିବା କାରଣମାନଙ୍କରୁ ମୁକ୍ତ ହୋଇପାରେ ନାହିଁ । ସେଥିପାଇଁ ବିବିଧ ବନ୍ଧନର ଆକର୍ଷଣରେ ସେ ଟାଣିହୁଏ ଏବଂ ଏକ ନିର୍ଦ୍ଦିଷ୍ଟ ଭୂମିକା ନିର୍ବାହ କରିବାକୁ ବାଧ୍ୟ ହୁଏ । ପାରିବାରିକ ସଂପର୍କ ଏକ ଦୃଢ଼ ରଜ୍ଜୁ । ସେଥିରେ ବନ୍ଧା ହୋଇ ତାକୁ କିଛି କର୍ମ ଅନିବାର୍ଯ୍ୟ କରିବାକୁ ପଡ଼େ । ସେହିପରି ବନ୍ଧୁତା, ମିତ୍ରତା, ସମାଜ, ଶାସନ ଜାତି ଧର୍ମ ପ୍ରତି ଆନୁଗତ୍ୟ । ଏମାନେ ସମସ୍ତେ ଏକ ଏକ ନିର୍ଦ୍ଦିଷ୍ଟ ପ୍ରକାର କର୍ମ ତା'ଠାରୁ ପ୍ରତ୍ୟାଶା କରନ୍ତି । ଯୁକ୍ତି ହେଲା ଯେ, ସେ ବିଭିନ୍ନ ବ୍ୟକ୍ତି ଅନୁଷ୍ଠାନ ବ୍ୟବସ୍ଥା ଦ୍ୱାରା ପାଳିତ, ସୁରକ୍ଷିତ ପରିବେଷ୍ଟିତ ହୋଇଥିବାରୁ ନିରାପଦ, ନିରୁପଦ୍ରୁତ ହୋଇ ବଞ୍ଚି ପାରିଥିବାରୁ ତାର ପ୍ରତିଦାନରେ ତା'ର ସେମାନଙ୍କ ପ୍ରତି କର୍ତ୍ତବ୍ୟ ନିରୂପିତ ହୋଇଯାଏ । ତାକୁ ନିତି ନିୟମ, ଧର୍ମ ନାମରେ ସ୍ୱୀକୃତି ମିଳିଥାଏ । ଦାୟିତ୍ୱକୁ ସ୍ୱୀକାର କରି କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି ପ୍ରଶଂସିତ ହୁଏ କର୍ତ୍ତବ୍ୟବିମୁଖ ହେଲେ ନିନ୍ଦିତ ହୁଏ । କିନ୍ତୁ ସ୍ଥିର ଚିତ୍ତରେ ବିଚାର କଲେ ଚିରାଚରିତ କର୍ତ୍ତବ୍ୟର ଆଉ ଏକ ପ୍ରସ୍ଥ ଉନ୍ମୋଚିତ ହୁଏ । ଗୌତମ, ତାଙ୍କ ନବ ବିବାହିତା ପତ୍ନୀ ଓ ପୁତ୍ର ତାଙ୍କ ପରିବାର, ସ୍ୱଜନ, କୁଟୁମ୍ବ, ସମଗ୍ର ରାଜ୍ୟ ରାଜ୍ୟର ପ୍ରଜାକୁଳ - ଏ ସମସ୍ତଙ୍କ ପ୍ରତି ନିର୍ଦ୍ଧାରିତ କର୍ତ୍ତବ୍ୟକୁ ଲଂଘନ କରିଗଲେ । କର୍ତ୍ତବ୍ୟ ଲଙ୍ଘନ କରିବା ନିନ୍ଦନୀୟ ଆଚରଣ । କିନ୍ତୁ ଯେଉଁ କାରଣରୁ ସେ ଏଭଳି ଆଚରଣ କଲେ ତାହା କ'ଣ ହୋଇପାରେ । ତାହା ନିଶ୍ଚୟ ଏକ ବୃହତ୍ତର ଆହ୍ୱାନ, ଏକ ପ୍ରବଳତର ଶକ୍ତି । ଯେଉଁ ବନ୍ଧନ ଓ ସମ୍ପର୍କ, ଏବଂ ତଜ୍ଜନିତ କର୍ତ୍ତବ୍ୟ ତାଙ୍କୁ ଟାଣି ରଖିଥିଲା, ପତ୍ନୀ, ପୁତ୍ର ପରିବାର ଓ ରାଜ୍ୟ ସହିତ, ତା'ଠାରୁ ଅନେକ ଗୁଣରେ ବଳବତ୍ତର ଶକ୍ତି - ସଂପୃକ୍ତି ଓ ମହତ୍ତର କର୍ତ୍ତବ୍ୟ ତାଙ୍କୁ ସେଥିରୁ ବିଚ୍ୟୁତ କରିନେଲା । ସେ ସେପରି ଆଚରଣ ଦ୍ୱାରା ରାଜପୁତ୍ର ପତି ଓ ପିତାର କର୍ତ୍ତବ୍ୟକୁ ଅସ୍ୱୀକାର କରି ନାହାନ୍ତି ବରଂ ତାକୁ ଏକ ବୃହତ୍ତର କର୍ତ୍ତବ୍ୟ ଭିତରେ ଅନ୍ତର୍ଭୁକ୍ତ କରିଛନ୍ତି । ସଂସାର ବିମୁଖ ସନ୍ନ୍ୟାସୀ ପାଇଁ ମଧ୍ୟ ଏଇଭଳି ଏକ କାରଣ ତାଙ୍କର ସାଧାରଣ କର୍ତ୍ତବ୍ୟ ସଂପାଦନ କରିବାର ବାଧକ ହୋଇଥାଏ ।

କିନ୍ତୁ ଯଦି ବନ୍ଧନ ହିଁ ନାହିଁ, ସଂପର୍କ ହିଁ ନାହିଁ, ତେବେ କର୍ତ୍ତବ୍ୟ ଆସିବ କିପରି ? - ଯଥା ଆକାଶ । ଆକାଶର କୌଣସି କ୍ରିୟା, ପ୍ରତିକ୍ରିୟା ବା କର୍ତ୍ତବ୍ୟ ନାହିଁ । ସେ କେବଳ ସ୍ୱଧର୍ମରେ ପରିବ୍ୟାପ୍ତ ହୋଇ ରହିଥାଏ । ତିନି ଭୁବନରେ ମୋର କିଛି ହିଁ କର୍ତ୍ତବ୍ୟ ନାହିଁ କହିବା ପଶ୍ଚାତ୍‌ରେ ଏହି ଅବାଧ ମୁକ୍ତତା ଅସଂପୃକ୍ତି ଓ ବ୍ୟାପ୍ତିର ସୂଚନା ମିଳେ । ସେ କାହାପାଖରେ ଉତ୍ତରଦାୟୀ ନୁହନ୍ତି । ତାଙ୍କୁ କୌଣସି ଭୂମିରେ ବା ଭୂମିକାରେ କୌଣସି ଆଚରଣବିଧି ବାନ୍ଧି ରଖିପାରେ ନାହିଁ । ବ୍ରାହ୍ମୀସ୍ଥିତିରେ କର୍ତ୍ତବ୍ୟ କ'ଣ ଅକର୍ତ୍ତବ୍ୟ କ'ଣ - କେଉଁଠି, ବା କାହା ପାଇଁ ? ସେ ତ' କାହାରି ପିତା, ପୁତ୍ର, ପତ୍ନୀ, ସଖା, ସୋଦର ନୁହନ୍ତି । ଏଣୁ ତାଙ୍କର କ'ଣ ବା କରିବା ଅନିବାର୍ଯ୍ୟ ହୋଇପାରେ ? ସେ ତ' ଅସଂପୃକ୍ତ, ଅପ୍ରକଟ, ଆତ୍ମଲୀନ ଅଜ୍ଞେୟ ସତ୍ତା । ତଥାପି ସେ ସ୍ୱେଚ୍ଛାରେ ପ୍ରକଟିତ ହୋଇଛନ୍ତି, ବିବିଧ ରୂପରେ, ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । 'ପିତାହମସ୍ୟ ଜଗତଃ, ମାତା ଧାତା ପିତାମହଃ ।' ଯଦି ପ୍ରକଟ ରୂପକୁ ସ୍ୱୀକାର କରିଛନ୍ତି ତତ୍ ସଂଲଗ୍ନ, ବିବିଧ ସଂପର୍କକୁ

ମଧ୍ୟ ସ୍ୱୀକାର କରିଛନ୍ତି ଓ ସେଥିପାଇଁ ଯଥାଯୋଗ୍ୟ କର୍ତବ୍ୟକୁ ମଧ୍ୟ ଗ୍ରହଣ କରିଛନ୍ତି । ସେଥିପାଇଁ ସେ ସଖା ସେ ସାରଥୀ, ସେ ଗୁରୁ, ସେ ପଥପ୍ରଦର୍ଶକ, ସେ ମହାସମରର ନିୟନ୍ତା ଓ ତ୍ରାତା ।

ଯେ ସମସ୍ତ ସଂପର୍କରୁ ମୁକ୍ତ, ସେ ହିଁ ସମସ୍ତ ସଂପର୍କ ପାଇଁ ସମର୍ଥ । ଯାହାର ତିନିଭୁବନରେ କୌଣସି କର୍ତ୍ତବ୍ୟ ନାହିଁ, ସେହିଁ ସମଗ୍ର ଜଗତ୍ ପ୍ରବାହର ଦାୟିତ୍ୱ ବହନ କରିଥାନ୍ତି, ସେହି ପ୍ରକଟ ଅପ୍ରକଟର ବିସ୍ତାରକୁ ଧାରଣ କରିଥାନ୍ତି । ସେହି ଜଡ଼ ଚେତନର ବିବର୍ତ୍ତନ, ବିକାଶ କରିବାର ନିରବଚ୍ଛିନ୍ନ ନିୟନ୍ତ୍ରଣ କରିଥାନ୍ତି । ମାନସରୁ ଅତିମାନସକୁ ଉତ୍ତୀର୍ଣ୍ଣ ଚେତନାର ସଂଚାର କରିଥାନ୍ତି । କୌଣସି ନୀତି, ନିୟମ ଦାୟିତ୍ୱ ବଳୟରେ ନିର୍ଦ୍ଧାରିତ ହେଉଥିବା କର୍ତ୍ତବ୍ୟ ତାଙ୍କର ନାହିଁ ସତ, କିନ୍ତୁ ନିଜେ ନିଜ ପାଇଁ ସ୍ୱେଚ୍ଛାରେ ସେ କ୍ରିୟାଶୀଳ ହୋଇପାରନ୍ତି । ଇଚ୍ଛା କଲେ ନ ହୋଇ ବି ପାରନ୍ତି । ତାଙ୍କ ବିଧାନ ଓ ବ୍ୟବସ୍ଥା ନିରଙ୍କୁଶ । ଯେଉଁ ଅଦ୍ଭୁତ ଯୋଜନାକୁ ସେ ରୋପଣ କରିବାକୁ ଏ ଭୂମିକୁ ନିର୍ବାଚନ କରିଛନ୍ତି, ସେଥିରେ ସଚେତନ ନିଯୁକ୍ତ ହେବା ସମର୍ପିତ ହୋଇଯିବା ଓ ହୋଇପାରିବା ହିଁ ଆମର କର୍ତ୍ତବ୍ୟ, ସବୁ କର୍ତ୍ତବ୍ୟର ଊର୍ଦ୍ଧ୍ୱରେ ସବୁ କର୍ତବ୍ୟର ସୁସମ୍ପାଦନାରେ ପ୍ରତିଷ୍ଠିତ ପରମ କର୍ତ୍ତବ୍ୟ ।



**୨୭.୯.୨୦୦୪**

All Sincere prayers are granted ସବୁ ଆନ୍ତରିକ ପ୍ରାର୍ଥନା ପୂରଣ ହୋଇଥାଏ । ଆମେ କିନ୍ତୁ ବହୁବିଧ ଅଭିଳାଷ ଛୋଟବଡ଼ କାମନା, ବାସନା, ଇଚ୍ଛାର ପରିପୂର୍ତ୍ତି ପାଇଁ ଯାଚନା କରି ଚାଲିଥାଉ । ଅହରହ ପ୍ରତି ମୁହୂର୍ତ୍ତରେ । ଏଣୁ ସ୍ୱାଭାବିକ ଭାବରେ ଅଧିକାଂଶ କ୍ଷେତ୍ରରେ ନିରାଶ ହେଲାପରେ ଆମେ ଅଭିଯୋଗ କରିଥାଉ ଯେ ପ୍ରଭୁ ଆମ କଥା ଶୁଣିଲେ ନାହିଁ । ପ୍ରଭୁନିନ୍ଦା ଓ ଅବିଶ୍ୱାସ ଆମକୁ ଗ୍ରାସ କରିଯାଏ । ତା'ପରେ ହୁଏତ ଯୁକ୍ତି କରୁ ଯେ ଯାହାକୁ ଆମେ ପ୍ରାର୍ଥନା କହୁ ତାହା ବୋଧହୁଏ ମୂଳରୁ ପ୍ରାର୍ଥନା ନୁହେଁ - ଯଦିବା ତାହା ଏକ ପ୍ରାର୍ଥନା ତାହା ଆନ୍ତରିକ ବା ଯଥେଷ୍ଟ ଆନ୍ତରିକ ନୁହେଁ ଏବଂ ଶେଷରେ କୌଣସି ପ୍ରାର୍ଥନା ଆନ୍ତରିକ ବା ଅନାନ୍ତରିକ ସେ କେବେହେଲେ ପୂରଣ କରନ୍ତି ନାହିଁ । ପ୍ରଥମ ଯୁକ୍ତିରେ ହୁଏତ କୁହାଗଲା ଯେ ଆମେ ପ୍ରାର୍ଥନା କରି ଜାଣୁନା । କେବଳ ଯାଚନା କରୁ, ଅଳି କରୁ, ଅଭିମାନ, ଅଭିଯୋଗ କରୁ । ଅସଂଖ୍ୟ ଇଚ୍ଛା ପୂରଣ କରିବାକୁ ଦାବି କରୁ । ଯେ ଦାବି ପୂରଣ କରନ୍ତେ ବୋଲି ଆମର ଆଶା, ତାଙ୍କ ଉପରେ ନାନା ପ୍ରକାର ଦୋଷାରୋପ କରୁ... ଯେ ସେ ନିର୍ଦୟ, ନିଷ୍ଠୁର, ଅଂଧ ବଧିର, କିମ୍ୱା ସେ ପକ୍ଷପାତୀ, ବିଚାରହୀନ, ପରପୀଡ଼ନକାରୀ ଖାମଖିଆଲି ଇତ୍ୟାଦି । ଏଭଳି ମନକୁମନ ଯୁକ୍ତିକଲେ ଶୋଧାଶୋଧି କଲେ ଆମକୁ ସୁଖମିଳେ । କିଛି ନ ମିଳିଲା ନାହିଁ, ମନ ଭରି ଗାଳି ତ ଦେଇପାରିଲୁ । ଦ୍ୱୀତୀୟ ଯୁକ୍ତି ବି ସେହିପରି ଏକ ବିତର୍କର ବିଷୟ । କାହାକୁ ଆନ୍ତରିକ ବୋଲି କହିବା । କେଉଁ ପ୍ରାର୍ଥନା ଆନ୍ତରିକ ଏବଂ କେଉଁଟା ଆନ୍ତରିକ ନୁହେଁ । ପ୍ରାର୍ଥନାଟାଏ କରି ଦେଇଥିବା, ହେଲେ ହେଲା ନହେଲେ ନାହିଁ । ଏଭଳି ମାନସିକତାରେ ଆନ୍ତରିକତା ନାହିଁ । ପାଇବା ପାଇଁ ଆତୁରତା ପ୍ରାର୍ଥନା ପାଇଁ ପ୍ରତିବଦ୍ଧତା, ମନର ଦୃଢ଼ତା, ପୂରଣ ନହେଲେ ବଞ୍ଚିବାର ନିରର୍ଥକତା, ଗୋଟିଏ ଦିଗରୁ ଆନ୍ତରିକତାର ଲାକ୍ଷଣିକ ପ୍ରମାଣ ଦିଏ । ଯଦି ନିଜଉପରେ ବିଶ୍ୱାସ ନାହିଁ,

ପ୍ରାର୍ଥନାରେ ବିଶ୍ୱାସ ନାହିଁ, ପ୍ରାର୍ଥନା ଯେ ପୂରଣ କରିବେ ତାଙ୍କ ଉପରେ ବିଶ୍ୱାସ ନାହିଁ, ନିର୍ଭରଶୀଳତା ନାହିଁ, ପ୍ରାର୍ଥନା କରିସାରି ସମର୍ପଣ ଭାବ ନେଇ ଅବିଚଳିତ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବାର ସାମର୍ଥ୍ୟ ନାହିଁ ନିଜ ଉପରେ, ପ୍ରାର୍ଥନାର ଯୋଗ୍ୟତା ଉପରେ ବା ତାଙ୍କର ପ୍ରଭୁପଣ ଏବଂ ଅଭ୍ରାନ୍ତ ନିଷ୍ପତ୍ତି ଓ କରୁଣା ଉପରେ ଅଗାଧ ବିଶ୍ୱାସ ନାହିଁ, ତା'ହେଲେ ଆନ୍ତରିକ ପ୍ରାର୍ଥନାର ମୌଳିକ ସର୍ତ୍ତ ପୂରଣ ହେଉନାହିଁ । ଆନ୍ତରିକତାର ମାତ୍ରାଭେଦ ନାହିଁ । କେବଳ ଦୁଇଟି ନିଷ୍ପନ୍ନ ବିଭାଗ - ହୁଏତ ତାହା ଆନ୍ତରିକ ବା ଅନାନ୍ତରିକ । ଆନ୍ତରିକ ହେବା ମାତ୍ରେ ହିଁ ତାହା ପୂରଣ ହୋଇଯିବ, ବିଦ୍ୟୁତ ତାରର ସଂସ୍ପର୍ଶ ମାତ୍ରେ ବିଜୁଳୀବତୀ ଜଳିଲା ପରି ।

କିନ୍ତୁ ତୃତୀୟ ବିକଳ୍ପଯୁକ୍ତି ସଂଶୟ, ସନ୍ଦେହ ଅବିଶ୍ୱାସ ଅବଜ୍ଞା ଅଜ୍ଞାନ ଆଦି ନକାରାତ୍ମକ କେନ୍ଦ୍ରରୁ ସୃଷ୍ଟି ହୁଏ । ମନ ଉପରେ ଥରେ ଏ ଅଂଧାର ମାଡ଼ିଗଲେ ନୈରାଶ୍ୟ, ବିଷାଦ, ଭୟ ଅବିଶ୍ୱାସ ତାକୁ ଅଧିକାର କରି ନିଅନ୍ତି । ମୂଳ ଆସ୍ଥା ତୁଟିଗଲେ ନିଜେ ନିଜ ଦୃଷ୍ଟିରେ, ତୁଚ୍ଛ, ହେୟ ନିରର୍ଥକ ଅକିଞ୍ଚନ ହୋଇଯିବାକୁ ହୁଏ । ସେହି ଅନୁପାତରେ ନିଜର ଆଶା, ଭରସା, ପ୍ରାର୍ଥନା, ସବୁ ମଳୀନ ପଡ଼ିଯାଏ । ଅନ୍ୟପକ୍ଷେ ଏକ ଅନାୟାସ, ନିର୍ମଳ ସରଳ, ସହଜ, ବିଶ୍ୱାସ ହିଁ ସମସ୍ତ ଭୟ ନିରାଶା ବିଷାଦକୁ ଦୂର କରିଦେଇପାରେ । ଯଦି ସେ କହୁଛନ୍ତି ସବୁ ଆନ୍ତରିକ ପ୍ରାର୍ଥନା ପୂରଣ ହୁଏ - ତା ହେଲେ ଅବଶ୍ୟ ହୁଏ ଏଥିରେ ସନ୍ଦେହ ନାହିଁ । ତାଙ୍କ ପାଖରେ ମୋର ପ୍ରାର୍ଥନା ସର୍ବଦା ଆନ୍ତରିକ ଐକାନ୍ତିକ । ତାହା ନିଶ୍ଚୟ ପୂରଣ ହେବ । ସେହିଁ ତାକୁ ପୂରଣ କରିବେ । ପ୍ରାର୍ଥନା କଲା ପରେ ପ୍ରାର୍ଥନାକୁ ଅର୍ପଣ କରିଦେଲା ପରେ ମୋର ଆଉ କିଛି କରିବାର ନାହିଁ । ସେହି ତାର ଦାୟିତ୍ୱ ବହନ କରିବେ । ଏବଂ ତାକୁ ପୂରଣ କରିବା, ନ କରିବା, ତାଙ୍କ ଦାୟିତ୍ୱ ମୋର ନୁହେଁ । ମୋର ଇଚ୍ଛା ନୁହେଁ, ତାଙ୍କର ଇଚ୍ଛା ହିଁ ପୂରଣ ହେଉ - ଏତିକି କାୟମନୋବାକ୍ୟରେ ସମଗ୍ର ସାମୂହିକ ସତ୍ତାରେ କହିପାରିଲେ ଯଥେଷ୍ଟ । କହିବା ଭଳି ସାମର୍ଥ୍ୟ ପାଇଁ ପ୍ରାର୍ଥନା କରାଯାଇପାରେ ।

ଆଳସ୍ୟ ହେଉଛି କର୍ମବିମୁଖତା । ଏହା ଶରୀର ସ୍ତରରେ ଲାକ୍ଷଣିକ ଭାବେ ପ୍ରତିଫଳିତ ହୁଏ ନିଦ୍ରାରେ । ନିଦ୍ରା ସହିତ ଅଜ୍ଞାନ, ଅନ୍ଧାର ଜଡ଼ିତ ହୋଇଥାଏ । ଏଣୁ ଆଳସ୍ୟ ମୁଖ୍ୟତଃ ତମୋଗୁଣର ଏକ ଲକ୍ଷଣ ଏବଂ ମାନସିକ ବିକାର । ଅକର୍ମଣ୍ୟ ବା ପଙ୍ଗୁ କର୍ମ କରିବାକୁ ଅସମର୍ଥ କିନ୍ତୁ କର୍ମ ସମର୍ଥ ବ୍ୟକ୍ତି କର୍ମ ବିମୁଖ ହେବା ଏକ ନିର୍ଦ୍ଦିଷ୍ଟ ମାନସିକତାର ପରିଣାମ ।



## ୧୫.୧୧.୨୦୦୪

ବିଭିନ୍ନ ଚିନ୍ତା ଭିନ୍ନ ଭିନ୍ନ ପ୍ରକାର ଚାପ ସୃଷ୍ଟି କରନ୍ତି । ଆବେଗ ଉଦ୍‌ବେଗ ଉତ୍ସାହ ଏବଂ ସେହିପରି ବିଷାଦ, ବିମର୍ଷ, ନିରୁତ୍ସାହ ସୃଷ୍ଟି କରନ୍ତି । ଚିନ୍ତା ମନୋଭୂମିରେ ନାନାପ୍ରକାର ପରିସ୍ଥିତିର ଚିତ୍ର ପ୍ରସ୍ତୁତ କରେ । ସେଥିରେ ବିବିଧ କ୍ରିୟା ଅଭିନୀତ ହୁଏ । ତା'ର ଫଳ ସ୍ୱରୂପ ଶରୀରରେ ବାସ୍ତବ ଅନୁଭବର ବିକାର ଦେଖା ଦିଏ । ଉଦାହରଣ ସ୍ୱରୂପ ଯୌନଚିନ୍ତା । ସଂଭୋଗ କଳ୍ପନା । ସେଥିରେ ମନ ପ୍ରାଣ ନିମଗ୍ନ ଥିଲାବେଳେ, ଶରୀର ମଧ୍ୟ ଉତ୍ତେଜିତ ହୁଏ । ହୃତସ୍ପନ୍ଦନ ତୀବ୍ରତର ହୁଏ । ଶ୍ୱାସ ଖରତର ହୁଏ ଉତ୍ତାପ ବୃଦ୍ଧିପାଏ । ରକ୍ତଚାପ ବଢ଼ିଯାଏ । ଏ ସମସ୍ତ ବିକ୍ରିୟା କୌଣସି ଶାରୀରିକ ସଂଭୋଗର ଅପେକ୍ଷା ରଖେ ନାହିଁ । ସେହିପରି କ୍ରୋଧ

ପ୍ରକାଶ ପାଇଥିଲେ ଯେଉଁ ଭଳି ବିକାର ଦେଖାଦେଇଥାନ୍ତା କେବଳ ତଦ୍ରୂପ ପରିସ୍ଥିତି ବିଷୟ ଚିନ୍ତା କରିବାରେ ହିଁ ତାହା ଶରୀର ଓ ପ୍ରାଣରେ ଦେଖାଦେଇଥାଏ । ଏଣୁ ଚିନ୍ତାର ଚାପ ଓ ପ୍ରଭାବ ଯେକୌଣସି ତଦ୍ରୂପ ବାସ୍ତବ ଶାରୀରିକ ଅନୁଭୂତି ବା ପରିସ୍ଥିତିର ପ୍ରଭାବ ସହିତ ତୁଳନୀୟ ।

ଏହାର କାରଣ ହୁଏତ ଏଇଆ ହୋଇପାରେ ଯେ ସେ ଦୁଇଟି ଯାକ ଗୋଟିଏ ମାତ୍ର ପ୍ରକ୍ରିୟା । କୌଣସି ପରିସ୍ଥିତି ବା ଶାରୀରିକ ଅବସ୍ଥା ବିକ୍ରିୟା ସୃଷ୍ଟି କରିବା ପୂର୍ବରୁ ଇନ୍ଦ୍ରିୟ ମାଧ୍ୟମରେ ମନରେ ଗୃହୀତ ହୋଇଥାଏ । ସେହିଠାରେ ହିଁ ଏହା ବିଭିନ୍ନ ପ୍ରଭାବର ରସାୟନ ସୃଷ୍ଟି କରିଥାଏ ଓ ମନକେନ୍ଦ୍ରରୁ ଆଦେଶ ପାଇ ଶରୀରରେ ବିକ୍ରିୟା ଜାତ ହୋଇଥାଏ । ମନ ଯଦି ନିଷ୍କ୍ରିୟ ନିଶ୍ଚେଷ୍ଟ ପଡ଼ି ରହେ ତେବେ ବାସ୍ତବକ୍ଷେତ୍ରରେ ଯାହା ଘଟିଗଲେ ସୁଦ୍ଧା ତା'ର କୌଣସି ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । କୋମାରେ ପଡ଼ିଥିବା ରୋଗୀ, ବା ଗଭୀର ନିଦ୍ରାରେ ଅଭିଭୂତ ବ୍ୟକ୍ତି କୌଣସି ଉତ୍ତେଜକ ପରିସ୍ଥିତିରେ ବିକ୍ରିୟା ପ୍ରକାଶ କରେନାହିଁ । ଅର୍ଥାତ୍ ଶରୀର ବା ଇନ୍ଦ୍ରିୟସକଳ ଯଥାବତ୍ ଥାଇ ସୁଦ୍ଧା ମନ ସଂଶ୍ଳିଷ୍ଟ ନ ହେଲେ ଚାପ ସୃଷ୍ଟି ହୁଏ ନାହିଁ । ଅର୍ଥାତ୍ ସ୍ଥୂଳ କ୍ରିୟା ପ୍ରତିକ୍ରିୟା ବିକ୍ରିୟାରେ ଶରୀର କେବଳ ମନର ଅନୁଗାମୀ ।

ଅନ୍ୟପକ୍ଷେ ବାସ୍ତବ କ୍ଷେତ୍ରରେ କୌଣସି ଉତ୍ତେଜକ ବା ବିସ୍ଫୋରକ ପରିସ୍ଥିତି ନଥିଲେ ସୁଦ୍ଧା ମନ ସେଭଳି ପରିସ୍ଥିତି କଳ୍ପନା କରି କାମ କ୍ରୋଧାଦି ବିକ୍ରିୟାର ବାହକ ରସାୟନ ଶରୀରରେ ସଂଚାରିତ କରିପାରେ । ଚାପ ସୃଷ୍ଟି ହୁଏ ମନରେ ତାର ପ୍ରଭାବ ତରଙ୍ଗ ଦେଖାଦିଏ ପ୍ରାଣ ଓ ଶରୀରରେ । ମନ ହିଁ ନାଚେ ଓ ନଚାଏ । ଶରୀରର ଆୟତ୍ତ ନାହିଁ ମନର ଚାପ ବଳୟରୁ ମୁକ୍ତ ହେବା ପାଇଁ । ଶରୀର ଚାପଗ୍ରସ୍ତ ଥିବାବେଳେ ପ୍ରାଣ ମଧ୍ୟ ଅନୁରୂପ ଚାପରେ ଆନ୍ଦୋଳିତ ହୋଇଥାଏ । ବସ୍ତୁତଃ, ମନର ଚିନ୍ତା କଳ୍ପନା ଚାପ ସୃଷ୍ଟିକରି ପରିସ୍ଥିତି ନିର୍ବିଶେଷରେ ଶରୀର ଓ ପ୍ରାଣକୁ ପ୍ରଭାବିତ କରିଥାଏ ।

ପ୍ରତ୍ୟେକ ପରିସ୍ଥିତି କୌଣସି ବିକ୍ରିୟା ମନ, ପ୍ରାଣ, ବା ଶରୀର କେନ୍ଦ୍ରରେ ସୃଷ୍ଟି କରିବା ପୂର୍ବରୁ ମନରେହିଁ ପରିକ୍ଷିତ ଓ ଅନୁମୋଦିତ ହୋଇଥାଏ । ମନରେ କାମକେନ୍ଦ୍ର କମ୍ପିତ ହେଲେ ହିଁ ଶରୀରରେ ଓ ପ୍ରାଣରେ ଉଦ୍ଦୀପନା ଓ ଆବେଗ ସଂଚାର ହୁଏ । ବେଳେବେଳେ ମନ ପରିସ୍ଥିତିକୁ ଗ୍ରହଣ କରେ ନାହିଁ । ସେ କ୍ଷେତ୍ରରେ କୌଣସି ବିକ୍ରିୟା ବା ଚାପ ସୃଷ୍ଟି ହୁଏ ନାହିଁ । ଆଉ ବେଳେବେଳେ ମନ ପରିସ୍ଥିତିର ବିପରୀତ ଧର୍ମକୁ ସୃଷ୍ଟି କରିଥାଏ । ସେ କ୍ଷେତ୍ରରେ ଆଶ୍ଚର୍ଯ୍ୟଜନକ ଭାବରେ ଶରୀର ମଧ ତଦନୁରୂପ ବିକ୍ରିୟା ପ୍ରଦର୍ଶନ କରିଥାଏ । କାମ ପରିବର୍ତ୍ତେ କ୍ରୋଧର ଲକ୍ଷଣ ଦେଖାଦିଏ । ଏହାର ପଶ୍ଚାତରେ ମନର ପ୍ରରୋଚନା ଦାୟୀ । କାମର ସମସ୍ତ ଉପାଦାନ ଉପସ୍ଥିତ ଥିବା ସତ୍ତ୍ୱେ କ୍ରୋଧାଗ୍ନିରେ ମଦନଭସ୍ମ ହୋଇଯାଏ । ଶୁକଦେବଙ୍କ ତପସ୍ୟା ପ୍ରାରମ୍ଭରେ କାମ କ୍ରୋଧ ଲୋଭ ମୋହ, ମଦ ମାତ୍ସର୍ଯ୍ୟ ଷଡ଼ରିପୁ ମନସ୍ତମ୍ଭନରେ ବାଧକ ହେବାରୁ ଏବଂ ଶରୀର ମାତ୍ରେ ସେମାନଙ୍କ ଉପସ୍ଥିତିର ସକ୍ରିୟତା ଅନିବାର୍ଯ୍ୟ ବିଧିବିଧାନ ହୋଇଥିବାରୁ ଶୁକଦେବ ସେମାନଙ୍କ ସ୍ଥାନ ପରିବର୍ତ୍ତନ ଦ୍ୱାରା ନିଷ୍କ୍ରିୟ କରି ଦେଇଥିବାର ବର୍ଣ୍ଣନା ଅଛି । ଅର୍ଥାତ୍ ଯେଉଁ ଯେଉଁ ପରିସ୍ଥିତିରେ କାମ ଉଦ୍ରେକ ହେବା କଥା, ସେଠାରେ କ୍ରୋଧ ଏବଂ କ୍ରୋଧ ଜାତ ହେବା କ୍ଷେତ୍ରରେ କାମର ସଂଚାର ହେବା ଦ୍ୱାରା ପରିସ୍ଥିତିରେ ବିରୋଧ ହେତୁ, କୌଣସି ସହାୟକ ଅବଲମ୍ବ ନ ପାଇ ସେମାନେ ନିଷ୍କ୍ରିୟ ହୋଇଗଲେ ।

ଏଣୁ ଶରୀର ସଂପୂର୍ଣ୍ଣ ନିରାନନ୍ଦମୟ ଯନ୍ତ୍ରଣାମୟ 'ଅନିତ୍ୟମସୁଖଂ' ସଂସାର ସ୍ଥିତିରେ ଥିଲେ ସୁଦ୍ଧା ମନ ଚିଦାନନ୍ଦର ଆହ୍ୱାନ କରି ଶରୀରକୁ ମଧ ତଦ୍ରୂପ ଉଲ୍ଲାସ ପୁଲକ ଓ ଆନନ୍ଦ ପ୍ରକାଶ କରିବାର ସହାୟକ

ହୋଇପାରେ ।

ସେଭଳି ଯୋଗ ସାମର୍ଥ୍ୟ ସମସ୍ତଙ୍କର ହୁଏତ ନଥାଇପାରେ କିନ୍ତୁ ତା'ର ସମ୍ଭାବନା ମାନବ ମନର ସ୍ୱତନ୍ତ୍ରତା ଓ ସ୍ୱାଭାବିକ ସ୍ୱାବଲମ୍ବନ ଭିତରେ ନିହିତ ଥାଏ । ପରିସ୍ଥିତି ଭେଦରେ ଅବିକମ୍ପିତ ରହିବା ପରିସ୍ଥିତିରେ ଚାପ ବା ପ୍ରଭାବକୁ ଅସ୍ୱୀକାର କରିବା, 'ପଦ୍ମପତ୍ରମିବାମ୍ଭସା', ଜଳରେ ଥାଇସୁଦ୍ଧା ଜଳସିକ୍ତ ନହେବା ଅସାମାନ୍ୟ ସାମର୍ଥ୍ୟ - ତାହା ଯୋଗ ସାଧକ ଓ କୃଚ୍ଛସାଧକ ଉଭୟ ଅର୍ଜନ କରିଥାନ୍ତି । ହାତକୁ ଅଗ୍ନିରେ ପ୍ରବେଶ କରାଇ ସମସ୍ତ ପ୍ରଦାହ ଓ ପ୍ରକମ୍ପକୁ ସହନ କରିବା କୃଚ୍ଛ ସାଧନା - ସେଥିରେ ଅସଂପୃକ୍ତି ନାହିଁ । ଅଛି ପ୍ରବଳ ବେଗ ଧାରଣ କରିବାର, ପ୍ରତିରୋଧ କରିବାର ଏକ ଅସାଧାରଣ ଅମାନବୀୟ ଆସୁରୀ ଶକ୍ତି । କିନ୍ତୁ ଯୋଗୀ ପୁରୁଷ ଶରୀର ସହିତ ଅସଂପୃକ୍ତ ରହି ଆତ୍ମକେନ୍ଦ୍ରରେ ଏ ପ୍ରଭାବରୁ ମୁକ୍ତ ହୋଇପାରେ କିମ୍ବା ଶରୀରରେ ଅପରାଜେୟ ଆତ୍ମଶକ୍ତିର ପ୍ରତିଷ୍ଠା କରି ସ୍ୱୟଂ ଶରୀରକୁ ଦିବ୍ୟ ସାମର୍ଥ୍ୟ ପ୍ରଦାନ କରିପାରେ ।

ଶରୀରକୁ ରିପୁକ୍ଷେତ୍ର ରୂପେ ଗ୍ରହଣ କରି ତାକୁ ଦମନ କରିବା, ବିଧ୍ୱସ୍ତ କରିବା ଏବଂ ଦୁର୍ଗପତନ ପରେ ବିଜୟ ପ୍ରାପ୍ତ ହେବା, ମୂଳତଃ ଅଶରୀରୀ ଆତ୍ମସତ୍ତାକୁ ଶରୀରକୁ ମୁକ୍ତ କରିବାର ଗୋଟିଏ ମାର୍ଗ ଅଛି କିନ୍ତୁ ଚିରମୁକ୍ତକୁ ମୁକ୍ତ କରିବାର ସାଧନା ସ୍ୱବିରୋଧ ଦ୍ୱାରା ନିରର୍ଥକ ମନେ ହୁଏ । ଶରୀର ଧାରଣ କରି ଶରୀରକୁ ଅସ୍ୱୀକାର କରିବାର ଯଥାର୍ଥତା ନଥିଲା ପରି ମଧ ମନେ ହୁଏ । କୌଣସି ଦିବ୍ୟ ବିଧାନରେ ଯଦି 'ଈଶାବାସ୍ୟ ଇଦଂ ସର୍ବମ୍' ସୃଷ୍ଟି ହୋଇ ଥାଏ ସେ ବିଧାନରେ ଅତିଯତ୍ନରେ ନିର୍ମାଣ କରାହୋଇଥିବା ନବଦ୍ୱାର ପୁର ଦେହଟି କାହିଁକି ଏକ କାରାଗୃହ ବା ବନ୍ଧନ ରୂପେ ଯେକୌଣସି ପ୍ରାଣୀ ଏବଂ ସର୍ବୋପରି ମଣିଷକୁ ପ୍ରଦାନ କରାଯାଇଛି ବୋଲି ଭାବିବା ? - ଏବଂ ସେହି ଧାରଣା ନେଇ ସେ ବନ୍ଧନରୁ ମୁକ୍ତ ହେବାକୁ କେବଳ ଦୁର୍ଲଭ ମାନବ ଜନ୍ମକୁ ବ୍ୟୟିତ କରିବା ?

ଯଦି ଶରୀରକୁ ସ୍ୱୀକାର କରାଯାଏ, ତାହେଲେ ତାର ସମସ୍ତ ସ୍ଥୂଳତା ସମସ୍ତ ମେଦମାଂସ ରୁଧିରାଛି ସମସ୍ତ ମୋହ, ଆସକ୍ତି, ଅଜ୍ଞାନ ସମସ୍ତ କ୍ଷୁତ୍ ପିପାସା, ଦୁର୍ବାର ଆକର୍ଷଣ, ବିକର୍ଷଣ, ଶୀତୋଷ୍ଣ ସୁଖଦୁଃଖଦା ଅନିବାର୍ଯ୍ୟତା, ତା'ର ଜଡ଼ତା, ଉନ୍ମେଷ ପରାଙ୍ମୁଖତାକୁ ସ୍ୱୀକାର କରିବାକୁ ପଡ଼ିବ । ସ୍ୱୀକାର କରିବାର ଅର୍ଥ ଗ୍ରହଣ କରିବା, ପାଳନ କରିବା, ଧାରଣ କରିବା । ସ୍ୱୀକାର କରିବାର ଅର୍ଥ ଜଡ଼ିତ ହେବା ତାସହିତ ଅଭିନ୍ନ ହେବା ମଧ୍ୟ ହୋଇପାରେ । ଯଦି ଶରୀରରେ ପ୍ରାଣୀ ମାତ୍ର ଖାଏ ତା'ହେଲେ ପଶୁତ୍ୱ ଏବଂ ଆରୋପିତ ଅର୍ଥରେ ସମସ୍ତ ପାଶବିକତାକୁ ମଧ ସ୍ୱୀକାର କରିବାକୁ ହେବ ଧାରଣ ପାଳନ କରିବାକୁ ହେବ । ସେ କ୍ଷେତ୍ରରେ କେବଳ ଶରୀରଧର୍ମରେ ଇତର ପ୍ରାଣୀଟିଏ ଭଳି ମଣିଷ ମଧ ଏକ ସଂକୀର୍ଣ୍ଣ ସମ୍ଭାବନାର ପରିଧି ଭିତରେ ସୀମିତ ରହିଯିବ । ଶରୀରକୁ ସ୍ୱୀକାର କରିବା ଅର୍ଥ ବାଘସବାର ହୋଇ ଯାତ୍ରା କରିବା । ସବଳ ପରିପୁଷ୍ଟ ବାଘ ପିଠିରେ ଆରୂଢ଼ ହୋଇରହିବା ଯେତିକି କଷ୍ଟ ଓହ୍ଲାଇ ପଡ଼ିବା ମଧ ସେହି ଅନୁପାତରେ ବିପଦଜନକ ।

ପଶୁଟିକୁ କିନ୍ତୁ ଦେଖି ଜାଣିଲେ ସେ ଏକ ଭାରି ସରଳ ନିରିହ ପ୍ରାଣୀ । ତା'ପାଇଁ କିଛି ବିଧାନ ଅଛି କିନ୍ତୁ ନୀତି ଅନୀତି ନାହିଁ । ସେ ପ୍ରକୃତରେ ହିଂସ୍ର ନୁହେଁ ସେ କେବଳ କ୍ଷୁଧାର୍ତ୍ତ । ସେ ସେଇ ବିଧାନରେ ଅନ୍ୟ ଜନ୍ତୁଟିକୁ ଆହାର କରେ ସେଇ ପ୍ରକ୍ରିୟାରେ ତାକୁ ନିଧନ କରେ । ହାତୀ ଡାଳ ଭାଙ୍ଗି ଖାଇଲା ପରି ବାଘ ଶଶାଟିକୁ ବିଦାରଣ କରି ଖାଏ । ଖାଇବା ପ୍ରବୃତ୍ତି ପରି ପ୍ରଜନନ ପ୍ରବୃତ୍ତି ମଧ ମୌଳିକ ବିଧାନ । ସେଥିରେ

ଭଲ ମନ୍ଦ, ନୀତି ଅନୀତି ବିଚାର ଅବାନ୍ତର । ଏଣୁ ଶରୀରକୁ, ଶରୀର ଧର୍ମକୁ ବୁଝିଗଲେ, ପଶୁ ମଧ୍ୟ ତାର ସମସ୍ତ ସ୍ଥୁଳତା ଜଡ଼ତା ଆପାତ ହିଂସ୍ରତା ସତ୍ତ୍ୱେ ଗ୍ରହଣୀୟ, ପାଳନୀୟ, ଲାଳନୀୟ ମନେ ହେବ । ମନେ ହେବ ଶରୀର ଏକ ପ୍ରସାରିତ କ୍ଷେତ୍ର "ମହାଭୂତାନ୍ୟହଂକାରୋ ବୁଦ୍ଧିଃ ଅବ୍ୟକ୍ତଂ ଏବ ଚ । ଇନ୍ଦ୍ରିୟାଣି ଦଶୈକଂଚ ପଂଚେନ୍ଦ୍ରିୟ ଗୋଚରାଃ ॥ ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତ ଶ୍ଚେତନା ଧୃତିଃ । ଏତତ୍ କ୍ଷେତ୍ରଂ ସମାସେନମ୍ ସବିକାରଂ ଉଦ୍ୟହୃତମ୍" ଏବଂ ଆତ୍ମଚେତନା ଏହିପରି ତାର ଅଧିକାରୀ କ୍ଷେତ୍ରୀ ।

ଶରୀରକୁ ସ୍ୱୀକାର କରିବା ଧାରଣ କରିବା ଏବଂ କ୍ଷେତ୍ରବତ୍ ଅଧିକାର କରିବା ଯଥେଷ୍ଟ ନୁହେଁ । କାରଣ ସେଥିରେ ଶରୀରକୁ 'ଅନିତ୍ୟ ଅସୁଖଂ ଲୋକଂ'ର ଅଂଗୀଭୂତ ରୂପେ ସ୍ୱୀକାର କରାଯାଏ ଏବଂ ତା ସହିତ ସଂପୃକ୍ତିକୁ ହୁଏତ 'ଅସଙ୍ଗ ଶସ୍ତ୍ରେଣ ଦୃଢ଼େନ ଛିତ୍ୱା'ର ବ୍ୟବସ୍ଥା ମଧ୍ୟ ରଖାଯାଇଥାଏ । ଶରୀରର ସଂସାରରେ ଶରୀରକୁ ପ୍ରତ୍ୟର୍ପଣ କରିଦେବାକୁ ହୁଏ । ଯେଉଁ ପଞ୍ଚମହାଭୂତରୁ ତାହା ଆସିଥିଲା ସେଇ ପଞ୍ଚମହାଭୂତକୁ ଫେରିଯାଏ । ଏମତି ତ'ଦିନେ ଶରୀର ତାର ଅନିବାର୍ଯ୍ୟ ଜଡ଼ଧର୍ମରେ ନିର୍ମୋକ ପରି ଖସି ପଡ଼ିଥାନ୍ତା । ଏତେ ଧ୍ୟାନ ଧାରଣା ସାଧନା ପରେ ମଧ୍ୟ ଯଦି ତାହାହିଁ ଘଟେ ସେଥିରେ ବିଶେଷତା ଆଉ କେଉଁଠି ରହିଲା ?

କ୍ଷେତ୍ରକୁ ବ୍ୟବହାର କରି କ୍ଷେତ୍ରୀ ଯଦି ଅଧିକ କିଛି ନିର୍ମୋହ ନିରଭିମାନ, ନିର୍ମାଲ୍ୟ ଲାଭକଲା ସେଥିରେ ବା ବିଶେଷତା କ'ଣ ରହିଲା ? ସେତ ସହଜେ ନିଷ୍କଳ, ନିର୍ଗୁଣ, ନିର୍ବେଦ । ଏଣୁ ସଗୁଣ ସଗୁଣରେ ନିର୍ଗୁଣ ନିର୍ଗୁଣରେ ରହିଯିବାର ବିଶେଷ ତାତ୍ପର୍ଯ୍ୟ କେଉଁଠି ?

ଏଣୁ ଶରୀର ପ୍ରାଣ ଓ ତା ସହିତ ମନକୁ ସ୍ୱୀକାର କରିବାର ଅର୍ଥ କେବଳ ସେମାନଙ୍କର ବିବଶତା, ବିଧିବିଧାନର ବାଧ୍ୟବାଧ୍ୟକତାକୁ ସ୍ୱୀକାର କରିବା ନୁହେଁ । ବରଂ ତାର ଅନିତ୍ୟତା ଜନ୍ମ ମୃତ୍ୟୁ ବଳୟର ଅନିବାର୍ଯ୍ୟତା ଓ ନିଶ୍ଚେତନାର ପାଷାଣ କାରାକକ୍ଷରୁ ତାକୁ ଚେତନାର ଆଲୋକକୁ ଅତିକ୍ରମ କରାଇ ନେବା ହିଁ ବିଶିଷ୍ଟ ସାଧନାର ପର୍ଯ୍ୟାୟଭୁକ୍ତ ହୋଇପାରେ । ଏହାହିଁ ଜଡ଼ର ରହସ୍ୟ ଭେଦ କରି ତାର ଚେତନା କେନ୍ଦ୍ରକୁ ଜାଗ୍ରତ କରିବା । ଚେତନା ହିଁ ସର୍ବବ୍ୟାପୀ, ଶାଶ୍ୱତ ଉପାଦାନ । ଅମୃତର ଘନୀଭୂତ ଛାୟାରୂପ ହିଁ ମୃତ୍ୟୁ । ଜଡ଼ରେ ଚେତନାକୁ ମୃତ୍ୟୁରେ ଅମୃତକୁ ଅନିତ୍ୟ ଶରୀରରେ ନିତ୍ୟ ସୁଦ୍ଧ ଶୁଦ୍ଧ ଦିବ୍ୟ ସମ୍ଭାବନାକୁ ସାକାର କରିବା ହିଁ ଉତ୍ତରିତ ଯୋଗମାର୍ଗ ।



## ୧୦.୨.୨୦୦୫

ଏକଦା ଜଣେ ଜେନ୍ ଦାର୍ଶନିକଙ୍କ ଶିଷ୍ୟମାନେ କଥା ହେଉଥିଲେ । ଜଣେ ଆର ଜଣକୁ ଦେଖାଇ କହିଲେ ଦେଖ ପତାକାଟି କିପରି କଂପିତ ହେଉଛି । ଅନ୍ୟ ଜଣକ ଉତ୍ତର ଦେଲେ । 'ପତାକା' ନୁହେଁ, ପବନ କଂପିତ ହେଉଛି ଗୁରୁ ସଂଶୋଧନ କରି କହିଲେ 'ପତାକା ନୁହେଁ, କି ପବନ ନୁହେଁ ମନ କଂପିତ ହେଉଛି' । କହିବାର ତାତ୍ପର୍ଯ୍ୟ ହେଲା ଯେ ଗତି ଅଥବା ସ୍ଥିତି ସର୍ବଦା ଆପେକ୍ଷିକ । ଏଣୁ ଏକ ଅତି ପ୍ରାଚୀନ ବିତର୍କର ବିଷୟ ହେଲା ସମୟ ଗତି କରେ କି କରେ ନାହିଁ । ଅତୀତ ଓ ଭବିଷ୍ୟତ ଭଳି ଅନୁପସ୍ଥିତ ତଥା ଅନୁମେୟ କାଳ ସହିତ ଉପସ୍ଥିତ ଓ ପ୍ରତ୍ୟକ୍ଷ କାଳକୁ ଜଡ଼ିତ କରି ଗୋଟିଏ ପ୍ରବହମାନତା ସିଦ୍ଧ କରାଯାଏ ।

କିନ୍ତୁ ଘଟନାସାପେକ୍ଷ୍ୟ କାଳକଳ୍ପନା ଏ ପର୍ଯ୍ୟନ୍ତ କୌଣସି ନିର୍ବିବାଦ ତଥ୍ୟ ନୁହେଁ । ବସ୍ତୁ ବା ବ୍ୟକ୍ତିକୁ ଚତୁର୍ଦ୍ଦିଗରୁ ଆବୃତ କରିଥିବା ଶୂନ୍ୟ କୌଣସି ଘଟନା ନୁହେଁ ବା ବସ୍ତୁ ନୁହେଁ । ଭାବିଲେ ଅଛି, ନ ଭାବିଲେ ନାହିଁ । ସେହିପରି କାଳ କେବଳ ଆଭାସିତ ହୁଏ । ଥିଲା ପରି ଦେଖାଯାଏ, କିନ୍ତୁ ନଥାଇପାରେ ବା ଆଉ କେଉଁପ୍ରକାରେ ହୁଏତ ଥାଇପାରେ । ଜଗତ୍ କହିଲେ ସେପରି ଏକ ପ୍ରବାହର ଆଭାସ, ବସ୍ତୁ ନୁହେଁ କି ଘଟନା ନୁହେଁ ଅଥଚ ଉଭୟକୁ ନେଇ ଏକ ମିଶ୍ର ପ୍ରବାହ ପରି ଅନୁମାନ ହେଉଛି ଜଗତ୍ । ଯେଉଁଠି କିଛି ବି ସ୍ଥିର ନୁହେଁ, ଏବଂ ସତତ ଗତିଶୀଳ ତାହା ଜଗତ୍ । ଶିଳାଖଣ୍ଡକୁ ସ୍ଥାଣୁ କୁହାଯାଏ କାରଣ ତା'ର କୌଣସି ଗତି ପରିଲକ୍ଷିତ ହୁଏ ନାହିଁ । କିନ୍ତୁ ଶିଳାଖଣ୍ଡର ପ୍ରତ୍ୟେକ ଅଣୁଗର୍ଭରେ ପରମାଣୁମାନଙ୍କର ପ୍ରବଳ ଗତିକୁ ଯେ ବୁଝିଛି ସେ ତାକୁ ସ୍ଥାଣୁ ବା ସ୍ଥିର ବୋଲି କହିପାରିବ ନାହିଁ । ଶିଳାଖଣ୍ଡର ଆକୃତି ବା ରୂପ ଅପରିବର୍ତ୍ତିତ ମନେ ହେଉ ଥିଲେ ସୁଦ୍ଧା ତାହା ଅହରହ ପ୍ରବହମାନ ।

ଅନ୍ୟ ଜଙ୍ଗମ ପରି ମଣିଷର ଏକକୋଷୀ ବୀଜଠାରୁ ବହୁକୋଷୀ ପ୍ରାଣୀରେ ପରିଣତ ହେବା କ୍ରମରେ ତାର ବିଭିନ୍ନ ଅବସ୍ଥାରୁ ଅବସ୍ଥାନ୍ତର ଲକ୍ଷ୍ୟ କରିହୁଏ । 'ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା ତଥା ଦେହାନ୍ତର ପ୍ରାପ୍ତି' । ଅଥଚ ତାକୁ ଗୋଟିଏ ମାତ୍ର ଅଭିନ୍ନ ବ୍ୟକ୍ତି ବୋଲି ଆମେ ସ୍ୱୀକାର କରିଥାଉ । ଅବୟବ ଭେଦରେ କିଛି ଦିନ ବା ମାସ ଭିତରେ ମଣିଷର ସମସ୍ତ କୋଷ ପରିବର୍ତ୍ତିତ ହୋଇଯାଏ । ଅଙ୍ଗ, ଅବୟବ ସବୁ ପରିବର୍ତ୍ତିତ ହୋଇଯାଏ । ଏ ପରିବର୍ତ୍ତିତ ରୂପଧାରୀ ବ୍ୟକ୍ତି କ'ଣ ସେହି ବ୍ୟକ୍ତି ?

ଏ ସଂକ୍ରାନ୍ତରେ ଗ୍ରୀସ ଦେଶର ଏକ ପ୍ରହେଳିକା ଉଲ୍ଲେଖ କରାଯାଇପାରେ । ତାହା ହେଲା ଥିସିଅସ୍‌ଙ୍କ ନୌକା । ନୌକାଟି ପୁରୁଣା ହୋଇଯିବାରୁ ଥିସିଅସ୍ ସେଥିରୁ ଖତରା ପଟା କାଢ଼ି ସେହି ମାପର ନୂଆପଟା ଲଗାଇଦେ । କ୍ରମଶଃ ଦେଖାଗଲା ଯେ ପୁରୁଣା ନୌକାର ଆଉ କିଛି ହେଲେ ପୁରୁଣା ଅଂଶ ନାହିଁ । ସବୁ ବଦଳ [illegible]ଯାଇଛି । ବର୍ତ୍ତମାନ ପ୍ରଶ୍ନ ହେଲା ଯେ ସମସ୍ତ ନୂଆ ଅଂଗକୁ ନେଇ ଗଠିତ ନୌକାଟି କ'ଣ ସେଇ ପୂର୍ବ ପରିଚିତ ନୌକା ? - ନା ଏକ ନୂତନ ନୌକା ? ସମସ୍ତ ବର୍ଜିତ ପୁରାତନ ଅଂଗକୁ ଯଦି ଏକତ୍ର କରାଯାଏ ଯେଉଁ ନୌକାଟି ହେବ ତାହା କ'ଣ ସେହି ନୌକା ? ମୂଳ ନୌକା କେବଳ ଆକୃତିରେ ଅଛି ଉପାଦାନରେ ନାହିଁ । ଯଦି ମୂଳ ଉପାଦାନ ତାର ଅନୁପଯୋଗୀ ହେବାରୁ ବର୍ଜିତ ହେଲା ସେଭଳି ଉପାଦାନରେ ତାର ପୁନର୍ଗଠନ ମଧ୍ୟ ହୋଇପାରିବ ନାହିଁ । ନୂତନ ଉପାଦାନ ସବୁ ନଥିଲେ ଏବେ ଆସିଛନ୍ତି । ବହିରାଗତ ଏଣୁ ମୂଳ ନୌକା ନୁହନ୍ତି । ତତ୍ ସତ୍ତ୍ୱେ ଆମେ କହୁ ଯେ ଏଇ ସେହି ନୌକା ।

ମଣିଷର ରୂପ ଓ ଅବସ୍ଥା ପରିବର୍ତ୍ତନ ସତ୍ତ୍ୱେ ଆମେ ତାର ପରିଚୟ ଅପରିବର୍ତ୍ତିତ ରଖିବାର କ'ଣ କାରଣ ଥାଇପାରେ ? ମଣିଷର ହୁଏତ ଏକ ଶାଶ୍ୱତ ପରିଚୟ ଅଛି । ସେହିପରି ବସ୍ତୁର ପ୍ରାଣୀର ଗ୍ରହପିଣ୍ଡର । ଏହି ଶାଶ୍ୱତ ପରିଚୟର ଯଦି ପରିବର୍ତ୍ତନ ନାହିଁ ତା'ହେଲେ ବିବର୍ତ୍ତନ ମଧ୍ୟ ନାହିଁ ତା ହେଲେ ରୂପାତିକ୍ରମଣ ବା Transformation କାହାର ହୁଏ ? ଏହା କଣ କୌମାର ଯୌବନ ଜରା ପରି ଆଉ ଏକ ଦୈହିକ ଅବସ୍ଥାନ୍ତର ମାତ୍ର ? ଯଦି ଦେହର ନୁହେଁ ତା'ହେଲେ କ'ଣ ମନର ନା ଚେତନାର ? ରୂପାନ୍ତରିତ ହେବା କ'ଣ ପ୍ରସାରିତ ସଂକୁଚିତ ବା ଦୈର୍ଘ୍ୟ ପ୍ରସ୍ଥ ଆଦି ଭାଗମାପର ପରିବର୍ତ୍ତନ ଭଳି କୌଣସି ପରିମେୟ ଆ[illegible] ଭେଦ ମାତ୍ର ନା ତା'ର ଉପାଦାନ ଲକ୍ଷଣ ବା ଧର୍ମର ଅନ୍ୟଥା ପ୍ରମାଣ ? ମନେ ହୁଏ ଯେ ଯେଉଁ Form ଟିକୁ ଭିତ୍ତିକରି Formation ହୋଇଥାଏ । ତାର Trans ବା ଅତିକ୍ରମଣ ହେଲେ ତାକୁ ଆକ୍ଷରିକ ଅର୍ଥରେ

Transformation କହି ପାରିବା । Form ବା ରୂପ ତ ଏକ ଦୃଶ୍ୟମାନ ଆବରଣ ଏକ ବୋଧଗମ୍ୟ ଆକାର ପ୍ରକାର । କାହାର ସେ ରୂପ ? ସେ ଏ ପ୍ରକ୍ରିୟାରେ ସ୍ୱୟଂ ପରିବର୍ତ୍ତିତ ହୁଏ ନା ନାହିଁ ? ଚେତନାର ରୂପାନ୍ତର କହିଲେ ଚେତନାର ବିକାଶ ବିସ୍ତାର ପ୍ରସ୍ଫୁଟନ ବୁଝାଏ ନା ନାହିଁ ? ଚେତନାର ରୂପ ଅଛି କି ? ଯଦି ନାହିଁ ତାର ରୂପାନ୍ତର କିପରି ହୋଇପାରିବ ? ଅର୍ଥାତ୍ ଯାହା ଥିଲା ତା' ସହିତ ଆପେକ୍ଷିକ ବୃହତ୍ତର ଶରୀରରେ ହେବା ଯଦି ରୂପାନ୍ତର ହୁଏ ତାହେଲେ ପୁରାତନକୁ ପରିହାର କରାଯାଏ ନା ତାକୁ ଧାରଣ କରି ନିଜ ଭିତରେ ଗର୍ଭିତ ରଖି ବିକଶିତ ହେବାକୁ ହୁଏ ? ପଦ୍ମ କୋରକ କ୍ରମଶଃ ବିକଶିତ ହେଲାବେଳେ ନିଜକୁ ନିଜେ ଅତିକ୍ରମ କରୁଥାଏ । ଦୁଇଦଳ ଅଷ୍ଟଦଳ ସହସ୍ରଦଳ ପଦ୍ମର ପରିଚୟ ସେଇ ପଦ୍ମ । ପାଖୁଡ଼ା ଗଣି ଗୋଟିକ ସହିତ ଆରଟିକୁ ତୁଳନା କରିବା ଅବାନ୍ତର କାରଣ ପ୍ରତ୍ୟେକ ଅବସ୍ଥା ସ୍ୱୟଂସଂପୂର୍ଣ୍ଣ ଅଥଚ ଅଶେଷ ସମ୍ଭାବନାମୟ । ଗୋଟିଏ ପୂର୍ଣ୍ଣତାରୁ ଅନ୍ୟଏକ ପୂର୍ଣ୍ଣତାକୁ ଏ ପ୍ରସ୍ଫୁଟନ । ହୁଏତ ପଦ୍ମଗର୍ଭରେ ଏକ ଆବାହନର ଓଁକାର ଧ୍ୱନିତ ହେଉଥାଏ ଏବଂ ସୂର୍ଯ୍ୟଗର୍ଭରୁ ଆଲୋକର ଆନନ୍ଦ ଝରି ଆସୁଥାଏ । ପଦ୍ମରୁ ରୂପ ଭିନ୍ନ ନୁହେଁ, ରୂପରୁ ପଦ୍ମ ଭିନ୍ନ ନୁହେଁ । ପ୍ରସ୍ଫୁଟନର କ୍ରମ ବିକାଶ, ସ୍ୱଳ୍ପରୁ ବିରାଟକୁ ବା ଭୂମାକୁ, ଦୁଇ ପାଖୁଡ଼ାରୁ ସହସ୍ରେ ପାଖୁଡ଼ାକୁ ଉନ୍ମୋଚନ ହୁଏତ ରୂପାତିକ୍ରମଣ ବା Transformation ର ଏକ ପାଖାପାଖି ସ୍ଥୂଳ ସମାନ୍ତରାଳ ପ୍ରତୀକ ହୋଇପାରେ ।



## ୭.୭.୨୦୦୫

ଜଣେ ମାର୍କିନ ପତ୍ରକାର ଏକଦା ସୋଭିଏତ୍ ଦେଶର ଗ୍ରାମ୍ୟ ମହିଳାଙ୍କୁ ପ୍ରଶ୍ନ କଲେ । 'ମା' ତୁମ ଦେଶରେ ଈଶ୍ୱର ନିଷିଦ୍ଧ ଥିଲାବେଳେ ତୁମେ କେମିତି ତାଙ୍କୁ ବିଶ୍ୱାସ କରୁଛ ?' ସେ ଅତ୍ୟନ୍ତ ସରଳ ଉତ୍ତର ଦେଇଥିଲେ 'ବୁଝିଲୁ ପୁଅ ମୁଁ, ତ' ତାଙ୍କୁ ଜାଣେ ନାହିଁ ଏଣୁ ବିଶ୍ୱାସକରେ ।" ବୋଧହୁଏ ବିଶ୍ୱାସ ଏହିପରି ସରଳ ନିଃସର୍ତ୍ତ, ଯୁକ୍ତିବର୍ଜିତ ହେବା ତାର ଶୁଦ୍ଧତା । ସେଥିରେ ଏପାଖ ସେପାଖ ନାହିଁ ଇତସ୍ତତଃ ନାହିଁ, ନଟୋଳ ବର୍ତ୍ତୁଳ ସ୍ଫଟିକ ପରି ସ୍ୱଚ୍ଛ । କିନ୍ତୁ ମଣିଷଠାରେ ମନ ବୁଦ୍ଧି ଅହଂକାର ଦେଖାଦେବା ଦିନଠାରୁ ସେ ପ୍ରଶ୍ନ ପଚାରି ଚାଲିଛି ଈଶ୍ୱର ଅଛନ୍ତି ନା ନାହିଁ ? ଯଦି ଅଛନ୍ତି ତା'ର ପ୍ରମାଣ କ'ଣ ? ଯଦି ନାହାନ୍ତି ତା'ର ବା ପ୍ରମାଣ କ'ଣ ? ପ୍ରମାଣ ଖୋଜୁଥାଏ ମନ ଓ ବୁଦ୍ଧି । ପ୍ରମାଣ ନହେଲେ ସେ ସ୍ୱୀକାର କରିବ ନାହିଁ ବୋଲି ଘୋଷୁଥାଏ ଅହଂକାର । ପ୍ରମାଣ କହିଲେ ମନ ବୁଝେ ଇନ୍ଦ୍ରିୟଗ୍ରାହ୍ୟତା ଇନ୍ଦ୍ରିୟଗମ୍ୟତା । ଯଦି ପାଞ୍ଚଟି ଜ୍ଞାନେନ୍ଦ୍ରିୟର ପରିସର ଭିତରେ ତାହା ଆସିଗଲେ ମନ ତାକୁ ପ୍ରତ୍ୟକ୍ଷ କଲା ଏବଂ ଯଦି ତର୍କ ବୁଦ୍ଧିରେ କାକରାବ ଶୁଣି କାକର ଉପସ୍ଥିତି ପରି ସ୍ୱୀକାର କଲା ତାକୁ ଅନୁମାନ କଲା । ଏଣୁ ଆଖିରେ ନଦେଖିଲାଯାଏ କାନରେ ନ ଶୁଣିଲା ଯାଏଁ ହାତରେ ନ ଛୁଇବା ଯାଏଁ କୌଣସି ବସ୍ତୁର ପ୍ରମାଣ ନାହିଁ ବୋଲି ମନ ଭାବି ନିଏ । ସେହିପରି ଭାବନା ବା ଚିନ୍ତା ଯୁକ୍ତି ଯୁକ୍ତ ନହେଲେ ତାର ବି ପ୍ରମାଣ ନାହିଁ ।

କିନ୍ତୁ ବେଳେବେଳେ ଇନ୍ଦ୍ରିୟ ବହିର୍ଭୂତ ଅବବୋଧ, ଆଉ ଏକ ବୋଧ ସଂବୋଧର ସଂଧାନରେ ଉପଲବ୍ଧ ଉଦ୍ଭାସ ଜ୍ଞାନକୁ ଅସ୍ୱୀକାର କରିପାରେ ନାହିଁ । ଅଭ୍ୟାସଗତ ଇନ୍ଦ୍ରିୟାନୁଗତ ପ୍ରତ୍ୟକ୍ଷ ଅନୁମାନ ମାନଦଣ୍ଡ ସେ

କ୍ଷେତ୍ରରେ ନିଅଣ୍ଡ ହୋଇଯାଏ । ସେଭଳି ଅନୁଭବ ହେଲାପରେ କ୍ରମଶଃ ଇନ୍ଦ୍ରିୟମାନଙ୍କର ଭ୍ରମ ସଂକୁଳ ଓ ଅତ୍ୟନ୍ତ ସୀମିତ ପରିସର ବିଷୟରେ ଜାଣି ହୁଏ । ଯାହା ଦିଶୁଛି ତାହା ମରିଚିକା ବତ୍ ହୁଏତନାହିଁ । କିମ୍ବା ଯାହା ଦିଶୁନାହିଁ ତାହା ନିଜର ପୃଷ୍ଠଦେଶ ପରି ନିଶ୍ଚୟ ଅଛି । ସେହିପରି ଶୁଣିବା କିମ୍ବା କରିବାର ହାସ୍ୟାସ୍ପଦ 'ଦକ୍ଷତା' ଯାହା ଉପରେ ଆମର ଦୃଢ଼ ଓ ଅବିସମ୍ବାଦିତ ତଥାକଥିତ ପ୍ରତ୍ୟକ୍ଷ ଜ୍ଞାନ ନିର୍ଭର କରେ, ଇନ୍ଦ୍ରିୟ ପରି ଯୁକ୍ତିବିଚାର ମଧ୍ୟ ଏକ ନିମିତ୍ତ ମାତ୍ର ଓ ତାହା ବି କୌଣସି ଗୁଣରେ ଅଧିକ ନିର୍ଭର ଯୋଗ୍ୟ ନୁହେଁ ।

ଏଣୁ ମସ୍ତିଷ୍କର ବାମ ପାର୍ଶ୍ୱରେ ଯଦି ଯୁକ୍ତିତର୍କ ପ୍ରମାଣର କ୍ରିୟା ଚାଲିଥାଏ । ତା'ହେଲେ ଦକ୍ଷିଣ ପାର୍ଶ୍ୱରେ ବିଶ୍ୱାସ ଅତିନ୍ଦ୍ରିୟ ଅନୁଭବ ସ୍ୱପ୍ନ ସର୍ଜନା ଓ କଳ୍ପନା କ୍ରିୟାଶୀଳ ହୋଇଥାଏ । ସାଧାରଣତଃ ଉଭୟ ପାର୍ଶ୍ୱ ପରସ୍ପରଠାରୁ ସ୍ୱତନ୍ତ୍ର ହୋଇଥିଲେ ସୁଦ୍ଧା ସେ ଦୁହିଁଙ୍କର ଏକ ଉଚ୍ଚତର ଭୂମିରେ ସମନ୍ୱୟ ହୋଇପାରିବ । କିନ୍ତୁ ସାଂପ୍ରତିକ ସମୟରେ ବାମପାର୍ଶ୍ୱଟି ଉପରେ ହିଁ ସମଗ୍ର ମାନବ ଜାତିର ଦୃଷ୍ଟି ନିବଦ୍ଧ ରହିଛି । ଯତେବା ବିଜ୍ଞାନର ଯାବତୀୟ କୌଶଳ ବାମପାର୍ଶ୍ୱର ହିଁ କୌଶଳ ହୋଇଥିବାରୁ ସେହି ବିଭାଗଟି ହିଁ ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ବିଭାଗ ।

କିନ୍ତୁ ଉଭୟ ପାର୍ଶ୍ୱକୁ ଆଲୋକିତ ସଂଜୀବିତ ସ୍ପନ୍ଦିତ କରୁଥାଏ ଏକ ଉର୍ଦ୍ଧ୍ୱ ଭୂମି, ଅଭିନ୍ନ ଅଖଣ୍ଡ ଚେତନା ତାହାରି ଦ୍ୱାରା ପ୍ରଖର ହୁଏ ବୁଦ୍ଧି ଶାଣିତ ହୁଏ ତର୍କ, ସର୍ଜନାକ୍ଷମ ହୁଏ କଳ୍ପନା । ତାହାରି ପ୍ରସାଦରେ ମେଧା, ଧୀ, ପ୍ରଜ୍ଞା, ସ୍ୱମହିମାରେ ପ୍ରକଟିତ, ପ୍ରତିଷ୍ଠିତ ହୁଅନ୍ତି । ତାହାରି ସଂସ୍ପର୍ଶରେ ଜ୍ଞାନସିଦ୍ଧି ମନ୍ତ୍ରସିଦ୍ଧି ଯୋଗସିଦ୍ଧି ସମ୍ଭବ ହୁଏ । ଦିବ୍ୟ କରୁଣା ସିକ୍ତ ସେ ଊର୍ଦ୍ଧ୍ୱଭୂମିରୁ ଚେତନା କ୍ଷରିତ ହେଉଥାଏ ବର୍ଷାଧାର ପରି, ସେଥିରେ ମସ୍ତିଷ୍କର ବାମ ଭାଗ ପଲ୍ଲବିତ ହୁଏ ବିଜ୍ଞାନ ପ୍ରଯୁକ୍ତି ବିଶ୍ଳେଷଣ ପରିସ୍ଫୁଟ ହୁଏ, ପ୍ରମାଣସିଦ୍ଧ ହୁଏ । ସେଇ ଚେତନାର ରସସ୍ରାବରେ ଅଭିସିକ୍ତ ଦକ୍ଷିଣଭାଗ ନବନବୋନ୍ମେଷଶାଳିନୀ ପ୍ରଜ୍ଞା ମଣ୍ଡିତ ହୁଏ, କବି କଳାକାର ଦାର୍ଶନିକ ସ୍ୱରସାଧକ ରସାନନ୍ଦର ଅଧିକାରୀ ହୁଅନ୍ତି । ବାମ ଦକ୍ଷିଣଭାଗର ପିଣ୍ଡସୀମା ଅତିକ୍ରମକରି ଯୋଗାରୂଢ଼ ପୁରୁଷ ପରମାନନ୍ଦରେ ମଗ୍ନ ହୁଅନ୍ତି ।

ଏଣୁ ଉଭୟ ବାମ ଓ ଦକ୍ଷିଣ ଭାଗ ମୂଳ ଚେତନା ପିଣ୍ଡର ଦୁଇଟି ଶାଖା ଭିନ୍ନ ଅସଂପୃକ୍ତ ଦିଶୁଥିଲେ ସୁଦ୍ଧା, ଅଭିନ୍ନ ସଂଶ୍ଳିଷ୍ଟ ଓ ସମନ୍ୱିତ ।



## ୧୯.୧୦.୨୦୦୪

ବହୁ ବିସ୍ତୃତ ଭୂମିରେ ଅକଳ୍ପନୀୟ ଘଟନା ଘଟୁଥାଏ ପ୍ରତିମୁହୂର୍ତ୍ତରେ ଏବଂ ସେ ସମସ୍ତର ସଂଘାତ କ୍ରମଶଃ ପ୍ରସାରିତ ଜଳତରଙ୍ଗ ପରି ଆମକୁ ସ୍ପର୍ଶକରୁଥାଏ । ସେ ତରଙ୍ଗର ଶକ୍ତି ଓ ତାକୁ ଆମେ ଗ୍ରହଣ କରିବାର ପ୍ରବଣତା ଉପରେ ତାର ପ୍ରଭାବ ନିର୍ଭରକରେ । ଏଣିକି କେବଳ ସେଇ ପ୍ରଭାବରେ ଆନ୍ଦୋଳିତ, ବିଚଳିତ ସ୍ତମ୍ଭିତ ବା ଶିହରିତ ହେବାଛଡ଼ା ଅନ୍ୟ କିଛି କରିବାର ସମ୍ଭାବନା ନ ଥାଏ କାରଣ ଯେଉଁ ଘାତ ପ୍ରତିଘାତରେ ଘଟନା ସଂଘଟିତ ହେଉଥାଏ ଏବଂ ଯେଉଁ ଭୂମିରେ ତାହା ହେଉଥାଏ ସେ ଉଭୟ ଆମର ଅଣାୟତ୍ତ । ଦେଶ କାଳର ବ୍ୟାପ୍ତି ଭିତରେ ଘଟନା ଘଟୁଥାଏ ଏବଂ ଦେଶକାଳର ଆୟତନ ଭିତରେ ଆମେ ଏକତ୍ର ଥିବା ହେତୁରୁ

ତାର ସଂଘାତକୁ ବାରଣ କରିବାର ସାମର୍ଥ୍ୟ ଆମର ନାହିଁ । ଆକାଶରେ ଚନ୍ଦ୍ର ସୂର୍ଯ୍ୟ ଉପରେ ଛାୟାପାତ ହେବା ଏକ ମହାଜାଗତିକ ନିୟମର ବଶବର୍ତ୍ତୀ । ସେହିପରି ଭୂଗର୍ଭରେ ଆଲୋଡ଼ନ ଉତ୍ପୀଡକ ଜନିତ ପଡ଼ୋଶୀ ଦେଶରେ ଭୂମିକମ୍ପ ମଧ୍ୟ ତଦ୍ରୂପ ନିୟମର ଅନ୍ତର୍ଗତ । ଏ ଉଭୟକୁ ବାରଣ କରିବାର ଉପାୟ ଆମର ନାହିଁ । ତାର ପ୍ରଭାବରୁ ମୁକ୍ତ ହେବା ମଧ୍ୟ ସେ ଘଟନା କାଳରେ ସମ୍ଭବ ନୁହେଁ । ଏହିପରି ସମଗ୍ର ପୃଥିବୀରେ ପ୍ରତି ମୁହୂର୍ତ୍ତରେ ଯାହାଯାହାସବୁ ଘଟିଆସୁଛି ଏବଂ ତାର ସଂଘାତ ତରଙ୍ଗ ବାୟୁମଣ୍ଡଳରେ ପ୍ରବେଶ କରୁଛି, ତାକୁ ମଧ୍ୟ ବାରଣ କରିହେବ ନାହିଁ । ଏଣୁ ଅସଂଖ୍ୟ ସଂଘାତ ଶରୀର ମନ ପ୍ରାଣ ଭୂମିରେ କମ୍ପନ ସୃଷ୍ଟି କରୁଥାନ୍ତି ଏବଂ ଆମର ଯାବତୀୟ ଚିନ୍ତା କର୍ମ ଓ ଅନୁଭବ ତଦ୍ୱାରା ପ୍ରଭାବିତ ହେଉଥାଏ ।

ସେହିପରି ଦୀର୍ଘ ଜୀବନକାଳ ଭିତରେ ବହୁବ୍ୟକ୍ତି ବସ୍ତୁ ସଂପର୍କ ଆବେଗ ସଂବେଗ ଭାବ ବିନିମୟ ଶରୀର ମନ ପ୍ରାଣ ଭୂମିରେ ତରଙ୍ଗ ସୃଷ୍ଟି କରିଥାନ୍ତି । ପ୍ରତି ମୁହୂର୍ତ୍ତରେ ପରିସ୍ଥିତି ବଦଳୁଥାଏ ଚଳଚ୍ଚିତ୍ର ପରି ଏବଂ ବହୁବିଧ ସ୍ପନ୍ଦନର ତରଙ୍ଗ ଭିତର ଦେଇ ଆମେ ପାରି ହେଉଥାଉ । ସେହି ଅନୁପାତରେ ଆମର ଗତି ସ୍ଥିତି ପ୍ରକୃତି ଓ ପରିଣତି ମଧ୍ୟ ସଂଭାବିତ ହେଉଥାଏ । ମାଧ୍ୟାକର୍ଷଣ ଶକ୍ତି ପ୍ରତ୍ୟେକ ବସ୍ତୁକୁ ଅନ୍ୟ ବସ୍ତୁ ସହିତ ଆକର୍ଷଣ ବିକର୍ଷଣ ଦ୍ୱାରା ବାନ୍ଧି ରଖିଲାପରି ଅହରହ ଶକ୍ତିର ସଂଘାତ ଘଟୁଥାଏ । ଏପରି କି ନିଶ୍ଚଳ ଦିଶୁଥିବା ବସ୍ତୁ ସମପରିମାଣର ବିପୁଳ ଓ ବିପରୀତ ଶକ୍ତିଦ୍ୱାରା ଧାରିତ ହୋଇଥାଏ ।

ଏତତ୍ ସତ୍ତ୍ୱେ ଦେଶକାଳ ଓ କାର୍ଯ୍ୟକାରଣ ବହିର୍ଭୂତ ଏକା ତତ୍ତ୍ୱ ଏକ ସୂକ୍ଷ୍ମାଦିସୂକ୍ଷ୍ମ ସତ୍ତା ଏକ ଅପ୍ରଭାବିତ ଅଭାବନୀୟ ଚେତନାର ଏକ ଧ୍ରୁବବିନ୍ଦୁ ବିଷୟରେ ଆମକୁ ଅବହିତ କରାଯାଇଛି । ତାକୁ ଅବ୍ୟୟ, ଅକ୍ଷୟ, ନିତ୍ୟ ବସ୍ତୁ ରୂପେ ବର୍ଣ୍ଣନା କରାଯାଇଥିଲେ ସୁଦ୍ଧା ତାହା ବାକ୍‌ରେ ପ୍ରକାଶ କରି ହୁଏନାହିଁ । ଏ ଅକଳନୀୟ ଜଡ଼ ଜଗତ୍ ଠାରୁ ତାହା ପୃଥକ୍ ତାହା 'ଦିକ୍ କାଳାଦ୍ୟନବଚ୍ଛିନ୍ନା' । ଅର୍ଥାତ୍ ଦେଶକାଳ ବା Space Time ଦ୍ୱାରା ଚିହ୍ନିତ ବା ସୀମିତ ନୁହେଁ । ଅଥଚ ଜଡ଼ ଓ ଚେତନ ପରସ୍ପରଠାରୁ ପୃଥକ୍ ହେଲେ ସୁଦ୍ଧା ଏକ ବିଚିତ୍ର ନିୟମରେ ସହାବସ୍ଥାନ କରିଥାନ୍ତି । ଆମେ ସମସ୍ତେ ଜଡ଼ ଚେତନର ସମାହାର ଜଡ଼ଭାଗ ଓ ଚେତନାଗୁଣ ପର୍ବତ ଶିଖରରେ ସୂର୍ଯ୍ୟାଲୋକ ପରି ଏକତ୍ର ଥିଲାପରି ଦେଖାଯାନ୍ତି । ସେହି ସମୟରେ ଜଡ଼ ଆଲୋକିତ ହୁଏ, ଉତ୍ତପ୍ତହୁଏ କିନ୍ତୁ କେବଳ ସୂର୍ଯ୍ୟାଲୋକ ହିଁ ସ୍ୱେଚ୍ଛାରେ ପର୍ବତକୁ ଛାଡ଼ି ଚାଲିଥାଏ । ଜଡ଼ପିଣ୍ଡ ପୂର୍ବବତ୍ ଜଡ଼ପିଣ୍ଡ ହିଁ ରହିଥାଏ ସେହିପରି ବସ୍ତୁସଂଘର ଏ ଶରୀର ଓ ତାକୁ ସ୍ୱୀକାର କରିଥିବା ଚୈତ୍ୟସତ୍ତା ବା ଆତ୍ମା ।

ଏ ଦୁଇତତ୍ତ୍ୱ କ'ଣ ସତରେ ଦୁଇ ନା 'ଏକ୍' ? ତତ୍ତ୍ୱଦର୍ଶୀ ଓ ତତ୍‌ବିଦ୍ ପଣ୍ଡିତମାନଙ୍କ ମତରେ ଆକୃତି ଆୟତନ ଆଚରଣ ନିର୍ବିଶେଷରେ ସବୁ ଜଡ଼ ବସ୍ତୁ କେବଳ ଅଣୁର ବିଭିନ୍ନ ବିନ୍ୟାସ । ଆହୁରି ଗଭୀର ଅନୁଧ୍ୟାନ କରି କହୁଛନ୍ତି ଯେ ଜଡ଼ ମାତ୍ରେ ଏନର୍ଜି ବା ଶକ୍ତିର ଏକ ରୂପାନ୍ତର । ଶକ୍ତି ହିଁ ଜଡ଼ରୂପରେ ଦୃଶ୍ୟମାନ । ଜଡ଼ ଜଗତ୍ ନାହିଁ ଏ ସମସ୍ତ ଏକ ଅକଳନୀୟ ଶକ୍ତିର ସ୍ଥୂଳରୂପ । ଆଉ ପାଦେ ଆଗକୁ ଯାଇ ସେମାନେ କହିଲେଣି ଯେ ଶକ୍ତି ମଧ୍ୟ ସ୍ୱୟଂ ସିଦ୍ଧ ବା ସ୍ୱୟଂ ଚାଳିତ ନୁହେଁ । ଶକ୍ତି ଚେତନାର ଅନ୍ୟରୂପ । ଚୈତନ୍ୟମୟ ଜଗତ । ଶକ୍ତିମୟ ଜଡ଼ମୟ ଜଗତ୍ ତତ୍ତ୍ୱତଃ ଚେତନା । ଜଡ଼ କ'ଣ ? କହିଲେ ଉତ୍ତର ହେବ ଶକ୍ତି । ଶକ୍ତି କ'ଣ ? ନା ଚେତନା । ତାହେଲେ ଚେତନା କ'ଣ ? ଏହାର ଉତ୍ତର ବିଜ୍ଞାନର ପରୀକ୍ଷାଗାରରେ ନାହିଁ । ମଣିଷର ବିଚାର ବୁଦ୍ଧିରେ ତାର ନିର୍ଣ୍ଣୟ ହୋଇପାରିବ ନାହିଁ । ଜଗତ୍ ବିସ୍ଫୋରଣର ଆଦିକାରଣ ଜଗତ୍ ସ୍ଥିତି ଓ ଗତିର

ଉପାଦାନ ଓ ଶକ୍ତି ଏବଂ ଜଗତର ପ୍ରଲୀନ ହେବା ପରେ ଏକମାତ୍ର ଅବଶେଷ ସେଇ ଚେତନାକୁ ଜାଣି ହେବ ନାହିଁ, କହି ହେବ ନାହିଁ କେବଳ ବିରଳ ସମାହିତ ଚିତ୍ତବୃତ୍ତିର ଗହନ ଗଭୀର କେନ୍ଦ୍ରରେ ତାହା ଆଭାସିତ ହୋଇପାରେ କିମ୍ବା ନ ହୋଇପାରେ ।

ତର୍କ ପ୍ରବଣ ମନକୁ ବିଶ୍ୱାସ ପ୍ରବଣ କରିବା ସହଜସାଧ୍ୟ ନୁହେଁ । ତାର କାରଣ ହେଲା ଯେ ତର୍କ ବିଚାର ଅହଂ ଦ୍ୱାରା ପରିପୁଷ୍ଟ ଓ ଅହଂ ତର୍କ ବିଚାରରେ ପରିପୁଷ୍ଟ କିନ୍ତୁ ବିଶ୍ୱାସ ଅହଂକୁ ଅସ୍ୱୀକାର କରେ ଅତିକ୍ରମ କରେ । ଦୃଢ଼ ବିଶ୍ୱାସ ପାଇଁ ଅହଂ ସହାୟକ ନ ହୋଇ ବାଧକ ହୋଇ ଦେଖାଦିଏ । ବିଶ୍ୱାସ ଓ ବିଚାର ଦୁଇଟି ସ୍ୱତନ୍ତ୍ର ବ୍ୟାପାର । ବିଶ୍ୱାସ କଲେ ବିଚାର ନାହିଁ ବିଚାର କଲେ ବିଶ୍ୱାସ ନାହିଁ ।

ତତ୍‌ସତ୍ତ୍ୱେ ବିଚାର ମଣିଷର ସ୍ୱାଭାବିକ ଧର୍ମ ହୋଇଥିବାରୁ ତାର ଅନିବାର୍ଯ୍ୟତାକୁ ସ୍ୱୀକାର କରାଯାଏ । ଏଣୁ ବିଶ୍ୱାସର ପ୍ରାରମ୍ଭରେ କିଛି ମାତ୍ରାରେ ବିଚାରର ଭୂମିକା ଅଛି । ଦଶଟି ସକ୍ରିୟ ଇନ୍ଦ୍ରିୟର ଭୂମିକା ଅଛି । ମନବୁଦ୍ଧି ଅହଂକାର ଓ ଏ ଦଶଟି ଇନ୍ଦ୍ରିୟ ମିଶି ଯାହା ସଂରଚନା କରନ୍ତି ତାର ସ୍ଥିରତା ବା ଦୃଢ଼ତା ନଥିଲେ ସୁଦ୍ଧା ସବୁପ୍ରକାର ଚେତନା ଓ ଚିନ୍ତା ପ୍ରବାହ ପଶ୍ଚାତରେ ଏହି ପ୍ରତିତୀ ଏ ଚଳତ୍ ବିମ୍ୱଟି ରହିଥାଏ । ଯୁକ୍ତିକରେ ଯେ ମୃତ୍ତିକା ନାମଧେୟ ଉପାଦାନରୁ କୁମ୍ଭକାର ନାମଧେୟ କର୍ତ୍ତା ଘଟ ନାମଧେୟ ଆକୃତିର ନିର୍ମାଣ କରେ । ସେହିପରି ଜଗତ୍ ଏ ବିବିଧ ବୈଚିତ୍ର୍ୟମୟ ଜଡଚେତନ ବିଶ୍ୱ, ସେହିପରି ସ୍ରଷ୍ଟା ଓ ତା'ର ସୃଷ୍ଟି । ଏହିପରି ମନ ସ୍ରଷ୍ଟାଙ୍କର କର୍ତ୍ତାପଣ ଓ ସର୍ବଶକ୍ତିମତ୍ତାକୁ ଯୁକ୍ତିରେ ସିଦ୍ଧ କରି ଗ୍ରହଣ କରେ । ଏହା ବିଶ୍ୱାସ ନୁହେଁ । କାରଣ ବିଶ୍ୱାସ ସ୍ୱୟଂସିଦ୍ଧ ନିରାଲମ୍ବ । ଯୁକ୍ତି ଦୁର୍ବଳ ହୋଇଗଲେ ବା ପ୍ରତିଯୁକ୍ତିଦ୍ୱାରା ଖଣ୍ଡିତ ହୋଇଗଲେ ସେ ଭଳି ବିଚାର ଭିତ୍ତିକ ବିଶ୍ୱାସ ଦୋହଲିଯାଏ । ବିଶ୍ୱାସ ଯଦି ସ୍ୱତଃ ପ୍ରବୃତ୍ତ ହୋଇଥାଏ, ଏକ ଆନ୍ତରିକ ଶ୍ରଦ୍ଧାରେ ପରିପୁଷ୍ଟ ହୋଇଥାଏ, ପ୍ରେମଭିତ୍ତିକ ହୋଇଥାଏ ତାହା ନିର୍ବିଚାର ପ୍ରତିଷ୍ଠିତ ହୁଏ । ବିଶ୍ୱାସ ହୃଦୟରେ, ଯୁକ୍ତି ମନରେ ଏଣୁ ପ୍ରାଣ ଓ ମନର ଯାବତୀୟ ଲକ୍ଷଣ ଏ ଦୁଇ କ୍ଷେତ୍ରରେ ଦେଖିବାକୁ ମିଳେ । ମନଥିଲେ ମନନ, ମନରେ ବିଚାର ଓ ବିଚାରରେ ଯୁକ୍ତି ଅନିବାର୍ଯ୍ୟ । ମନକୁ ବିଶ୍ୱାସରେ ଅସ୍ୱୀକାରଯାଏ ନାହିଁ । ଏକପ୍ରକାର ଅତିକ୍ରମ କରାଯାଏ । ପ୍ରେମବ୍ୟାପାରରେ ଯେପରି ସ୍ୱଜନ କୁଟୁମ୍ବଙ୍କ ଯୁକ୍ତି ଶୁଣି ନ ଶୁଣିଲା ପରି ପ୍ରେମ ତା ହୃଦୟର ଭାଷା ହି ବୁଝେ । ବିଶ୍ୱାସରେ ମଧ୍ୟ ତଦ୍ରୂପ ।



## ୭.୯.୨୦୦୬

ଦୁଃଖଂ ସତ୍ୟମ୍ । କିନ୍ତୁ ଦୁଃଖର ବ୍ୟକ୍ତିନିରପେକ୍ଷ୍ୟ କୌଣସି ସ୍ଥିତି ନାହିଁ । ସେହିପରି ସୁଖ ମଧ୍ୟ ଦୁଃଖର ପରିପୂରକ ଓ ଆପେକ୍ଷିକ । ଅନ୍ଧାର ଓ ଆଲୁଅ ପରି ସୁଖ ଦୁଃଖ ନିର୍ଦ୍ଦିଷ୍ଟ ଦେଶକାଳର ଅନିବାର୍ଯ୍ୟ ବ୍ୟବସ୍ଥା । ଏ ଉଭୟର ଅନୁକୂଳତା ଓ ପ୍ରତିକୂଳତା ଦୃଷ୍ଟିରୁ ବ୍ୟକ୍ତି ଗୋଟିକୁ ଗ୍ରାହ୍ୟ ଓ ଅନ୍ୟଟିକୁ ଅଗ୍ରାହ୍ୟ ବୋଧ କରେ । ପ୍ରକୃତରେ ଗ୍ରାହ୍ୟତା ବା ଅଗ୍ରାହ୍ୟତା ସେମାନଙ୍କର ସ୍ୱଭାବ ସିଦ୍ଧ ନୁହେଁ । ପରିସ୍ଥିତି ଭେଦରେ ଆଲୋକ ଅପେକ୍ଷା ଅନ୍ଧାର ହିଁ ଅଧିକ ବାଞ୍ଛନୀୟ ମନେ ହୁଏ । ଏଣୁ ସୁଖ ଦୁଃଖ ଅପେକ୍ଷା ସୁଖାନୁଭବ ଓ ଦୁଃଖାନୁଭବ ହିଁ ମଣିଷ ପାଇଁ ଅଧିକ ବାସ୍ତବ । ମୋଟ ଉପରେ ଏଇ ଅନୁଭବ ହିଁ ସବୁ ପ୍ରକାର ପାର୍ଥକ୍ୟ ସୃଷ୍ଟି କରେ ।

କୌଣସି ବ୍ୟକ୍ତି ମୋର ଶତ୍ରୁ ବା ମିତ୍ର ହୋଇ ଜନ୍ମି ନଥାଏ । ମୋର ଅନୁଭବ ହିଁ ସେମାନଙ୍କୁ ସେଭଳି ଆଖ୍ୟା ପ୍ରଦାନ କରିଥାଏ । ପ୍ରକୃତ ପକ୍ଷେ ସେ ଅନ୍ୟଜଣକ ମୋର ଶତ୍ରୁ ନୁହେଁ କି ମିତ୍ର ନୁହେଁ । ସେ ଏକ ସ୍ୱତନ୍ତ୍ର ବ୍ୟକ୍ତି । ତା'ସକାଶେ ମୁଁ କ'ଣ ମୁଁ ଜାଣେ ନା । ନାନା ପ୍ରକାର ଯୁକ୍ତି କରି, ସେ ମୋର କିପରି ଅନିଷ୍ଟ ସାଧନ କରିଛି ବା କରିପାରେ ଭାବି ତା'ଉପରେ ମୁଁ ଏକ ଶତ୍ରୁରୂପ ଆରୋପ କରେ । ତା' ପରେ ମୁଁ ଯେତେବେଳେ ଏପରି ମାନସିକତା ନେଇ ତା'ର ଶତ୍ରୁତାଚରଣ କରେ, ସେ ହୁଏତ ନିଜ ଇଚ୍ଛା ବିରୁଦ୍ଧରେ କେବଳ ଆତ୍ମରକ୍ଷାପାଇଁ ମୋର ବିରୋଧ କରିବାକୁ ବାଧ୍ୟ ହୁଏ । ଏଣୁ ମନେ ହୁଏ ଯେ ଶତ୍ରୁ ନଥାଏ, ତାକୁ ମୁଁ ହିଁ ସୃଷ୍ଟିକରେ । ଅନ୍ୟପକ୍ଷେ ମୋ ଭଳି ସେ ଜଣକ ମଧ ମୋ ଉପରେ ଶତ୍ରୁଭାବ ଆରୋପ କରି ଆକ୍ରମଣ କରେ ଏବଂ ମୁଁ ତାର ପ୍ରତିରୋଧ କରିବାକୁ ବାଧ ହୁଏ । ସେହିପରି ମିତ୍ରପଣ, ସୋଦରପଣ, ସବୁ ସଂପର୍କର ଉଭୟ ପାକ୍ଷିକତା ।

ଦୁଃଖ ସତ୍ୟ । ଦୁଃଖ ବ୍ୟଥିତ କରେ, ବିଚଳିତ କରେ ଆହତ ପରାସ୍ତ ବିପର୍ଯ୍ୟସ୍ତ କରେ, ବିମର୍ଷ ଭୟଭୀତ କରେ । ଦୁର୍ଦ୍ଦିନର ମେଘ ପରି ଦୁଃଖ ଘୋଟିଯାଏ । ବ୍ୟକ୍ତିଟିଏ ଦୁଃଖରେ ଅବସନ୍ନ ଅସହାୟ ଓ ବିପନ୍ନ ବୋଧକରେ । ଅତ୍ୟନ୍ତ ଉଦ୍‌ବିଗ୍ନ କାତର ଅବସ୍ଥାରେ ସେ ଆର୍ତ୍ତବିକଳ ହୋଇ ପ୍ରାର୍ଥନା କରେ । ଗ୍ରାହ କବଳରୁ ଗଜରାଜ ମୁକୁଳିବାକୁ ତା'ଠାରୁ ପ୍ରବଳତର ଶକ୍ତି ପାଖରେ ଶରଣାପନ୍ନ ହୁଏ । ବିପଦ ଓ ଦୁଃଖ ଏକା କଥା ନୁହେଁ । ବିପଦ ଦୁଃଖ ଦେଇପାରେ କିନ୍ତୁ ଦୁଃଖ ବିପଦ ନୁହେଁ । ବିପଦ ଏକ ଘଟଣା, ଦୁଃଖ ଏକ ସ୍ଥିତି । - ମାନସିକ ଆବେଗିକ ସ୍ଥିତି । ଦୁଃଖରୁ ବିଷାଦ ଜାତ ହୁଏ । ବିଷାଦ ଏକ ଲକ୍ଷଣ । ସେହିପରି ଉଦ୍‌ବେଗ ଏକ ଲକ୍ଷଣ ।

କିନ୍ତୁ ଦୁଃଖ ତ' ଜୀବସତ୍ତାର ଏକ ମୌଳିକ ଉପାଦାନ । ଜୀବ ଯାତନା, କାହିଁ କେଉଁ ମଞ୍ଜି ଭିତରେ ଲୁଚି ରହିଥିବା ଅଦ୍ଭୁତ ଦହନ । ଜନ୍ମିବାର, ବଞ୍ଚିବାର ମରିବାର ଦୁଃଖ । ସଂଘର୍ଷ ସଂଗ୍ରାମ ହାରିବା ଜିଣିବା ପାଇବା, ହରାଇବାର ଦୁଃଖ । ଶରୀରର କ୍ଳେଶ, ପ୍ରାଣର ବେଦନା ପ୍ରାଣୀର ସନ୍ତାପ ଆର୍ତ୍ତର ରୋଦନ । ସଂସାର ଜାଲ ରଚନାର ଜାଲ ଛିଣ୍ଡିବାର ଦୁଃଖ । ମନର ସଂକଟ, ଆଶଙ୍କା ଭୟ ଆତଙ୍କର ଦୁଃଖ । ନିଜପାଇଁ ଦୁଃଖ ଆପଣାର ପାଇଁ ଦୁଃଖ ଅପରପାଇଁ ଦୁଃଖ । ଘୋଟି ରହିଥିବା ନିରନ୍ଧ୍ର ମେଘ ପ୍ରତ୍ୟେକ ବିନ୍ଦୁରେ ଦୁଃଖ ବର୍ଷିଯାଏ ଏକ ଅପହଞ୍ଚ ମଣ୍ଡଳରୁ । ଦୁଃଖ ଜର୍ଜର ଶୋକ ଜର୍ଜର ହୁଏ ପୃଥିବୀ । ଅନୁଭବ ହୁଏ ଯେ ଏ ଅନିତ୍ୟଂ ଅସୁଖଂ ଲୋକରେ ଏହାହିଁ ତ ମୌଳିକ ସତ୍ୟ ।

ସୁଖ ବି ବୋଧହୁଏ ସତ୍ୟ, ସେହିପରି ସମପରିମାଣରେ । ବୋଧହୁଏ କହିବାର ତାତ୍ପର୍ଯ୍ୟ ହେଲା ଯେ ସୁଖାନୁଭବ ସେପରି ତୀବ୍ର ନୁହେଁ । ସୁଖ ଉଲ୍ଲାସ ଔଜ୍ଜ୍ୱଲ୍ୟ, ମାଦକତା ଆଣିଦିଏ ସତ କିନ୍ତୁ ଅହରହ ଅନୁଭବ ଦେଉଥାଏ ଯେ ସେ ଏକ ପ୍ରବାସୀ ପକ୍ଷୀ । ଆସିଛି କେବଳ ଯିବା ପାଇଁ ଥିଲାବେଳେ ବି ହେଇ ଖସିଗଲା ଭଳି ଲାଗୁଥାଏ । ସୁଖ ଅପସରିଗଲେ ଦୁଃଖ ସେଇ ଇଲାକା ଅଧିକାର କରି ରହିଥାଏ । ସେ ଘୁଞ୍ଚେ ନାହିଁ । ସରିଯାଏ ନାହିଁ । "ହାତେ ଆସେ ହାତୁ ପଡ଼ିବା ପାଇଁ ସେ" ଭଳି ବସ୍ତୁ ସେ ନୁହେଁ ଆଲୁଅ ପରେ ଅଂଧାର ଗାଢ଼ତର ହୁଏ । ଦୁଃଖର କଷଣ ତୀବ୍ରରେ ହୁଏ । ଅସଫଳ ମାତୃତ୍ୱର ଦୁଃଖ ଅଛି ସତ; କିନ୍ତୁ ପୁତ୍ରଲାଭ ପରେ ପୁତ୍ରହରା ମାତୃତ୍ୱର ହାହାକାର ତା ଅପେକ୍ଷା ଅଧିକ ଦୁଃସହ ଦୁଃଖ । ଜୀବନ ବୃକ୍ଷର ମାଟିତଳେ ବୁଡ଼ି ରହିଥିବା ଚେର ହିଁ ଦୁଃଖ, ଶୀର୍ଷରେ ଦୋହଲୁଥିବା ପତ୍ରହିଁ ସୁଖ । ଦୋହଲିବାର କିଛି ସ୍ଥିରତା ନାହିଁ । କିନ୍ତୁ ବୁଡ଼ି ରହିଥିବା

ଚେରକୁ ବେଢ଼ିରହିଥିବା ଅଂଧାର ଏକ ସ୍ଥିର ସତ୍ୟ । ଚେରର ଶିରା ଉପଶିରାରେ ଅହରହ କ୍ଷୁଧାର ଦହନ ସତ୍ୟ । ଦୁଃଖ ସ୍ଥିର, ଦୁଃଖ ସତ୍ୟ ।

ଏ ଦୁଃଖକୁ ଅସହାୟ ସ୍ୱୀକାର କରିବା, ସହିବାରେ ତିଳ ତିଳ ସେଥିରେ କ୍ଷୟିତ ହୋଇଯିବା । ପ୍ରାଣୀର ଧର୍ମ । ତାକୁ ଅସ୍ୱୀକାର କରିବା, ବିଦ୍ରୋହ କରିବା, ସଂଘର୍ଷ କରିବା, ପରାସ୍ତ କରିବା, ଯୋଦ୍ଧାର ଧର୍ମ, ତାକୁ ସହଜରେ ସ୍ୱୀକାର କରିବା ଓ ସେହିପରି ସହଜରେ ତାକୁ ଅତିକ୍ରମି ଯିବା ନିରୁଦ୍‌ବିଗ୍ନ ଶୂନ୍ୟ ମଣ୍ଡଳରୁ ଆଲୋକ ଓ ଅଂଧାରର ଆବର୍ତ୍ତର ଊର୍ଦ୍ଧ୍ୱରୁ ନିଜର ବ୍ୟୋମ ବିସ୍ତାରରେ ତାକୁ ତାର ସୂଚ୍ୟଗ୍ରମାତ୍ର ଭୂମିରେ ସୀମିତ ରଖିବା ଆତ୍ମସ୍ୱରୂପ ସିଦ୍ଧ ସାଧକର ଧର୍ମ ।

ଦୁଃଖାତିରକ୍ତ, ସୁଖାତିରକ୍ତ ସ୍ଥିତି ଅଖଣ୍ଡ ପୂର୍ଣ୍ଣତାର ସ୍ଥିତି । ଜୀବନ ସତ୍ୟ, ମୃତ୍ୟୁ ସତ୍ୟ, ଦୁଃଖ ସତ୍ୟ, ସୁଖ ସତ୍ୟ । କିନ୍ତୁ ପୂର୍ଣ୍ଣତା ବୃହତ୍ତର ସତ୍ୟ; ଅବିଚଳିତ ଅସୀମ ବ୍ୟାପ୍ତିର ସତ୍ୟ, ଅବିଚଳିତ ଅତିସତ୍ୟ, ମାନସ ନୁହେଁ ଅତିମାନସ ସତ୍ୟ । ସମ୍ଭାବନାମାତ୍ର ନୁହେଁ । ବିସ୍ମୟ ନୁହେଁ, ତାହା ନିଷ୍କମ୍ପ ପ୍ରୋଜ୍ଜ୍ୱଳ ଜାଜ୍ଜ୍ୱଲ୍ୟମାନ ସତ୍ୟ । ଓଁ ଶମ୍ ଓଁ ଗୁରୁଭ୍ୟୋନମଃ, ପରମଗୁର୍ରୁଭ୍ୟୋନମଃ । ପରାପର ଗୁର୍ରୁଭ୍ୟୋନମଃ । ପରମେଷ୍ଠି ଗୁରଭ୍ୟୋନମଃ ।

ଓଁ ନମୋ ଭଗବତେ ଶ୍ରୀ ଅରବିନ୍ଦାୟ
ଓଁ ଆନନ୍ଦମୟି, ଚୈତନ୍ୟମୟ ସତ୍ୟମୟି ପରମେ ॥



*The Spiritual Significance of Flowers*

Front cover

The white lotus - **Aditi** -

(The Divine Consciousness Pure, immaculate, gloriously powerful.)

The pinkish red lotus - **Avatar** -

(The Supreme manifest an earth in body)

Back cover

Water lily - **Wealth** -

(True wealth is the wealth that one offers to the Divine)



୧୨୦.୦୦ ଟଙ୍କା

ISBN : 81-89033-08-10